ଶ୍ରଦ୍ଧାଞ୍ଜଳି— ଲେଖକ ଗିରିଜା ଭୂଷଣ ପଟ୍ଟନାୟକ
ପ୍ରକାଶକ: ଦି ଇନଷ୍ଟିଚିଉଟ୍ ଅଫ୍ ଓରିଏଣ୍ଟାଲ ଏଣ୍ଡ ଓରିଶାନ୍
ଷ୍ଟଡ଼ିଜ୍, ମୈତ୍ରୀ ସରଣି, କଟକ - ୧, ମୁଦ୍ରଣ : ଦି ପ୍ରିଣ୍ଟୋଭର୍ସ,
କଟକ - ୧, ପ୍ରଥମ ପ୍ରକାଶନ କାଳ : ଅକ୍ଟୋବର ୧୯୯୮,
ପ୍ରଚ୍ଛଦ ଶ୍ରୀ ଶିବ ପାଣିଗ୍ରାହୀ, ମୂଲ୍ୟ ୧୦୦ ଟଙ୍କା ।

---

**SRADHANJALI** — Written by : Girija Bhusan Patnaik, Published by :The Institute of Oriental & Orissan Studies, Maitree Sarani, Cuttack - 1, Printed at : The Printoverse, Cuttack - 1, First Edition : October, 1998, Graphic : Sri Siba Panigrahi, Price : 100.00.

**ଉତ୍ସର୍ଗ**

ସେମାନେ
ଯେଉଁମାନେ ଆପଣାର
ବ୍ୟକ୍ତିଗତ ଜୀବନର ଉତ୍‌ଥାନ ପତନ,
ଆପଣାର ଦୋଷ ଦୁର୍ବଳତା ସତ୍ତ୍ୱେ
ଆମକୁ ଅନୁପ୍ରାଣିତ କରିଯାଇଛନ୍ତି
ସେଇମାନଙ୍କର ସ୍ମୃତିରେ
ଆପଣାର
ଗଭୀର ଶ୍ରଦ୍ଧାଞ୍ଜଳି
ସହ ।

**ଲେଖକ**

# ଶ୍ରଦ୍ଧାଞ୍ଜଳି ୪ର୍ଥ ଖଣ୍ଡର ଜନ୍ମ ଉତ୍ସବ ଅବସରରେ
# ଦୁଇ ଚାରି ପଦ ମନକଥା

ଶ୍ରଦ୍ଧାଞ୍ଜଳି ୪ର୍ଥ ଖଣ୍ଡର ଉନ୍ମୋଚନ କରିବାପାଇଁ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ସଦୟ ସମ୍ମତି ଦେଇଛନ୍ତି । ତାଙ୍କୁ ଆମେ ଥରେ ଡାକିଥିଲୁ 'ମହାଭାରତ ଓ ରାମାୟଣ' ଉପରେ କହିବା ପାଇଁ । ସେଇ ସନ୍ଧ୍ୟାରେ ସେ ଆସିଲାବେଳକୁ ବର୍ଷା ପାଣିରେ ବାଟଘାଟ ଏପରିକି ୟୁନିଭର୍ସିଟିର ଘର ବର୍ଷା ପାଣିରେ ବୁଡ଼ିଯାଇଥିଲା । ହେଲେ ସେଇ ସନ୍ଧ୍ୟାରେ ଯେଉଁମାନେ ଆସିଥିଲେ ସେମାନେ ଅନୁରୋଧ କରିଥିଲେ ଜାନକୀବାବୁଙ୍କୁ ଆଉ ଥରେ ଆସିବାପାଇଁ । ସେ ସମ୍ମତି ଦେଇଥିଲେ କିନ୍ତୁ ମଝିରେ ନିର୍ବାଚନ ଆସିଗଲା । ତାଙ୍କ ସାଙ୍ଗରେ ଦେଖାହେଲା ଦିଲ୍ଲୀ ଫେରିବା ବାଟରେ । ମୁଁ ଆମର ଅନୁରୋଧ କଥା ଜଣାଇଲି । ସେ କହିଲେ ଯେ ନିର୍ବାଚନ ପର୍ବ ଚାଲିଛି, ଦେଖାଯାଉ । ମୁଁ ତାଙ୍କୁ କହିଲି ଯେ ଆମେ ଆପଣଙ୍କୁ କେବଳ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବରେ ନିମନ୍ତ୍ରଣ କରୁନାହୁଁ, କରୁଛୁ ସାହିତ୍ୟିକ, ସଂସ୍କୃତିପ୍ରେମୀ ଭାବରେ । ଆଜିଠାରୁ ବହୁ ବର୍ଷ ପରେ ଓଡ଼ିଶାର ବହୁ ମୁଖ୍ୟମନ୍ତ୍ରୀ ଆସିଥିବେ ଏବଂ ଯାଇଥିବେ । ଇତିହାସ ସେମାନଙ୍କର ସ୍ମୃତିକୁ ଫିଙ୍ଗିଦେଇଥିବ ନିୟତିର ଗର୍ଭକୁ । ଲୋକେ ସେମାନଙ୍କର ନାମ ଭୁଲିଯାଇଥିବେ । କିନ୍ତୁ ସାହିତ୍ୟିକ, ସଂସ୍କୃତି-ସାହିତ୍ୟପ୍ରେମୀ ଭାବରେ 'ମହାଭାରତ-ରାମାୟଣ'ର ଅନୁବାଦକ ଭାବରେ ସେ ସ୍ମୃତ ହୋଇ ରହିବେ । ସେ କଥାଟାକୁ ଗ୍ରହଣ କରିଥିଲେ, ଆସିଥିଲେ । ପରବର୍ତ୍ତୀ କାଳରେ ସେ ଓଡ଼ିଆ ଭାଷା, ସଂସ୍କୃତ ଭାଷା ଉପରେ କହିବାକୁ ଆସିଛନ୍ତି ।

ଆଜି ମଧ୍ୟ ଆମର ଆମନ୍ତ୍ରଣ ଠିକ୍ ସେଇପରି ।

ବନ୍ଧୁ ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର ଓ ହାଡ଼ିବନ୍ଧୁ ମିର୍ଦ୍ଧା ବହି ଉପରେ କହିବାପାଇଁ ସମ୍ମତି ଦେଇଛନ୍ତି । ରମାକାନ୍ତ ମୋର ବହୁ ଦିନର ବନ୍ଧୁ । ରେଭେନ୍ସା କଲେଜରୁ ପରିଚୟ । ଠିକ୍ ସେଇପରି ବନ୍ଧୁ ସୀତାକାନ୍ତ ମହାପାତ୍ରଙ୍କ ସହିତ ବନ୍ଧୁତା ରେଭେନ୍ସା କଲେଜରୁ, ଛାତ୍ର ଜୀବନରୁ । ଯେଉଁ ଗୃହରେ ଏହି ସଭାର ଆୟୋଜନ ହୋଇଛି ସେଇ ଗୃହପାଇଁ ଭାରତ ସରକାରଙ୍କର ସଂସ୍କୃତି ବିଭାଗର ସେକ୍ରେଟେରୀ ଭାବରେ ତାଙ୍କର ଅନୁଦାନ ଆମ ପାଇଁ ଅଶେଷ ସାହାଯ୍ୟକାରୀ ହୋଇଛି । ଅଧ୍ୟାପକ ଡକ୍ଟର ହାଡ଼ିବନ୍ଧୁ ମିର୍ଦ୍ଧା ଆମର ପଡ଼ୋଶୀ ଏବଂ ମୋ ସ୍ତ୍ରୀଙ୍କର ସହକର୍ମୀ । ସେମାନଙ୍କ ସମ୍ମତି ଏବଂ ଯୋଗଦାନପାଇଁ ଆମେ କୃତଜ୍ଞ ।

ଅଧ୍ୟାପକ ଡକ୍ଟର ବୈଦ୍ୟନାଥ ମିଶ୍ରଙ୍କୁ ଜାଣିଛି ନିଖିଳ ଉତ୍କଳ ଛାତ୍ର ସଂଘର ସମ୍ପାଦକ ଦିନରୁ । ପରେ ସେ ମୋର ଶିକ୍ଷକ । ବର୍ତ୍ତମାନ ସେ ୟୁନିଭର୍ସିଟି ପରିବାରର

ଅନ୍ୟତମ ମୁଖ୍ୟ ପରିଗ୍ରହକ । ତେଣୁ ତାଙ୍କ ଉପରେ ଅଧିକାରକୁ ମୁଁ ସାବ୍ୟସ୍ତ କରିନେଇଥିବା ସ୍ୱାଭାବିକ ।

ଅଧ୍ୟାପକ ପଠାଣି ପଟ୍ଟନାୟକ କଲେଜରେ ମୋ ଉପର କ୍ଲାସରେ ପାଠ ପଢୁଥିଲେ । ଖାଲି ନିପୁଣ ସାହିତ୍ୟିକ ଭାବରେ ନୁହେଁ, ଜଣେ ସାମାଜିକ ଦିଗ୍‌ଦର୍ଶନ ଥିବା ବୁଦ୍ଧିଜୀବୀ ଭାବରେ ସେ ୟୁନିଭର୍ସ ପରିବାରର ଅନ୍ତର୍ଭୁକ୍ତ ।

ଅଧ୍ୟାପିକା ରେଖା ମହାନ୍ତି ମଧ୍ୟ ଠିକ୍ ସେଇପରି ୟୁନିଭର୍ସ ପରିବାରର ଅନ୍ତର୍ଭୁକ୍ତ ।

ସେ ସମସ୍ତଙ୍କର ଉପସ୍ଥିତି ଏବଂ କହିବାପାଇଁ ସ୍ୱୀକୃତି ସକାଶେ ମୁଁ ଗଭୀର କୃତଜ୍ଞ ।

ବହି ଛପା ହୋଇ ସାରିଥିଲା ଅକ୍ଟୋବର ମାସ ୩୧ ତାରିଖରେ ଉନ୍ମୋଚନ ହେବାପାଇଁ । କିନ୍ତୁ ନାନା କାରଣରୁ ଏହା ଘୁଞ୍ଚିଗଲା ନଭେମ୍ବର ୨୦କୁ । ଏହି ସମୟ ଭିତରେ ନାଗଭୂଷଣ, ନରସିଂହ (ମହାପାତ୍ର), ଦଶରଥ ଦେବ ଆମକୁ ଛାଡ଼ି ଚାଲିଯାଇଛନ୍ତି । ତିନି ଜଣଯାକଙ୍କ ସହିତ ବ୍ୟକ୍ତିଗତ ପରିଚିତି ଅନେକ ଦିନରୁ । କିନ୍ତୁ ସେମାନଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ୪ର୍ଥ ଖଣ୍ଡରେ ସନ୍ନିବେଶିତ ହୋଇପାରି ନାହିଁ । ଲେଖିବା ପାଇଁ ଯେଉଁ ଶକ୍ତି ଦରକାର ତାହା ଫେରି ପାଇବା ପାଇଁ ବୋଧହୁଏ ସମୟ ଲାଗିବ । ଯଦି କେବେ ଶ୍ରଦ୍ଧାଞ୍ଜଳିର ୫ମ ଖଣ୍ଡ ପ୍ରକାଶିତ ହୁଏ ତା'ହେଲେ ସେଗୁଡ଼ିକ ସ୍ଥାନ ପାଇବ ସେଥିରେ ।

ଅନେକ ବନ୍ଧୁ ଏଇ 'ଶ୍ରଦ୍ଧାଞ୍ଜଳି' ଗୁଡ଼ିକୁ ଏକାଠି କରି ପ୍ରକାଶ କରିବା ସକାଶେ ଅନୁରୋଧ କରିଛନ୍ତି, ଜିଗର କରିଛନ୍ତି । ସେମାନଙ୍କର ଚିତ୍ର ମନ ଭିତରେ ଆସିଯାଉଚି ଏହି ଅବସରରେ ।

ୟୁନିଭର୍ସ
୨୦ ନଭେମ୍ବର, ୧୯୯୮

ଗିରିଜା ଭୂଷଣ ପଟ୍ଟନାୟକ

# କିଞ୍ଚିତ୍

ଶ୍ରଦ୍ଧାଞ୍ଜଳିର ଚତୁର୍ଥ ଖଣ୍ଡ ପ୍ରକାଶିତ ହୋଇଛି । ଲେଖା ଲେଖିଲା ବେଳେ ଦିନେ ଯେ ଏଗୁଡ଼ିକ ପ୍ରକାଶ ପାଇବାର ସମ୍ଭାବନା ରହିଛି ବା ଏହାର ଆବଶ୍ୟକତା ରହିଛି ଏହା ମୋର କଳ୍ପନାର ବାହାରେ ଥିଲା । ପରେ ଅନେକ ବନ୍ଧୁ ଏଗୁଡ଼ିକର ପ୍ରକାଶନ ପାଇଁ ଅନୁରୋଧ କରିଛନ୍ତି । ସେଥିପାଇଁ ସେ ସମସ୍ତଙ୍କୁ ମୋର କୃତଜ୍ଞତା ଜଣାଉଛି । କିନ୍ତୁ କପି ନ ଥିଲେ ସଂଗ୍ରହ କରିବା ସହଜ ନୁହେଁ । କେତେବେଳେ କେଉଁ ପତ୍ର ପତ୍ରିକାରେ ଏଗୁଡ଼ିକ ଛପା ଯାଇଛି, ତାହା ମୋର ହେତୁ ମଧ ନାହିଁ । ଅନେକ ବନ୍ଧୁଙ୍କ ସୂଚନା ମୋତେ ଏଥିପାଇଁ ସାହାଯ୍ୟ କରିଛି । ଏବେ ଜଣେ ବନ୍ଧୁ ଲେଖିଲେ, "ଆପଣ ଦିବାକର ପଟ୍ଟନାୟକଙ୍କର ଉପରେ ଯେଉଁ ଲେଖାଟି ଲେଖିଥିଲେ ତା ମୋ ମନକୁ ଛମିତି ପାଇଥିଲା..... ।" ସେ ଦୟାକରି କୌଣସି ପତ୍ରିକାରେ ପ୍ରକାଶ ପାଇଥିବା ଲେଖାଟି କାଟି ମୋ ପାଖକୁ ପଠାଇଥିଲେ । କିନ୍ତୁ କଟିଙ୍ଗରେ ଉକ୍ତ ପତ୍ରିକାର ନାମ ନାହିଁ । ସେ ଯା'ହେଉ ଲେଖାଟି ମିଳିଗଲା । ଯାହା ମନକୁ ଯେଉଁ ଲେଖାଟିଂ ପାଇଛି ସେ ଉଲ୍ଲେଖ କରିଛନ୍ତି ସେଇ ଲେଖାଟିର କଥା । ତଥାପି ଅନେକଙ୍କ ଉପରେ ଲେଖା ଏ ପର୍ଯ୍ୟନ୍ତ ପାଇନାହିଁ । ମୃତ୍ୟୁର ଠିକ୍ ପରବର୍ତ୍ତୀ ଭାବୋଚ୍ଛ୍ୱାସ ଉପରେ ଲେଖାକୁ ତ ଆଉ ଥରେ ଲେଖିବା ସମ୍ଭବ ନୁହେଁ ମୋ ପାଇଁ । ତେଣୁ ସମ୍ଭବ ହେଲେ ପଞ୍ଚମ ଖଣ୍ଡରେ ସେ ସବୁ ସ୍ଥାନ ପାଇବ ବୋଲି ଆଶା କରିବା ଛଡ଼ା ମୋ ପାଇଁ କୌଣସି ଉପାୟ ନାହିଁ ।

ବନ୍ଧୁମାନେ ସ୍ଥିର କଲେ ଯେ ଏକମାତ୍ର ବାଟ ହେଉଛି ପ୍ରତ୍ୟେକ ଖଣ୍ଡରେ ନାମର କ୍ରମିକତା ରକ୍ଷା କରି ଲେଖାଗୁଡ଼ିକ ଛପାଯିବା ଉଚିତ । ସେମାନଙ୍କର ଏ ପ୍ରସ୍ତାବ ଓ ନିଷ୍ପତ୍ତି ମୁଁ ଗ୍ରହଣ କରିଛି । ଚାରିଖଣ୍ଡ ଯାକରେ ସେଇ କ୍ରମାନ୍ୱୟତା ରକ୍ଷା କରାଯାଇଛି । ସେଥିପାଇଁ ସହକର୍ମୀ ବିଭୁରଂଜନ ଦାସ ସନ୍ତୋଷ କୁମାର ରାୟଚୌଧୁରୀ, ଉମେଶ ଚନ୍ଦ୍ର ନାୟକ, କୈଳାଶ ଚନ୍ଦ୍ର ଦାସ ଏବଂ କିଶୋର ଚନ୍ଦ୍ର ତ୍ରିପାଠୀ ଧନ୍ୟବାଦାର୍ହ ।

ଆଗରୁ ଲେଖିଥିଲି ଯେ ଅଧାପକ ବିଧୁ ଭୂଷଣ ଦାସଙ୍କ ପରି ସାହିତ୍ୟ ସମାଲୋଚକ ଏବଂ ଅଧାପକ ମୋର ଏଇ ବହିଗୁଡ଼ିକୁ ପଢ଼ି ଯେଉଁ ବିଶେଷଣରେ ମୋତେ ପ୍ରଶଂସିତ କରିଛନ୍ତି ତାହା ତାଙ୍କର ଶିଷ୍ୟମାନଙ୍କ ପ୍ରତି ଅଗାଧ ସ୍ନେହ ଓ ଦୁର୍ବଳତାର ପ୍ରତୀକ ବୋଲି ମନେ ହୋଇଛି । ଏପିଲଗ୍ ବା ବିୟୋଗାନ୍ତ ଲେଖା ମାନଙ୍କର ଏଇ ପ୍ରକାର ସାହିତ୍ୟ ଅନନ୍ୟ ସାଧାରଣ ଏବଂ କୌଣସି ଭାରତୀୟ ବା ବୈଦେଶିକ ସାହିତ୍ୟରେ ଏପରି ଉଦାହରଣ ନାହିଁ ବୋଲି ତାଙ୍କର ମତ । ମୁଁ ତ କହିଛି ଯେ ମୁଁ ସାହିତ୍ୟିକ ନୁହେଁ । ଦେଶରେ ଏପରି ଲେଖା କ୍ୱଚିତ୍ ଲୋକ ଲେଖୁଥିଲେ ଏବଂ ଏହାର ଏକ ଆବଶ୍ୟକତା ରହିଛି ବୋଲି ମୁଁ ଲେଖିବାକୁ ଆରମ୍ଭ କଲି ଏବଂ ଲେଖୁ ଲେଖୁ ଚାରିଖଣ୍ଡ ବହି ହୋଇଗଲାଣି ।

ବନ୍ଧୁ ରମାକାନ୍ତ ରଥ ତ ମୋର ବାଲ୍ୟବନ୍ଧୁ । ସେ ତ ସାହିତ୍ୟ ଓ ପ୍ରଶାସନର ଶୀର୍ଷ ସ୍ଥାନରେ ପହଞ୍ଚିଛନ୍ତି । ମୁଁ ତ ରହିଯାଇଛି ବହୁତ ତଳେ ମାଟି ଉପରେ । ତଥାପି ସେ ଯେତେବେଳେ ବହି ପଢ଼ି ଏବଂ ୟୁନିଭର୍ସ ଦେଖି ମୋତେ ଲେଖିଲେ ଯେ ଆମ ସମସ୍ତଙ୍କ ଭିତରେ ତମେ ହିଁ ଟପିଗଲ ସମସ୍ତଙ୍କୁ , ମନେ ହେଲା ଯେପରି ଶ୍ରଦ୍ଧାଞ୍ଜଳିର ଚରିତ୍ରଗୁଡ଼ିକ ସାଙ୍ଗରେ ମୁଁ କଥା ହେଉଛି ।

ସେମାନେ ବସିଛନ୍ତି ମୋ ପାଖରେ ଜୀବନ୍ତ ହୋଇ । ରମାକାନ୍ତ ଅନେକ ସୁଖଦୁଃଖର ବନ୍ଧୁ । ସେଇ ଅନୁରାଗରେ ଲେଖିଦେଲେ ସିମିତି ବୋଲି ମନେ ହେଲା ।

ଏବେ ପଦ୍ମାଳୟା ଦାସ ଚାଲିଗଲେ । ମୋ ଲେଖାଟିକୁ ପ୍ରଫୁଲ୍ଲ ରଥ (ପଦ୍ମାଳୟା ଦାସଙ୍କ ଭାଇ) ପଢ଼ିଲେ ଏବଂ ତାଙ୍କ ସ୍ତ୍ରୀ ପଚାରିଲେ ତାଙ୍କୁ । ତାଙ୍କ ସଂପର୍କରେ ଏତେ କଥା ସେ ଲେଖିଛନ୍ତି । ତମେ ତ କାହିଁ ଆମକୁ କେବେହେଲେ ଏତେ କଥା କହିନାହଁ । ସେ ଉତ୍ତର ଦେଲେ ମୁଁ କିମିତି ଜାଣିବି ? ସେ ନାନୀର ସମସାମୟିକ ତେଣୁ ସେ ବେଶୀ ଜାଣିଛି । ମୋର ଏକଥା ଶୁଣି ମନେହେଲା କଣ ବା କେତେ ଲେଖିଛି ତାଙ୍କ ଉପରେ ? ନା, ଲେଖାର କେତେକାଂଶ ମନଗହନର ସୂକ୍ଷ୍ମତନ୍ତ୍ରୀକୁ ଆଘାତ କରିଛି, ସେଇଥି ପାଇଁ ଏ ବଧେଇ !

ଅଧ୍ୟାପକ ପଠାଣି ପଟ୍ଟନାୟକ ବହୁ ଦିନର ବନ୍ଧୁ । ସେ ଆମ ଉପରେ ପାଠ ପଢୁଥିଲେ ଏବଂ ଜ୍ଞାନରେ ବି ଢେର ବେଶୀ । ଏବେ ବାବା ଶ୍ରୀ ନାରାୟଣ ବୀରବର ସାମନ୍ତଙ୍କ ଉପରେ ମୋର ଏକ ଲେଖା ଦେଖି ହଠାତ୍ ଫୋନ୍ କଲେ ଆପଣ ତ ଚାରଣ ସାହିତ୍ୟ ଭଳି ଲେଖି ପାରନ୍ତେ । ଓଡ଼ିଆ ଭାଷାରେ ସେଭଳି ବହି ଖୁବ୍ କମ । ମୁଁ କି ଜାଣେ ଚାରଣ ସାହିତ୍ୟ କଣ ବା ତାର ଲେଖକ କିଏ ସବୁ ? ମୁଁ ଲେଖି ଯାଇଛି ଆବେଗରେ ତାକୁ ମୋହର ଦେଇଛନ୍ତି ଅନ୍ୟମାନେ ଯେଉଁମାନଙ୍କର ଭାଷା ଓ ସାହିତ୍ୟରେ ମୋ ଠାରୁ ବହୁ ଗଭୀର ଦଖଲ ଅଛି ।

ତେବେ ମନେ ପଡ଼ିଲା । ଅଧ୍ୟାପକ ବିଦ୍ୟାଧର ପାଢ଼ୀ ଆଉ ନାହାନ୍ତି । ସେ ସବୁବେଳେ ମୋତେ କହୁଥିଲେ ତମେ ଖାଲି ମଲା ଲୋକଙ୍କ ବିଷୟରେ ଲେଖୁଚ, ଜୀବିତ ଲୋକମାନଙ୍କ ଉପରେ ଲେଖୁନାହଁ କାହିଁକି ?

ସତରେ ତ । ଜୀବିତ ଲୋକମାନଙ୍କ କଥା କାହିଁକି ଲେଖୁନାହିଁ ? ଆମ ଦେଶରେ କଳ୍ପନା ଖୁବ୍ କମ ହୁଏ । ଯିଏ ଗାଳି ଦେବାର କଥା ଚଉଦ ପୁରୁଷ ଗାଳି ଦେଇ ଯାଆନ୍ତି । ଯେଉଁମାନେ ପ୍ରଶଂସା କରିବାର ସେମାନେ ତେଲ ଏପରି ମାରି ଯାଆନ୍ତି ଯେ ମଣିଷର ମୁହଁ ଲାଜରେ ଝାଉଁଳି ପଡ଼ିବ । ଗୋଟିଏ ଉଦାହରଣ ଦେଲେ ଚଳିବ । ସେ ହେଉଛନ୍ତି ବିଜୁ ପଟ୍ଟନାୟକ । ବଂଚି ଥିଲାବେଳେ ତାଙ୍କର ପୃଥିବୀ ଦୁଇ ଭାଗରେ ବିଭକ୍ତ ହୋଇଯାଇଥିଲା । ଗୋଟିଏ ହେଲା ନିନ୍ଦୁକ, ବିରୋଧୀମାନେ । ସେମାନେ ବିଜୁ ପଟନାୟକଙ୍କୁ ବହୁ ପ୍ରକାର ସମ୍ବୋଧନ ଦେଇଥିଲେ । 'ନବୀନ ନିବାସ' ତାଙ୍କ ଘରେ ବସିଥିଲା ବେଳେ ଭୁବନେଶ୍ୱର ଆକାଶରେ ଉଡ଼ାଜାହାଜ ବିପଦ ସଂକେତକୁ ଜଣେ ଦକ୍ଷ ପାଇଲଟ ଭାବରେ ଜାଣିପାରି ସେ ନିଜ କାରର ଆଲୁଅରେ ତାକୁ ନିରାପଦରେ ଅବତରଣ କରାଇ ଦେଲେ । ପ୍ରଶଂସା ପରିବର୍ତ୍ତେ ତା ପରଦିନ ସମ୍ବୋଧିତ ହେଲା ଆନ୍ତର୍ଜାତିକ ଚୋରାବେପାରୀ ଓ୍ୱାଲ୍‌କଟ୍ ଭୁବନେଶ୍ୱର ଆକାଶରେ ? ଇତ୍ୟାଦି । କଲିକତାରୁ ଆସୁଛନ୍ତି । ଝଡ଼ ବତାସରେ ପଡ଼ି ଉଡ଼ାଜାହାଜ ଉଡ଼ିଗଲା ସମୁଦ୍ର ଉପରକୁ । ତେଲ ସରି ଆସୁଚି , ଆଉ ରକ୍ଷା ନାହିଁ । ବିଜୁ ପଟ୍ଟନାୟକ ଉଠିଲେ ପାସେଞ୍ଜର ସିଟରୁ । ବସିଲେ ଯାଇ ପାଇଲଟ୍ ଭାବରେ । ବିଚକ୍ଷଣ ଦକ୍ଷତାର ସହିତ ସେ ଉଡ଼ାଜାହାଜକୁ ଝଡ଼କାଟି ଓହ୍ଲାଇ ଦେଲେ ଭୁବନେଶ୍ୱରରେ । ପ୍ରଶଂସା ମିଳିବ କଣ ତା ପରିବର୍ତ୍ତେ ମିଳିଲା ଅଭିଯୋଗ - ତାକୁ ଉଡ଼ାଜାହାଜ ଉଡ଼ାଇବାର ଅଧିକାର ଦେଲା କିଏ ? ଏ ଗୋଟିଏ ଦଳ । ଆଉ ଦଳଟି ଆହୁରି ସାଂଘାତିକ । କାନିଉଟ୍‌ଙ୍କ କୋର୍ଟିଅର ଭଳି । ଆପଣଙ୍କର ଗୋଡ଼ ସୁନ୍ଦର ନାକ ସୁନ୍ଦର, ହସିଲେ ମୁକ୍ତା ଝରୁଛି, ରାଗିଲେ ହୀରା ଝରୁଛି । ଆପଣ

ଯାହା ଚାହିଁବେ ତା ହେବ । ଆପଣ ଆଖି ମାରିଦେଲେ ତା ଧ୍ୱଂସ କରିଦେବ ଶତ୍ରୁ କୁଳକୁ । ଆଖି ରହିଚି ଅର୍ଥ ଉପରେ ଏବଂ ଟିକଟ ଉପରେ । ପରିଶେଷରେ ମିଳିଥିବା ଜିପଟି ବି ହେବ ତାଙ୍କରି ସୁଦୟାକୁ । ଏମାନେ ହେଲେ ଆଉ ଗୋଟିଏ ଗୋଷ୍ଠୀର ଲୋକ । କିନ୍ତୁ କଳନା ଆମ ଦେଶରେ ହୁଏ ନା । ଇଂରାଜୀରେ ଯାହାକୁ କହନ୍ତି objective assessment ଆମର ହୁଏ ନାହିଁ । ସେଇ ଯୋଗୁଁ ଜୀବିତ ଲୋକଙ୍କ ଉପରେ ଲେଖିବା ଭାରି କଷ୍ଟ । ଏହାଛଡ଼ା କାହା ଉପରେ ଲେଖିବ ମଣିଷ ? କାହା ନାଁ ରହିଲା କାହା ନାଁ ରହିଲା ନାହିଁ ତା' ଉପରେ ବିବାଦ ଚାଲିବ ।

ତା ଛଡ଼ା ଜଣେ ଲୋକ ଚାଲିଗଲା ପରେ ହିଁ ସେ ଆମ ପାଇଁ ଯେଉଁ ଆସ୍ତି ମୂଳକ ଦିଗ ଦେଇ ଯାଇଛନ୍ତି ମୁଁ ତାହା ହିଁ ଲିପିବଦ୍ଧ କରିବାକୁ ଚାହିଁଛି ଶ୍ରଦ୍ଧାଞ୍ଜଳିରେ । ପ୍ରତ୍ୟେକ ମଣିଷର ଏକ ନାସ୍ତିମୂଳକ ଦିଗ ରହିଛି । ସେ ମଣିଷ, ଦେବତା ନୁହେଁ । ଆଉ ଦେବତା ମାନଙ୍କର କଣ ନାସ୍ତିମୂଳକ ଦିଗ ନାହିଁ ନା କଣ ? ଜୀବନରେ ଯେଉଁତକ ଅଂଧକାରର ବସ୍ତୁ ( Dark aspect ) ସେ ସଂପର୍କରେ ବିଚାର କରିବେ ସେଇମାନେ ଯେଉଁମାନେ ଐତିହାସିକ କଳନା କରିବେ । କିନ୍ତୁ ଜଣେ ମଣିଷର ବ୍ୟକ୍ତିଗତ ଜୀବନ ତାର ନିଜର । ସେ ଲେଖକ, କଳାକାର, ସାମାଜିକ କର୍ମୀ ହେଲା ବୋଲି ତା ଜୀବନକୁ ବିକ୍ରୀ କରିଦେଇ ନାହିଁ । ଜଣେ ବ୍ୟକ୍ତିର ଜୀବନର ଏକ ନିଜସ୍ୱ ଦିଗ ଅଛି । ସେ ତାର ନିଜର । ସେ ବିଭାବର କାର୍ଯ୍ୟ ଯଦି ସମାଜକୁ ପ୍ରଭାବିତ ନ କଲା ସେ ଦିଗ ସଂପର୍କରେ ଆଲୋଚନା କରିବା ଗର୍ହିତ । ମୃତ୍ୟୁ ପରେ ଅନେକ ଲୋକଙ୍କର ଜୀବନ ଉପରେ ଦଳେ ନିମକହାରାମ ଏଇପରି ଆଲୋଚନା କରିଥାନ୍ତି ଏବଂ ବହି ଲେଖି ବେଶ ଦୁଇ ପଇସା କମେଇ ଥାନ୍ତି । ପଣ୍ଡିତ ନେହେରୁଙ୍କ ଠାରୁ ଆରମ୍ଭ କରି ମାଓ-ସେ-ତୁଂଙ୍କ ପର୍ଯ୍ୟନ୍ତ, କୃଷ୍ଣମୂର୍ତ୍ତିଙ୍କ ଠାରୁ ଆରମ୍ଭ କରି ମୌଲାନା ଆଜାଦଙ୍କ ପର୍ଯ୍ୟନ୍ତ ସମସ୍ତେ ଏଥିରେ ଶରବ୍ୟ । ଏବେ କର୍ଣ୍ଣାଟକ ମୁଖ୍ୟମନ୍ତ୍ରୀ ଶ୍ରୀ ପଟେଲ ଏ ସଂପର୍କରେ ଏକ ବଢ଼ିଆ ଜବାବ ଦେଇଛନ୍ତି । ଦୂରଦର୍ଶନର 'ଲୋକ ଅଦାଲତ'ରେ ସେ ଖୋଲାଖୋଲି କହିଛନ୍ତି ଯେ ସକାଳ ଛଅଟାରୁ ସନ୍ଧ୍ୟା ଛଅଟା ପର୍ଯ୍ୟନ୍ତ । ମୁଁ ମୁଖ୍ୟମନ୍ତ୍ରୀ ତାପର ସମୟ ମୋର ନିଜର । ସେ ସମୟ ମୋର ଦରକାର ନିଜ ପାଇଁ । ଇଲିଜ୍ଜିର ପାଇଁ, କ୍ଲାନ୍ତି ଅପନୋଦନ ପାଇଁ । ସ୍କଚ ଓ ନାରୀ ଏ ଦୁଇଟି ମୋର ଇଲିଜ୍ଜିର । ସେଥିରେ ଅନ୍ୟ ଲୋକର ମୁଣ୍ଡ ଖେଳାଇବାର ନାହିଁ । ଯିଏ ବ୍ୟସ୍ତ ହେବା କଥା, ସେ ହେଉଛନ୍ତି ମୋ ସ୍ତ୍ରୀ । ସେ ମୋର ଗୁଣ ଜାଣନ୍ତି ଏବଂ ବହୁଦିନୁ ମୋତେ କ୍ଷମା ଦେଇଛନ୍ତି । ଲୋକଅଦାଲତର କ୍ୟାମେରା ଫେରିଲା କର୍ଣ୍ଣାଟକକୁ । ବିଭିନ୍ନ ଲୋକଙ୍କୁ ସେଇ ପ୍ରଶ୍ନ ପଚରାଗଲା । ସମସ୍ତେ କହିଲେ ଆମେ ସେ ସବୁ ଜାଣୁ । କିନ୍ତୁ ସେଥିପାଇଁ ଆପଣ ଏତେ ବ୍ୟସ୍ତ କାହିଁକି । କାଇଁ ପଚାରୁ ନାହାନ୍ତି ତ ତାଙ୍କର ତ୍ୟାଗର କଥା । ତାଙ୍କର ପ୍ରଚୁର ଜମିକୁ ବାଣ୍ଟି ଦେଇଥିବା କଥା କହୁନାହାନ୍ତି । ସେ କଣ ମଦ ଖାଇ ରାସ୍ତାରେ ପଡ଼ିବା ଆପଣ ଦେଖିଛନ୍ତି ନା କୌଣସି ନାରୀକୁ ବଳାତ୍କାର କରିବା ଆପଣ ଦେଖିଛନ୍ତି ? ତା ହେଲେ ସେ କଣ କଲା ରାତିରେ, ଆପଣ ସେଥିରେ ବ୍ୟସ୍ତ କାହିଁକି । ଠିକ୍ ସେଇପରି ଅଟଳ ବିହାରୀ ବାଜପେୟୀଙ୍କ କଥା । ସେ ଅବିବାହିତ, ନାରୀ ବନ୍ଧୁ ତାଙ୍କର ଅନେକ । କିନ୍ତୁ ତାହା ତାଙ୍କର ରାଜନୈତିକ କାର୍ଯ୍ୟ ବା ସାମାଜିକ କାର୍ଯ୍ୟକୁ ପ୍ରଭାବିତ କରିଛି କି ? ନାହିଁ, ଯଦି ନାଇଁ ଆପଣ ବ୍ୟସ୍ତ କାହିଁକି ? ଏଇ ଘଟଣା ଏପରିକି କିଛି ଲୋକ ମୋରାରଜୀ ଦେଶାଇଙ୍କ ପର୍ଯ୍ୟନ୍ତ ନେଇଥିଲେ । ସମସ୍ତେ ଜାଣନ୍ତି ଯେ ମୋରାରଜୀ ପ୍ୟୁରିଟାନ୍ । କିନ୍ତୁ ସେ କହିଲେ ଯେ

ହଁ, ଅଟଳଜୀ ମୋତେ କହିଛନ୍ତି ଯେ ମୁଁ ଅବିବାହିତ କିନ୍ତୁ ସନ୍ୟାସୀ ନୁହେଁ । ପଣ୍ଡିତ ନେହେରୁଙ୍କ ପାଖକୁ କୌଣସି ଏକ ମାତା ରାତି ଦଶଟା ପରେ ଆସୁଥିଲେ ଇତ୍ୟାଦି । ଏହାକୁ ଲେଖିଲେ ଜନ ମାଥାଇ ଯେ ଜବାହାରଲାଲଙ୍କ ସେକ୍ରେଟାରୀ ହୋଇ ବହୁ ପ୍ରଭାବଶାଳୀ ହୋଇଥିଲେ । ଏହି ବହିର ସମାଲୋଚନା କରି ପ୍ରସିଦ୍ଧ ସାମ୍ବାଦିକ ଇନ୍ଦର ମାଲହୋତ୍ରା ଲେଖିଲେ ଯେ ଏହାକୁ ହିଁ କହନ୍ତି , 'ନିମକହାରାମ' ବୋଲି । ପଣ୍ଡିତ ନେହେରୁ ମାତାଙ୍କ ନାମରେ ଜମି ଖରିଦ କରିନାହାନ୍ତି ତାଙ୍କୁ ଲାଇସେନ୍ସ, କୋଟା ପରମିଟ୍ ଦେଇନାହାନ୍ତି । ତା ହେଲେ ସେ କେଉଁ ନାରୀ ସାଥିରେ ରାତ୍ରି ଯାପନ କଲେ ସେଥିରେ ତମର କଣ କହିବାର ଅଛି । ଏପରିକି ଜବାହାରଲାଲଙ୍କ ଭଗ୍ନୀ ବିଜୟଲକ୍ଷ୍ମୀ କହିଲେ ଯେ ଭାଇ ବହୁତ ଏକାକୀ ମଣିଷ ଥିଲେ । କୌଣସି ନାରୀର ସ୍ନିଗ୍ଧତା ତାଙ୍କର ଟେନସନ୍‌କୁ ଯଦି କମାଇବାରେ ସାହାଯ୍ୟ କରିଥାଏ ତାହେଲେ ଆମେ ବରଂ ତାଙ୍କ ପାଖରେ କୃତଜ୍ଞତା ପ୍ରକାଶ କରିବା ଉଚିତ । ଜଣେ ଲୋକ, ଜଣେ କବି, ଲେଖକ, କଳାକାର ଯଦି ରାତ୍ରିରେ ମଦଖାଏ ତା ହେଲେ ଆମେ ସେଥିରେ ବିବ୍ରତ ହେବା ଉଚିତ ନୁହେଁ, କିନ୍ତୁ ସେ ମଦ୍ୟ ଖାଇ ରାସ୍ତାରେ ପଡ଼ିଲେ ବା ମାତାଲ ହେଲେ ତାହାର କଳନା ହେବା ଉଚିତ । ତା ମଧ୍ୟ ଦରଦର ସହିତ । କାରଣ ସେ ଏକ ସାଧାରଣ ମଣିଷ ନୁହେଁ, ସେ ଏକ ସୃଜନଶୀଳ ମଣିଷ ।

ମଣିଷ ପ୍ରତି ଏଇ ଦରଦ ନେଇ ମୁଁ କେବଳ ଆସ୍ତିମୂଳକ ଦିଗରେ ବିଚାର କରିଛି । ଡ୍ରେନ୍ ଇନ୍ସପେକ୍ଟର ହୋଇ ପାରିନାହିଁ । ସେ କଥା ହେଲେ ଆଉ ଦାନ୍ତେ, ପିକାସୋ, ଡଷ୍ଟୟଭିସ୍କି, ପ୍ରଭୃତି ବିଚାର କରାଯାଇ ପାରିବ ନାହିଁ । ବିଏଟ୍ରିସଙ୍କୁ ବାଦ ଦେଇ କ'ଣ ଦାନ୍ତେଙ୍କର କଳ୍ପନା ହୋଇପାରିବ ?

"ଶ୍ରଦ୍ଧାଞ୍ଜଳି" ସରି ସରି ଆସୁଛି । ଯେଉଁମାନଙ୍କ ସହ ମୋର ପ୍ରତ୍ୟକ୍ଷ ପରିଚୟ ନାହିଁ ମୁଁ ସେମାନଙ୍କ ବିଷୟରେ ଲେଖି ପାରିବି ନାହିଁ । ମୁଁ ହେଜୁଛି କୁନି କୁନି ଘଟଣା ମଣିଷ ଜୀବନର, ଯାହା ତାଙ୍କର ସ୍ୱାତନ୍ତ୍ର୍ୟ ପ୍ରକାଶ କରେ । ନିଜେ ନ ଜାଣିଲେ କଣ ଲେଖିହେବ ସେମିତି ? ବହି ତିନିଖଣ୍ଡି ଉପରେ ଯେଉଁ ସବୁ ମନ୍ତବ୍ୟ ମୁଁ ଶୁଣିବାକୁ ପାଇଛି ସେ ଗୁଡ଼ିକ ଉପରେ ମୋର ପ୍ରତିକ୍ରିୟା ପ୍ରକାଶ କରିବା ଉଚିତ ମନେକଲି । ବିଚାରକ ଆପଣମାନେ, ପାଠକକୁଳ ।

ଲେଖି ସାରିଲା ପରେ ତ ତାହା ଆଉ ବ୍ୟକ୍ତିଗତ ସମ୍ପତ୍ତି ନୁହେଁ, ତାହ ହେଉଛି ସାମୂହିକ । କିନ୍ତୁ ଲେଖିବା ବେଳେ ଯାହା ସବୁ ଲେଖକର ଲେଖନୀକୁ ପ୍ରଭାବିତ କରେ ତାହା ତାର ନିଜସ୍ୱ ।

ବହି ଲେଖିଚି । ୟୁନିଭର୍ସ ପ୍ରତିଷ୍ଠା ହୋଇଛି । ଯଦି ସୁଯୋଗ ମିଳେ, ସାହାଯ୍ୟ ମିଳେ ତା ହେଲେ ଭୁବନେଶ୍ୱରରେ ଓଡ଼ିଶା ଇଣ୍ଟରନେସନାଲ ସେଣ୍ଟର ଗଢ଼ିଯିବା ମୋର ଜୀବନର ଶେଷ ଇଚ୍ଛା । ଆଉ କୌଣସି ନୂଆ କାମ ହାତକୁ ନେବି ନାହିଁ ବୋଲି ସ୍ଥିର କରିଛି ।

ପରିଶେଷରେ ରୀନା ଅମାନ୍ତଙ୍କୁ ଧନ୍ୟବାଦ । ମୋ ଠାରୁ ଗାଳି ଶୁଣି ମଧ୍ୟ ସେ କିଛି ମନେ ନ କରି ଜୀବନୀ ସବୁ କପି କରିଛନ୍ତି, ପ୍ରୁଫ୍ ରିଡିଂଗ ପାଇଁ ପଢ଼ିଛନ୍ତି ସବୁ ଜୀବନୀକୁ ।

ୟୁନିଭର୍ସ, ପ୍ରିଣ୍ଟୋଭର୍ସର ସହକର୍ମୀ ବିଶ୍ୱ, ସୁର, ଈଶ୍ୱର, ପ୍ରଦୀପ ପାଣି, ଅମି ଏବଂ ଅନ୍ୟାନ୍ୟ ସହକର୍ମୀମାନଙ୍କୁ ଧନ୍ୟବାଦ । କାରଣ ସମବେତ ଉଦ୍ୟମ ଛଡ଼ା ଏହା ସମ୍ଭବପର ହୋଇ ପାରିନଥାନ୍ତା ।



# ସୂଚୀ

# ଭାରତ ଯାହାର ସ୍ୱପ୍ନ ଥିଲା

ପୃଥ୍ୱୀରାଜ ରୋଡ଼ର ଏକ ନିମ୍ବ ଗଛ ମୂଳରେ ଶୋକ ପୁସ୍ତିକାଟିଏ ରଖା ଯାଇଛି । ଲୋକେ ଆସୁଛନ୍ତି ବିଭିନ୍ନ ବିଭାବର । କବି, ଲେଖକ, ଶିଳ୍ପୀ, କୂଟନୀତିଜ୍ଞମାନେ । ପୁଷ୍ପ ସ୍ତବକ ରଖି ଯାଉଛନ୍ତି ଏବଂ ଦସ୍ତଖତ କରୁଛନ୍ତି ଶୋକ ପୁସ୍ତିକାରେ । ୧୩, ପୃଥ୍ୱୀରାଜ ରୋଡ଼ । ଏଇ ଘର ହେଉଛି ମେକ୍ସିକୋ ଦେଶର ରାଷ୍ଟ୍ରଦୂତାବାସଙ୍କ ଘର । ଶୋକ ପୁସ୍ତିକା ରହିବା କଥା ରାଷ୍ଟ୍ର ଦୂତାବାସରେ, ଘର ଭିତରେ । ଏ କି ପ୍ରକାର ବ୍ୟତିକ୍ରମ ?

ଯେଉଁ ମଣିଷଟିର ବିଦାୟରେ ଏହି ପୁସ୍ତିକା ରଖାଯାଇଛି ସେ ଏଇ ଘରକୁ ବାଛି ଥିଲେ ଆପଣାର ରହିବା ପାଇଁ । ଏଇଠି ଥିଲା ଅରମା ଜଙ୍ଗଲ, ବର୍ଷା ଦିନେ ସାଧବ ବୋହୂ ଏଇଠି ଘୁରି ବୁଲନ୍ତି । ବିଭିନ୍ନ ପ୍ରକାର ଚଢ଼େଇର କଳରବରେ ରାତି ପାହେ । ତାରି ଭିତରେ ଏଇ ନିମ୍ବ ଗଛ ମୂଳରେ ବସି ସେ କବିତା ଲେଖନ୍ତି । ଯେଉଁ ସବୁ କବିତାର ସମାରୋହ ତାଙ୍କ ପାଇଁ ୧୯୯୦ ମସିହାରେ ନୋବେଲ୍ ପ୍ରାଇଜ୍ ଆଣିଦିଏ । ଏଇଠି ସେ ଭେଟନ୍ତି ଏକ ଫରାସୀ ରମଣୀକୁ ଏବଂ ସେ ହୋଇ ଯାଆନ୍ତି ତାଙ୍କର ସହଧର୍ମିଣୀ । "ଜୀବନର ଏଇ ଶ୍ରେଷ୍ଠ ମୁହୂର୍ତ୍ତ" ସେ କଟାନ୍ତି ଏଇ ନିମ୍ବ ଗଛ ମୂଳରେ ଅର୍ଥାତ୍ ସେଇ ଗଛ ମୂଳରେ ତାଙ୍କର ବିବାହ ସମ୍ପନ୍ନ ହୁଏ ହିନ୍ଦୁ ବୈଦିକ ରୀତିରେ । ପୁରୋହିତ ମନ୍ତ୍ର ପଢ଼ନ୍ତି । ହୋମଶିଖାର ଗନ୍ଧରେ ଭରିଯାଏ ବାୟୁ ଏବଂ ଶଙ୍ଖଧ୍ୱନି ଭିତରେ ହାତ ଗଣ୍ଠି ପଡ଼େ ।

ବର ମେକ୍ସିକାନ୍ ଏବଂ କନ୍ୟା ଫରାସୀ । ଏଇଠି ଦେଖାହୁଏ ତାଙ୍କର ପ୍ରଥମଥର ପାଇଁ । ସେଇ ଲୋକଟି ଆଜି ନାହିଁ । ୮୪ ବର୍ଷ ବୟସରେ ତାଙ୍କର ପରଲୋକ ହୋଇ ଯାଇଛି ମେକ୍ସିକୋରେ ଏବଂ ଭାରତର ଅଗଣିତ ବନ୍ଧୁ ସ୍ତବକ ରଖୁଛନ୍ତି ତାଙ୍କର ଫଟୋ ପାଖରେ, ସେ ଭାରତ ଛାଡ଼ିବାର ବହୁ ବର୍ଷ ପରେ । ସେ ହେଉଛନ୍ତି କୂଟନୀତିଜ୍ଞ କବି ଆକ୍ଟାଭିଓ ପାନ୍ । ଭାରତରେ ମେକ୍ସିକୋର ରାଷ୍ଟ୍ରଦୂତ କିନ୍ତୁ କବି ଭାବରେ ସେ ସାରା ପୃଥିବୀରେ ପରିଚିତ ।

ତାଙ୍କ ପୂର୍ବରୁ ଅଶୋକା ହୋଟେଲର ଏକ ବିଳାସପୂର୍ଣ୍ଣ ସୁଟ୍ ଥିଲା ମେକ୍ସିକୋ ରାଷ୍ଟ୍ରଦୂତଙ୍କ ରହିବା ଘର । କିନ୍ତୁ ଅକ୍ଟାଭିଓ ପାଜ୍ କୁ ତାହା ରୁନ୍ଧାରୁନ୍ଧା ଲାଗିଲା । ସେ ଅଣନିଃଶ୍ୱାସୀ ହୋଇ ପଡ଼ିଥିଲେ ଏବଂ ଖୋଜିଥିଲେ ଘରଟିଏ- ଥିବ ବୁଦିବୁଦିକା ଜଙ୍ଗଲ,

ଶୁଭୁଥିବ କାଉ, କୋଇଲିଙ୍କର ଡ଼ାକ, ବିଭିନ୍ନ ପ୍ରକାରର ବଣୁଆ ଫୁଲ ଗନ୍ଧ ବୋହିଆସୁଥିବ ପବନରେ । ଏଇ ପରି ଏକ ଘର ଦରକାର । ଘର ଖୋଜି ପାଇଲେ ଏବଂ ତା' ସଙ୍ଗେ ସଙ୍ଗେ ପାଇଲେ ଘରଣୀକୁ । ଜୀବନ ତୃପ୍ତିରେ ଭରିଗଲା । ସେ ଲେଖିଲେ କବିତା ପରେ କବିତା । ବହୁ କବି ଲେଖକଙ୍କ ସହିତ ପରିଚିତ ହେଲା । ସେହି ନିମ୍ବ ଗଛ ମୂଳରେ ବସିଲା କବିତାର ଆସର ବା ଆଲୋଚନାଚକ୍ର ।

୧୯୯୮ ମସିହା ଏପ୍ରିଲ୨୧ ତାରିଖ । ତାଙ୍କର ଉତ୍ତରାଧିକାରୀ ଏଡ୍‌ମଣ୍ଡୋ ଫଣ୍ଡ ଯଥାର୍ଥରେ ବାଛିଲେ ଏଇ ସ୍ଥାନଟିକୁ ଶୋକ ପୁସ୍ତିକା ରଖିବା ପାଇଁ । "ଦୁଇ ତିନି ପୁରୁଷରେ ଏମିତି ଲୋକଟିଏ ଦେଶକୁ ମିଳିବା ଭାଗ୍ୟର କଥା" । ସେହି ମଣିଷଟି ଏଇ ଦୂତାବାସ ଛାଡ଼ି ଚାଲିଗଲା ୧୯୬୮ ମସିହା । ତିରିଶ ବର୍ଷ ତଳର କଥା । ତତ୍‌କାଳୀନ ମେକ୍ସିକୋ ସରକାର ବୁଭୁକ୍ଷୁ ନରନାରୀଙ୍କ ଉପରେ ଗୁଳି ଚାଳନା କରିବାର ପ୍ରତିବାଦରେ ସେ ଚାକିରିରୁ ଇସ୍ତଫା ଦେଇ ଚାଲିଗଲେ । ଏହାରି ଭିତରେ ତିରିଶ ବର୍ଷ ଅତିକ୍ରାନ୍ତ ହୋଇଛି । ସେଦିନ ଭଳି ଆଜି ମଧ୍ୟ ଗୁଣ୍ଡୁଚିମୂଷା ସବୁ ଦୌଡ଼ି ଚାଲୁଛନ୍ତି ଚାରିପଟରେ । ଅକ୍ଟାଭିଓ ପାଜ୍ ପରବର୍ତ୍ତୀ କାଳରେ ତାଙ୍କର ଉତ୍ତରାଧିକାରୀଙ୍କୁ ପଚାରନ୍ତି ସେଇ ସବୁ ଗୁଣ୍ଡୁଚିମୂଷା, ସାଧବ ବୋହୂ ପୋକ ଏବଂ ପକ୍ଷୀମାନଙ୍କ କଥା ।

ସେ ବା ତାଙ୍କର ସ୍ତ୍ରୀ ଆଉ ଭାରତ ଆସି ପାରି ନାହାନ୍ତି । ନାନା ପ୍ରତିବନ୍ଧକ ମୁଣ୍ଡ ଟେକିଛି ତାଙ୍କର ଆସିବା ପଥରେ । ଭାରତ ଥିଲା ତାଙ୍କର ସ୍ୱପ୍ନର ଦେଶ । ସେ ଆସି ପାରିଥିଲେ ଖୁସି ହୋଇ ଥାଆନ୍ତେ । ଏପରିକି, ଭାରତର ''ସ୍ୱାଧୀନତା ସୁବର୍ଣ୍ଣ ଜୟନ୍ତୀ''କୁ ଆସିବା ପାଇଁ ନିମନ୍ତ୍ରଣକୁ ସେ ରକ୍ଷା କରିପାରି ନାହାନ୍ତି । ସେ ଥିଲେ ମେକ୍ସିକୋ ଓ ଭାରତବର୍ଷ ଭିତରେ ସେତୁ ଭଳି । ସେହି ସେତୁ ଆଜି ଭାଙ୍ଗି ପଡ଼ିଛି ।

''ମୁଁ ଶ୍ରୀକୃଷ୍ଣଙ୍କ ଜୀବନରୁ ସାନ୍ତ୍ୱନା ଲାଭ କରିଛି-'' ସେ ଲେଖନ୍ତି ତାଙ୍କର ଉତ୍ତରାଧିକାରୀଙ୍କୁ ''ବିଷୟାବଶରେ ଲିପ୍ତ ରୁହନାହିଁ, ପାର୍ଥିବ ଧନ ଉପରେ ଲୋଭ ପରିତ୍ୟାଗ କର ।''

ଅଥଚ ପାଜ୍ ଜୀବନ ଆରମ୍ଭ କରିଥିଲେ ମାର୍କସବାଦୀ ଭାବରେ । ଦାରିଦ୍ର୍ୟ ଘୋଟିଥିଲା ପିଲାଦିନରୁ । ଚଳିବା ପାଇଁ ଘରର ସାମଗ୍ରୀ ବିକ୍ରୀ କରିବାକୁ ପଡ଼ିଥିଲା । ପରିଶେଷରେ ପରିସ୍ଥିତି ତାଙ୍କୁ ତାଙ୍କ ଘର ଖଣ୍ଡିକ ମଧ୍ୟ କରଛଡ଼ା କରିବାକୁ ବାଧ୍ୟ କରିଥିଲା । ମେକ୍ସିକୋ ଜାତୀୟ ବିଶ୍ୱବିଦ୍ୟାଳୟର ମାର୍କ୍ସବାଦୀ ଛାତ୍ର ଗ୍ରୁପ୍‌ରେ ସେ ଯୋଗ ଦିଅନ୍ତି । ସେତିକିବେଳେ ଜଣେ ନାରୀ କବି ଏଲିନା ଗାରୋଙ୍କ ସହିତ ତାଙ୍କର ବିବାହ ହୁଏ କିନ୍ତୁ କିଛି ବର୍ଷ ପରେ ସେ ବିବାହ ଭାଙ୍ଗି ଯାଏ । ମାତ୍ର ୨୦ ବର୍ଷ ବୟସରେ ସେ ଆପଣାର କବିତାଞ୍ଜଳୀର ପାଣ୍ଡୁଲିପିକୁ ପଠାନ୍ତି ଚିଲ୍ଲୀର ମାର୍କ୍ସବାଦୀ କବି ପାବଲୋ ନେରୁଦାଙ୍କ ପାଖକୁ । ନେରୁଦା ଆବିଷ୍କାର କରନ୍ତି ଏକ ଉଜ୍ଜ୍ୱଳ ପ୍ରତିଭାକୁ ସେଇ କବିତା ଭିତରେ । ସେ ତାଙ୍କୁ ପଠାନ୍ତି ଫାସିବାଦ ବିରୋଧୀ ଲେଖକ ସମ୍ମିଳନୀରେ ଯୋଗଦବାକୁ ମାଦ୍ରିଦକୁ ।

ସେଇଠି ତାଙ୍କର ଭେଟ ହୁଏ ଅନ୍ୟାନ୍ୟ ବାମପନ୍ଥୀ ଲେଖକମାନଙ୍କ ସହିତ — ଆନ୍ଦ୍ରେ ମାଲ୍‌ରାକ୍ସ, ଆନ୍ଦ୍ରେ ଜିଦ୍ , ଷ୍ଟିଫେନ୍ ସ୍ପେଣ୍ଡର, ଆଣ୍ଟେନିଓ ମାକାଡ଼ୋ ଏବଂ ସୋଭିଏତ୍ ଲେଖକ ଇଲିଆ ଇରେନ୍‌ବର୍ଗଙ୍କ ସହିତ ।

ପାଜ୍ ରହିଯାଆନ୍ତି ଏବଂ ଇତିହାସ ପ୍ରସିଦ୍ଧ ସ୍ପେନ୍ ଅର୍ନ୍ତଯୁଦ୍ଧରେ ଫାସିବାଦୀ ନେତା ଫ୍ରାଙ୍କୋଙ୍କ ବିରୁଦ୍ଧରେ ସୈନ୍ୟବାହିନୀରେ ଯୋଗ ଦିଅନ୍ତି । ସେ ଯୁଦ୍ଧ ସାମ୍ମୁଖ୍ୟକୁ ଯିବାକୁ ଜିଦ୍ ଧରି ବସନ୍ତି ଏବଂ ମେକ୍ସିକୋର ପ୍ରସିଦ୍ଧ ଚିତ୍ରଶିଳ୍ପୀ ଡାରିଡ ଆଲର୍ପାରୋ ସିକୁଇରସ୍‌ଙ୍କ ନେତୃତ୍ୱରେ ପରିଚାଳିତ ବ୍ରିଗେଡ଼ରେ ଯୋଗଦିଅନ୍ତି ।

ସ୍ପେନୀୟ ଅର୍ନ୍ତଯୁଦ୍ଧକୁ ମେକ୍ସିକୋର ଜନସାଧାରଣଙ୍କ ଭିତରେ ଜନପ୍ରିୟ କରିବା ପାଇଁ ସେ ଫେରି ଆସନ୍ତି ମେକ୍ସିକୋକୁ ।

ମେକ୍ସିକୋର ଜନପ୍ରିୟ ସାମାଜବାଦୀ ଖବର କାଗଜ 'ଏଲ ପପୁଲାର୍'ରେ ସେ କାର୍ଯ୍ୟ କରନ୍ତି କିଛିକାଳ । କିନ୍ତୁ ଗୁରୁତର ମତଭେଦ ହେତୁ ସେ ତାକୁ ପରିତ୍ୟାଗ କରନ୍ତି । ୧୯୩୮ରୁ ୧୯୪୦ ଭିତରେ ସେ ଟଲର ନାମକ ଏକ ବାମପନ୍ଥୀ ପତ୍ରିକା ପରିଚାଳନା କରନ୍ତି କିନ୍ତୁ କ୍ରମଶଃ ବାମପନ୍ଥୀ ଚିନ୍ତାଧାରା ପ୍ରତି ସେ ବୀତସ୍ପୃହ ହୋଇ ଉଠନ୍ତି ।

ପରେ ଆମେରିକାର ବର୍କଲେ ସହରରେ ଥିବା କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରନ୍ତି ଏବଂ ହୋଲିଉଡ଼ର ଚଳଚ୍ଚିତ୍ର ସ୍କ୍ରିପଟ୍ ମାନଙ୍କୁ ସ୍ପେନୀୟ ଭାଷାରେ ଅନୁବାଦ କରନ୍ତି । ଏଇ ସମୟରେ କୌଣସି ଏକ କୂଟନୀତିଜ୍ଞ ତାଙ୍କ ଲେଖାରେ ମୁଗ୍ଧ ହୋଇ ମେକ୍ସିକୋର ଫରାସୀ ଦୂତାବାସରେ ସାଂସ୍କୃତିକ ସେକ୍ରେଟେରୀ ଭାବରେ ନିଯୁକ୍ତ କରନ୍ତି ୧୯୪୬ ମସିହାରେ । ଏକ ନୂତନ ଜବନ, କୂଟନୀତିଜ୍ଞ ଜୀବନ ଆରମ୍ଭ ହୁଏ ଏବଂ ତାହା ତାଙ୍କୁ ଘେନିଯାଏ ବିଭିନ୍ନ ଦେଶକୁ । ୧୯୬୮ ମସିହାରେ ଏଇ ଜୀବନର ପରିସମାପ୍ତି ହୁଏ, ବେକାର ଶିକ୍ଷିତ ଯୁବକ ମାନଙ୍କ ଉପରେ ମେକ୍ସିକୋ ସରକାରର ଗୁଳି ଚାଳନାର ପ୍ରତିବାଦରେ ସେ ଚାକିରିରୁ ଇସ୍ତଫା ଦେଇ ଚାଲିଯାଆନ୍ତି ।

ପାଜ୍‌ଙ୍କର ବାମପନ୍ଥୀମାନଙ୍କ ସହିତ ମତଭେଦ ତୀବ୍ର ହୁଏ । କ୍ୟୁବାର ସମାଜବାଦୀ ନେତା କାଷ୍ଟ୍ରୋଙ୍କୁ ସେ କ୍ୟୁବାର ଗାଦିଚ୍ୟୁତ ଡିକ୍ଟେଟର ପିନୋଚେଟ୍‌ଙ୍କ ସହ ତୁଳନା କରନ୍ତି ଏବଂ ଲାଟିନ୍ ଆମେରିକାର ବିଭିନ୍ନ ଦେଶକୁ ଦୋହଲାଇ ଦେଉଥିବା ବାମପନ୍ଥୀ ସାଣ୍ଡିନିଷ୍ଟା ଆନ୍ଦୋଳନକୁ ଗୁରୁତ୍ୱହୀନ ବୋଲି ଆଖ୍ୟା ଦିଅନ୍ତି । ଅନ୍ୟ ଦିଗରେ ମେକ୍ସିକୋର ଅତ୍ୟାଚାରୀ ସରକାରକୁ ମଧ୍ୟ ସେଇପରି ଉତ୍କଟ ଭାଷାରେ ସେ ଗାଳି ଦିଅନ୍ତି । ମୁଁ ବାମପନ୍ଥୀ ବିରୋଧୀ ନୁହେଁ କିନ୍ତୁ ମାର୍କ୍ସବାଦ ମୋର ବିଶେଷ କିଛି କାମରେ ଆସିଲା ନାହିଁ । ମୁଁ ହେଉଛି ଜଣେ ସୋସାଲ ଡିମୋକ୍ରାଟ୍ । ମୁଁ ହେଉଛି ସେଇପରି ଜଣେ କବି ଯାହାକୁ ବାମପନ୍ଥୀ ମାନେ ପଢ଼ନ୍ତି କିନ୍ତୁ ଗାଳି ଦିଅନ୍ତି ।

୧୯୭୬ ମସିହାରେ ସେ ଭୁଏଲ୍‌ଟ ନାମକ ଏକ ପତ୍ରିକାର ସମ୍ପାଦକ ହୁଅନ୍ତି ଯାହା ଲାଟିନ୍ ଆମେରିକାର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ, ଜନପ୍ରିୟ ମ୍ୟାଗାଜିନ୍ ହୋଇଯାଏ ।

ଚାରିପଟେ ଗଦାଗଦା ବହି, ଅସୁମାରୀ ସ୍ମାରକୀ, ପୁରାତନ ସେରାମିକ ଓ ଅନ୍ୟାନ୍ୟ ଧାତୁର ମୂର୍ତ୍ତି । ଚାରିଆଡ଼େ ଗହଳି, ପ୍ରଦୂଷିତ ବାୟୁମଣ୍ଡଳ କିନ୍ତୁ ସେ ସେଠାରୁ ପଳାତକ ହେବାକୁ ଚାହାନ୍ତି ନାହିଁ । ''ମୁଁ ମେକ୍ସିକୋର ଲୋକ । ମେକ୍ସିକୋ ଯେଉଁପରି ଅଛି-ତାରି ଭିତରେ ହିଁ ମୁଁ ରହିବି । ଆଜିର ପରିସ୍ଥିତି କାଲିକି ବଦଳିଯିବ । ମେକ୍ସିକୋ ପୁଣି ହୋଇ ଉଠିବ ସୁନ୍ଦର ।''

ମେକ୍ସିକୋ ଏ ପର୍ଯ୍ୟନ୍ତ ସୁନ୍ଦର ହୋଇନାହିଁ ଆଉଥରେ । କିନ୍ତୁ ସେଇ ସ୍ୱପ୍ନର କବି ଆଉ ନାହାନ୍ତି । ଦିଲ୍ଲୀ ଗଲେ ତାଙ୍କୁ ଭେଟିବା ଏକ ବାଧ୍ୟତାମୂଳକ ବସ୍ତୁରେ ପରିଣତ ହୋଇଥିଲା । ନ ଗଲେ ଗାଳିଦେବେ ସ୍ନେହରେ । ଯିବାକୁ ପଡ଼ିବ କିଛି ସମୟ କଟାଇବାକୁ ପଡ଼ିବ । ଆଜି ବି ଗଲେ ଯିବି, ସେଇ ନିମ୍ବ ଗଛ ମୂଳରେ ରଖିଦେବି ସ୍ତବକଟିଏ ସ୍ମୃତିର ସୁରଭିର ।



# ଅବିସ୍ମରଣୀୟ ଗୁରୁ

ଅଭିମାନର ଯେପରି ଇଂରାଜୀ ପ୍ରତିଶବ୍ଦ ନାହିଁ, ଗୁରୁର ମଧ୍ୟ ଇଂରାଜୀ ପ୍ରତିଶବ୍ଦ ନାହିଁ । ଭାରତୀୟ ପରମ୍ପରାର 'ଗୁରୁ', ଇଂରାଜୀ ଭାଷାର ଟିଚର ନୁହେଁ । କାରଣ ଗୁରୁ କେବଳ ଶିକ୍ଷାର ଗୁରୁ ନୁହନ୍ତି, ଦୀକ୍ଷାର ମଧ୍ୟ ଗୁରୁ । ସେହିପରି ଏକ ଗୁରୁ ଆମର ଥିଲେ ଅନନ୍ତ ପଦ୍ମନାଭ ପଟ୍ଟନାୟକ । ପ୍ରାୟତଃ ପଢ଼ାନ୍ତି ଇତିହାସ । ସେ ଇତିହାସ ପଢ଼ାଇଲାବେଳେ ବହି, ଖାତା, ବ୍ଲାକ୍‌ବୋର୍ଡ ସବୁ ଅଦୃଶ୍ୟ ହୋଇଯାଏ । ଇତିହାସର ସେଇ ଅଧ୍ୟାୟର ନାୟକ ନାୟିକା ମାନେ ଯେପରି ସମ୍ମୁଖରେ ଅଭିନୟ କରି ଚାଲିଛନ୍ତି । ମହାକାଳ ପୃଷ୍ଠା ଓଲଟାଇ ଚାଲିଛି । ଜଣକ ପରେ ଜଣେ । ଗୋଟାଏ ପୁରୁଷ ପରେ ଆଉ ଗୋଟାଏ ପୁରୁଷ, ଗୋଟାଏ ରାଜୁତି ପରେ ଆଉ ଗୋଟାଏ ରାଜୁତି । ଏଇପରି ଏକ ଅନୁଭବ ପରେ କଲେଜ ଜୀବନରେ ଅଧ୍ୟାପକ ଘନଶ୍ୟାମ ଦାସ ଏବଂ ଅଧ୍ୟାପକ ଅଲତାଫ୍ ହୁସେନ୍‌ଙ୍କର ବକ୍ତୃତାରେ ଅନୁଭବ କରିଛି । ପୁଣି ମନେ ପଡୁଛି ଗୁରୁ ମନମୋହନ ପଟ୍ଟନାୟକ ସେକ୍ସପିଅରଙ୍କ ମର୍ଚ୍ଚାଣ୍ଟ ଅଫ୍ ଭେନିସ୍ ପଢ଼ାଇବାବେଳର ଅନୁଭୂତି । ପଢ଼ି ଆସିଥିଲୁ, କୁହା ହୋଇ ଆସିଥିଲା ଇହୁଦୀମାନେ କୃପଣ, ଇହୁଦୀମାନେ ମହାଜନ, ସେମାନେ ହୃଦୟହୀନ । ସାଇଲକ୍ ସେମାନଙ୍କର ଏକ ପ୍ରତିନିଧି । କିନ୍ତୁ ପୃଥିବୀର ବିଭିନ୍ନ ଦେଶରେ ଚାଲିଥିବା ଇହୁଦୀ ବିରୋଧୀ ଅତ୍ୟାଚାର କଥା କେହି କହନ୍ତି ନାହିଁ । କହନ୍ତି ନାହିଁ ଯେ ଏଇ ଇହୁଦୀମାନଙ୍କୁ ମାରିବା ପଛରେ ରହିଥିଲା ଆପଣାକୁ ଅତିମାନବ ବିଚାରିବାର ଫାସିବାଦୀ ମନୋଭାବ । ଗୁରୁ ମନମୋହନ ପଟ୍ଟନାୟକ ସେଇ କଥା କହନ୍ତି । କହିଲା ବେଳେ ସେ ତନ୍ମୟ ହୋଇ ଯାଆନ୍ତି । ଠିକ୍ ସେହିପରି ଅନନ୍ତ ପଦ୍ମନାଭଙ୍କର ଇତିହାସ ପଢ଼ାଇବାର ଭଙ୍ଗୀ । ଇତିହାସ ଦେଖି ଆସିଛି କେତେ ସାମ୍ରାଜ୍ୟର ପତନ ଅଭ୍ୟୁତ୍‌ଥାନ, କେତେ ରାଜ ପରିବାରର ବିଜୟ ଓ ପରାଜୟ, କିନ୍ତୁ ସେ ଇତିହାସ ତ କହି ନାହିଁ ସାଧାରଣ ମଣିଷର କଥା । କହିନାହିଁ ତାହାର ବେଦନାତୁର ହୃଦୟର କଥା, କହିନାହିଁ ତାହାର ଜୀବନ ସଂଗ୍ରାମ କଥା, କହିନାହିଁ ତ କାହିଁ ତାହାର ବଳିଦାନ କଥା । ମୁଁ ତମମାନଙ୍କୁ ଆଜି ସେଇ ଇତିହାସ କହିବି । କହିବି ଚକରା ବିଷୋଇ , ଦୋହରା ବିଷୋଇ କଥା । ସେମାନେ ବ୍ରିଟିଶ ସରକାର ବିରୁଦ୍ଧରେ ଲଢ଼ି ଆପଣାକୁ ବଳିଦାନ ଦେଇଗଲେ ନିଜର ଜାଗିରି ରକ୍ଷା ପାଇଁ ନୁହେଁ । ନିଜର ଗୌନ୍ତିଆ ହେବାର ଅଧିକାର ଫେରି ପାଇବା ପାଇଁ ନୁହେଁ, ଆପଣା ପରେ କିଏ ରାଜା ହେବ ସେଇ କଥା ସ୍ଥିର କରିବା ପାଇଁ ନୁହେଁ । ସେମାନେ ସାଧାରଣ ମଣିଷ, ସେମାନେ ଲଢ଼ିଥିଲେ ପ୍ରକୃତ ମୁକ୍ତି ପାଇଁ, ଯେଉଁ ମୁକ୍ତି ଆସିଥାନ୍ତା ସାଧାରଣ ମେହନତୀ ମଣିଷ ପାଇଁ । ଇତିହାସ ଲେଖକମାନେ ସେ କଥା କହି ନାହାନ୍ତି ବା କହିଥିଲେ ତା'ଉପରେ ଜୋର୍ ଦେଇ ନାହାନ୍ତି । ସେମାନେ ଲେଖିଛନ୍ତି କେବଳ ରାଜପୁତ୍ରର କାହାଣୀ, ସରବରାକାର, ଗୌନ୍ତିଆ, ଭୂମି ଅଧିକାରୀମାନଙ୍କର କଥା ।

ଅନନ୍ତ ପଦ୍ମନାଭଙ୍କର ପାଟିରୁ ଛୁଟି ଚାଲିଛି ଶବ୍ଦ ବୁଲେଟ୍ ଭଳି । ପିଲାମାନେ ଆମେସବୁ ଅବାକ୍ ହୋଇ ଅନେଇଛୁ । ସବୁକଥା ବୁଝି ହେଉନାହିଁ । ବୁଝିବାର ବୟସ ହୋଇନାହିଁ । କିନ୍ତୁ ଅଭିଭୂତ ହୁଅନ୍ତି ସମସ୍ତେ । ଇତିହାସ ଯେପରି କଥା କହୁଚି ।

ସେ ଲେଖନ୍ତି ଚକରା ବିଷୋଇ କଥା, ଦୋହରା ବିଷୋଇ କଥା । ଅନେକ ପ୍ରଶଂସା ତାଙ୍କୁ ମିଳେ ସେଥିପାଇଁ । ଇତିହାସର ନୂତନ ବୟାନ ଦେବାରେ ସେ ଅନ୍ୟତମ ଅଗ୍ରଣୀ ।

ଅନନ୍ତ ପଦ୍ମନାଭଙ୍କର ସମୟଜ୍ଞାନ ଅସାଧାରଣ । ଲୋକେ ଘଡ଼ି ନ ଦେଖି କହନ୍ତି ମାଷ୍ଟ୍ରେ ଗଲେଣି ସ୍କୁଲ୍‌କୁ, ଦଶଟା ବାଜୁଥିବ । ଘଡ଼ି ଦେଖିବା ଦରକାର ପଡ଼େ ନାହିଁ । ତାଙ୍କୁ ଲୋକେ କହନ୍ତି 'ଚଳନ୍ତି ଘଡ଼ି' । ସେତେବେଳେ ହାତରେ ଘଣ୍ଟା ବାନ୍ଧିବା ଲୋକ ଖୁବ୍ ବେଶୀ ନ ଥିଲେ । ତେଣୁ ଲୋକେ ଅନନ୍ତ ପଦ୍ମନାଭଙ୍କୁ ଦେଖି ସମୟ ଅନୁମାନ କରି ପାରୁଥିଲେ । ଠିକ୍ ଯେପରି ସେଇ ଗଂଜାମ ଜିଲ୍ଲାର ଇଂଜିନିଅର ଶ୍ରୀବତ୍ସ ପଟ୍ଟନାୟକଙ୍କୁ କଟକ କୁଜଙ୍ଗ ରାସ୍ତା ଉପରେ ଦେଖି ଲୋକେ ହିସାବ କରୁଥିଲେ ଯେ ବସ୍ ଗଲାଣି ନା ନାହିଁ । ପଟ୍ଟନାୟକ ଯାଇନାହାନ୍ତି ତେଣୁ ଗାଡ଼ି ଆସି ନଥିବ ନିଶ୍ଚୟ । ଅନନ୍ତ ପଦ୍ମନାଭ ଏଇପରି ଏକ ମଣିଷ ଥିଲେ । ସେମିତି ମଣିଷ ହଜି ହଜି ଗଲେଣି ।

ଅନନ୍ତ ପଦ୍ମନାଭ ଥିଲେ ସ୍ୱାଧୀନ ଚେତା । କୌଣସି ଏକ ସ୍କୁଲ କାର୍ଯ୍ୟକ୍ରମରେ ଉଡୁଥିବା ୟୁନିୟନ୍ ଜ୍ୟାକକୁ ପୋଡ଼ିଦେବା ଅପରାଧରେ ବୈଦ୍ୟନାଥ ପାଣିଗ୍ରାହୀ ସମେତ ଆମ କେତେଜଣଙ୍କୁ ସ୍କୁଲରୁ ବହିଷ୍କାର କରିବା ପାଇଁ ଉଦ୍ୟମର ତୀବ୍ର ପ୍ରତିରୋଧ କରିଥିଲେ ଅନନ୍ତ ପଦ୍ମନାଭ । ସେ ଠିଆ ହୋଇଥିଲେ ଆମ ପଟରେ । କେବଳ ଶିକ୍ଷାଗୁରୁ ନୁହେଁ, ଦୀକ୍ଷାଗୁରୁ ଭାବରେ ମଧ୍ୟ ।

ବହୁ ଶିକ୍ଷକ ଆସିବେ ଏବଂ ଯିବେ । ମୋ ଭଳି ଅକିଞ୍ଚନ ଛାତ୍ର ମଧ୍ୟ ତାଠାରୁ ଅଧିକ ସଂଖ୍ୟାରେ ଆସିବେ ଏବଂ ଯିବେ । ଏହା ଏକ ଅନନ୍ତ ପ୍ରବାହ । କିନ୍ତୁ ଏହାର ଭିତରେ ଯେଉଁମାନେ ପଦ୍ମନାଭ ପରି ପ୍ରତିଭା ହୋଇ ରହିବେ ସେମାନଙ୍କର ମଧ୍ୟରେ ଅନନ୍ତ ପଦ୍ମନାଭ ଅନ୍ୟତମ ।

ସେତେବେଳେ ସହରର ନାଁ ହେଉଛି ରସେଲକୋଣ୍ଡା । ବର୍ତ୍ତମାନ ତାହାର ନାମ ହେଉଛି ଭଂଜନଗର । ରସେଲ ହେଉଛନ୍ତି ବ୍ରିଟିଶ ସରକାରଙ୍କର ସେନାଧକ୍ଷ । ସେ ଆସନ୍ତି ଭଞ୍ଜରାଜାଙ୍କ ଦୁର୍ଗ କୁଲାଡ଼ ଉପରେ ଆକ୍ରମଣ କରିବା ପାଇଁ । କୋଣ୍ଡାର ଅର୍ଥ ତେଲୁଗୁରେ ପର୍ବତ । ରସେଲ ସାହେବ ସେଇ ପାହାଡ଼ ଉପରେ ଶିବିର ପାତିଲେ ଏବଂ ସେଇଠାରୁ କମାଣରେ ଆକ୍ରମଣ କଲେ । ଏଇ ସହରର ନାମକରଣ ହୋଇଗଲା ରସେଲକୋଣ୍ଡା । ଅନନ୍ତ ପଦ୍ମନାଭ ସେତେବେଳେ ପରାଧୀନ ଭାରତବର୍ଷରେ ମଧ୍ୟ ଏହି ନାମକରଣର ସମାଲୋଚନା କରନ୍ତି ଖୋଲାଖୋଲି । କର୍ତ୍ତୃପକ୍ଷଙ୍କର ଚକ୍ଷୁଶୂଳ ହୁଅନ୍ତି । କିନ୍ତୁ ସେଥିରେ ସେ ବିବ୍ରତ ନୁହଁନ୍ତି ।

ଅନନ୍ତ ପଦ୍ମନାଭ ଆଉ ନାହାନ୍ତି । କିନ୍ତୁ ସେ ବଞ୍ଚି ରହିବେ ଚିରକାଳ ତାଙ୍କର ଅଗଣିତ ଛାତ୍ରଛାତ୍ରୀ, ସହକର୍ମୀମାନଙ୍କର ସ୍ମୃତିରେ । ସେଇ ହେଉଛି ତାଙ୍କ ଜୀବନର ସାଫଲ୍ୟ ।



# ମୁକ୍ତିର ଗର୍ବିତ ଦୁନ୍ଦୁଭି

୧୯୪୨ ମସିହା ଅଗଷ୍ଟ ୯ ତାରିଖ ପୂର୍ବଦିନ ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନ । ନେତାମାନେ ଗିରଫ ହୋଇ ସାରିଛନ୍ତି କାଲି ରାତିରୁ । ସକାଳ ୯ଟାରେ ଗୋଉଆଲିଆ ଟ୍ୟାଙ୍କ ପଡ଼ିଆ (ଯାହା ବର୍ତ୍ତମାନ ଅଗଷ୍ଟ କ୍ରାନ୍ତି ମଇଦାନ ନାମରେ ଖ୍ୟାତ)ରେ କଂଗ୍ରେସ ଅଧିବେଶନ ବସିବାର କଥା । ପ୍ରଥମ କାର୍ଯ୍ୟକ୍ରମ ପତାକା ଉତ୍ତୋଳନ । ଆଜି କିନ୍ତୁ ଚାରିଆଡ଼େ ସାମରିକ ବାହିନୀ । ସମଗ୍ର ମଇଦାନ ଅବରୁଦ୍ଧ ସେମାନଙ୍କ ଦ୍ୱାରା । ମାଛି ମଧ ଗଳି ପାରିବ ନାହିଁ । ହଠାତ୍ ସେଇ ବଳୟଭେଦ କରି ଛୁଟି ଆସିଲା ଏକ ତରୁଣୀ । ପତାକା ଉତ୍ତୋଳନ କରିଦେଇ ବନ୍ଦେ ମାତରଂ ଧ୍ୱନି ସହ ପୁଣି ଉଭେଇଗଲା କୁଆଡ଼େ । କିଏ ଏଇ ନାରୀ ? ଅସାମାନ୍ୟ ସୌନ୍ଦର୍ଯ୍ୟଭରା ଯୌବନ । ସେଇଥିରେ ଏଇ ଦୁଃସାହସ । ଖୋଜା ପଡ଼ିଲା ତାକୁ ସବୁଆଡ଼େ । ମୁଣ୍ଡ ଉପରେ ପରବାନା ଝୁଲିଲା । ଲକ୍ଷାଧିକ ଟଙ୍କାର ପୁରସ୍କାର ଘୋଷଣା ହେଲା । ତାକୁ ସବୁଠି ଦେଖିବାକୁ ମିଳିଲା । କିନ୍ତୁ ଧରା ପଡ଼ିଲା ନାହିଁ । ଆନ୍ତର୍ଜାତିକ କ୍ଷେତ୍ରରେ ତାର ପରିଚୟ ହୋଇଗଲା ।

ସେ ହେଉଛନ୍ତି 'ଅରୁଣା ଆସଫ ଅଲ୍ଲି' । ଜୁଲାଇ ୨୯ ତାରିଖ, ୧୯୯୬ ମସିହାରେ ତାଙ୍କର ପରଲୋକ ହୋଇଯାଇଛି । ବିଗତ ଏକ ବର୍ଷରୁ ଉର୍ଦ୍ଧ୍ୱ କାଳ ସେ ବାର୍ଦ୍ଧକ୍ୟ ଜନିତ ରୋଗ ତଥା ନିଉମୋନିଆ, ଛାତିରେ ଯନ୍ତ୍ରଣା ପ୍ରଭୃତି ବହୁରୋଗରେ ପୀଡ଼ିତ ଥିଲେ । ତାଙ୍କର ମୃତ୍ୟୁରେ ଭାରତୀୟ ମୁକ୍ତି ସଂଗ୍ରାମର ଏକ ବିରାଟ ଅଧ୍ୟାୟର ଯବନିକା ପଡ଼ିଲା ।

୧୯୦୯ ମସିହା ଜୁଲାଇ ୧୬ ତାରିଖରେ ସେ ଅବିଭକ୍ତ ପଞ୍ଜାବର କାଲ୍କା ସହରରେ ଏକ ବ୍ରାହ୍ମ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ନାଁ ଦିଆଯାଇଥିଲା ଅରୁଣା ଗାଙ୍ଗୁଲି । ସେମାନେ ବଙ୍ଗାଳୀ, କିନ୍ତୁ ଜନ୍ମ ଶିକ୍ଷାଦୀକ୍ଷା ସବୁ ବଂଗ ଦେଶର ବାହାରେ । ସଂସ୍କାର ଥିଲା ଜନ୍ମଗତ । ସଂସ୍କାରବାଦୀ ମନୋଭାବ ବିପ୍ଲବବାଦୀ ହେବାକୁ ସମୟ ଲାଗି ନଥିଲା । ସେ କିଶୋରୀ ସମୟରୁ ଦେଶ ପାଇଁ ନିଜକୁ ଉତ୍ସର୍ଗ କରି ଜାତୀୟବାଦୀ ପାଲଟି ଯାଇଥିଲେ । ସ୍ୱାଧୀନତା ସଂଗ୍ରାମ ତାଙ୍କୁ ଆକୃଷ୍ଟ କରିଥିଲା । ସେଇ ସମୟରେ ତାଙ୍କର ଭେଟ ହୁଏ ଆସଫ ଅଲ୍ଲିଙ୍କ ସହିତ । ଆସଫ ଅଲ୍ଲି ଅରୁଣାଙ୍କ ଠାରୁ ବୟସରେ ଢେର ବଡ଼ । ତଥାପି ବାଦଶାହୀ ଆସଫ୍ ଅଲ୍ଲିଙ୍କ ଚେହେରା, ଜୀବନର ଭଙ୍ଗୀ ଏବଂ ସର୍ବୋପରି ଜାତୀୟ ଆନ୍ଦୋଳନରେ ଭୂମିକା କିଶୋରୀ ଅରୁଣାଙ୍କୁ ଆକୃଷ୍ଟ କରିଥିଲା । ଠିକ୍ ସେଇପରି ପ୍ରୌଢ଼ ଆସଫ ମଧ କିଶୋରୀ ଅରୁଣାଙ୍କର ଲାଳିତ୍ୟ ଏବଂ ସ୍ଫୁଲିଙ୍ଗରେ ମୁଗ୍ଧ ହୋଇଥିଲେ । ସବୁ ବାଧା ବନ୍ଧନର ବିଗତ ଏହି ସେମାନେ ବିବାହ କରିଥିଲେ ୧୯୨୮ ମସିହାରେ । ଏ ବିବାହ ଖାଲି ଶାରୀରିକ ବା ଫଜିକାଲ

ନ ଥିଲା, ଏହା ଥିଲା ବୌଦ୍ଧିକ ବା ମେଟାଫିଜିକାଲ । ଏହା ସତ୍ତ୍ୱେ ବିବାହ ପରବର୍ତ୍ତୀ କାଳରେ ସେମାନଙ୍କର କୌଣସି କାର୍ଯ୍ୟରେ ପ୍ରତିବନ୍ଧକ ହୋଇ ନ ଥିଲା ।

ଅରୁଣାଙ୍କୁ କାରାଗାର ଭୋଗ କରିବାକୁ ପଡ଼ିଛି ବହୁବାର । ୧୯୩୦, ୧୯୩୨ ମସିହାରେ ଆଇନ୍ ଅମାନ୍ୟ ଆନ୍ଦୋଳନରେ, ୧୯୪୦ ମସିହାରେ ବ୍ୟକ୍ତିଗତ ସତ୍ୟାଗ୍ରହରେ ତାଙ୍କୁ ଜେଲ୍ ଭୋଗିବାକୁ ପଡ଼ିଛି । ଉଚ୍ଚ ସମ୍ଭ୍ରାନ୍ତ ଶ୍ରେଣୀରେ ଜନ୍ମ, ବାଦଶାହୀ ଆସଫ୍ ଅଲ୍ଲିଙ୍କ ସହ ବିବାହ । ଏହା ସତ୍ତ୍ୱେ ଅରୁଣା ଧୀରେ ଧୀରେ ସାମାଜବାଦୀ ଦର୍ଶନ ପ୍ରତି ଆଗ୍ରହାନ୍ୱିତ ହୁଅନ୍ତି ଏବଂ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଜଣେ ଅଗ୍ରଗାମୀ ନେତା ଭାବରେ ବିବେଚିତ ହୁଅନ୍ତି ।

୧୯୪୨ ରୁ ୧୯୪୬ ଅରୁଣା ଆତ୍ମଗୋପନ କରନ୍ତି । ୧୯୪୬ ମସିହା ବେଳକୁ ସ୍ୱାଧୀନ ଭାରତର ସୂର୍ଯ୍ୟ ଉଇଁବାର ସୂଚନା ମିଳିଥାଏ । ତଥାପି ଅରୁଣା ତାଙ୍କର କାର୍ଯ୍ୟ ଚାଲୁ ରଖିଥାନ୍ତି । ପରିଶେଷରେ ସେ ଆତ୍ମପ୍ରକାଶ କରନ୍ତି ।

ଆସଫ୍ ଅଲ୍ଲି ପ୍ରଥମେ ମଧ୍ୟବର୍ତ୍ତୀକାଳୀନ ସରକାରରେ କେନ୍ଦ୍ର ମନ୍ତ୍ରୀ, ପରେ ଆମେରିକାରେ ଭାରତର ରାଷ୍ଟ୍ରଦୂତ, କିଛି ବର୍ଷ ପାଇଁ ଓଡ଼ିଶାର ରାଜ୍ୟପାଳ ଏବଂ ପରିଶେଷରେ ସୁଇଜରଲାଣ୍ଡରେ ଆମର ରାଷ୍ଟ୍ରଦୂତ । ପତି ପତ୍ନୀ ରାଜନୈତିକ କାର୍ଯ୍ୟରେ ଖୁବ୍ କ୍ୱଚିତ୍ ଏକାଠି ରହିବାର ସୁଯୋଗ ପାଇଛନ୍ତି । କିନ୍ତୁ ବାଦଶାହୀ ଆସଫ୍ ଅରୁଣାଙ୍କ ପାଇଁ କଟକ ରେଳବାଇ ଷ୍ଟେସନ୍‌ରେ ଏକାକୀ ପ୍ଲାଟଫର୍ମରେ ଘଣ୍ଟା ଘଣ୍ଟା ଅପେକ୍ଷା କରିବା ସମସ୍ତେ ଦେଖିଛନ୍ତି । ଠିକ୍ ସେଇପରି ସବୁ ଆୟୋଜନ ଥିବା ସତ୍ତ୍ୱେ ଅରୁଣା ନିଜ ହାତରେ ରୋଷାଇ କରି ଆସଫ୍ ଅଲ୍ଲିଙ୍କୁ ଖୁଆଇବା ମଧ୍ୟ ଅନେକ ଜାଣନ୍ତି ।

ଅରୁଣା କଦାପି କ୍ଷମତା ପାଇଁ ବ୍ୟାକୁଳ ହୋଇନାହାନ୍ତି । ନିର୍ବାଚନରେ ଟିକଟ ପାଇଁ କେବେ ଚେଷ୍ଟା ବା ଇଚ୍ଛା ପ୍ରକାଶ କରି ନାହାନ୍ତି । ସମସ୍ତଙ୍କର ମିଳିତ ଅନୁରୋଧରେ କିଛିକାଳ ପାଇଁ ୧୯୫୮ ମସିହାରେ ଦିଲ୍ଲୀ ସହରର ମେୟର ହୋଇଛନ୍ତି । ସ୍ଲମ୍‌ରେ ରହୁଥିବା ମଣିଷ ପାଇଁ କିଛି କରିବାର ତାଙ୍କର ଉଦ୍ଦେଶ୍ୟ ଥିଲା । କିନ୍ତୁ ଦଳ ଭିତରେ ଅନ୍ତର୍ବିବାଦ ଯୋଗୁଁ ସେ ମାତ୍ର ୧୪ ମାସ ପରେ ସେ ପଦବୀରୁ ଇସ୍ତଫା ଦେଇ ଚାଲି ଆସିଲେ ତାଙ୍କର ନିଜସ୍ୱ କର୍ମକ୍ଷେତ୍ରକୁ ।

ଅରୁଣା ସୋସାଲିଷ୍ଟ ପାର୍ଟିର ସର୍ବୋଚ୍ଚ ତିନି ଜଣଙ୍କ ଭିତରେ ଜଣେ ଥିଲେ । ଅରୁଣା ଲୋହିଆ ଜୟ ପ୍ରକାଶ ଥିଲା ସୋସାଲିଷ୍ଟ ପାର୍ଟିର ସ୍ଲୋଗାନ୍ । କିନ୍ତୁ ଅରୁଣା ଇଉରୋପ ଗସ୍ତ କାଳରେ ଦେଖିଲେ ସୋସାଲିଷ୍ଟ ଆନ୍ଦୋଳନର ବିପର୍ଯ୍ୟୟ । ଦୀର୍ଘ ଇଉରୋପଗସ୍ତ ଭିତରେ ସେ ଯାଇଥିଲେ ସୋଭିଏତ୍ ୟୁନିୟନ୍ । ଠିକ୍ ରବୀନ୍ଦ୍ରନାଥଙ୍କ ପରି ସେ ମଧ୍ୟ ଫେରି କହିଲେ ଯେ ମୋର ମାର୍କ୍ସବାଦୀ ଦର୍ଶନ ପଢ଼ିବା ପୂର୍ଣ୍ଣାଙ୍ଗ ହୋଇଛି । ମୁଁ ଦେଖିଆସିଛି ଏଇ ଦର୍ଶନର ବାସ୍ତବ ରୂପାନ୍ତର । ସେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ ଏବଂ ଏହାର କେନ୍ଦ୍ର କମିଟିର ସଭ୍ୟ ମଧ୍ୟ ହେଲେ । ଦୁଇ ବର୍ଷ ପରେ ସେ କମ୍ୟୁନିଷ୍ଟ ପାର୍ଟି ମଧ୍ୟ ପରିତ୍ୟାଗ କଲେ ।

ଅରୁଣା କିନ୍ତୁ ରହିଗଲେ ଚିରକାଳ ସୋଭିଏତ୍ ୟୁନିୟନ୍‌ର ବନ୍ଧୁ ହୋଇ । ଭାରତ ସୋଭିଏତ୍ ମୈତ୍ରୀ ସମିତି, ଆଫ୍ରୋ ଏସିଆନ୍ ସହତି ଅନୁଷ୍ଠାନ, ବିଶ୍ୱଶାନ୍ତି ପରିଷଦ, ଭାରତୀୟ ମହିଳାମାନଙ୍କର ଜାତୀୟ ଅନୁଷ୍ଠାନ ପ୍ରଭୃତିର ସେ ଥିଲେ ଅନ୍ୟତମ ନାୟକ । ମାତ୍ର ଦୁଇବର୍ଷ ତଳେ ଦେଖା ହୋଇଥିଲା ତାଙ୍କ ସହିତ । ବୟସ ହୋଇ ଯାଇଥିଲା । ସେ ବୃଦ୍ଧା ହୋଇଗଲେଣି । କିନ୍ତୁ ଆଖିରେ ରହିଚି ସେଇ ଉଜ୍ଜ୍ୱଳ ଦିପ୍ତୀ, ସେଇ ସ୍ଫୁଲିଙ୍ଗ । ଦେଖିଲେ ମୁଗ୍ଧ ହେବାକୁ ପଡ଼େ, ରକ୍ତରେ ଚମକ ଲାଗେ । ପଚାରିଲେ ସମସ୍ତଙ୍କ କଥା ଓଡ଼ିଶାର । ବିଶେଷତଃ ତାଙ୍କର ସହକର୍ମୀ ଡାକ୍ତର ନିରୂପମା ରଥଙ୍କ କଥା ।

ଅରୁଣା ନିସନ୍ତାନ । ଭାରତର ଅଗଣିତ ଶିଶୁଙ୍କ ଭିତରେ ସେ ପାଇଛନ୍ତି ମାତୃତ୍ୱର ସ୍ୱାଦ । ଯୁଦ୍ଧର ବିଭୀଷିକାରେ ବିପର୍ଯ୍ୟସ୍ତ ଶିଶୁମାନଙ୍କ ମଧ୍ୟରେ ପାଇଛନ୍ତି ସେଇ ସ୍ୱାଦ ।

ଅରୁଣା 'ଲିଙ୍କ୍', (ସାପ୍ତାହିକ)ଓ 'ପାଟ୍ରିଅଟ୍' ଦୈନିକ ପ୍ରକାଶନ ଆରମ୍ଭ କରନ୍ତି । ପୁରୁଣା ମାନେ କିଏ କୁଆଡ଼େ ହଜି ଗଲେଣି । ବନ୍ଧୁ ଏ.ଦାତାତା ନାରାୟଣନ୍ ସାହାଯ୍ୟ କରନ୍ତି । ତାଙ୍କର ମଧ୍ୟ ପରଲୋକ ହୋଇଯାଏ କିଛି ବର୍ଷ ତଳେ । ଅରୁଣା ଏକ ଟ୍ରଷ୍ଟ ଗଠନ କରି ତାରି ହାତରେ ଲିଙ୍କ୍, ପାଟ୍ରିଅଟ୍‌କୁ ସମର୍ପି ଦେଇ ନିଷ୍କ୍ରାନ୍ତ ହୋଇ ଯାଆନ୍ତି, ଜନ ଜୀବନରୁ ।

ଅରୁଣା ଅନମନୀୟ । ଯାହା ବୁଝିଥିବେ ସେଇଆ । ତାଙ୍କର ଏହି ଗୁଣ ଯୋଗୁଁ ତାଙ୍କୁ ଅନେକ ଫାନାଟିକ୍ ବୋଲି କହନ୍ତି । ଗୋଟାଏ କିଛି କାମର ଅଧାରେ ଏକ ସମଝୋତା କରିବା ତାଙ୍କ ଜାତକରେ ନ ଥିଲା । ଯେଉଁଥିପାଇଁ ସେ ବାଜି ରଖିଥିବେ ସେ ବାଜି ପାଇଁ ଦାବାନଳରେ ନିଜେ ଜଳି ନ ଯିବା ପର୍ଯ୍ୟନ୍ତ ତାକୁ ଛାଡ଼ିବେ ନାହିଁ ।

ଅରୁଣା ନାହାନ୍ତି । କେହି ରହିବେ ନାହିଁ । କିନ୍ତୁ ବର୍ତ୍ତମାନ ତାଙ୍କ ଭଳି କ୍ଲାସିକାଲ ମଣିଷ ମିଳିବେ ନାହିଁ । ଆଉ କ୍ଲାସିକାଲ୍ ମଣିଷ ନ ଥିଲେ ସମାଜର ଆଲୋକ ବର୍ତ୍ତିକା ହେବ କିଏ ?



# କାଳର କପାଳରେ ଉଜ୍ଜ୍ୱଳ ଝଲକ

୧୯୪୨ ମସିହା ଅଗଷ୍ଟ ୯ ତାରିଖ ।

ଗଲା ରାତିରୁ କଂଗ୍ରେସ ଦଳର ସବୁ ନେତା ଗିରଫ ହୋଇ ସାରିଛନ୍ତି । ବମ୍ବେ (ମୁମ୍ବାଇ) ସହରର ଗ୍ୱାଲିଆ ଟ୍ୟାଙ୍କ ଅଞ୍ଚଳ । ଗୋଟାଏ ପଟରେ ଆରବ ସାଗରର ଉର୍ମି ବିକ୍ଷୁବ୍ଧ ହୋଇଛି । ସମସ୍ତ ଚୌପାଟୀ ଅଞ୍ଚଳ ଭର୍ତ୍ତି ହୋଇଛି ସାମରିକ ବାହିନୀ ଦ୍ୱାରା । ଏଇଠି, ଆଜି ସକାଳ ନଅଟା ବେଳେ ତ୍ରିରଙ୍ଗା ପତାକା ଉତ୍ତୋଳିତ ହୋଇ କଂଗ୍ରେସ ଅଧିବେଶନର ଆବାହନୀ ହୋଇଥାଆନ୍ତା । ପତାକା ଖୁଣ୍ଟି ତିଆରି ହୋଇଛି । ଉଲଗ୍ନ, ନଣ୍ଡା ଖୁଣ୍ଟି । ଦେହରେ କେବଳ ପତାକା ବାନ୍ଧିବାର ଦଉଡ଼ି ମହିମ୍ନ ମନ୍ତ୍ରୀପୂତ ଉପବୀତ ଭଳି ଲମ୍ବି ଯାଇଛି ଉପରକୁ । କେହି କୁଆଡ଼େ ନାହାନ୍ତି । ଖାଲି ଶୁଭୁଛି ସାମରିକ ପୋଲିସ୍‌ର ବୁଟ୍ ଶବ୍ଦ ।

ନଅଟା ବାଜିବାକୁ ଦୁଇ ମିନିଟ୍ ବାକି । ଥମ୍ ଥମ୍ ବାୟୁ ମଣ୍ଡଳ । ଆରବ ସାଗର ବକ୍ଷରୁ ଭାସି ଆସୁଛି ବିକ୍ଷୁବ୍ଧ ତରଙ୍ଗର ଧ୍ୱନି । ସତେ ଯେପରି ହଜାର ହଜାର ମଣିଷ ମାଡ଼ି ଆସୁଛନ୍ତି ସେଇ ତରଙ୍ଗର ତରଣୀ ଉପରେ । ଏ କଣ ବିକ୍ଷୁବ୍‌ଧ ତରଙ୍ଗ ନା ଜନ୍ମ ମାଟିର ମୁକ୍ତି ପାଇଁ ବିକ୍ଷୁବ୍ଧ ମଣିଷର ସମବେତ କୋଳାହଳ ?

ହଠାତ୍ ! କୌଣସି ଏକ ମଟର ଗାଡ଼ି ଉପସ୍ଥିତ ହେଲା ପତାକା ସ୍ତମ୍ଭ ତଳେ । ସମସ୍ତେ ଚକିତ । କିଏ, କେଉଁଠୁ ଆସିଲା, ଆସିଲା କିମିତି ? କିନ୍ତୁ ସାମରିକ ପୋଲିସ୍ କିଛି ପଦକ୍ଷେପ ନେବା ପୂର୍ବରୁ ସେଇ ସୁଦର୍ଶନା ତରୁଣୀ ପତାକା ସ୍ତମ୍ଭରେ ଉତ୍ତୋଳିତ କରିଦେଲା ତ୍ରିରଙ୍ଗ ପତାକା ।

ବନ୍ଦେ ମାତରଂ । ବନ୍ଦେ ମାତରଂ । ବନ୍ଦେ ମାତରଂ ।

ଝିଅଟି ଯେପରି ଝଡ଼ ଭଳି ଆସିଥିଲା, ସେହିପରି ଝଡ଼ ଭଳି ଚାଲିଗଲା କୁଆଡ଼େ । ସମସ୍ତଙ୍କ ଆଖିରେ ଧୂଳି ଦେଇ । ଏଇ ଝିଅ ହେଲା ପଳାତକ । ତାକୁ ଖୋଜି ବୁଲିଲେ ପୋଲିସ୍, ସାମରିକ ବାହିନୀ, ଗୁଇନ୍ଦା ପୋଲିସ୍ । କେହି ଧରି ପାରିଲେ ନାହିଁ । ତାକୁ ଦେଖାଗଲା ରାମକୃଷ୍ଣ ମିଶନରେ, କେତେବେଳେ ସାମରିକ ଛାଉଣୀରେ, କେତେବେଳେ ଗୁପ୍ତ ବୈଠକରେ, ପୁଣି କେତେବେଳେ ଗୁପ୍ତ ବେଶରେ ଖୋଦ୍ ବଡ଼ ଲାଟଙ୍କ ଉଡ଼ାଜାହାଜରେ । ୧୯୪୫ ମସିହାରେ ଐତିହାସିକ ଭାରତ ଛାଡ଼ ଆନ୍ଦୋଳନରେ ଏହି ମହାନେତ୍ରୀ କଲିକତାର ମହମ୍ମଦ ଅଲ୍ଲି ପାର୍କରେ ଏକ ବିପୁଳ ଜନସମାବେଶରେ ଆତ୍ମପ୍ରକାଶ କରନ୍ତି ।

ସ୍ୱାଧୀନତାର ଉଷା ଦେଖାଗଲାଣି ଆକାଶରେ ସେତେବେଳକୁ । ସେଇ ମହାରଥୀ ହେଉଛନ୍ତି ଅରୁଣା ଆସଫ ଅଲ୍ଲି । ଏ ଲେଖା ଲେଖିଲା ବେଳକୁ ସେ ମୃତ୍ୟୁ ସହିତ ସଂଗ୍ରାମ

କରୁଛନ୍ତି ।ଲେଖା ପ୍ରକାଶିତ ହେଲା ବେଳକୁ ତାଙ୍କୁ କଣ ହୋଇଥିବ କହି ହବ ନାହିଁ । କିନ୍ତୁ ତାଙ୍କର ଶୃଖଳା ଧମନୀରେ ବରଷୁ ଲକ୍ଷ ନାଡ଼ିର ଲହୁ କଣିକା ।

ଠିକ୍ ସେତିକିବେଳେ, ବଙ୍ଗଳାର ମେଦିନୀପୁର ଜିଲ୍ଲାରେ ସମାନ୍ତରାଳ ସରକାର ଗଠନ କରନ୍ତି ଅଜୟ ମୁଖାର୍ଜୀ । ଏଇ ସରକାରକୁ ଭାଙ୍ଗି ଦଖଲ କରିବା ପାଇଁ ପଲଟଣ ଶିବିର ପକାଇଥାନ୍ତି ମେଦିନୀପୁରରେ । ରକ୍ତମୁଖା ଗୋରା ପଲଟଣ । ହିଂସ୍ର ଜାନୁଆର । ସେମାନଙ୍କର ସମ୍ମୁଖୀନ ହେବା ପ୍ରସ୍ତୁତି ଅହିଂସାର ମହାମନ୍ତ୍ରରେ ଦିକ୍ଷୀତ ମେଦିନୀପୁରର ଜନସାଧାରଣ । ବିପୁଳ ଦରିଦ୍ର ଜନତା । ବଙ୍ଗଳାର ଆସନ୍ନ ମନ୍ୱନ୍ତରର ପଦଧ୍ୱନି । ତଥାପି ସେମାନେ ଜୀବନକୁ ବାଜି ଲଗାଇବାକୁ ପ୍ରସ୍ତୁତ ।

ଶୋଭାଯାତ୍ରା । ବିପୁଳ ଜନତା ।

ଆଗରେ ଏ କିଏ ? ବିଧବା, ଯୁବତୀ ମାତଙ୍ଗିନୀ । ଦୁଇଟି କରୁଣ ଆଖି । ଜୀବନରେ ଯା'ର ସବୁ ସରି ଯାଇଛି ସେ ବି ଆଜି ଉନ୍ମତ୍ତା । ମାତଙ୍ଗିନୀ, ତମେ ଜାଣିଛ । ଆଗରେ ଗୋରା ଫଉଜ, ତମେ ଜାଣିଛ ସେମାନେ ରକ୍ତମୁଖା, ତେଣୁ.......... ।

ଦାଦା, ମୋତେ ଆଜି ଅନୁମତି ଦିଅ । ମୁଁ ଏତିକି ତମ ପାଖରେ ଭିକ୍ଷା ମାଗୁଛି । ମୋର ମାଗୁଣି ଏତିକି ।

ଅଜୟ ମୁଖାର୍ଜୀ ନୀରବ । ତାଙ୍କର ବଜ୍ର ଗମ୍ଭୀର କଣ୍ଠ ସ୍ତବ୍ଧ । ସେ ନାହିଁ କରି ପାରୁ ନାହାନ୍ତି । ମୁକ୍ତିର ଦୁନ୍ଦୁଭି ବାଜୁଛି ।

ମାତଙ୍ଗିନୀ ଆଉ ଫେରି ନାହିଁ । ସେ ବର୍ତ୍ତମାନ ବଙ୍ଗଳାର ଯୁବକ ଓ ଛାତ୍ରମାନଙ୍କର ପାଠ୍ୟ । ସହିଦ ମିନାର ପାଖରେ ତାର ବ୍ରୋଞ୍ଜ ମୂର୍ତ୍ତି । ପତାକା ତାର ହାତରେ । ସେ ଚାଲିଛି ।

ତେଣେ ଗୁଜୁରାଟରେ ।

ମହାତ୍ମାଗାନ୍ଧିଙ୍କର ଜନ୍ମସ୍ଥଳୀ । ଗୁଜୁରାଟର ମହାଯୋଦ୍ଧା ଦୀନକର ମେହେଟା ସ୍ଥାପନ କରିଛନ୍ତି ସମାନ୍ତରାଳ ସରକାର । ତାକୁ ଭାଙ୍ଗିବା ପାଇଁ ଛୁଟିଛନ୍ତି ଅସଂଖ୍ୟ ପଲଟଣ । କିନ୍ତୁ ସେ ଶିବିର ଦୁର୍ଭେଦ୍ୟ । କାରଣ ବାହାରକୁ କିଛି ଦେଖାଯାଉ ନାହିଁ। ସବୁଆଡ଼େ ସମସ୍ତେ ଧୀର ଶାନ୍ତ । କିନ୍ତୁ ସରକାର ଚାଲିପାରୁ ନାହିଁ । କାରଣ କେହି ସହଯୋଗ କରୁନାହାନ୍ତି ସରକାର ସହିତ । ଆବାଳ ବୃଦ୍ଧ ବନିତା ସମସ୍ତେ ଅସହଯୋଗୀ ପାଲଟି ଯାଇଛନ୍ତି । ସମସ୍ତେ ଅଛନ୍ତି, ଅଥଚ କେହି ନାହାନ୍ତି । ହାତରେ ଗୁଳି ନାହିଁ, ବନ୍ଧୁକ ନାହିଁ, କମାଣ ନାହିଁ — ଅଛି କିନ୍ତୁ ମନବଳ । ମୃତ୍ୟୁ ତା ଆଗରେ ଭୀତ, ପରାଜିତ ।

ଇତିହାସ କଥା କହୁଚି, ନୂଆ ଇତିହାସ ଲେଖା ହେଉଛି । ମଣିଷ ଲୁହରେ ।

ଏଣେ ଢେଙ୍କାନାଳର ଦଣ୍ଡପାଟରେ ବୀର ବୈଷ୍ଣବର କୁହାଟ ଶୁଭୁଛି । ଦେଖିନେବା ତାକୁ ଛାଡ଼ି ଦେ ବାଟ.... ଶୁଭେ ଏ କି ରଡ଼ି ଏ କି କୁହାଟ । ଢେଙ୍କାନାଳ ଶାଣିତ ହୋଇଛି ସଂଗ୍ରାମରେ । ବାଜି ରାଉତ ନେଇ ଯାଇଛି ଢେଙ୍କାନାଳ ସହରକୁ ଭାରତ ବର୍ଷର ଶେଷ ସୀମାନ୍ତକୁ । ସାରଙ୍ଗଧର ଦାସ, ମହେଶ୍ୱର ସୁବାହୁ ସିଂ, ବ୍ରଜକିଶୋର ଧଳ, ଢେଙ୍କାନାଳର ମହାରଥୀମାନେ ବିପ୍ଳବୀ, 'ଢେଙ୍କା' ନାମରେ ଯଥାର୍ଥ୍ୟ ପ୍ରମାଣିତ କରିଛନ୍ତି ।

ବେଙ୍କ ନାହିଁ ଆଉ ବେଳ ନାହିଁ । ଏଇ ହେଉଛି ମାହେନ୍ଦ୍ର ବେଳ । ରାଜାର ମଢ଼ିଥାନା ଦଖଲ ହୋଇଛି । ବିଜୟୀ, ଗର୍ବିତ କିନ୍ତୁ ଅସଂଗଠିତ ଜନସୁଅ ଛୁଟି ଚାଲିଛି ଭୁବନ ଥାନା ଦଖଲ କରିବା ପାଇଁ, ସେଇ ପ୍ରସିଦ୍ଧ ଆମ୍ବତୋଟା । ସେଇଠି ମୁହାଁ ମୁହିଁ ହୁଏ ରାଜାର ସୈନ୍ୟବାହିନୀ ସହିତ । ଗୁଳିଗୁଳାର ବିନିମୟ ଭିତରେ, ଯୁଦ୍ଧଂ ଦେହିର ଡାକରା ଭିତରେ 'ବନ୍ଦେ ମାତରଂ' ଧ୍ୱନି । ଶୁଭୁଚି ସେ ଧ୍ୱନି ସେବେଠାରୁ ଏ ପର୍ଯ୍ୟନ୍ତ । ବ୍ରାହ୍ମଣୀ ନଈ ଭିତରେ, ମହିଷାପାଟର କ୍ଷେତ ଭିତରେ ଆଜି ବି ଧ୍ୱନିତ ହୁଏ ସେଇ ଧ୍ୱନି ।

ସେନାପତି ବୀର ବୈଷ୍ଣବ ଆହତ ହୁଅନ୍ତି । ସାଙ୍ଗତି ପଳାତକ । ଗାଁ ଗଣ୍ଡାରେ ସୈନ୍ୟବାହିନୀ ବର୍ବର ଆକ୍ରମଣ କରନ୍ତି । କିନ୍ତୁ ବୀର ବୈଷ୍ଣବ କାହିଁ ? ଗପ ସୃଷ୍ଟି ହୁଏ । ଲୋକଗୀତ ଲେଖାହୁଏ । ମା' ମାନେ ପିଲାମାନଙ୍କୁ ସେଇ କାହାଣୀ କହନ୍ତି ସଂଜବୁଢ଼େ ।

ବୀର ବୈଷ୍ଣବ ପାଇଁ ହୁଲିଆଜାରି ହୁଏ । ସେ ନାରୀ ବେଶରେ ପହଞ୍ଚନ୍ତି କଲିକତାରେ । ବିନା ନିକେତନରେ ତାଙ୍କର ଅସ୍ତ୍ରୋପଚାର ହୁଏ । ସେ ପହଞ୍ଚନ୍ତି ବମ୍ବେରେ ', ଅଘ୍ରେଣାର ଗୁରୁ ପି.ସି. ଯୋଶୀଙ୍କ ପାଖରେ । ତାଙ୍କୁ ଖୋଜା ଚାଲେ ସାରା ଭାରତବର୍ଷରେ ।

୧୯୪୫ ମସିହାରେ କଟକରେ ଗୌରୀଶଙ୍କର ପାର୍କରେ ଏକ ବିପୁଳ ଜନସମାବେଶରେ ସେ ଆତ୍ମପ୍ରକାଶ କରନ୍ତି । ସ୍ୱାଧୀନତାର କୁଆଁତାରା ଆକାଶରେ ।

ସମଗ୍ର ନେତୃତ୍ୱ କାରାରୁଦ୍ଧ । ତଥାପି ସାରା ଭାରତବ୍ୟାପୀ ଉଦ୍‌ବେଳନ । ସୁରେନ୍ଦ୍ରନାଥ ଦ୍ୱିବେଦୀ, ଜୟ ପ୍ରକାଶ ନାରାୟଣ, ଟି. ପ୍ରକାଶ , କ୍ରିଷ୍ଣ ପିଲାଇ... ଅସୁମାରି ସେନାଧକ୍ଷ ଚଳାଇ ରଖିଲେ ସଂଗ୍ରାମ ।

କେତେଦିନ ଏହା ତିଷ୍ଠି ରହିଲା ସେଇଟା ବଡ଼ କଥା ନୁହେଁ । ବଡ଼ କଥା ହେଉଛି ଯେଉଁ ଦିନ ଉଦ୍‌ବେଳନ ଦେଖାଗଲା ତାହା ବ୍ରିଟିଶ ସରକାରଙ୍କୁ ଆତଙ୍କିତ କରିଦେଲା ।

ସ୍ୱାଧୀନତା ଠିକ୍ ତା ପରେ ପରେ ଆସିଲା ନାହିଁ । ଆସିବାକୁ ଆଉରି ଅଗ୍ନି ପରୀକ୍ଷା ଦେବାକୁ ପଡ଼ିବ । ବମ୍ବେର ନୌବିଦ୍ରୋହ, କଲିକତାର ଛାତ୍ର ଧର୍ମଘଟ, ଜବଲପୁରର ବୈମାନିକ ଧର୍ମଘଟ, ସରା ଭାରତବ୍ୟାପୀ କିରାଣୀମାନଙ୍କର ଧର୍ମଘଟ ଆହୁରି ବାକି ଥିଲା ।

ଏସବୁର ଆଦ୍ୟ ଦୁନ୍ଦୁଭି ହେଉଛି ୧୯୪୨ର ଅଗଷ୍ଟ ୯ ।



# ଶ୍ରମଜୀବି ମଣିଷର ଦୁର୍ବାର ସାରଥି

ଅବଦୁଲ ମୋମିନଙ୍କର ପରଲୋକ ହୋଇଗଲା ବାରିପଦାରେ । ଗଣ ବହୁ ବର୍ଷ ଧରି ସେ ବାରିପଦାକୁ ଆପଣାର ରହଣୀସ୍ଥଳ ଓ କର୍ମକ୍ଷେତ୍ର ଭାବରେ ଗ୍ରହଣ କରିନେଇଥିଲେ । ଅବଦୁଲ ମୋମିନ ପଶ୍ଚିମବଙ୍ଗର କମ୍ୟୁନିଷ୍ଟ ପାର୍ଟିର ପ୍ରଥମ ଧାଡ଼ିର ଅନ୍ୟତମ ନେତା । ପଶ୍ଚିମବଙ୍ଗର ସଫଳ ମୁଖ୍ୟମନ୍ତ୍ରୀ ଜ୍ୟୋତିବସୁ ବା ପ୍ରସିଦ୍ଧ ସି.ପି.ଏମ୍. ନେତା ପ୍ରମୋଦ ଦାସଗୁପ୍ତ ପ୍ରଭୃତି ହେଉଛନ୍ତି ଦ୍ୱିତୀୟ ଧାଡ଼ିର ନେତା । ୧୯୪୮ ମସିହାରେ ପଶ୍ଚିମବଙ୍ଗ କମ୍ୟୁନିଷ୍ଟ ପାର୍ଟି ବେଆଇନ୍ ଘୋଷିତ ହେବା ଦିନ ଅବଦୁଲ୍ ମୋମିନ୍ ସଶସ୍ତ୍ର ସୈନ୍ୟବାହିନୀର ବ୍ୟୁହ ଭିତରୁ ଖସି ଆସି ଚମକ ସୃଷ୍ଟି କରିଥିଲେ ସାରା ଭାରତବର୍ଷରେ । ସେ ପଳାତକ ହୁଅନ୍ତି ଏବଂ ସେତିକିବେଳେ କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱ ସହ ତାଙ୍କର ମତଭେଦ ହୁଏ । ସମୟ ଥିଲା କଠିନ । ମତଭେଦର ପରିଣତି ଭୟାବହ । ତେଣୁ ଅବଦୁଲ୍ ମୋମିନ ପଶ୍ଚିମବଙ୍ଗରୁ ଖସି ଆସି ପହଞ୍ଚିଲେ ବାରିପଦାରେ । ସେଇଠି ଥାଆନ୍ତି ବ୍ରଜେନ ପାଲ । ସଂତ୍ରାସବାଦୀ ଆନ୍ଦୋଳନର ଏକଦା ନାୟକ ବ୍ରଜେନ ପାଲ ସଂତ୍ରାସବାଦୀ ଆନ୍ଦେଳନ ଛାଡ଼ି ବାରିପଦାରେ କାଠ କଣ୍ଟ୍ରାକ୍ଟର ଏବଂ ବେଶ୍ ସ୍ୱଚ୍ଛଳ ଜୀବନ । ସଂତ୍ରାସବାଦୀମାନଙ୍କ ମଧ୍ୟରୁ ଅନେକଙ୍କର ଜୀବନରେ ଏଇଭଳି ଘଟିଛି । ସଂତ୍ରାସବାଦୀ ଆନ୍ଦୋଳନର ଏକ ଅଧ୍ୟାୟର ସମାପ୍ତିରେ ସେମାନେ ବିଦାୟ ନେଇ ଫେରିଛନ୍ତି ସାଧାରଣ ଜୀବନକୁ । ବୋଧହୁଏ କ୍ଳାନ୍ତ ହୋଇ ପଡ଼ିଛନ୍ତି ସେମାନେ । ସାଧାରଣ ଜୀବନକୁ ଫେରିଛନ୍ତି ସତ୍ୟ କିନ୍ତୁ ରହିଛି ଅକୁଣ୍ଠ ସମର୍ଥନ ସଂତ୍ରାସବାଦୀ ମାନଙ୍କ ପାଇଁ । ଏଇପରି ବହୁ ପ୍ରାକ୍ତନ ସଂତ୍ରାସବାଦୀ, ବିପ୍ଳବୀମାନଙ୍କୁ ମୁଁ ଦେଖିଛି ବହୁ ବଡ଼ ବଡ଼ କମ୍ପାନୀ ମାନଙ୍କରେ ଡିରେକ୍ଟର, ମ୍ୟାନେଜର ପ୍ରଭୃତି ଉଚ୍ଚ ପଦବୀରେ । ବ୍ରଜେନ ପାଲ୍ ସହିତ ସଖ୍ୟ ଥିଲା ମୋମିନଙ୍କର ଆଗରୁ । ସେଇ ଯୋଗୁଁ ମୋମିନ୍ଙ୍କର ସ୍ତ୍ରୀ ଆସି ରହୁଥିଲେ ବାରିପଦାରେ ଅନେକ ସମୟରେ । ଅବଦୁଲ ମୋମିନ ଏହିଠାରେ ହିଁ ଆତ୍ମପ୍ରକାଶ କଲେ ଏବଂ କିଛି କାଳ ପ୍ରତ୍ୟକ୍ଷ ରାଜନୀତିରୁ ଦୂରେଇ ନେଲେ ନିଜକୁ । ଏ ଖବର ପାଇଥିଲେ ପଶ୍ଚିମବଙ୍ଗର ସରକାର । କିନ୍ତୁ ଚାଲାକ ଡାକ୍ତର ବିଧାନଚନ୍ଦ୍ର ରାୟ ଜାଣିଶୁଣି ଆଉ କୌଣସି ପଦକ୍ଷେପ ନେଲେ ନାହିଁ ମୋମିନଙ୍କ ବିରୁଦ୍ଧରେ । ଜଣେ ବିରୋଧୀ ତ କମିଲା ପଶ୍ଚିମବଙ୍ଗରୁ । ଆଉ ତା' ଉପରେ ହାତ ମାରି ତାକୁ ସକ୍ରିୟ କରିବାରେ କଣ ଲାଭ ମିଳିବ ?

ଅବଦୁଲ ମୋମିନ୍ ରହିଗଲେ ବାରିପଦାରେ । ବ୍ରଜେନ ପାଲଙ୍କର ପରଲୋକ ହୋଇଯାଏ ଏବଂ ତାଙ୍କର ଉଇଲ ଅନୁଯାୟୀ ମୋମିନ୍ ହିଁ ଉତ୍ତରାଧିକାରୀ ହୁଅନ୍ତି ତାଙ୍କ ସମ୍ପତ୍ତିର । କିନ୍ତୁ ସେତେବେଳକୁ ବ୍ୟବସାୟ ଆଉ ନ ଥିଲା ବେଶୀ ।

ଅବଦୁଲ ମୋମିନ୍ ପରେ ସକ୍ରିୟ ହେଲେ ରାଜନୀତିରେ । ଥରେ ସେ ନିର୍ବାଚନରେ ଠିଆ ହୋଇଥିଲେ ମଧ୍ୟ । ମୁଁ ପଚାରିଲି, ଦାଦା, ଆମେ ଜିତିବା ବାରିପଦା ନିର୍ବାଚନ ମଣ୍ଡଳୀରୁ ? ସେ ପଚାରିଲେ କିମିତି ଜିତିବା ? ମୁସଲମାନ୍‌ଙ୍କ ଆଗରେ ମୁଁ କାଫେର କାରଣ ମୁଁ କୋରାନ୍ ପଢ଼େନା, ନମାଜ ପଢ଼େନା, ମସ୍‌ଜିଦ୍ ଯାଏନା, ମୋର ସ୍ତ୍ରୀ ହିନ୍ଦୁ ଏବଂ ମୋତେ ବିବାହ କଲା ପରେ ତାର ହିନ୍ଦୁତ୍ୱ ଅତୁଟ ରହିଛି । ହିନ୍ଦୁ ମାନଙ୍କ ଆଖିରେ ମୁଁ ମୁସଲମାନ୍ ଏବଂ ଗୋଟାଏ ହିନ୍ଦୁ ରମଣୀକୁ ମୁସଲମାନ କରି ଦେଇଛି । ଏବଂ ଦୁର୍ଭାଗ୍ୟବଶତଃ ନିର୍ବାଚନ ମଣ୍ଡଳୀ ହିନ୍ଦୁ ଓ ମୁସଲମାନ ମାନଙ୍କ ଭିତରେ ହିଁ ବିଭକ୍ତ । ଅବଦୁଲ ମୋମିନ୍‌ଙ୍କ ସ୍ତ୍ରୀ ହିନ୍ଦୁ । ଦେଖାଯାଆନ୍ତି ବିବାହିତା ହିନ୍ଦୁ ରମଣୀ ଭଳି ।

ଅବଦୁଲ ମୋମିନ୍ ପଶ୍ଚିମବଙ୍ଗ କମ୍ୟୁନିଷ୍ଟ ପାର୍ଟିର ନେତା ଛଡ଼ା ଶ୍ରମଜୀବୀ ଶ୍ରେଣୀର ନେତା ଥିଲେ । ପଶ୍ଚିମବଙ୍ଗର ଶକ୍ତିଶାଳୀ ଟ୍ରେଡ୍ ୟୁନିୟନ୍ କଂଗ୍ରେସର ମହାଯୋଦ୍ଧା ଅବଦୁଲ ମୋମିନ୍ । ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟିର ନେତା ମୋମିନ୍ ପାର୍ଟି ବିଭାଜନ ପରେ ସି.ପି.ଆଇ. ରେ ରହିଗଲେ । ବଙ୍ଗଳା, ବିଶେଷତଃ କଲିକତା ସହରରେ କମ୍ୟୁନିଷ୍ଟ ପ୍ମାର୍ଟି, ଟ୍ରେଡ୍ ୟୁନିୟନ୍‌ମାନଙ୍କର ପ୍ରଭାବ ବହୁକାଳୁ ଉପଲବ୍ଧ । କିନ୍ତୁ ମୋମିନ୍ ଏବଂ ତାଙ୍କର ସହକର୍ମୀ ମାନେ ନିର୍ବାଚନ ପ୍ରତି ଗୁରୁତ୍ୱ ଦେଇ ନାହାନ୍ତି କଦାପି । ତତ୍‌କାଳୀନ ବାମପନ୍ଥୀ ଆନ୍ଦୋଳନର ପ୍ରମୁଖ ନେତାମାନଙ୍କର ଏଇପରି ଏକ ଗୁଣ ଥିଲା । ନିର୍ବାଚନରେ ଠିଆ ହେବାକୁ ସେମାନେ ପସନ୍ଦ କରୁ ନ ଥିଲେ । ସେଥିପାଇଁ ଦ୍ୱିତୀୟ ଧାଡ଼ିର ନେତାମାନଙ୍କୁ ମନୋନୀତ କରୁଥିଲେ । ସଂଗ୍ରାମକୁ ଛାଡ଼ି ଖାଲି ବିଧାନ ସଭାରେ ବସି ବକ୍ତୃତା ଦେବାକୁ ସେମାନେ ଚକ୍ଷୁ କୁଟିବା ବୋଲି ମନେ କରୁଥିଲେ । ବଙ୍ଗଳାରେ ଡାକ୍ତର ବିଧାନ ଚନ୍ଦ୍ର ରାୟଙ୍କର ପ୍ରଭାବ ବିଶାଳ ଏବଂ ତାକୁ ସମ୍ମୁଖୀନ ହେବା ତାକୁ ଆହ୍ୱାନ ଦେବା ପାଇଁ ପଶ୍ଚିମ ବଙ୍ଗର ଟ୍ରେଡ ୟୁନିୟନ୍‌ମାନେ ସେଇପରି ଶକ୍ତିଶାଳୀ । ତାହାରି ନାୟକ ଥିଲେ ଅବଦୁଲ ମୋମିନ୍ ।

ମୋମିନ୍ ଆଉ ନାହାନ୍ତି । ହୁଏତ ଆଉ ଗୋଟାଏ ଦୁଇଟା ଦଶନ୍ଧି ପରେ ମୋମିନ୍ ହଜିଯିବେ ବିସ୍ମୃତିର ଗର୍ଭରେ । କାରଣ ଆପଣାର ସ୍ମୃତି ପାଇଁ ସେ କୌଣସି ସନ୍ତକ ଛାଡ଼ି ଯାଇ ନାହାନ୍ତି । ଛାଡ଼ି ଯାଇଛନ୍ତି ତାଙ୍କର ଅଗଣିତ ସହକର୍ମୀଙ୍କୁ ଆପଣାର ତ୍ୟାଗ ଓ ନିଷ୍ଠାରେ ଅନୁପ୍ରାଣିତ କରି, ଉଦ୍‌ବୁଦ୍ଧ କରି । କିନ୍ତୁ ସମୟର କରାଘାତରେ ସେମାନେ ସେ ସ୍ମୃତିକୁ ଉତ୍ତରପୀଢ଼ି ପାଇଁ ରଖି ପାରିବେ ତ ?



# ଜୀବନର ଶେଷ ଗୋଲ

ଭୈରବ ବାବୁ ଓ ମୁଁ ଯାଇ ପହଞ୍ଚିଲୁ ଡାକ୍ତରଖାନାରେ । ସୁକୁମାର ସେନ୍ (ବାଦଲ) ବି ପହଞ୍ଚି ଯାଇଛନ୍ତି ଘନିଷ୍ଠ ବନ୍ଧୁଙ୍କ ଶେଷ ଦର୍ଶନ ଲାଗି । ବିଛଣାରେ, ନର୍ସିଂହୋମର ବିଛଣାରେ ଶୋଇ ଯାଇଛନ୍ତି ଓଡ଼ିଶାର ଫୁଟ୍‌ବଲ୍ ଖେଳର ପ୍ରବାଦ ପୁରୁଷ ଅବଦୁଲ ମଜିଦ୍ (ବଚନ) । ସେ ଓଡ଼ିଶା ଫୁଟ୍‌ବଲର ପ୍ରବାଦ ପୁରୁଷ । ତାଙ୍କର ଫୁଟ୍‌ବଲ ଖେଳର ପ୍ରତିଭା ଜଣା ପଡ଼ିଥିଲା ସ୍କୁଲ ଜୀବନରୁ, ସୟଦ୍ ସେମିନାରୀରୁ । ତାଙ୍କର ପ୍ରଧାନ ଶିକ୍ଷକ ତାଙ୍କର ଶିକ୍ଷା ଗୁରୁ ଯେପରି କ୍ରୀଡ଼ା ଗୁରୁ ସେଇପରି । ଆମେ ସବୁ କଲେଜକୁ ଆସିଲାବେଳକୁ (୧୯୪୬-୪୭) ତାଙ୍କର ଅସଲ ନାମ ଅବ୍ଦୁଲ ମଜିଦ୍ ହଜି ଗଲାଣି । ସେ ବର୍ତ୍ତମାନ ବଚନ ନାମରେ ପରିଚିତ । ଫୁଟ୍‌ବଲ ଖେଳର ଯେ ଖେଳାଳି ନୁହନ୍ତି । ସେ ଆର୍ଟିଷ୍ଟ । ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ପେଲେଙ୍କ ଭଳି । ସେ ବ୍ୟାକ ଏରିଆରୁ ବଲ ଟାଣି ନେଇ ପାରିବେ ନାହିଁ । ସେ କାମ ଗୋପାଳ ଦାସଙ୍କର । ସେ ବଲ୍ ଟାଣି ନେଇ ଗୋଲ ଦେଇ ପାରିବେ ନାହିଁ । ସେ କାମ ଉପେନ୍ଦ୍ର ଗୁରୁଙ୍କର । କିନ୍ତୁ ବ୍ୟାକ ଯଦି ତାଙ୍କୁ ଫରୱାର୍ଡ଼ ଲାଇନ୍‌ରେ ବଲ୍ ଯୋଗାଇ ଦେଇ ପାରିଲା ତା ହେଲେ ଗୋଲ ନିଶ୍ଚିତ । ସେ ଦୁଇ ଗୋଡ଼ରେ ଅକ୍ଲେଶରେ ଖେଳି ପାରନ୍ତି । ଗୋଡ଼ର ଦୁଇ ପାଖରେ ମଧ ଖେଳି ପାରନ୍ତି । ସୁତରାଂ ପ୍ରତିପକ୍ଷକୁ ଚାରୋଟି ପଏଣ୍ଟ ପାଇଁ ସଜାଗ ରହିବାକୁ ପଡ଼େ । ବଲ୍ କେଉଁ ଦିଗକୁ ଯିବ, ବଲ୍ କେଉଁ ପଟରୁ ଗଡ଼ି ସ୍କୋର ହେବ ତାହା ପ୍ରତିପକ୍ଷ ଜାଣିପାରେ ନାହିଁ । ଅନେକ ବିଚକ୍ଷଣ ଗୋଲକିପର ମଧ ଚକିତ ହୋଇଛନ୍ତି । ବଲ୍ ଗୋଟାଏ ପଟରୁ ଆସିବାକୁ କଳନା କଲାବେଳକୁ ଆର ପଟରେ ବଲ୍ ଯାଇ ଗୋଲ୍ ନେଟ୍‌ରେ ବାଜିଲାଣି । ଏଇପରି ହତବାକ୍ ହୋଇ ଯାଇଥିଲେ ପ୍ରସିଦ୍ଧ ଭାବାନୀପୁର ଗୋଲ ରକ୍ଷକ ଟିମ୍ । ମହମଡାନ୍ ସ୍ପୋର୍ଟିଂର ପୋଖତ ସେଣ୍ଟର ଫରୱାର୍ଡ଼ ବଚନଙ୍କ ଦ୍ୱାରା । କିନ୍ତୁ ସେ ଫାଉଲ କରନ୍ତି ନାହିଁ ବା ଫାଉଲ କଲେ ଖେଳି ବି ପାରନ୍ତି ନାହିଁ । ଖେଳାଳୀମାନଙ୍କର ସ୍ୱାଭାବିକ ରୁକ୍ଷତା ବା ଟେମ୍ପର ତାଙ୍କର ନ ଥିଲା । ପଡ଼ିଆ ଭିତରେ ଏବଂ ବାହାରେ ଉଭୟରେ ସେ ଥିଲେ ଶାନ୍ତ, ମଧୁର ଏବଂ କମ୍ପୋଜଡ୍ । ପଡ଼ିଆରେ କେବେ ରୁକ୍ଷ ହେବା ବା ନିଜର ଟେମ୍ପର ହରାଇବା କେହି ଦେଖି ନାହାନ୍ତି । ସେ ରେଭେନ୍ସା କଲେଜର ଛାତ୍ର । ବୋଧହୁଏ ପର୍ସିଆନ୍ ଅନର୍ସ ଥିଲା ତାଙ୍କର । ସେ କଲେଜ ଛାତ୍ରମାନଙ୍କର ହିରୋ ଥିଲେ ଏବଂ କଲେଜ ଛକର ବି ହିରୋ ଥିଲେ । ମଦନା (ମଦନ ବେହରା କଲେଜ କ୍ୟାବିନ ନାମକ ମିଠା ଦୋକାନୀ) ଥରେ ଗାଳି ଦେଲା ତାଙ୍କୁ ବେଶ୍ କଡ଼ା ଭାଷାରେ । ସେ କଣ ଗୋଟାଏ ଖେଳରେ ଭଲ ଖେଳିପାରି ନଥାନ୍ତି ବୋଲି । ସେ ଚୁପ୍ ହୋଇ ଶୁଣିଲେ । ସେଇଦିନ ବି ଗୋଟାଏ ମ୍ୟାଚ୍ ଥିଲା । ବଚନ ଭଲ ଖେଳିଲେ, ତା ପରଦିନ ଦେଖିଲି ମଦନା ତାଙ୍କୁ ଓ ତାଙ୍କର ଟିମ୍‌ର ସଭ୍ୟମାନଙ୍କୁ ଖୁଆଉଚି ମିଠା ।

ମଦନା, ଓରଫ ମଦନ ବେହେରା ରେଭେନ୍ସା କଲେଜ ଛକର ଏକ ଅନୁଷ୍ଠାନ, ଇତିହାସ । ରେଭେନ୍ସା କଲେଜ ଟିମ୍ ଭଲ ଖେଳିଲେ, ଜିତିଲେ ମଦନା ଦୋକାନର ସବୁ ମିଠା ସେଦିନର ସେମାନଙ୍କ ପାଇଁ । ଭଲ ନ ଖେଳିଲେ ମଦନା ଠାରୁ ଗାଳି ଏପରିକି ଚାପୁଡ଼ା ଖାଆନ୍ତି ଖେଳାଳୀମାନେ । କେହି ତାହାର ପ୍ରତିବାଦ କରନ୍ତି ନାହିଁ କାରଣ ରେଭେନ୍ସା କଲେଜ ବିଶେଷତଃ ତାହାର ଖେଳାଳୀମାନଙ୍କ ପ୍ରତି ମଦନାର ଦରଦ ସମସ୍ତେ ଜାଣନ୍ତି ।

ବଚନ ଖେଳନ୍ତି ସେଣ୍ଟର ଫରୱାର୍ଡ଼ରେ । ବଚନ ସମସ୍ତଙ୍କର ବ୍ଲୁ ଆଇଡ୍ ବୟ । ସ୍ୱାଭାବିକ । ତତ୍‌କାଳୀନ ପ୍ରବଳ ଶକ୍ତିଶାଳୀ ଇଷ୍ଟବେଙ୍ଗଲ ଏବଂ ମୋହନବାଗାନ୍ ଦଳ ବିରୁଦ୍ଧରେ ତାଙ୍କର ଗୋଲ ସମସ୍ତଙ୍କର ଚର୍ଚ୍ଚାର ବିଷୟ ।

ବଚନ ଶୋଇ ଯାଇଛନ୍ତି ଶଯ୍ୟା ଉପରେ, ନର୍ସିଂ ହୋମରେ । ତାଙ୍କର ଶବ ଶୋଭାଯାତ୍ରାର ପଥ ଠିକ୍ କରୁଛନ୍ତି ନିଜେ ଭୈରବଚନ୍ଦ୍ର ମହାନ୍ତି । ବଚନଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇବା ପାଇଁ ଅନ୍ୟମାନଙ୍କ ଭିତରେ କମ୍ୟୁନିଷ୍ଟ ପାର୍ଟି ଏବଂ କଂଗ୍ରେସ ଦଳର କିଛି ନେତୃସ୍ଥାନୀୟ ବ୍ୟକ୍ତି ପହଞ୍ଚିଛନ୍ତି । ସେମାନେ ଆସିଛନ୍ତି କେବଳ ପ୍ରସିଦ୍ଧ ଫୁଟ୍‌ବଲ୍ ଖେଳାଳୀ ବଚନଙ୍କ ପାଇଁ ନୁହେଁ, ସ୍ୱାଧୀନତା ସଂଗ୍ରାମରେ ତାଙ୍କର ପରିବାରର ଏବଂ ବଚନଙ୍କର ଅବଦାନ ପାଇଁ । ସ୍ୱାଧୀନତା ସଂଗ୍ରାମ ସମୟରେ ପଳାତକ ନେତାମାନେ ବଚନଙ୍କ ଘରେ ରହୁଥିଲେ ଏବଂ ବାଳକ ବଚନ ସେମାନଙ୍କର ଚିଠିପତ୍ର ଗୁପ୍ତରେ ନେବା ଆଣିବା କରୁଥିଲେ । ସାମ୍ରାଜ୍ୟବାଦ ଏକ ପଟରେ ଏବଂ ଆରପଟରେ ମୁସଲିମ୍ ଲିଗ୍‌ର ଭାରତୀୟ ମୁସ୍‌ଲିମ୍ ମାନଙ୍କୁ ସାମ୍ପ୍ରଦାୟିକ ଆହ୍ୱାନ ବଚନଙ୍କ ପରିବାରକୁ ବିଭ୍ରାନ୍ତ କରିପାରି ନ ଥିଲା । ଅଭ୍ରାନ୍ତ ଭାବରେ ସେମାନେ ଭୟାନକ ବିପଦକୁ ମୁଣ୍ଡରେ ନେଇ କାମ କରି ଚାଲିଥିଲେ । ସେଇ କଥାକୁ ସ୍ମରଣ କରୁଥିଲେ ସେମାନେ ଲୋତକାଶ୍ରୁରେ ।

ବଚନଙ୍କୁ ଦେଖିବା ପାଇଁ ରେଭେନ୍ସା କଲେଜ ତଥା ଅନ୍ୟାନ୍ୟ ଟିମ୍ ମାନଙ୍କ ପୁରାତନ ଖେଳାଳୀ ମାନେ ରେଭେନ୍ସା କଲେଜର ପୁରାତନ ଛାତ୍ର । ମୋ ଭଳି ବହୁ ବ୍ୟକ୍ତିମାନେ ପହଞ୍ଚିଛନ୍ତି ସ୍ମରଣା କରୁଛୁ ବଚନଙ୍କୁ । କେବଳ ଫୁଟବଲ୍ ଖେଳାଳୀ ବଚନଙ୍କ ଖେଳ ପାଇଁ ନୁହେଁ ତାଙ୍କର ଓଡ଼ିଆ ଜାତି ପ୍ରତି ଦରଦ ପାଇଁ ମଧ୍ୟ । ସେ ପୁଲିସ ଅଫିସର । ୧୯୫୬ ମସିହା, ସୀମା ଆନ୍ଦୋଳନ, ଦେଶ ଦୁଲୁକୁଛି । ଓଡ଼ିଆ ଜାତି ଆତ୍ମହରା ହୋଇଛି । ହାତରେ ଗିରଫ ଦାରୀ ପରୱାନା । ସେ ପହଞ୍ଚିଲେ ରେଡ଼ିଓ ଷ୍ଟେସନ୍‌ରେ । ମୋତେ ଡାକିଲେ ପାଖକୁ । ମୋ ହାତରେ ଗିରଫଦାରୀ ପରୱାନା । ତାକୁ ଜାରି କରିବା ପୂର୍ବରୁ ତମେ ଚାଲିଗଲେ ଭଲ ହୁଅନ୍ତା । ଅନେକ ନେତା ଗିରଫ ହୋଇ ସାରିଲେଣି । ସମସ୍ତେ ଗିରଫ ହେଲେ ଆନ୍ଦୋଳନ ଚାଲିବ କିପରି ? ମୁଁ ଖସି ଚାଲି ଯାଇଥିଲି ଏବଂ ଆନ୍ଦୋଳନ ଶେଷ ପର୍ଯ୍ୟନ୍ତ ପୁଲିସ୍ ମୋତେ ଧରିବାକୁ ସକ୍ଷମ ହୋଇ ନ ଥିଲେ । ସେଇ ଆନ୍ଦୋଳନ ଭିତରେ । ପୁଲିସ୍ ଅଫିସର କିନ୍ତୁ ଉଦଗ୍ର ଜାତୀୟ ପ୍ରୀତି ।

ବଚନ ପୋଲିସ୍ ଅଫିସର ହୋଇଥିଲେ । ଭାବିଥିଲେ ଖେଳ ପାଇଁ ଖେଳର ସଂଗଠନ ପାଇଁ ସୁଯୋଗ ମିଳିବ । ଜଣେ ଉଚ୍ଚ ପଦସ୍ଥ ପୋଲିସ୍ ଅଫିସର କିନ୍ତୁ କହିଲେ ଯେ ତୁମକୁ

ତୁମର ଖେଳ ଏବଂ ତୁମର କ୍ୟାରିଅର ଭିତରେ ଗୋଟିକୁ ବାଛିବାକୁ ପଡ଼ିବ । ନୈରାଶ୍ୟ ଖେଳିଥିଲା ତାଙ୍କ ମନରେ । ଫୁଟବଲ ଖେଳର କ୍ୟାରିଅର ସରି ଆସିଥିଲା । ସେ ଖେଳକୁ ବିଦାୟ ନେଲେ । କେତେଦୂର ସଫଳ ପୋଲିସ ଅଫିସର ହୋଇ ପାରିଲେ ତାହା କହିହେବ ନାହିଁ । କାରଣ ଗଂଜାମ ଜିଲ୍ଲାର ଏସ୍.ପି. ଥିଲାବେଳେ ହିଁ ସେ ଅସୁସ୍ଥ ହେଲେ ଏବଂ ତାଙ୍କର ଜୀବନର ଅବସାନ ହେଲା ।

ବଚନଙ୍କର ମର ଶରୀରକୁ ନେଇ ଶୋଭାଯାତ୍ରା ବାହାରିଛି । ବାରବାଟୀ ଷ୍ଟାଡିୟମ । ସେତେବେଳେ ଷ୍ଟାଡିୟମ ନ ଥିଲା, ତାଙ୍କର ସାଫଲ୍ୟର ତୁଙ୍ଗ ଶିଖରୀତୃଙ୍ଗ ସମୟରେ । କିନ୍ତୁ ଏଇ ପଡ଼ିଆସିଥିଲା । ଏଇ ସବୁଜ ପ୍ରାନ୍ତର ଦେଖିଛି ତାଙ୍କର କ୍ରୀଡ଼ା କୌଶଳ । ଆଜି ତାଙ୍କର ଜୀବନର ଶେଷ ଗୋଲ । ଆଉ ଗୋଲ ଦେବାକୁ ପଡ଼ିବ ନାହିଁ । କିନ୍ତୁ

When the great scorer comes
to write against your name,
He is writes not whether you won or lost
but now you played the game.

ବଚନ ଖେଳିଛନ୍ତି ଜୀବନ ସାରା ଖେଳିଛନ୍ତି ଖେଳାଳୀ ଭଳି । ଜୀବନରେ ବା ଖେଳରେ ଫାଉଲ କରି ନାହାନ୍ତି । ଆଜି ତାଙ୍କର ଶେଷ ସ୍କୋର । ଏହାପରେ ସେ ଇତିହାସ । ଜବାହାରଲାଲ କହିଥିଲେ - Play the game in the spirit of the game. ବଚନ ସେଇ ଖେଳୁଆଡ଼ ସ୍ପିରିଟ୍‌ରେ ଖେଳିଛନ୍ତି, ପଡ଼ିଆରେ ଓ ଜୀବନରେ ।



# ଆମ ଝିଅର ପରଲୋକ

ମଇ ୨୬, ୧୯୯୬ । ଜବାହାରଲାଲ ନେହେରୁଙ୍କ ତିରୋଧାନ ବାର୍ଷିକୀ ଉତ୍ସବ ପାଳିତ ହେଉଛି ସାରା ଭାରତରେ । ଏପରିକି ଯେଉଁମାନେ ଜବାହାରଲାଲଙ୍କ ଗଣତାନ୍ତିକ ମୂଲ୍ୟବୋଧକୁ ବଳି ଦେଇ ସାରିଛନ୍ତି ସେମାନେ ମଧ୍ୟ ଉଚ୍ଚ ସ୍ୱରରେ ପଣ୍ଡିତ ନେହେରୁଙ୍କର ସ୍ମୃତି ଚାରଣ କରୁଥିଲେ । ସେଇ ରବିବାର ଅପରାହ୍ନରେ ନୂଆ ଦିଲ୍ଲୀରେ ୮୭ ବର୍ଷ ବୟସରେ 'ତରୁଣୀ' ଅମୀୟା ରାଓଙ୍କର ପରଲୋକ ହୋଇଗଲା ସଂକ୍ଷିପ୍ତ ଅସୁସ୍ଥତା ଭିତରେ । ବିଗତ ଗଲା ବେଶ୍ କିଛି ଦିନ ହେବ ସେ ବିଭିନ୍ନ ରୋଗରେ ପୀଡ଼ିତ ହୋଇଥିଲେ, ତଥାପି ତାଙ୍କର ଜଣେ ଗବେଷକ, ଜଣେ ଶିକ୍ଷାବିତ୍ ଭାବରେ ଅଦ୍ୟମ ଉତ୍ସାହରେ ଭଟ୍ଟା ପଡ଼ି ନ ଥିଲା । ନାଗରିକ ସ୍ୱାଧୀନତାର ଏଇ ବିରାଟ ବାବଦୂକ ମୃତ୍ୟୁ ପର୍ଯ୍ୟନ୍ତ ଲଢ଼ାଇ କରି ଚାଲିଥିଲେ ଗୋରା ବିରୁଦ୍ଧରେ ଏବଂ ନାଗରିକ ସ୍ୱାଧୀନତାକୁ ଖର୍ବ କରିବା ପାଇଁ ସବୁ ପ୍ରକାର ଉଦ୍ୟମ ବିରୁଦ୍ଧରେ । ଅବହେଳିତ,ଦଳିତ ମଣିଷ ପାଇଁ ତାଙ୍କର ସଂଗ୍ରାମ ଅବ୍ୟାହତ ରହିଥିଲା ଏବଂ ମୃତ୍ୟୁର ଛାୟା ତାଙ୍କର ସେଇ ସଂଗ୍ରାମକୁ ଆଚ୍ଛନ୍ନ କରି ପାରିନଥିଲା । ମାତ୍ର ତିନିମାସ ପୂର୍ବରୁ ସେ ଧର୍ମନିରପେକ୍ଷତା ପାଇଁ କାର୍ଯ୍ୟ କରୁଥିବା ଅନ୍ୟାନ୍ୟ କର୍ମୀମାନଙ୍କ ସହ ଦିଲ୍ଲୀର ମହାରାଷ୍ଟ୍ର ସଦନ ଆଗରେ ଧାରଣାରେ ବସିଥିଲେ ଶ୍ରୀକୃଷ୍ଣ କମିଶନର ପୁନର୍ବା ହାଲ କରିବା ପାଇଁ । ଦିଲ୍ଲୀ ନାଗରିକମାନଙ୍କର ଏକ ପ୍ରତିନିଧି ଦଳର ନେତୃତ୍ୱ ନେଇ ସେ ଦିଲ୍ଲୀରେ ଥିବା ମହାରାଷ୍ଟ୍ର କମିଶନରଙ୍କୁ ଭେଟିଥିଲେ । ବମ୍ବେ ଦଙ୍ଗାର ତଦନ୍ତ ପାଇଁ ଗଠିତ ହୋଇଥିବା ଶ୍ରୀକୃଷ୍ଣ କମିଶନକୁ ପୁଣିଥରେ କାର୍ଯ୍ୟ କରିବାକୁ ଅନୁମତି ଦେବା ସକାଶେ । କିନ୍ତୁ ଆହା ! ସେ ତଦନ୍ତର ଫଳାଫଳ ଦେଖିବାକୁ ସେ ଆଉ ନାହାନ୍ତି ।

ଡିସେମ୍ବର ୧୨, ୧୯୧୯ରେ କଟକ ସହରରେ ଅମୀୟା ଦେବୀଙ୍କର ଜନ୍ମ । ଅମୀୟ ଦେବୀ ୧୯୪୨ରେ ପ୍ରତିଷ୍ଠିତ ବ୍ରହ୍ମପୁର ମହିଳା କଲେଜର ପ୍ରତିଷ୍ଠାତା ପ୍ରିନ୍ସିପାଲ । ତା ପରେ କିଛି ବର୍ଷ କଲିକତା ବିଶ୍ୱବିଦ୍ୟାଳୟରେ ସେ ଇଂରାଜୀ ସାହିତ୍ୟରେ ଅଧ୍ୟାପନା କରିଛନ୍ତି । ତୃତୀୟ ଦଶକରେ ପ୍ରସିଦ୍ଧ ଆଇ.ସି.ଏସ୍. ଅଫିସର ଶ୍ରୀ ବି.ବି. ରାଓଙ୍କୁ ବିବାହ କରିଥିଲେ । ନାରୀ ଶିକ୍ଷାର ସେ ହେଉଛନ୍ତି ଅନ୍ୟତମ ପାଇଓନିଅର । ସ୍ୱାମୀ ସହିତ ସେ ଇନ୍ଦୋର ଏବଂ ଗ୍ୱାଲିଅରରେ ଥିବାବେଳେ ସେ ମହିଳା ମାନଙ୍କର ସମବାୟ ସମିତି ପ୍ରତିଷ୍ଠା କରିଥିଲେ । କୁଟୀର ଶିଳ୍ପରେ ମହିଳାମାନଙ୍କ ଦ୍ୱାର ଉତ୍ପାଦିତ ହେଉଥିବା ସାମଗ୍ରୀ ମାନଙ୍କର ମୁଖ୍ୟ ସମସ୍ୟା ମାର୍କେଟ ସୃଷ୍ଟି କରିବାରେ ଏହି ସମବାୟ ସଂସ୍ଥାଗୁଡ଼ିକ ଅଗ୍ରଣୀ ଭୂମିକା ଗ୍ରହଣ କରୁଥିଲା ।

ପରବର୍ତ୍ତୀ କାଳରେ ଅମୀୟା ଦେବୀ ପଞ୍ଜାବ ଏବଂ କାଶ୍ମୀରରେ ମାନବିକ ଅଧିକାର ସୁରକ୍ଷା ପାଇଁ ସକ୍ରିୟ ହୁଅନ୍ତି । ବିଭିନ୍ନ ଖ୍ୟାତିସମ୍ପନ୍ନ ପତ୍ର ପତ୍ରିକାରେ ତାଙ୍କର ଲେଖା ସବୁ

ଧାରାବାହିକ ଭାବରେ ପ୍ରକାଶିତ ହୁଏ ଏବଂ ତାଙ୍କୁ ମାନବିକ ଅଧିକାରର ଜଣେ ପ୍ରମୁଖ ବାବଦୂକରେ ପରିଣତ କରେ । ଯେତେ ନିଷ୍ଠୁର, ଅପ୍ରୀତିକର ହେଉନା କାହିଁକି ସତ୍ୟକୁ ପ୍ରକାଶ କରିବାରେ ସେ ତିଳେ ହେଲେ ଦ୍ୱିଧା ପ୍ରକାଶ କରୁ ନ ଥିଲେ । ଗଭୀର ମାନବିକତାରେ ରସାଣିତ ଅମୀୟା ଦେବୀଙ୍କର ନିର୍ଭୟ ଚରିତ୍ର ଥିଲା ତାହାର ପ୍ରତିଫଳନ ।

୧୯୯୨ ମସିହାରେ ଜାତୀୟ ଆନ୍ଦୋଳନର ବିସ୍ମୃତ ମହାରଥୀ ରାଧାରମଣ ମିତ୍ର ଏବଂ ଆପଣାର ଆଦ୍ୟ ଯୌବନରେ ଗାନ୍ଧିଜୀଙ୍କ ସହିତ ତାଙ୍କର ପ୍ରସିଦ୍ଧ ବିତର୍କର ଅବତାରଣା କରାଯାଇଥିଲା ସେଇ ଲେଖା ଗୁଡ଼ିକରେ । ସେଦିନ ଯୁବକ ରାଧାରମଣଙ୍କ ସହ ବିତର୍କ ପରେ ଜାତିର ଜନକ ଗାନ୍ଧିଜୀ ଲେଖିଥିଲେ ଯେ ''ଯେ ମୋ ପାଖକୁ ଆସିଥିଲେ କିଛି ଶିଖିବା ପାଇଁ, ସେ ମୋଠାରୁ କଣ ଶିଖିଲେ ମୁଁ କହିପାରିବି ନାହିଁ, କିନ୍ତୁ ସେ ମୋଠାରୁ ଯେତିକି ଶିକ୍ଷାଲାଭ କରି ନ ଥିବେ ମୁଁ ତାଙ୍କ ଠାରୁ ତାଠାରୁ ବେଶୀ ଶିକ୍ଷା ଲାଭ କରିଛି ।'' ଏଇ ତରୁଣ ବିପ୍ଳବୀଙ୍କର ବିଷୟରେ ଅମୀୟା ଦେବୀ ଲେଖିଥିଲେ ଯେ ''ରାଧାରମଣ ଆଉ ନାହାନ୍ତି । ମାତ୍ର ୩୯ ବର୍ଷ ବୟସରେ ତାଙ୍କର ପରଲୋକ ହୋଇଯାଇଛି । କିନ୍ତୁ ଏ ଭଳି ମଣିଷ ଆଉ ଜଣେ ମିଳିବେ ନାହିଁ ।'' ଏଇ ଶେଷ ଧାଡ଼ିଟି ଆଜି ଲେଖିକା ଅମୀୟା ଦେବୀଙ୍କ ପାଇଁ ପ୍ରଯୁଜ୍ୟ ।

ରାଧାରମଣଙ୍କୁ ଏ ଜାତି ଭୁଲିଗଲେ ଅକୃତଜ୍ଞତା ହେବ । ଠିକ୍ ସେଇପରି ଅମୀୟା ଦେବୀଙ୍କୁ ମଧ୍ୟ ଏ ଜାତି ଭୁଲିଯିବା ଅକୃତଜ୍ଞତା ହେବ । ''ନେହେରୁଙ୍କ ଛଅ ହଜାର ଦିନ'' ଏବଂ ''ନୀଳ ଦାନବ'' ପାଇଁ ସେ ବଞ୍ଚି ରହିବେ ଚିରକାଳ । ସମାଜ ଭିତରେ ଜମି ରହିଥିବା ଅଳନ୍ଧୁ, କଳଙ୍କ ଧୋଇବା ପାଇଁ ଯେତେବେଳେ ଉଦ୍ୟମ ହେବ ଆଜିଠାରୁ ବହୁବର୍ଷ ପରେ ମଧ୍ୟ ସେ ସ୍ମୃତ ହେବେ ସେତିକିବେଳେ । ଭାରତବର୍ଷର ବର୍ତ୍ତମାନ ରହିଥିବା ଦଳସବୁ ତାଙ୍କୁ ତୃପ୍ତ କରି ପାରି ନ ଥିଲା । ସେ ଖୋଜୁଥିଲେ ଏକ ନୂତନ ଦଳ, ନୂତନ ସ୍ୱୀକୃତି ନୂତନ ଅଙ୍ଗୀକାର ପାଇଁ ।

ଲୋକଙ୍କ ପାଇଁ ଭାରତବର୍ଷରେ ଜରୁରୀ ପରିସ୍ଥିତି ଘୋଷଣା ଥିଲା ଆତଙ୍କ ଜନକ ଏବଂ ଆହୁରି ଅନେକଙ୍କ ପାଇଁ ତାହା ଥିଲା ସଭ୍ୟତା, ଗଣତାନ୍ତ୍ରିକ ମୂଲ୍ୟବୋଧ ତଥା ମାନବିକ ଅଧିକାରର ଇତିହାସରେ ଏକ କଳଙ୍କିତ ଅଧ୍ୟାୟ । କ୍ଷମତା ପାଇଁ, ବ୍ୟକ୍ତିଗତ ଲାଳସା ପାଇଁ ମାନବିକ ଅଧିକାରର ଉଲଂଘନ, ଗଣତାନ୍ତ୍ରିକ ମୂଲ୍ୟବୋଧର ବଳିଦାନ ଅସହ୍ୟ । ଏଇଥିଲା ଜରୁରୀ ପରିସ୍ଥିତି ଘୋଷଣା ପରେ ଅମୀୟା ରାଓଙ୍କ ଉକ୍ତି । ଯଦିଓ ଇନ୍ଦିରାଙ୍କ ସହିତ ତାଙ୍କର ପରିଚୟ ଥିଲ ଘନିଷ୍ଠ ତଥାପି ବ୍ୟକ୍ତିଗତ ଘନିଷ୍ଠତା ପାଇଁ ସେ ନୀତିକୁ ବଳି ଦେଇ ନାହାନ୍ତି । ବ୍ୟକ୍ତି ଅପେକ୍ଷା ସମୂହ ହେଉଛି ବେଶୀ ଗୁରୁତ୍ୱପୂର୍ଣ୍ଣ ।

ଆପଣାର ଜୀବନରେ ଅମୀୟା ଦେବୀ ଏଇ କଥା ସୂଚାଇ ଦେଇ ଯାଇଛନ୍ତି, ଆମ ସମସ୍ତଙ୍କ ପାଇଁ ।



# ତୁମେ ମନେ ପଡ଼ ବନ୍ଧୁ ଆମ...

ପିଲାଦିନେ ସ୍କୁଲରେ ପଢ଼ିଲାବେଳେ ୰ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କର "ହିନ୍ଦୀ ସାହିତ୍ୟର କଥା ସମ୍ରାଟ ମୁନ୍‌ସୀ ପ୍ରେମଚନ୍ଦ" ପଢ଼ି ପ୍ରେମଚନ୍ଦଙ୍କ ପ୍ରତି ଆଗ୍ରହ ଜନ୍ମିଥିଲା । ଏକ ସାଧାରଣ ସ୍କୁଲ ଶିକ୍ଷକ କିନ୍ତୁ କି ଦୁରନ୍ତ ଶକ୍ତି, କି ସାହସ । ମୋ ଘରେ ମୁଁ ବାଦଶାହା, ତେଣୁ ମୁଁ ଖିଆଲ ବି କରିନାହିଁ କିଏ ଆମ ଘର ରାସ୍ତାରେ ଗଲା । ସେ ଯିଏ ହେଉନା କାହିଁକି । ସ୍କୁଲର ବଡ଼ ସାହେବଙ୍କୁ ତାଙ୍କର ଏଇ ଉତ୍ତର । ମୋର ଶିକ୍ଷକମାନଙ୍କ ମଧ୍ୟରେ ପ୍ରଖ୍ୟାତ ଚିତ୍ରଶିଳ୍ପୀ ୰ ଗୋପାଳ କାନୁନ୍‌ଗୋ ଏବଂ ଶ୍ରୀ ମନମୋହନ ପଟ୍ଟନାୟକ । ଦୁହେଁ ପ୍ରଗତିଶୀଳ ଚିନ୍ତାଧାରାର ବାହକ । ସେମାନେ କ୍ଲାସ୍‌ରେ ପାଠ୍ୟକ୍ରମ ପଢ଼ାନ୍ତି । ସନ୍ଧ୍ୟାରେ ସେମାନଙ୍କ ଘରେ ବସେ ଆସର । ଜାତୀୟ ଆନ୍ଦୋଳନରେ ଝାସ ଦେବାପାଇଁ ସମାଜବାଦୀ ଚିନ୍ତାରେ ଉଦ୍‌ବୁଦ୍ଧ କରିବା ପାଇଁ ସେମାନେ ଦିଅନ୍ତି ଉଦ୍‌ବୋଧନ । ସେତେବେଳେ ମଧ୍ୟ ସେମାନେ କହନ୍ତି ପ୍ରେମଚନ୍ଦଙ୍କ ଜୀବନ । ପ୍ରଗତିଶୀଳ ସାହିତ୍ୟ ପାଇଁ ତାଙ୍କର ଅବଦାନ ।

ପ୍ରେମଚନ୍ଦଙ୍କର ଜୀବନ ପ୍ରତି ଗଭୀର ମମତା ସୃଷ୍ଟି ହୋଇଥିଲା । କିନ୍ତୁ ତାଙ୍କୁ ଭେଟିବାର ସୁଯୋଗ ପାଇ ନାହିଁ । କିନ୍ତୁ ପ୍ରଗତିଶୀଳ ଏବଂ ସାମ୍ୟବାଦୀ ଆନ୍ଦୋଳନରେ ସାମିଲ ହେଲା ପରେ ଭେଟ ହେଲା ଅମୃତ ରାୟଙ୍କ ସହିତ । ଅମୃତ ରାୟ ପ୍ରେମଚନ୍ଦଙ୍କ ପୁଅ । ବାପାଙ୍କ ଭଳି ସାହିତ୍ୟିକ । କିନ୍ତୁ ସେତିକିରେ ସେ ତୃପ୍ତ ନୁହଁନ୍ତି । ସାମ୍ୟବାଦୀ ଆନ୍ଦୋଳନରେ ସେ ଜଣେ ସକ୍ରିୟ ଯୋଦ୍ଧା । ମେହନତୀ ମଣିଷ ପାଇଁ ଖାଲି ଉପନ୍ୟାସ ଲେଖିଲେ ଚଳିବ ନାହିଁ । ଆନ୍ଦୋଳନରେ ସାମିଲ ହେବାକୁ ପଡ଼ିବ । ୧୯୨୧ ମସିହାରେ ତାଙ୍କର ଜନ୍ମ । ଆଲାହାବାଦ ବିଶ୍ୱବିଦ୍ୟାଳୟରେ ପାଠ ପଢ଼ିଲାବେଳେ ସେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦିଅନ୍ତି ଏବଂ ବାପାଙ୍କ ପରି ସାମ୍ୟବାଦୀ ଚିନ୍ତାଧାରାରେ ଦୀକ୍ଷିତ ହୁଅନ୍ତି । ୧୯୩୮ ମସିହାରୁ ୧୯୪୩ ମସିହା ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟରେ ତାଙ୍କର ପାଠପଢ଼ା । କିନ୍ତୁ ସେତିକିବେଳେ ହିଁ ସେ ଶାଣିତ ହୋଇ ଯାଆନ୍ତି କଠୋର ସଂଗ୍ରାମରେ । କଲମରୁ ଝରେ ଉପନ୍ୟାସ, ଗଳ୍ପ । ପୁଣି ସେଇ କଲମରୁ ମଧ୍ୟ ଝରେ ଛାତ୍ର ଆନ୍ଦୋଳନ, ଶ୍ରମିକ ଆନ୍ଦୋଳନ ପାଇଁ ପୁସ୍ତିକା ପ୍ରଚାରପତ୍ର । ତାଙ୍କୁ ଦେଖିଲେ ମନେ ପଡ଼େ ମାକ୍‌ସିମ୍ ଗର୍କୀଙ୍କ ଠାରୁ ଆରମ୍ଭ କରି ସଜଦ୍ ଜହୀରଙ୍କ ପର୍ଯ୍ୟନ୍ତ, ଜୁଲିଅଟ୍ କ୍ୟୁରିଙ୍କ ଠାରୁ ଆରମ୍ଭ କରି ମକଦମ୍ ମହୀଉଦ୍ଦିନଙ୍କ ପର୍ଯ୍ୟନ୍ତ ଭାବୁକ, ଲେଖକ, ବୈଜ୍ଞାନିକଙ୍କୁ । ଚିନ୍ତା ଓ କାର୍ଯ୍ୟର ଅପୂର୍ବ ସମନ୍ୱୟ ।

୧୯୪୩ ମସିହାରୁ ଆରମ୍ଭ ହୁଏ ତାଙ୍କର କାର୍ଯ୍ୟ ଟ୍ରେଡ୍ ୟୁନିୟନ୍ ମାନଙ୍କରେ । ମେହନତୀ ମଜଦୁର ପାଇଁ ସଂଗ୍ରାମରେ ନିବେଦିତ ହୁଏ କଲମ । ସେ ଲେଖିଛନ୍ତି - ଉପନ୍ୟାସ, ବ୍ୟଙ୍ଗ

ସାହିତ୍ୟ, ସାହିତ୍ୟ ସମାଲୋଚନା, ଅନୁବାଦ । ସାହିତ୍ୟରେ ବହୁ ବିଭାବକୁ ସେ ଋଦ୍ଧିମନ୍ତ କରି ଚାଲନ୍ତି । ହିନ୍ଦୀ ସାହିତ୍ୟରେ ତାଙ୍କ କୃତି ଗଭୀର ଆଲେଖ୍ୟ ରଖିଯାଏ । ଗୋଟାଏ ହାତରେ କଲମ, ଆଉ ହାତରେ ହାତୁଡି । ମୁଁ ତାଙ୍କୁ ଦେଖିଚି ବହୁ ଶୋଭାଯାତ୍ରାରେ, ବହୁ ଟିଣ ବସ୍ତିରେ, ଆଲୋଚନା ଚକ୍ରରେ, ଶ୍ରମିକ ମାନଙ୍କର ବସ୍ତିରେ ସଭାରେ, ପୁଣି ଦେଖିଚି ତାଙ୍କୁ ସାହିତ୍ୟିକ ମାନଙ୍କର ସଭାରେ, ଶାନ୍ତି ଆନ୍ଦୋଳନର ବୈଠକରେ । ତାଙ୍କ ସାଙ୍ଗରେ କଥାବାର୍ତ୍ତା ହେଲେ ଉଦ୍ଦୀପନା ଜାତ ହୁଏ । ବାପା ପ୍ରେମଚନ୍ଦଙ୍କର ଜୀବନୀ ଲେଖନ୍ତି , ନାଁ ଦିଅନ୍ତି କଲମର ସିପାହୀ (କଲମ କି ସିପାହୀ) । ରବୀନ୍ଦ୍ର ନାଥଙ୍କର ରଚନାକୁ ସରଳ ହିନ୍ଦୀରେ ଅନୁବାଦ କରନ୍ତି, ସାଧାରଣ ହିନ୍ଦୀ ଭାଷାର ପାଠକ ମାନଙ୍କ ପାଇଁ । ସେକ୍ସପିଅରଙ୍କର 'ହାମ୍‌ଲେଟ୍'କୁ ଅନୁବାଦ କରନ୍ତି ହିନ୍ଦୀ ଭାଷାର ପାଠକ ମାନଙ୍କ  ପାଇଁ ।

ତାଙ୍କ ଭିତରେ ଏକ ଭିନ୍ନ ମଣିଷର ସନ୍ଧାନ ମିଳେ । ପାଣ୍ଡିତ୍ୟର ଅହମିକା ନାହିଁ, ବେଶଭୂଷାରେ ସରଳ । କିନ୍ତୁ କଣ୍ଠରେ, କଲମରେ ଅଗ୍ନି । ଦେଖାହେଲେ ସବୁବେଳେ ପଚାରିବେ ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକଙ୍କ ସଂପର୍କରେ । ପ୍ରଗତିଶୀଳ ଲେଖକ ସଂଘର ଜଣେ ସକ୍ରିୟ କର୍ମୀ ଭାବରେ ସେ ଗଢ଼ି ତୋଳନ୍ତି ଏଇ ଅନୁଷ୍ଠାନକୁ । ସାହିତ୍ୟ ଏକ ଆୟୁଧ ମୁକ୍ତି ପାଇଁ, ସାମ୍ୟବାଦ ପ୍ରତିଷ୍ଠା ପାଇଁ ଏକ ସୁନ୍ଦର ସୁଖୀ ସମାଜ ଗଢ଼ିବା ପାଇଁ । ସାହିତ୍ୟ ଏକ ନିରୁତା, ବନ୍ଧ୍ୟା ବିଷୟ ନୁହେଁ  । ଅମ୍ରିତ ରାୟଙ୍କ କଲମରୁ ଝରେ ଅମୃତ ।

ପ୍ରସିଦ୍ଧ ନାରୀକବି  ସୁଭଦ୍ରା କୁମାରୀ ଚୌହାନ୍‌ଙ୍କ କନ୍ୟା ସୁଧା ଚୌହାନ୍‌ଙ୍କ ସହିତ ତାଙ୍କର ବିବାହ ହୁଏ ୧୯୪୫ ମସିହାରେ । ଏହି ବିବାହ କ୍ଷୀର ସଙ୍ଗରେ ମଧୁପରି । ବିବାହ ବହୁ ବ୍ୟକ୍ତିଙ୍କର ଜୀବନରେ ମୋଡ଼ ଧାରାକୁ ବଦଳାଇ ଦିଏ । ଅନେକ ବନ୍ଧୁଙ୍କ କ୍ଷେତ୍ରରେ ସେଇଆ ଦେଖିଚି । କିନ୍ତୁ ଅମ୍ରିତ ରାୟ ରହିଛନ୍ତି ସେଇ ପରି ଅନମନୀୟ, ଶାଣିତ ଏବଂ ଯୋଦ୍ଧା । ପିଟିଆଇର ଭାଷା ଫିଚର ସର୍ଭିସର ଜଣେ ଧାରାବାହିକ ଲେଖକ ପ୍ରସିଦ୍ଧ ହିନ୍ଦୀ କବି ମହାଦେବୀଙ୍କର ସହକର୍ମୀ ଅମ୍ରିତ ରାୟ ସାଫଲ୍ୟର ପାହାଚରେ ଉଠିଛନ୍ତି ଉପରକୁ । କିନ୍ତୁ ରହିଯାଇଛନ୍ତି ସେଇପରି । ତାଙ୍କର ଉପନ୍ୟାସ "ବୀଜ" ଏକ ଅନବଦ୍ୟ ପ୍ରକାଶନ ।

ବୟସ ଅତିକ୍ରାନ୍ତ ହୋଇଛି । ସାତୋଟି ଉପନ୍ୟାସ, ବହୁ ଗଳ୍ପ, ବ୍ୟଙ୍ଗ ଲେଖା, ସାହିତ୍ୟ ସମାଲୋଚନା ତାଙ୍କର କଲମରୁ ଝରିଛି ଅବିରତ । ୧୯୪୭ ମସିହାରୁ ଦୀର୍ଘ ଦଶ ବର୍ଷ କାଳ ସେ ସଂପାଦନା କରନ୍ତି "ହଂସ" ପତ୍ରିକା । ହାୱାର୍ଡ଼ ଫାଷ୍ଟଙ୍କର ପ୍ରସିଦ୍ଧ ଉପନ୍ୟାସ 'ସ୍ପାର୍ଟାକସ୍' ଉପନ୍ୟାସର ଅନୁବାଦ ପାଇଁ ସେ ୧୯୫୭ ମସିହାରେ ଆୱାର୍ଡ ପାଆନ୍ତି । ୧୯୬୩ ମସିହାରେ ସାହିତ୍ୟ ଏକାଡେମୀ ତାଙ୍କୁ ସମ୍ମାନିତ କରନ୍ତି ପିତାଙ୍କର ଜୀବନୀ ପାଇଁ ।

୧୯୫୦ ମସିହା ଠାରୁ ବିଶ୍ୱଶାନ୍ତି ଆନ୍ଦୋଳନରେ ଜଣେ ସକ୍ରିୟ  ନେତା ଭାବରେ ସେ କାର୍ଯ୍ୟ କରନ୍ତି । ଶାନ୍ତି ଦରକାର କଲମ ପାଇଁ, ତୂଳୀ ପାଇଁ । କଲମ କାର୍ଯ୍ୟ କରେ ଶାନ୍ତି ପାଇଁ ।

ଗଲାବର୍ଷ ହଠାତ୍ ସେ ଏବଂ ତାଙ୍କର ସ୍ତ୍ରୀ ଦୁଇଦିନ ଭିତରେ ମସ୍ତିଷ୍କରେ ଷ୍ଟ୍ରୋକ୍ ହେତୁ ଅଚଳ ହୋଇପଡ଼ନ୍ତି । ଇମିତି ଘଟଣା ଆକସ୍ମିକ । କିନ୍ତୁ ମନେହୁଏ ଏହା କଣ ପ୍ରକୃତରେ

ଆକସ୍ମିକ ନାଁ ଅଭିପ୍ରେତ ?  ଏପ୍ରିଲ ୨୨, ୧୯୯୬ରେ ସ୍ତ୍ରୀଙ୍କର ପରଲୋକ ହୋଇଯାଏ । ଜୀବନର ସ୍ୱାଦ ହଜିଯାଏ । ଅମ୍ରିତ ଅପେକ୍ଷା କରନ୍ତି ତାଙ୍କ ପାଖକୁ ଯିବା ପାଇଁ ।

୧୯୯୬ ମସିହା ଅଗଷ୍ଟ ୧୪ । ସ୍ୱାଧୀନତା ଦିବସର ଉପକଣ୍ଠରେ । ଅମ୍ରିତ ଆଖିବୁଜି ଦେଲେ ଆପଣାର ପ୍ରିୟ ଆଲାହାବାଦ ସହରରେ । ଜୀବନର ଦୀପ ଲିଭିଗଲା । ଇତିହାସରୁ ଗୋଟାଏ ପୃଷ୍ଠା ଲେଉଟିଗଲା । ସେ ପାଲଟିଗଲେ ଇତିହାସ ।



# ଜ୍ୟୋତିଷ୍କର ବିଦାୟ

ରୋଗୀମାନଙ୍କର ସେବା ପାଇଁ ମଦର ଟେରେସା ନୋବେଲ ପୁରସ୍କାର ବିଜେତା । କୁଷ୍ଠରୋଗୀମାନଙ୍କ ପାଇଁ ସେବା ସକାଶେ ବାବା ଆମ୍‌ତେ ବହୁ ସମ୍ମାନର ଅଧିକାରୀ । ବାବା ଆମ୍‌ତେ ଙ୍କ ପାଇଁ ଯଦି ମଦର ଟେରେସାଙ୍କ ଭଳି ଆନ୍ତର୍ଜାତିକ କ୍ୟାଥଲିକ୍ ପ୍ରେସ୍ ମିଳିଥାନ୍ତା ତାହେଲେ ସେ ମଧ ନୋବେଲ ପୁରସ୍କାର ପାଇଥାଆନ୍ତେ ।

ସେ ତ ଏକ ସ୍ୱତନ୍ତ୍ର କଥା । କିନ୍ତୁ ଆଜିଠାରୁ ବହୁ ବର୍ଷ ତଳେ ଓଡ଼ିଶାରେ ଏକ ମଣିଷ ଜନ୍ମ ଲାଭ କରିଥିଲା, କୁଷ୍ଠ ରୋଗୀମାନଙ୍କ ପାଇଁ ଏଭଳି କାମ କରିଥିଲା ଯେ ତାହା ବିଶ୍ୱାସ କରି ହୁଏନା । କିନ୍ତୁ ସେ ଆଜି ଏକ ବିସ୍ମୃତ ଚରିତ୍ର । ତାଙ୍କର ସନ୍ତକ ମଧ ବର୍ତ୍ତମାନ ସରକାରୀ ଅବହେଳାର ଶିକାର ଏବଂ ଯେଉଁମାନଙ୍କ ପାଇଁ ସେ ଜୀବନପାତ କରିଗଲେ ସେଇମାନଙ୍କ ଭିତରୁ କେତେକ ଦୁର୍ବୃତ୍ତ ଏବଂ ନିମକହାରାମଙ୍କର ଶିକାର ମଧ ତାଙ୍କର ସାଧନାର ପୀଠ ।

ବିଂଶ ଶତାବ୍ଦୀ ଆରମ୍ଭ ସମୟ । କୁଷ୍ଠରୋଗ ସେତେବେଳେ ଏକ ଦୁରାରୋଗ୍ୟ ବ୍ୟାଧି । ଏହାର ଚିକିତ୍ସା ବା ଉପଶମ ପାଇଁ କୌଣସି ଔଷଧ ନାହିଁ । ପରବର୍ତ୍ତୀ କାଳରେ ହିନୋକର୍ପସ ତେଲ ଛଡ଼ା ଆଉ କୌଣସି ଔଷଧ ନ ଥିଲା । ଏହାର ଚିକିତ୍ସା ଥିଲା ଦୀର୍ଘକାଳ ବ୍ୟାପୀ ଏବଂ କରୁଣ । କୁଷ୍ଠ ରୋଗର ପ୍ରାରମ୍ଭ କାଳରେ ଏହା ଜଣା ପଡ଼େନା । ଏଇ ରୋଗ ସହିତ ବହୁ କୁସଂସ୍କାର, ଅନ୍ଧ ବିଶ୍ୱାସ ଜଡ଼ିତ । ଏହାକୁ ବଡ଼ ରୋଗ ବୋଲି କୁହାଯାଉଥିଲା । ରୋଗ ଜଣା ପଡ଼ିଲା ପରେ ମଧ ରୋଗୀ ଏହାକୁ ଲୁଚାଉ ଥିଲା । ହାତ ଆଙ୍ଗୁଳି, ଗୋଡ଼ ଆଙ୍ଗୁଳି ରେ ଘା ହୋଇ ଛିଡ଼ିଲା ବେଳକୁ ସମୟ ଗଡ଼ି ଯାଉଥିଲା । ରୋଗୀ ହୋଇଯାଏ ଗାଁରୁ ସମାଜରୁ, ଏପରିକି ଘରୁ ବାସନ୍ଦ । ତାର ଶାରୀରିକ ବ୍ୟାଧି ସହିତ ମାନସିକ ବ୍ୟାଧି ବଢ଼ିଯାଏ ଭୟାନକ ଭାବରେ । ତାର ଯୌନ ପିପାସା ବଢ଼ିଯାଏ । ସେ ଅପରାଧପ୍ରବଣ ହୋଇଯାଏ । ଲୁଚାଇ କାମ କରିବା ତାର ଏକ ବ୍ୟାଧିରେ ପରିଣତ ହୋଇଯାଏ । ତାକୁ ସମସ୍ତେ ବାସନ୍ଦ କରନ୍ତି । ତେଣୁ ସେ ଚୋରା ଅଫିମ ଇତ୍ୟାଦିର ହୋଇଯାଏ ଏକ ଭୟାନକ ଯୋଗାଣକାରୀ ବା କ୍ୟାରିଅର । ତାକୁ ରହିବା ପାଇଁ ସ୍ଥାନ ମିଳେନା । ପଣ୍ଡିତମାନେ ଶାମ୍ବଙ୍କର ଦୁର୍ଦ୍ଦଶା ସ୍ମରଣ କରି ତାକୁ ସାମାଜିକ ଦଣ୍ଡ ଦିଅନ୍ତି । ସେ ଭିଖାରୀ ପାଲଟେ । କୁଷ୍ଠ ରୋଗ ସଂକ୍ରାମକ । ତାଠାରୁ ସମସ୍ତେ ଦୂରେଇ ରହନ୍ତି । କିନ୍ତୁ ଯେଉଁ ସମୟରେ ଏହା ଛଉ ଆକାରରେ ଥାଏ ସେଇ ସମୟରେ ହିଁ ଏହା ସଂକ୍ରାମକ ଥାଏ, ଯେତେବେଳେ ଏହି ରୋଗ ପ୍ରକାଶ ପାଏ ହାତ ଗୋଡ଼ରେ ଘା ହୋଇ ଓ ଯେତେବେଳେ ହାତ ଗୋଡ଼ର ଆଙ୍ଗୁଳି ଛିଣ୍ଡିବାକୁ ଆରମ୍ଭ କରେ ସେତେବେଳେ ଏହା ଆଉ ସଂକ୍ରାମକ ନ ଥାଏ । କିନ୍ତୁ ସେତିକିବେଳେ ହିଁ ରୋଗୀ ସମାଜରୁ ବେଶୀ ବାସନ୍ଦ ହୋଇଯାଏ । ପୁନଶ୍ଚ ଏହା କୁଆଡ଼େ ଗରିବ ଲୋକଙ୍କର ରୋଗ ତେଣୁ ଏହା ପଛରେ ଦାରିଦ୍ର୍ୟର ଆହତ ଅଭିମାନ ଜଡ଼ିତ ଥାଏ ।

ଏଇ ଥିଲା ଦେଶର ସାମାଜିକ ପରିସ୍ଥିତି । ଏତିକିବେଳେ ୧୮୯୨ ମସିହାରେ ଖ୍ରୀଷ୍ଟଧର୍ମର ପ୍ରଚାରକ ଆଚାର୍ଯ୍ୟ ଭିକାରୀ ସାନ୍ତାଙ୍କର ଏକ ପୁତ୍ର ଜନ୍ମ ହୁଏ ନାମ ଦିଆଗଲା ଆଇଜାକ୍ । ଏଇ ଆଇଜାକ୍ ସାନ୍ତା ଯେ ଈଶ୍ୱର ସେବା ସହିତ ମାନବ ସେବାକୁ ଜଡ଼ିତ କରି ଏବଂ ମାନବ ସେବାକୁ ହିଁ ଈଶ୍ୱର ସେବା ବୋଲି ଗ୍ରହଣ କରି ତ୍ୟାଗ ଓ ନିଷ୍ଠାର ଏକ ପ୍ରତୀକ ଭାବରେ ସାରା ଦେଶରେ ଗଣିତ ହେବେ ଏ କଥା କିଏ ଜାଣିଥିଲା ?

ଅନୁଗୋଳରୁ ସମ୍ବଲପୁର ଯିବା ରାସ୍ତାରେ ହାତିବାରୀ ନାମକ ଏକ ସ୍ଥାନ ପଡ଼େ । ବସ୍ ସେଇଠି ଆଜି ମଧ୍ୟ ଅଟକେ । ସେଇଠି, ତିନି ଶହରୁ ଊର୍ଦ୍ଧ୍ୱ ଏକର ଜମି ଉପରେ ପ୍ରତିଷ୍ଠିତ ଆଇଜାକ୍ ସାନ୍ତାଙ୍କର ମାନବ ସେବାର ପୀଠ । ଯେଉଁ ଅନୁଷ୍ଠାନ ଦିନେ ସାରା ଭାରତବର୍ଷର ଆକର୍ଷଣ ବିନ୍ଦୁ ଥିଲା, ଯାହା ମହାତ୍ମାଗାନ୍ଧୀଙ୍କର ଦୃଷ୍ଟି ଓ ପ୍ରଶଂସା ଲାଭ କରିଥିଲା, ସେଇ କୁଷ୍ଠାଶ୍ରମ ଆଜି ଅତ୍ୟନ୍ତ ଅବହେଳିତ ଅବସ୍ଥାରେ । ଏହାର କେତେକାଂଶକୁ ଲୋକେ ଜବରଦସ୍ତ ମାଡ଼ି ବସିଛନ୍ତି । ହିନ୍ଦ୍ କୁଷ୍ଠ ନିବାରିଣୀ ସଂଘ ଯଦିଓ ଏହାର ସତ୍ୱାଧିକାରୀ ତଥାପି ଏହାର କେହି ବାପାମାଆ ଥିଲା ପରି ଜଣାପଡ଼େ ନାହିଁ । ଏଇ ଅନୁଷ୍ଠାନର ପ୍ରତିଷ୍ଠାତା ଆଇଜାକ୍ ସାନ୍ତା ଆଜି ଇତିହାସ ବକ୍ଷରେ ବିସ୍ମୃତ ।

ଆଇଜାକ୍ ଜଣେ ଭଲ ଛାତ୍ରଥିଲେ । ସମ୍ବଲପୁର ଜିଲ୍ଲା ସ୍କୁଲରୁ କୃତିତ୍ୱର ସହିତ ମାଟ୍ରିକ ପାଶ୍ କରିଥିଲେ । ପିତା ଭିଖାରୀ ସାନ୍ତା ସେତେବେଳେ ବଲାଙ୍ଗୀରରେ ଧର୍ମ ପ୍ରଚାରକ । ପିତା ମାତାଙ୍କର ଇଚ୍ଛା ଥିଲା ଆଇଜାକ୍ ତାଙ୍କ ଭଳି ଧର୍ମ ପ୍ରଚାରକ ବା ପାଦ୍ରୀ ହେବ । ରୁଗ୍ଣ ମଣିଷର ପାଇଁ ପ୍ରଚାର କରିବ ଭଗବାନଙ୍କ ବାଣୀ, ଶାନ୍ତିର ଅମୃତଧାରା । ବ୍ୟଥିତ ମଣିଷ ପାଇଁ ତାହା ଆଣିବ ଆଶା ଏବଂ ଆଶ୍ୱାସନା । କିନ୍ତୁ ଆଇଜାକ୍‌ଙ୍କ ଜୀବନ ଅନ୍ୟ ଉପାଦାନରେ ଗଢ଼ା ହୋଇଗଲା । ମଣିଷ ଭିତରେ ବିବେକାନନ୍ଦଙ୍କ ପରି ସେ ପାଇଥିଲେ ଭଗବାନଙ୍କ ସନ୍ଧାନ । ତାହାର ସେବା କରିବା ହିଁ ପ୍ରକୃତ ଭଗବାନ ସେବା । ବାପା ଚାହିଁଥିଲେ ପୁଅ କଟକକୁ ଆସି ପରମାର୍ଥିକ ଖ୍ରୀଷ୍ଟିଆନ୍ ବିଦ୍ୟାଳୟରେ ପଢ଼ିବା ପାଇଁ । ଯୁବକ ଆଇଜାକ୍ କିନ୍ତୁ ପଢ଼ିବାକୁ ଚାହିଁଥିଲେ ଡାକ୍ତର ହେବା ପାଇଁ । ତାଙ୍କର ପିତାମାତା କ୍ଷୁବ୍ଧ ହେଲେ ଏଥିରେ ।

ତା ପରେ ହଠାତ୍ ଦେଖାଗଲା ଯୁବକ ବଲାଙ୍ଗୀର ଛାଡ଼ି ଚାଲିଛନ୍ତି ପାଦରେ ସମ୍ବଲପୁର ପର୍ଯ୍ୟନ୍ତ । ୭୫ ମାଇଲ ଦୀର୍ଘ ପଥ ଏକାକୀ ଚାଲି ଚାଲି ସେ ଅତିକ୍ରମ କଲେ ଏବଂ ସମ୍ବଲପୁରରେ ପହଞ୍ଚି ମାଉସୀ ଶ୍ରୀମତୀ ଶାନ୍ତି ଦାସଙ୍କୁ ଆପଣାର ଆଭିପ୍ରାୟ ଜଣାଇଲେ । ମାଉସୀ ଯୁବକର ନିଷ୍ଠା ଓ ଆଗ୍ରହ ଦେଖି ତାଙ୍କୁ ପାଞ୍ଚଟଙ୍କା ଦେଇ ପଠାଇଥିଲେ କଟକ, ଡାକ୍ତରୀ ପାଠ ପଢ଼ିବା ପାଇଁ ।

ବହୁ ପ୍ରତିକୂଳ ପରିସ୍ଥିତିରେ ସେ ଡାକ୍ତରୀ ପାଠ ପଢ଼ି ପାଶ୍ କଲେ ଏବଂ ପ୍ରଥମେ ଜିଲ୍ଲା ବୋର୍ଡ ଓ ପରେ କୁଷ୍ଠ ନିବାରଣ ସଂଘରେ କାର୍ଯ୍ୟ କଲେ ।

ନୂତନ ଦିଗନ୍ତ ଉନ୍ମୋଚିତ ହେଲା । ସେ ଆଉ ପଛକୁ ଫେରି ଅନେଇ ନାହାନ୍ତି । ନୂଆ ଇତିହାସ ଲେଖା ହେଲା ।

କୁଷ୍ଠରୋଗ ଥିଲା ଦୁଃସାଧ୍ୟ ବ୍ୟାଧି । ଏହି ରୋଗରେ ଆକ୍ରାନ୍ତ ରୋଗୀର ସେବାରେ

ସେ ଆପଣାକୁ ବିନିଯୋଗ କଲେ । ରୋଗ ପାଇଁ ନୂତନ ଔଷଧ ଉଦ୍‌ଭାବନ କରିବାରେ ବ୍ୟାପୃତ ହେଲେ । ଖ୍ୟାତି ବଢ଼ିଲା । ବହୁ ଦେଶ ବୁଲି ଏ ରୋଗର ସର୍ବାଧୁନିକ ଚିକିତ୍ସା ଅନୁଧାନ କଲେ । ଉପାଧି ମିଳିଛି, ପ୍ରଶଂସା ମିଳିଛି; ପ୍ରତିଷ୍ଠା ବଢ଼ିଛି; କିନ୍ତୁ ତାଙ୍କର ନିଷ୍ଠା ରହିଚି ଅତୁଟ । ଦେଶ ବିଦେଶ ବୁଲିଛନ୍ତି । ଦେଶ ବାହାରେ ଅନେକ ଲୋଭନୀୟ ଚାକିରି ମିଳିଛି । କିନ୍ତୁ ସେ ଫେରିଛନ୍ତି ଆପଣାର ଜନ୍ମମାଟିକୁ । ଭୁଲି ଯାଇ ନାହାନ୍ତି ଏହି ରୋଗରେ ଆକ୍ରାନ୍ତ ଭାଇଭଉଣୀ ମାନଙ୍କୁ ।

କୁଷ୍ଠ ରୋଗୀ ମାନଙ୍କ ପାଇଁ ଚାଲମୁଗୁରା ତେଲର ଔଷଧ ତାଙ୍କର ଅବଦାନ । ମଦର ଟେରେସା ଯେଭଳି ଖ୍ରୀଷ୍ଟିଆନ୍ ଆଇଜାକ୍ ସେଭଳି ଖ୍ରୀଷ୍ଟିଆନ୍ । ମଦର ଟେରେସା କୁଷ୍ଠ ରୋଗୀ ମାନଙ୍କର ସେବା ପାଇଁ, ସମାଜ ସେବା ପାଇଁ ପାଇଛନ୍ତି ଆନ୍ତର୍ଜାତିକ ଖ୍ୟାତି, ନୋବେଲ୍ ପୁରସ୍କାର । ଆଇଜାକ୍ ସାନ୍ତାଙ୍କ ପାଇଁ କ୍ୟାଥିଲିକ୍ ପ୍ରେସ୍ ଓ ପବ୍ଲିସିଟ୍ ମିଳିନାହିଁ । ସେ ରହି ଯାଇଛନ୍ତି ବିସ୍ମୃତ ହୋଇ ।

ଆଇଜାକ୍ଙ୍କ ଥିଲେ ଉଦାର ହୃଦୟ, ଅତିଥି ପରାୟଣ । ତାଙ୍କର ଆତିଥ୍ୟ ଲାଭ କରିବାର ଗୌରବ ଏଇ ଲେଖକକୁ ବହୁବାର ମିଳିଛି । ସ୍ମୃତି ପଟରେ ଅଙ୍କା ହୋଇ ରହିଛି ସେଇ ଚିତ୍ର ଚିରସବୁଜ ହୋଇ ।

ବହୁ ବ୍ୟକ୍ତି, ବହୁ ଅନୁଷ୍ଠାନ ତାଙ୍କ ଦ୍ୱାରା ଉପକୃତ ହୋଇଛନ୍ତି । ସେ ଜଣେ ଥିଲେ ନିଷ୍ଠାପର ଖ୍ରୀଷ୍ଟିଆନ୍ । ବାଇବେଲ୍‌ର ମହିମ୍ନ ବାଣୀକୁ ସେ ବୁଝିଥିଲେ ଜୀବନର ସବୁ ଉଦାରତା ଦେଇ । ମଣିଷ ଧୂଳିରୁ ଆସିଛି ସେଇ ଧୂଳିକୁ ଦିନେ ଫେରିଯିବାକୁ ହେବ । ଜୀବନର ତାହା ହେଉଛି ଅଲଂଘନୀୟ ପଥ ।

ସେଇ ସମୟ ଆସିଗଲା ଅଗଷ୍ଟ ୧୯, ୧୯୬୮ ମସିହାରେ । ଆଇଜାକ୍ ଫେରିଗଲେ ତାଙ୍କ ଭାଷାରେ ''ଆପଣାର ଘରକୁ'' କିନ୍ତୁ ତା ପୂର୍ବରୁ ରଖିଗଲେ ଜୀବନର ଆଲେଖ୍ୟ ଚିରଦିନ ପାଇଁ । ଆଜି ହୁଏତ ସେ ବିସ୍ମୃତ । କିନ୍ତୁ ଯେତେ ଦିନ ପର୍ଯ୍ୟନ୍ତ ପୃଥିବୀରେ ଯନ୍ତ୍ରଣା ଥିବ, ରୋଗ ଥିବ ସେତେ ପର୍ଯ୍ୟନ୍ତ ସେ ବଞ୍ଚି ରହିବେ ।



# ବନ୍ଧୁ ଭଳିବନ୍ଧୁ, ମଣିଷ ଭଳି ମଣିଷ

ଅମୀୟ ସେନ୍‌ଙ୍କର ପରଲୋକ ହୋଇଯାଇଥିବା ସଂବାଦ ପାଇଲି ମୃତ୍ୟୁର ବେଶ୍ କିଛି ଦିନ ପରେ । ଖବରକାଗଜର ପୃଷ୍ଠାରୁ କୌଣସି ଏକ ସଂବାଦ ଭିତରେ ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରାଯାଇଛି । ଚମକ ଲାଗିଲା । କିମିତି ମୁଁ ଜାଣି ପାରିଲି ନାହିଁ ଏହି ସଂବାଦ ? ବାରବାଟୀ ଷ୍ଟାଡିୟମ୍‌ରେ ବନ୍ଧୁ ଶ୍ରୀ କୈଳାଶ ଚନ୍ଦ୍ର ଦାସ ରହନ୍ତି । ତାଙ୍କୁ ଫୋନ କଲି । ସେ ମଧ୍ୟ ମୃତ୍ୟୁ ସଂବାଦ ପାଇଛନ୍ତି ଡେରୀରେ କିନ୍ତୁ ମୁଁ ଜାଣିଥିବି ଭାବି ସେ ମୋତେ ଖବର ଦେଇ ନାହାନ୍ତି । ମନ ପହଁରିଗଲା ଅତୀତକୁ ।

ଅମୀୟ ସେନ୍ କଟକର ପ୍ରସିଦ୍ଧ ଆଇନଜୀବି ଲଳିତ ମୋହନ ଦାଶଗୁପ୍ତଙ୍କ ଭଣଜା । ଲଳିତ ବାବୁଙ୍କର ଘର ଦେଖିଥିବା ଲୋକ ଜାଣିଛି ଯେ ଏହା ଏକ ବିରାଟ ଧର୍ମଶାଳା । ଆଶ୍ରୟ ନ ପାଉଥିବା ବହୁ ସମ୍ପର୍କୀୟ, ଦୂର ସମ୍ପର୍କୀୟ ଅତିଥି ସେଠାରେ ଆଶ୍ରୟ ପାଉଥିଲେ । ଅମୀୟବାବୁ ସେଠାକୁ କିମିତି, କେବେ, କେଉଁ କାରଣରୁ ଆସିଲେ କହି ପାରିବି ନାହିଁ ।

ଅମୀୟ ସେନ୍ ରେଭେନ୍ସା କଲେଜରେ ଛାତ୍ର ଥିଲେ । କଟକରେ ଟାଉନ୍ କ୍ଲବ୍ ନାମରେ ଏକ ଖ୍ୟାତନାମା ଫୁଟ୍‌ବଲ କ୍ଲବ୍ ଥିଲା । ସେ ତାହାର ଜଣେ କର୍ମକର୍ତ୍ତା ଥିଲେ । ଶ୍ରୀ ଭୈରବଚନ୍ଦ୍ର ମହାନ୍ତି ପାଟଣାରୁ ଫେରି ସେଇ କ୍ଲବ୍‌ରେ ପହଞ୍ଚିଥିଲେ ଫୁଟ୍‌ବଲ ଖେଳିବା ପାଇଁ । ଅମୀୟ ସେନ୍ ସବୁବେଳେ ସେଇକଥା ସ୍ମରଣ କରନ୍ତି ।

ଅମୀୟ ସେନ୍ ପରୀକ୍ଷାରେ କପି କରୁଥିବା ବେଳେ ଧରାପଡ଼ି ବହିଷ୍କୃତ ହୁଅନ୍ତି । ତାଙ୍କର ପାଠପଢ଼ା ସେତିକିରେ ସରିଯାଏ । କିନ୍ତୁ ଦସ୍ୟୁ ରତ୍ନାକର ସେଇ ଘଟଣାରେ ବାଲ୍ମିକୀ ପାଲଟିଯାଆନ୍ତି । ତାର ପରବର୍ତ୍ତୀ କାଳ ତାଙ୍କୁ ଦେଖେ ସଂପୂର୍ଣ୍ଣ ଏକ ଭିନ୍ନ ମଣିଷ ଭାବରେ । ସଚ୍ଚୋଟତା ଏବଂ ସାଧୁତା ପାଇଁ ତାଙ୍କର ଖ୍ୟାତି ଥିଲା ମୃତ୍ୟୁ ପର୍ଯ୍ୟନ୍ତ । ସେ ଜୀବନବୀମା କମ୍ପାନୀର ଏଜେଣ୍ଟ ହୁଅନ୍ତି । ଜୀବନବୀମା ହେଉଛି ପେଷା, ବଞ୍ଚିବା ପାଇଁ । କିନ୍ତୁ କଳା, ସଂସ୍କୃତି, କ୍ରୀଡ଼ା ହେଉଛି ନିଶା, ଜୀବନର ମାଦକତା ପାଇଁ । ଅମୀୟ ସେନ୍‌ଙ୍କର ବନ୍ଧୁମାନଙ୍କ ଭିତରେ ଭୈରବ ଚନ୍ଦ୍ର ମହାନ୍ତି ସୁବୋଧ ବିଶ୍ୱାସ, ଜର୍ଜ ପଟ୍ଟନାୟକ, ବ୍ରଜେନ ଦତ୍ତ ପ୍ରମୁଖ ଅନ୍ତର୍ଭୁକ୍ତ । କିନ୍ତୁ ଭୈରବ ବାବୁଙ୍କର ମର ଦେହରେ ଫୁଲ ଦେଲାବେଳେ ଅମୀୟ ସେନ୍ ଆଖିରୁ ଲୁହ ଝରାଇ କହୁଥିଲେ 'ଭୈରବ ଗଲା ପରେ ମୋର ଏପରି କୌଣସି ବନ୍ଧୁ ନାହାନ୍ତି ଯେ ଦେଇଥିବା କାଗଜରେ ମୁଁ ସେ କାଗଜକୁ ନପଢ଼ି ଦସ୍ତଖତ କରିଦେବି ।''

ଅମୀୟ ସେନ୍ ଆରମ୍ଭ କରନ୍ତି ଜୀବନ ବୀମା ଏଜେଣ୍ଟ ଭାବରେ । ପ୍ରଥମ ଅନୁଭୂତି କଥା କହନ୍ତି । ବୟସ ବହୁତ କମ । ଜଣେ ଇନ୍‌କମ୍ ଟାକ୍ସ ଆସିଷ୍ଟାଣ୍ଟ କମିଶନର ପାଖରେ

ପହଞ୍ଚନ୍ତି । ସେ ଜଣେ ବୟସ୍କା ମଣିଷ । ଜୀବନବୀମା କଲାବେଳେ ସାଧାରଣ ଯେପରି କଥା ଶୁଣାଯାଏ ସେଇପରି କଥା ଶୁଣିଲେ ଅମୀୟ ସେନ୍ । କଣ ଦରକାର ପଇସା ସଞ୍ଚିବାର ? ମଲା ପରେ କିଏ ଟଙ୍କା ପାଇଲା ନ ପାଇଲା ସେଥିରୁ ମୋତେ କଅଣ ମିଳିବ ? ଏଇପରି ଅନେକ କଥା । ଅମୀୟବାବୁ ତାଙ୍କୁ ବୁଝାଇବାକୁ ଚେଷ୍ଟା କଲେ । ଜୀବନ ଅନିତ୍ୟ, ଜୀବନ ଭଂଗୁର... । ହଠାତ୍ ସେ ବୟସ୍କ ବ୍ୟକ୍ତି କହିଲେ ପାଟି ଆଁ କଲ । ମୁଁ ଦେଖେ ତମର ଜ୍ଞାନ ଦାନ୍ତ ଉଠିଲାଣି କି ନାହିଁ । ଜୀବନ ଦେଖିନାହିଁ, ଅନିତ୍ୟତା ଦେଖିଲ କେବେ ?

ଅମୀୟ ବାବୁ ହସନ୍ତି । ମୋର ହଠାତ୍ ଯେପରି ଚୈତନ୍ୟୋଦୟ ହୋଇଗଲା । ମୁଁ କିନ୍ତୁ ନଛୋଡ଼ ବନ୍ଧା । ଗୋଟାଏ ଇନ୍‌ସୁରାନ୍ସ କରି ଆସିଲି । ମୋର ଆତ୍ମବିଶ୍ୱାସ ବଢ଼ିଗଲା । ସେଇ ଆତ୍ମ ବିଶ୍ୱାସ ତାଙ୍କର ଥିଲା ପ୍ରଚୁର । ଯେଉଁ କାମ ଦିଅ ଅମୀୟ ବାବୁ ନାହିଁ କରିବେ ନାହିଁ । ବାରବାଟୀ ଷ୍ଟାଡ଼ିୟମ୍ କୁ କେନ୍ଦ୍ର କରି ତାଙ୍କର କାର୍ଯ୍ୟ ବଢ଼ି ଚାଲିଲା । ଜାତୀୟ କ୍ରୀଡ଼ା ପ୍ରତିଯୋଗିତା଼ଠାରୁ ଆରମ୍ଭ କରି ଯୁବ ଉତ୍ସବ ପର୍ଯ୍ୟନ୍ତ । ସେ ଇନ୍‌ସୁରାନ୍ସ କାମ କରନ୍ତି । କିନ୍ତୁ ତାଙ୍କ ଯେଉଁଠି ମନସେଠି ପଚାରିଲେ କହନ୍ତି ବର୍ତ୍ତମାନ ଅନ୍ୟ କାମ । ଆପଣଙ୍କର ଠିକଣା ମୋ ପାଖରେ ଅଛି । ମୁଁ ଯାଇ ପହଞ୍ଚିବି ଆପଣଙ୍କ ପାଖରେ । ବର୍ତ୍ତମାନ କିନ୍ତୁ ନୁହେଁ । ଇମିତି ଲୋକ ମିଳିବା କଷ୍ଟ । ୧୯୫୬ ମସିହା କଥା । ସୀମା ଆନ୍ଦୋଳନର ଠିକ୍ ପରବର୍ତ୍ତୀ ସମୟ । ଆମ ନାମରେ ତଥାପି ଝୁଲୁଛି ଓ୍ୟାରେଣ୍ଟ । ଏକ ସୋଭିଏଟ୍ ଯୁବ ପ୍ରତିନିଧି ଦଳ ଓଡ଼ିଶା ଆସିବେ । ତାଙ୍କର କାର୍ଯ୍ୟକ୍ରମ ହେବ ବାରବାଟୀ ଷ୍ଟାଡିୟମ୍‌ରେ । କରିବ କିଏ ? ଅଭ୍ୟର୍ଥନା ସମିତିର ସାଧାରଣ ସଂପାଦକ ହେଲେ ଅମୀୟ ସେନ୍, ସଂପାଦକମାନଙ୍କ ଭିତରେ ରହିଲେ ତତ୍‌କାଳୀନ ଜାତୀୟ କଂଗ୍ରେସ ଓଡ଼ିଶା ଶାଖାର ସଂପାଦକ ଭାବାନୀ ପଟ୍ଟନାୟକ । ଅମୀୟ ସେନ୍ ଯେପରି ଭାବରେ ଦୁରୂହ କାର୍ଯ୍ୟ ସମ୍ପାଦନ କଲେ ତାହା ସମସ୍ତଙ୍କୁ ଅଭିଭୂତ କଲା । ଠିକ୍ ସେଇପରି ଦୁଇ ଦୁଇଟା ଜାତୀୟ କ୍ରୀଡ଼ା ପ୍ରତିଯୋଗିତା, ଦୁଇ ଦୁଇଟା ସର୍ବ ଭାରତୀୟ ଚିକିତ୍ସକ ସମ୍ମିଳନୀ । ଅମୀୟ ସେନ୍‌ଙ୍କ ସଙ୍ଗରେ କାମ କରିଛି । ବିଶେଷତଃ ଟ୍ରାନ୍ସ ପୋର୍ଟ, ଅଭ୍ୟର୍ଥନା ଏବଂ ପରିଦର୍ଶନ କମିଟିର ଦାୟିତ୍ୱରେ ସେ ବିଶେଷଜ୍ଞ ପାଲଟିଥିଲେ । ସୁବୋଧ ବିଶ୍ୱାସ ଆଉ ନାହାନ୍ତି । ବିଧୁ ଭୂଷଣ ପରିଜା ଅବସର ଜୀବନ କାଟୁଛନ୍ତି । ନନ୍ଦ କିଶୋର ପଟ୍ଟନାୟକ ଭୁବନେଶ୍ୱରରେ । ଏଇ ଟିମ୍ ଯେପରି ଏକ ଶୃଙ୍ଖଳିତ ସୈ୍ୟନ୍ୟ ବାହିନୀ । ଅମୀୟ ସେନ୍ କିନ୍ତୁ କାର୍ଯ୍ୟ କଲାବେଳେ କାହା ମୁହଁକୁ ଅନାନ୍ତି ନାହିଁ । ଉପ୍ରୋଧ ରକ୍ଷା କରନ୍ତି ନାହିଁ । ମୋର ମନେ ଅଛି ଏକ ଜାତୀୟ କ୍ରୀଡ଼ା ପ୍ରତିଯୋଗିତାର ଉଦ୍‌ଘାଟନ ଉତ୍ସବ । ବାରବାଟୀ ଷ୍ଟାଡିୟମ୍ କ୍ଲବ୍ ହାଉସ୍‌ର ଦାୟିତ୍ୱ ଭୈରବବାବୁ ଦେଇଥାନ୍ତି ଅମୀୟ ସେନ୍‌ଙ୍କ ଉପରେ । ତତ୍କାଳୀନ ଏସ.ପି. ଅମୀୟ ସେନ୍‌ଙ୍କ ବନ୍ଧୁ । ସେ ସାଦା ପୋଷାକରେ ପିଲାପିଲ ଧରି କ୍ଲବ ହାଉସରେ ହାଜର । କିନ୍ତୁ ଗେଟ୍‌ରେ ଯେ ଅମୀୟ ସେନ୍ ତାଙ୍କୁ ଛାଡ଼ିବାକୁ ନାରାଜ, ଚିହ୍ନିବାକୁ ମଧ୍ୟ ନାରାଜ । ଏସ.ପି.ବନ୍ଧୁଙ୍କ ଅକଲ ଗୁଡୁମ୍ । ସେ ବାଧ ହୋଇ କହିଲେ ଯେ ଅମି, ତୁ କଣ ମୋତେ ଚିହ୍ନି ପାରୁ ନାହୁଁ ନା କଣ ? ନିର୍ବିକାର ଚିତ୍ତରେ ଅମୀୟ ସେନ୍ କହିଲେ, କାମ କଲାବେଳେ ମୁଁ କେବଳ ଦାୟିତ୍ୱ ବୁଝେ, ଏ ପାସ୍‌ଟି ଏସ୍.ପି.ଙ୍କର ସରକାରୀ ପାସ୍ । ତମେ

ଆସିଛ ସାଦା ପୋଷାକରେ । ତା ଛଡ଼ା ଏହା ଜଣକ ପାଇଁ ଉଦ୍ଦିଷ୍ଟ । ତମେ ପିଲାପିଲି ନେଇ ଆସିଛ । ଯାଅ, ଭୈରବ ତଳେ ଅଛି । ତାକୁ କହିବ ସେ ଅଧିକା ପାସ୍ ତୁମକୁ ଦେବ । ମୋର କିନ୍ତୁ କର୍ତ୍ତବ୍ୟ ହେଉଛି ବିନା ପାସ୍‌ରେ ମୁଁ କାହାକୁ ଛାଡ଼ିବି ନାହିଁ ।

ଅମୀୟ ସେନ୍ ସ୍ପଷ୍ଟବାଦୀ । ଯାହା କୁହନ୍ତି ମୁହେଁ ମୁହେଁ କହନ୍ତି । କହିଲାବେଳେ କାହା ମୁହଁକୁ ଚାହାନ୍ତି ନାହିଁ । ସେଇଯୋଗୁଁ ଅନେକ ବନ୍ଧୁ ତାଙ୍କ ଉପରେ ରୁକ୍ଷ ହୋଇଯାଆନ୍ତି । କିନ୍ତୁ କେହି ତାଙ୍କର ସାଧୁତାକୁ ଚାଲେଞ୍ଜ କରି ନାହାନ୍ତି । କାରଣ ସେ ବିଷୟରେ ସେ ଅନନ୍ୟ ସାଧାରଣ ।

ଅମୀୟ ସେନ୍ ଅବିବାହିତ ଥିଲେ । କିନ୍ତୁ ତାଙ୍କର ଚାରିତ୍ରିକ ଦୋଷ ନ ଥିଲା । ବରଂ ସେ ନାରୀ ପ୍ରତି ସାମାନ୍ୟତମ ଅସଦାଚରଣକୁ ସହ୍ୟ କରି ପାରୁନ ଥିଲେ । ମଣିଷ ପ୍ରତି ତାଙ୍କର ସମ୍ବେଦନଶୀଳତା ଥିଲା ପ୍ରଚୁର । ତାସ ଖେଳ ତାଙ୍କର ବିରାଟ ସଉକ ବା ଦୁର୍ବଳତା ଥିଲା । ସାରା ରାତି ସେ ପଟ୍ଟନାୟକ ଏଣ୍ଡ କୋ.ର ସବା ଉପର ମହଲାରେ ଗୋପାଳ ପଟ୍ଟନାୟକ ପ୍ରଭୃତି ବନ୍ଧୁଙ୍କ ସହିତ ତାସ ଖେଳନ୍ତି । କିନ୍ତୁ ସକାଳୁ କାମ ଠିକ୍ ଭାବରେ ତୁଲାନ୍ତି । ଦାୟିତ୍ୱରେ ଆଦୌ ଖିଲାପ ହୁଏ ନାହିଁ ।

ତାଙ୍କୁ ଦେଖିଚି ମୁଁ ବନ୍ୟା ବାତ୍ୟାର ତାଣ୍ଡବଲୀଳା ପରେ ରିଲିଫ କାର୍ଯ୍ୟରେ । ସେ ସବୁ ଭୁଲିଯାଆନ୍ତି । କିନ୍ତୁ ହିସାବ ପତ୍ରରେ ଭୁଲ୍ ହେଲେ ଆଦୌ ସହ୍ୟ କରି ପାରନ୍ତି ନାହିଁ । ଗୋଟାଏ ମଣିଷର ଗୋଟାଏ ଘଟଣାରେ କିମିତି ଗୁଣାତ୍ମକ ପରିବର୍ତ୍ତନ ଘଟେ ତାର ଏକ ଜ୍ୱଳନ୍ତ ଉଦାହରଣ ଅମୀୟ ସେନ୍ । ବହୁ ପ୍ରତିଷ୍ଠିତ ବ୍ୟକ୍ତି ତାଙ୍କର ବନ୍ଧୁ ଥିଲେ । କିନ୍ତୁ କୌଣସି ଦିନ ସେ ବ୍ୟକ୍ତିଗତ ଫାଇଦା ବା ଲାଭ ପାଇଁ କାହାକୁ ଅନୁରୋଧ କରିନାହାନ୍ତି ।

ମୋର ମନେ ପଡୁଛି , ସେତେବେଳେ କଟକରେ ୟୁନିୟନ କ୍ଲବ ଏକ ପ୍ରସିଦ୍ଧ କ୍ଲବ । ବହୁ ବିଶିଷ୍ଟ ବ୍ୟକ୍ତି ଏହାର ସକ୍ରିୟ ସଭ୍ୟ । ସେମାନଙ୍କ ମଧ୍ୟରେ ଭୈରବଚନ୍ଦ୍ର ମହାନ୍ତି ଅନ୍ୟତମ । ଭୈରବଚନ୍ଦ୍ର ମହାନ୍ତି ଏହି କ୍ଲବରେ ସକ୍ରିୟ ପୁରୁଖା ସଭ୍ୟ । ସେ ମନ୍ତ୍ରୀ ହେଲେ । ଏହି କ୍ଲବର କୌଣସି ସଭ୍ୟ ତାଙ୍କର ବନ୍ଧୁତ୍ୱର ସୁଯୋଗ ନେଇ ତାଙ୍କଠାରୁ କୌଣସି ସୁବିଧା ହାସଲ କରିବେ ନାହିଁ । ସମସ୍ତେ ଚକିତ କିନ୍ତୁ ପ୍ରସ୍ତାବ ପାଶ୍ ହେଲା ସର୍ବ ସମ୍ମତି କ୍ରମେ । ଭୈରବବାବୁ ଅମୀୟ ସେନ୍‌କୁ କୁଣ୍ଢାଇ ପକାଇଲେ ଏବଂ ତାଙ୍କ ଆଖିରୁ ଧାର ଧାର ଲୁହ ଗଡ଼ିଗଲା ।

ଅମୀୟ ସେନ୍ ଆଉ ନାହାନ୍ତି । ମାଇଓ କାର୍ଡିଆଲ୍ ରୋଗରେ ସେ ଆକ୍ରାନ୍ତ ଥିଲେ । ବୟସ ହୋଇଥିଲା । ସାଙ୍ଗ ସାଥୀମାନେ ସବୁ ହଜି ଯାଇଛନ୍ତି ମହାକାଳ ବକ୍ଷରେ । ଲଳିତ ମୋହନ ଦାସ ଗୁପ୍ତ ମଧ୍ୟ ଗଲେଣି । ତାଙ୍କ ଧର୍ମଶାଳା ଭାଙ୍ଗି ଗଲାଣି । ଅମୀୟ ସେନ୍ ଜଣେ ବନ୍ଧୁଙ୍କ ଘରେ ରହୁଥିଲେ ।

ଥରେ ଜଣେ ବୟସ୍କ ଅବିବାହିତ ବ୍ୟକ୍ତି ଜୀବନ ସଂପର୍କରେ କ୍ଷୋଭ ପ୍ରକାଶ କରିବା ଦେଖି, ଅମୀୟ ସେନ୍ ତାଙ୍କୁ କହିଲେ ଦେଖ, ଜୀବନର ସବୁ ସୁବିଧା ତମେ ଭୋଗ କରି ପାରିବ ନାହିଁ । ଅବିବାହିତ ରହିଲ । ତାର ସ୍ୱାଧୀନତା ପାଇଲ । ପରିବାରର ଦାୟିତ୍ୱ ମୁଣ୍ଡାଇଲ ନାହିଁ । ତେଣୁ ଡାକ୍ତରଖାନାରେ ନର୍ସର ସେବାରେ ମରିବା ପାଇଁ ପ୍ରସ୍ତୁତ ହୁଅ । କ୍ଷୋଭ କରୁଛ କାହିଁକି ?

ଅମୀୟ ସେନ୍‌ଙ୍କ ଜୀବନରେ କ୍ଷୋଭ ନଥିଲା । କାହିଁକି କ୍ଷୋଭ କରିବି ? ମୁଁ ଯେଉଁ ଜୀବନ ବାଛି ନେଇଛି ତାହା ମୁଁ ଭୋଗ କରି ଚାଲିଛି । ଅମୀୟ ସେନ୍‌ଙ୍କ ପରଲୋକ ସଂବାଦ ଖବର କାଗଜରେ ପ୍ରକାଶିତ ହେଲା । ପୃଷ୍ଠଭୂମିରେ ରହି ଆପଣାର କାର୍ଯ୍ୟ କରିଯିବା ଯାହାର ଧର୍ମ , ଜୀବନରେ ଯିଏ ପବ୍ଲିସିଟି ଲୋଡିନାହିଁ ମୃତ୍ୟୁରେ ସେ ତାହା କାହିଁକି ଲୋଡ଼ିବ ?

ସେ ଅନନ୍ୟ ସାଧାରଣ ଏବଂ ସେଇଯୋଗୁଁ ସେ ସ୍ମୃତ ହୋଇ ରହିବେ ତାଙ୍କର ବନ୍ଧୁମାନଙ୍କ ସ୍ମୃତିରେ ।



# ଇ.ଏମ.ଏସ୍. ନମ୍ବୁଦ୍ରିପଦ

ଜନ୍ମ ହୋଇଥିଲେ ରକ୍ଷଣଶୀଳ ନୈଷ୍ଠିକ ବ୍ରାହ୍ମଣ ପରିବାରରେ । ଚାରିବର୍ଷ ବୟସରୁ ବେଦ ପଢ଼ିବା ଆରମ୍ଭ କରିଥିଲେ । ତାହା ହିଁ ଥିଲା ତାଙ୍କ ପରିବାରର ପ୍ରଥା ୧୯୦୯ ମସିହା ଜୁନ୍ ମାସ ୧୩ ତାରିଖରେ ବର୍ତ୍ତମାନ ମାଲାପୁରମ୍ ଜିଲ୍ଲାର ପେରିନ୍ଥାଲ୍‌ମାନା ତାଲୁକରେ ସେ ଜନ୍ମ ଗ୍ରହଣ କରିଥିଲେ । ନାମଟା ପିତୃଦତ୍ତ କିନ୍ତୁ ବହୁତ ବଡ଼ । କାଳକ୍ରମେ ସେ ଇ.ଏମ୍.ଏସ୍. ନମ୍ବୁଦ୍ରିପଦ ନାମରେ ପରିଚିତ ହେଲେ । ସାଥୀ ସହଯୋଦ୍ଧା ମାନଙ୍କ ଭିତରେ ସେ ଇ.ଏମ୍.ଏସ୍. ନାମରେ ହିଁ ପରିଚିତ ଥିଲେ । ମହାଭାରତର ମହାବୀର କର୍ଣ୍ଣ କହିଥିଲେ କୁଳ ହେଉଛି ଦୈବର ଅଧୀନ କିନ୍ତୁ ପୌରୁଷ ହେଉଛି ମୋହର ନିଜର ଏବଂ ସେଇ ବଳରେ ହିଁ ମୁଁ ପରିଚିତ । ଇ.ଏମ୍.ଏସ୍.ଙ୍କ ପାଇଁ ମଧ ତାହା ପ୍ରଯୁଜ୍ୟ ।

କମ୍ୟୁନିଷ୍ଟମାନେ ସର୍ବତ୍ର କ୍ଷମତାକୁ ଆସିଛନ୍ତି ବିପ୍ଳବ ଜରିଆରେ, ଜନ ଅଭ୍ୟୁତ୍ଥାନ ଜରିଆରେ । କିନ୍ତୁ ଇ.ଏମ୍.ଏସ୍. ହେଉଛନ୍ତି ପୃଥିବୀର ପ୍ରଥମ ବ୍ୟକ୍ତି ଯେ ଗଣତାନ୍ତ୍ରିକ ନିର୍ବାଚନ ବଳରେ ଶାସନ କ୍ଷମତାକୁ ଆସିଛନ୍ତି ଏବଂ କେରଳର ମୁଖ୍ୟମନ୍ତ୍ରୀ ହେଇଛନ୍ତି ଏବଂ ଏହି ସରକାରର କାର୍ଯ୍ୟ ଆତଙ୍କ ସୃଷ୍ଟି କରିଛି ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ଭିତରେ । ନମ୍ବୁଦ୍ରିପଦଙ୍କ ସରକାର ହେଉଛନ୍ତି ଭାରତର ପ୍ରଥମ ସରକାର, ଯେ କି ଭୂସଂସ୍କାରକୁ କାର୍ଯ୍ୟକାରୀ କରିବାକୁ ଆରମ୍ଭ କଲେ । ଆପଣା ରାଜ୍ୟରେ ସମସ୍ତଙ୍କୁ ସାକ୍ଷର ଏବଂ ଶିକ୍ଷିତ କରିବା ପାଇଁ ପଦକ୍ଷେପ ଗ୍ରହଣ କଲେ । ସ୍ୱାସ୍ଥ୍ୟ, ନାରୀ ଓ ଶିଶୁ କଲ୍ୟାଣ ପାଇଁ ସଫଳ ପଦକ୍ଷେପ ଗ୍ରହଣ କରିଥିଲେ । ଏହା ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ବିଶେଷତଃ ଭୂ-ଅଧିକାରୀ ମାନଙ୍କ ପାଇଁ ଆତଙ୍କର କାରଣ ହେଲା । କେରଳର କମ୍ୟୁନିଷ୍ଟ ସରକାରର ସଂଖ୍ୟାଧିକତା ଥିଲା ମାତ୍ର ଗୋଟିଏ । ଏତିକିବେଳେ ଜଣେ ସଭ୍ୟଙ୍କର ମୃତ୍ୟୁ ହେତୁ ଦେବୀ କୋଲମ୍ ନିର୍ବାଚନ ମଣ୍ଡଳୀରେ ଉପନିର୍ବାଚନ ହେଲା ।

ଦେବୀକୋଲମ ଉପନିର୍ବାଚନ । ଭାରତର ନିର୍ବାଚନ ଇତିହାସରେ ଏକ ମାଇଲଖୁଣ୍ଟ । ମୁଖ୍ୟମନ୍ତ୍ରୀ ଏବଂ ମନ୍ତ୍ରୀମଣ୍ଡଳର ସଭ୍ୟମାନେ ନିଷ୍ପତ୍ତି କଲେ ଯେ ସେମାନେ ଉପନିର୍ବାଚନରେ ପ୍ରଚାର କରିବେ ନାହିଁ । ଅପର ପଟରେ ତତ୍‌କାଳୀନ କଂଗ୍ରେସ ସଭାପତି ଇନ୍ଦିରାଗାନ୍ଧୀ ତାଙ୍କର ସବୁ ରଥୀ ମହାରଥୀ ମାନଙ୍କୁ ନେଇ ଠୁଳ ହେଲେ ଦେବୀକୋଲମରେ, ସଙ୍ଗରେ ପ୍ରଚୁର ଅର୍ଥ, ଏବଂ ଗାଡ଼ି । ସେଦିନ ରାୟ କିନ୍ତୁ ଥିଲା ସାମ୍ୟବାଦୀ ମାନଙ୍କ ସପକ୍ଷରେ । ତଥାପି କେରଳର ନିର୍ବାଚିତ ସରକାରଙ୍କୁ ଭାଙ୍ଗି ଦେବାପାଇଁ ଇନ୍ଦିରାଗାନ୍ଧି ଚାପ ପକାଇଲେ ପଣ୍ଡିତ ନେହେରୁଙ୍କ ଉପରେ ।

ନମ୍ବୁଦ୍ରିପଦଙ୍କ ସହ ପଣ୍ଡିତ ନେହେରୁଙ୍କ ସାକ୍ଷାତ ହୁଏ ସିମଳାରେ, ମଧ୍ୟାହ୍ନ ଭୋଜନରେ । ସାମ୍ବାଦିକମାନେ ପଚାରିଲେ- ଆପଣ ନମ୍ବୁଦ୍ରି ବ୍ରାହ୍ମଣ, ପଣ୍ଡିତଜୀ କାଶ୍ମିରୀ ବ୍ରାହ୍ମଣ । ଆଜି

କଣ ମେନୁ ଥିଲା ମଧ୍ୟାହ୍ନ ଭୋଜନର । ଉତ୍ତର ଆସିଲା । ବଢ଼ିଆ ଚିକେନ୍ । ଇ.ଏମ.ଏସ୍. ବହୁ କାଳରୁ ସମାଜ ସଂସ୍କାରକ ଏବଂ ବିଦ୍ରୋହୀ ପାଲଟିସାରିଥିଲେ । ସେ କେବଳ କଥାରେ ସାମ୍ୟବାଦ କଥା କହୁ ନ ଥିଲେ କାର୍ଯ୍ୟରେ ମଧ୍ୟ ତାହା କରୁଥିଲେ । ଆପଣାର ସବୁ ପୈତୃକ ସମ୍ପତ୍ତିକୁ ସେ କମ୍ୟୁନିଷ୍ଟ ପାର୍ଟିକୁ ଦାନ କରିଦେଇଥିଲେ । ଏବଂ ତାଙ୍କ ଘରେ ବହୁକାଳ ଧରି କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ର ଅଫିସ କାର୍ଯ୍ୟ କରୁଥିଲା ।

ସ୍କୁଲ ପାଠ ସରିବା ପରେ ପରେ ହିଁ ସେ ସମାଜ ସଂସ୍କାର ପାଇଁ ପ୍ରଗତିଶୀଳ ବ୍ରାହ୍ମଣମାନଙ୍କର ଅନୁଷ୍ଠାନ 'ଉନି ନମ୍ବୁଦ୍ରି ଆନ୍ଦୋଳନ' ଗଠନ କରିଥିଲେ । ଏଥିପାଇଁ ତାଙ୍କୁ ବହୁ ନିର୍ଯ୍ୟାତନା, ଲାଞ୍ଛନା ଭୋଗ କରିବାକୁ ପଡ଼ିଛି । ନାରୀମାନଙ୍କୁ ଅଧିକାର ଦେବା ବା ସମାଜର ତଳ ସ୍ତରରେ ଥିବା ମଣିଷମାନଙ୍କୁ ନ୍ୟାୟ ଦେବା ସହଜ କଥା ନ ଥିଲା । ବେଦ ଶାସ୍ତ୍ରରେ ପାଣ୍ଡିତ୍ୟ ଲାଭ କରିଥିବା ଇ.ଏମ୍.ଏସ୍. ବେଦଶାସ୍ତ୍ରକୁ ହିଁ ବ୍ୟବହାର କଲେ ରକ୍ଷଣଶୀଳତା ବିରୁଦ୍ଧରେ । ପରବର୍ତ୍ତୀ କାଳରେ ସେ ଏହାକୁ ମଧ୍ୟ ବ୍ୟବହାର କଲେ ଜାତୀୟ ଆନ୍ଦୋଳନରେ, ମାର୍କ୍ସବାଦକୁ ଭାରତ ଭୂଇଁରେ ନିଜସ୍ୱ କରିବାରେ । ସମାଜ ବିଭିନ୍ନ ଶ୍ରେଣୀରେ ବିଭକ୍ତ । ତେଣୁ ପ୍ରତ୍ୟେକ ଶ୍ରେଣୀ ପାଇଁ ମାର୍କ୍ସବାଦର ସ୍ୱତନ୍ତ୍ର ବୟାନ ଆବଶ୍ୟକ । ନମ୍ବୁଦ୍ରିପଦ ଭାରତୀୟ ପରମ୍ପରା ସହିତ ମାର୍କ୍ସବାଦର ସୃଜନଶୀଳ ପ୍ରୟୋଗ ପାଇଁ କାର୍ଯ୍ୟକରି ଆସିଥିଲେ ଜୀବନ ସାରା ।

୧୯୨୦ ମସିହାରେ ସେ କଲେଜ ପଢ଼ା ଅଧାରୁ ରଖି ଯୋଗ ଦିଅନ୍ତି ସ୍ୱାଧୀନତା ସଂଗ୍ରାମରେ । ଆଜି ମଧ୍ୟ ପୁରୀର ଜଗନ୍ନାଥ ମନ୍ଦିର ଅସବର୍ଣ୍ଣ ଓ ବିଦେଶୀମାନଙ୍କ ପାଇଁ ଉନ୍ମୁକ୍ତ ନୁହେଁ । କିନ୍ତୁ କେରଳରେ ମନ୍ଦିର ପ୍ରବେଶ ଅନ୍ଦୋଳନ ସ୍ୱାଧୀନତା ସଂଗ୍ରାମରେ ଅବିଚ୍ଛେଦ୍ୟ ଅଂଶ ଥିଲା ଏବଂ ତାହା ହିଁ ନମ୍ବୁଦ୍ରିପଦ ଏବଂ ଏ.କେ. ଗୋପାଳନଙ୍କୁ ପ୍ରବାଦ ପୁରୁଷରେ ପରିଣତ କରିଥିଲା ।

ନମ୍ବୁଦ୍ରିପଦ ୧୯୨୦ ମସିହାରୁ ହିଁ ଭାରତୀୟ ଜାତୀୟ କଂଗ୍ରେସର ସର୍ବଭାରତୀୟ କମିଟିର ସଭ୍ୟ ହୋଇ ସାରିଥିଲେ ଏବଂ ୧୯୩୭ ମସିହାରେ ସେ ତାଙ୍କର ସହଯୋଦ୍ଧା କ୍ରିଷ୍ଣା ପିଲାଇ, ଦାମୋଦରନ ଏବଂ ଶେଖରଙ୍କ ସାଙ୍ଗରେ କଂଗ୍ରେସ ଭିତରେ ସୋସାଲିଷ୍ଟ ଗ୍ରୁପ ଗଠନ କରିଥିଲେ । ଏହି ସମୟ ହିଁ ଥିଲା ତାଙ୍କର ଜୀବନରେ ଏକ ଗୁରୁତ୍ୱପୂର୍ଣ୍ଣ ମୋଡ଼ । ସେହି ବର୍ଷ ହିଁ ସେ ମାଦ୍ରାଜ ବିଧାନସଭାକୁ ଜାତୀୟ କଂଗ୍ରେସର ପ୍ରାର୍ଥୀ ଭାବରେ ନିର୍ବାଚିତ ହୋଇଥିଲେ ।

୧୯୩୬ ମସିହାରେ ଯେଉଁମାନେ ଭାରତବର୍ଷରେ ବେଆଇନ୍ ଭାବରେ କମ୍ୟୁନିଷ୍ଟ ପାର୍ଟି ଗଠନ କରନ୍ତି ସେମାନଙ୍କ ଭିତରେ ନମ୍ବୁଦ୍ରିପଦ ଅନ୍ୟତମ । ୧୯୪୩ ମସିହାରେ କମ୍ୟୁନିଷ୍ଟ ପାର୍ଟିର ପ୍ରଥମ କଂଗ୍ରେସରେ ସେ କେନ୍ଦ୍ର କମିଟିକୁ ନିର୍ବାଚିତ ହୋଇଥିଲେ । ସେଇ ଦିନଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସେ ପାର୍ଟିର ସର୍ବୋଚ୍ଚ କମିଟିର ସଭ୍ୟ ହୋଇ ରହିଥିଲେ ଏବଂ କମ୍ୟୁନିଷ୍ଟ ପାର୍ଟିର ସବୁ କଂଗ୍ରେସରେ ଯୋଗ ଦେଇଥିଲେ । ବିଶାଳ ସାଂଗଠନିକ ଭିତ୍ତି, ଶାଣିତ ଏବଂ ଏକ ତାତ୍ତ୍ୱିକ ଜ୍ଞାନ ନିଷ୍ଠ ସାଧନା ତାଙ୍କୁ ପାର୍ଟିର ଅନ୍ୟତମ ନୀତି ନିର୍ଦ୍ଧାରକରେ ପରିଣତ କରିଥିଲା ।

ସେ ୧୯୩୯ ରୁ ୧୯୪୧ ପର୍ଯ୍ୟନ୍ତ ପଳାତକ ଥିଲେ । ଇତିହାସର କ୍ରୁର ପରିହାସରେ ତାଙ୍କୁ ପୁଣି ପଳାତକ ହେବାକୁ ହେଲା ୧୯୪୮ ରୁ ୧୯୫୧ ପର୍ଯ୍ୟନ୍ତ । କମ୍ୟୁନିଷ୍ଟ ପାର୍ଟିର ଦ୍ୱିତୀୟ କଂଗ୍ରେସ ୧୯୪୮ ମସିହାରେ । ସେଇଠି ସେ ପାର୍ଟିର ପଲିଟବ୍ୟୁରୋର ସଭ୍ୟ ନିର୍ବାଚିତ ହେଲେ । କମ୍ୟୁନିଷ୍ଟ ପାର୍ଟିର ରଣଦିଭେ ନୀତି ଏବଂ ପରବର୍ତ୍ତୀ କାଳରେ ରାଜେଶ୍ୱର ରାଓ ନୀତିର ପରିବର୍ତ୍ତନ କରି ଅଜୟ ଘୋଷ ଲାଇନ ଗ୍ରହଣ କରିବାରେ ଇ.ଏମ.ଏସ୍. ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଠିକ୍ ସେଇପରି ୧୯୬୪ ମସିହାରେ କମ୍ୟୁନିଷ୍ଟ ପାର୍ଟିର ବିଭାଜନରେ ମଧ ସେ ନିର୍ଣ୍ଣାୟକ ଏବଂ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ।

କମ୍ୟୁନିଷ୍ଟ ପାର୍ଟିର ଭାତୃ ବିବାଦ ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନକୁ ଦୁଇ ଭାଗରେ ବିଭକ୍ତ କଲା । ଭାରତବର୍ଷରେ ମଧ ତାହାର ପ୍ରଭାବ ପଡ଼ିଲା । ଦ୍ୱିତୀୟଥର ପାଇଁ ନମ୍ବୁଦ୍ରିପଦଙ୍କ ମନ୍ତ୍ରୀମଣ୍ଡଳ ଭାଙ୍ଗିଗଲା ସେଇ କାରଣରୁ । ସ୍ୱାସ୍ଥ୍ୟଗତ କାରଣରୁ ପି.ସୁନ୍ଦରାୟା ସି.ପି.ଏମ୍‌ର ସାଧାରଣ ସଂପାଦକ ପଦବୀରୁ ବିଦାୟ ନେଲା ପରେ ନିମ୍ବୁଦ୍ୱିପଦ ସି.ପି.ଏମ୍. ର ସାଧାରଣ ସଂପାଦକ ହେଲେ । ୧୯୯୨ ପର୍ଯ୍ୟନ୍ତ ତାଙ୍କରି ସମୟରେ ସୋଭିଏତ୍ ୟୁନିୟନ୍‌ରେ ଗ୍ଲାସନଷ୍ଟ ଓ ପେରିସ୍ତ୍ରୋଇକାର ଯୁଗ । ଇ.ଏମ୍.ଏସ୍. ଏହି ନୀତିର ବିରୋଧ କରନ୍ତି ଏବଂ ଏହା ସର୍ବନାଶକୁ ଡାକି ଆଣିବ ବୋଲି ଗୋର୍ବାସୋଭଙ୍କୁ ଚେତାବନୀ ଦିଅନ୍ତି । ତାଙ୍କର ଥିସିସ୍ ଗୋର୍ବାସୋଭ ଗ୍ରହଣ କରନ୍ତି ନାହିଁ ବା ଆପଣାର କମ୍ୟୁନିଷ୍ଟ ପାର୍ଟି ତାକୁ ଗ୍ରହଣ କରି ନାହିଁ । କିନ୍ତୁ ତାଙ୍କର ଭବିଷ୍ୟତ ବାଣୀ ପ୍ରମାଣିତ ହେଲା, କିଛି ବର୍ଷ ପରେ ।

ଭାରତୀୟ ରାଜନୀତିରେ ଯେଉଁ ମନ୍ଥନ ଆରମ୍ଭ ହୋଇଛି, ଯାହା ପୁନର୍ବିନ୍ୟାସର ଯୁଗକୁ ଉନ୍ମୋଚିତ କରୁଛି । ତାହାର ମୁଖ୍ୟ ନିର୍ଦ୍ଧାରକ ହେଉଛନ୍ତି ଇ.ଏମ.ଏସ୍. ।

ସେ ଯାହା କହନ୍ତି ତାକୁ ଲେଖନ୍ତି ଯେପରି, କାର୍ଯ୍ୟରେ ପରିଣତ କରନ୍ତି ସେଇପରି । ସେ ଲେଖନ୍ତି ସବୁ ଦିନେ - ବହି, ମ୍ୟାଗାଜିନ୍, ଜର୍ଣ୍ଣାଲ୍, ସବୁଥିରେ ଲେଖନ୍ତି । ତାଙ୍କରି ମୁକ୍ତି ସଂଗ୍ରାମର ଇତିହାସ, ମହାତ୍ମା ଏବଂ ଇଜମ, ଭାରତୀୟ ଅର୍ଥନୀତିର ସମୀକ୍ଷା ନେହେରୁ ଏବଂ ନେହେରୁଇଜମ୍ ପ୍ରଭୃତି ବହି ତାଙ୍କର କଲମର ଶକ୍ତି ପ୍ରମାଣିତ କରେ । ବିରୋଧୀ ମାନେ ମଧ ନମ୍ବୁଦ୍ରିପଦଙ୍କର ସାଂଗଠନିକ ଶକ୍ତି ଏବଂ ଶାଣିତ କଲମର ପ୍ରଶଂସା କରନ୍ତି । ଶତ୍ରୁକୁ ସବୁ ସାମ୍ନାଖ୍ୟରେ ଆକ୍ରମଣ କରେ ଏହାହିଁ ହେଉଛି ତାଙ୍କର ନୀତି ।

ମୃତ୍ୟୁର ଶେଷ ଦିନ ପର୍ଯ୍ୟନ୍ତ ତାଙ୍କର କଲମ ଚାଲିଥିଲା । ପୂର୍ବଦିନ ହିଁ ସେ ଲେଖିଥିଲେ ଅଟଳ ବିହାରୀଙ୍କ ସରକାର ଉପରେ । ତାଙ୍କ ଦ୍ୱାରା ଲିଖିତ ପୁସ୍ତିକା, ପ୍ରଚାରପତ୍ର, ନିବନ୍ଧ ଅସୁମାରି । ସବୁ ବିଷୟବସ୍ତୁ ଉପରେ ତାଙ୍କର ଲେଖା ଚିନ୍ତାଧାରାକୁ ଉନ୍ନତ କରିଛି, ବିତର୍କକୁ ଶାଣିତ କରିଛି ।

ନମ୍ବୁଦ୍ରିପଦ ଖନା, ପାଟି ଲାଗେ ବେଶ୍ । କିନ୍ତୁ କୌଣସି ପ୍ରତିବନ୍ଧକକୁ ସେ ମାନି ନାହାନ୍ତି । କୌଣସି ବିପର୍ଯ୍ୟୟ ତାଙ୍କୁ ବିଚଳିତ କରିନାହିଁ । ନମ୍ବୁଦ୍ରିପଦ ସିନା ସାମାଜିକ, ସାଂସ୍କୃତିକ ରକ୍ଷଣଶୀଳତାର ବିରୁଦ୍ଧରେ ବିଦ୍ରୋହର ଗୌରବ ପତାକା, କିନ୍ତୁ ଆପଣାର ନୀତିରେ ସେ ବେଶ୍ ରକ୍ଷଣଶୀଳ । ସେଇ ଯୋଗୁଁ ୧୯୯୨ ମସିହାରେ ସେ ବିଦାୟ ନିଅନ୍ତି ନେତୃତ୍ୱରୁ ,

କିନ୍ତୁ ରହନ୍ତି କେନ୍ଦ୍ର କମିଟିର ସଭ୍ୟ ହୋଇ । ସ୍ୱାସ୍ଥ୍ୟ ଛଡ଼ା ପରିବେଶର ପରିବର୍ତ୍ତନ ତାଙ୍କୁ ଏଇ ପ୍ରକାର ନିଷ୍ପତ୍ତି ନେବାକୁ ବାଧ୍ୟ କରିଥିଲା । ଜୀବନରେ ଯିଏ ପ୍ରବାହମାନ ଘଟଣାର ନିୟାମକ ସବୁବେଳେ ହୋଇ ଆସିଛି, ମୁଠା ଶିଥିଳ ହେବା ମୁହୂର୍ତ୍ତରେ ସେ ବିଦାୟ ନେଇଛନ୍ତି । ସାଧାରଣ ସଂପାଦକ ପଦବୀରୁ । ପରବର୍ତ୍ତୀ ପୀଢ଼ି ଉପରେ ଦାୟିତ୍ୱ ଅର୍ପଣ କରି ।

ଆପଣାର ସହଯୋଦ୍ଧା ଶ୍ରୀ ଅଚ୍ୟୁତ ମେନନ୍‌ଙ୍କ ପରି ସେ ଫେରି ଯାଇଛନ୍ତି ପୁଣି ଆପଣାର ମାଟିକୁ ।

ଉଦ୍‌ବେଳିତ ଜନସମୁଦ୍ର । ସବୁଦଳ, ସବୁ ମତର ଜନସାଧାରଣଙ୍କ ଜାତୀୟ ସମ୍ମାନ ଏଇ ମଣିଷଟି ପାଇଁ । ଇତିହାସର ଗୋଟାଏ ଅଧ୍ୟାୟ ସରି ଯାଉଛି । ସେ ଅଧ୍ୟାୟର ମହାନାୟକ ଶୋଇ ଯାଇଚି ମହାନିଦ୍ରାରେ । ତଥାପି ବହୁତ ରାତି ଅଛି । କିନ୍ତୁ ତାଙ୍କ ଜୀବନର ସଉଦା ସରି ଯାଇଚି ।କେରଳର ଇତିହାସରେ ଏଭଳି ଜନସାଧାରଣ ଦେଖା ଯାଇନଥିଲା । ସମସ୍ତଙ୍କର ଆଖିରେ ଲୁହ । ମହାନାୟକ ଶୋଇ ଯାଇଛି ଶେଷ ନିଦ୍ରାରେ ।



# ଅର୍ଗାନର ଶେଷ ଝଙ୍କାର

**ସେ** ମାଉଥ ଅର୍ଗାନ୍ ବଜାଏ । କଣ କାମ କରେ ଜୀବିକା ପାଇଁ ମୁଁ ଠିକ୍ କହି ପାରିବି ନାହିଁ । କେହି ବି କହି ପାରିବେ କି ନା ସନ୍ଦେହ । ତେବେ କାଠଗୋଲାରେ କଣ ଗୋଟାଏ ଛୋଟ କାଠର କାମ କରେ ବୋଲି ଶୁଣିଚି । ସେଇଥିରେ ଜୀବିକା ଚାଲେ । ପେଷା ତାର ସେଇଟା । ସଂସାରରେ ଚଳିବାକୁ ହେଲେ କିଛି କରି ତ ଗୁଜୁରାଣ ମେଣ୍ଟାଇବାକୁ ହେବ । ନିଶା କିନ୍ତୁ ମାଉଥ ଅର୍ଗାନ ବଜାଇବା ।

ସେ ବେଶ୍ ଭଲ ମାଉଥ ଅର୍ଗାନ୍ ବଜାଏ । କିନ୍ତୁ ଅନେକ ଆର୍ଟିଷ୍ଟଙ୍କ ଭଳି ତାଙ୍କର କୌଣସି ଇନହବିସନ୍ ନାହିଁ । ଗୋଡ଼ ଲମ୍ବାଏ ନାହିଁ । ପଇସା ମାଗେ ନାହିଁ । ଜିଗର ବି କରେ ନାହିଁ । ଅନୁରୋଧ କଲାମାତ୍ରେ ସେ ବଜାଇବା ଆରମ୍ଭ କରିବ ।

ସେଇ ଉଜୀର ମହମ୍ମଦ ଆଉ ନାହିଁ । ବୋଲି ଶୁଣିଲି । କେହି ଖବର ଦେଇ ନାହାନ୍ତି । ଯେମିତି ଅଜଣା ଥିଲା ସେଇପରି ଚାଲିଗଲା । ଖବର ପାଇଲା ବେଳକୁ ଅନେକ ଡେରି ହୋଇଯାଇଚି ।

ଉଜୀରର ଚେହେରାଟା ଇମିତି ଯେ ସମସ୍ତେ ତାକୁ ଚିହ୍ନି ପାରିବେ । ବେଶ୍ ମୋଟା ଚେହେରା । ସେଇଟା ଖାଦ୍ୟ ଯୋଗୁଁ ନୁହେଁ । ଏକ ପ୍ରକାର ଉଦର ଅବୟବ ରୋଗ ଯୋଗୁଁ । ଏବେ ତ ଭୀଷଣ ମୋଟା ଚେହେରା ପୁଣି ତା ଉପରେ ପ୍ରବଳ ମାଉଥ ଅର୍ଗାନ୍ ବାଦନ । ହୃଦୟ ଏବଂ ଫୁସ୍‌ଫୁସ୍ ଉପରେ ନିଶ୍ଚିତ ଭାବରେ ବେଶ୍ ଚାପା ପଡୁଥିବ । ତାହାରି ଫଳ ବୋଧହୁଏ ତାର ମୃତ୍ୟୁର କାରଣ । ବୟସ ବେଶୀ ହୋଇ ନଥିଲା ।

ଘରକୁ ନିମନ୍ତ୍ରଣ କରେ ଖାଇବାକୁ ଇଦ୍ ଦିନ । ନ ଗଲେ ପିଲାଙ୍କ ଭଳି ରୁଷିବ, ଅଭିମାନ କରିବ । କିନ୍ତୁ ମାଉଥ୍ ଅର୍ଗାନ୍ ବଜାଇବାକୁ କହିଲେ ସାଙ୍ଗେ ସାଙ୍ଗେ ବଜାଇବାକୁ ଆରମ୍ଭ କରିବ ।

ବହୁ ସାଂସ୍କୃତିକ କାର୍ଯ୍ୟକ୍ରମରେ ତାକୁ ମାଉଥ୍ ଅର୍ଗାନ୍ ବଜାଇବାର ଦେଖିଛି । ବଜାଏ ପ୍ରାଣ ଦେଇ । ତାନ, ମାନ, ଲୟ ସବୁ ଦେଇ ବଜାଏ । କିଛି ମାଗେ ନାହିଁ । ଦେଲେ ନିଏ । କିଏ କେତେ ଦେଲା ତାର ହିସାବ ରଖେ ନାହିଁ । ବିଦେଶରେ ମାଉଥ ଅର୍ଗାନର ଚାହିଦା ବେଶୀ । ଭଲ ଭଲ ମାଉଥ ଅର୍ଗାନ ବି ମିଳେ । ସେ ବିଷୟରେ କୌଣସି ଜ୍ଞାନ ନ ଥିଲେ ବି ଯେତେଥର ବିଦେଶ ଯାଇଛି ତା ପାଇଁ ମାଉଥ ଅର୍ଗାନ୍‌ଟିଏ ଆଣିଚି । ବିଦେଶରେ ମାଉଥ ଅର୍ଗାନ୍ ବଜାଇବା ଦେଖିଲେ ମନେପଡ଼େ ଉଜୀରର ମୁହଁ । ଆଉ ମାଉଥ୍ ଅର୍ଗାନ୍‌ଟିଏ ବଢ଼ାଇଦେଲେ ତା ହାତକୁ

କି ଖୁସୀ ତାର । କୃତଜ୍ଞତା ହସ ଭିତର ଦେଇ ଯେପରି ଉତୁରି ଆସୁଛି । ଆଉ ବୁଲି ବୁଲି କେତେ ଲୋକଙ୍କୁ ସେ କହେ ସେଇ ମାଉଥ୍ ଅର୍ଗାନ୍‌ର କଥା ।

ଜାଣିଚ, ଗରିଜା ଭାଇ ଆଣି ଦେଇଛି ମୋ ପାଇଁ ଏଇ ମାଉଥ୍ ଅର୍ଗାନ୍ ।

ଅନେକ ଲୋକଙ୍କ ପାଇଁ ଅନେକ ଜିନିଷ ଆଣିଛି ମୁଁ ବିଦେଶରୁ । କିନ୍ତୁ ଏଇଭଳି ପ୍ରଚାର, ଏଇଭଳି କୃତଜ୍ଞତା କାହାଠାରୁ ପାଇନାହିଁ । କାଜିବଜାରରେ ତା ଘର । କେତେଥର ତା ଘରକୁ ଯାଇଛି । ସବୁ ଥର ସେ ପୁଣିଥରେ ସମସ୍ତଙ୍କ ସହ ପରିଚିତ କରାଇଦେବ ସେଇ କଥା କହି । ନିଜକୁ ଲାଜ ମାଡ଼େ । କିନ୍ତୁ ଉଜୀର କି ମାନେ ସେ କଥା ?

ଉଜୀର ନାହିଁ । ସେ ହଜିଯିବ ସମସ୍ତଙ୍କ ସ୍ମୃତିରୁ ଖୁବ୍ ସହଜରେ । କାରଣ ତାର ନା ଥିଲା ପ୍ରତିଷ୍ଠା, ନା ଥିଲା ଡିଗ୍ରୀ, ନା ଥିଲା ଅର୍ଥ !

କିନ୍ତୁ ମୋ ପାଇଁ ତ ସେ ମରି ପାରିବ ନାହିଁ । ହଜି ପାରିବ ନାହିଁ । ମହାକାଳ ବକ୍ଷରେ ତାର ସେଇ ମାଉଥ୍ ଅର୍ଗାନର ସ୍ୱର ଧ୍ୱନିତ ହେବ ଚିରକାଳ । ଭବିଷ୍ୟତରେ ଯେବେ ବିଦେଶ ଗଲେ ମନେ ପଡ଼ିବ ଉଜୀର । ଆଉ ତ ମାଉଥ୍ ଅର୍ଗାନ୍ କିଣିବା ଆବଶ୍ୟକ ହେବ ନାହିଁ । କିନ୍ତୁ ମାଉଥ୍ ଅର୍ଗାନ୍ ବାଜିଲେ ମନେ ପଡ଼ିବ ଉଜୀର୍, ତାର ସେଇ ବର୍ତ୍ତୁଳାକାର ଚେହେରା, ତାର ସେଇ ହସ ଆଉ ତାର ସେଇ ମାଉଥ୍ ଅର୍ଗାନ୍ ।



# କଲମର ଶେଷ ଗାର- କାଳିର ଶେଷ ବିନ୍ଦୁ

**ପ**ଣ୍ଡିତ ଉପେନ୍ଦ୍ର ତ୍ରିପାଠୀଙ୍କର ପରଲୋକ ହୋଇଯାଇଛି । ୧୯୦୩ ରୁ ୧୯୯୪ । ଏକ ଅଧ୍ୟାୟର ପରିସମାପ୍ତି ହୋଇଛି । ୧୯୦୩ ମସିହା । ବିଂଶ ଶତାବ୍ଦୀର ଆରମ୍ଭ କାଳ । କଟକ ଜିଲ୍ଲାର ଧର୍ମଶାଳା ଥାନାର ମୁରାରୀପୁର ଗ୍ରାମ । ଦାଶରଥି ତ୍ରିପାଠୀ ଓ ଚନ୍ଦ୍ରମଣି ଦେବୀଙ୍କର ପୁତ୍ର ଭାବରେ ଯେଉଁ ପିଲାଟି ଜନ୍ମହେଲା ତାର ଭବିଷ୍ୟତର ଭିତ୍ତି ପଡ଼ିଥିଲା ପିତାଙ୍କ ଦ୍ୱାରା । ସନ୍ଧ୍ୟା ନଇଁ ଆସେ ଗାଁରେ । ରାତି ପହରେ ନ ହେଉଣୁ ସମସ୍ତେ ଶୋଇ ପଡ଼ନ୍ତି । କିନ୍ତୁ ପିତା ଦାଶରଥି ପୁତ୍ରକୁ ପଢ଼ି ଶୁଣାନ୍ତି ଛାନ୍ଦ, ଚଉତିଶା, ପଢ଼ି ଶୁଣାନ୍ତି ବଙ୍ଗଳା ପୁସ୍ତକକୁ । ପରେ ପିଲାକୁ ମୁଖସ୍ଥ କରିବାକୁ ଦିଆଯାଏ ଏଇ ସବୁ ଛାନ୍ଦ, ଚଉତିଶାକୁ । ପିଲାଟିର ପ୍ରତିଭା ବିକଶିତ ହେବାକୁ ଆରମ୍ଭ କରିଥିଲା ସେଇଦିନୁ । ସାହିତ୍ୟ ତାଙ୍କ ପାଇଁ ସାବଲୀଳ ହୋଇ ଯାଇଥିଲା । ରକ୍ତରେ ମିଶି ଯାଇଥିଲା । 'ଆଲୋକ' ନାମରେ ଏକ ହସ୍ତଲିଖିତ ପତ୍ରିକା ବହନ କରେ ଏଇ ଶିଶୁର ପ୍ରଥମ ସ୍ଫୁରଣ କ୍ଷୁଦ୍ର କବିତା ।

ସମୟ ଅତିକ୍ରାନ୍ତ ହେବାକୁ ଲାଗିଲା । ଉପେନ୍ଦ୍ର ଛାତ୍ରରୁ ଶିକ୍ଷକ ହେଲେ । ଲେଖା ତ ଚାଲିଥିଲା । ଶିକ୍ଷକ ଜୀବନ ସେଥିପାଇଁ ସହାୟକ ହେଲା, ପ୍ରତିବନ୍ଧକ ହେଲା ନାହିଁ । ଶିକ୍ଷକତା ତାକୁ ପିଲାମନ, ପିଲା ଭାଷା ଜାଣିବା ପାଇଁ ସାହାଯ୍ୟ କଲା । ଖାଲି ସରଳ ଭାଷାରେ ଲେଖିଦେଲେ ତ ଚଳିବ ନାହିଁ । ପିଲାର ମନ ଛୁଆଁ ହେବାର ଦରକାର । ଏଇ ସମୟରେ 'ପଞ୍ଚାମୃତ' ପତ୍ରିକାରେ ପ୍ରାୟ ସବୁ ସଂଖ୍ୟାରେ ଉପେନ୍ଦ୍ରଙ୍କ ଲେଖା ପ୍ରକାଶିତ ହେଲା । ନିୟମିତ ପ୍ରକାଶନ ତାଙ୍କୁ ଅଫୁରନ୍ତ ପ୍ରେରଣା ଦେଲା । ସେ ଲେଖିଚାଲିଲେ । ୧୯୨୩ ମସିହାରେ ସେ ଶିକ୍ଷକତା ଆରମ୍ଭ କରନ୍ତି । ପ୍ରାୟ ୫୦ ବର୍ଷର ଦୀର୍ଘ କାଳ ତାଙ୍କର ଶିକ୍ଷକତା ଯେମିତି ସେଇପରି ଏଇ ଦୀର୍ଘ କାଳ ଧରି ତାଙ୍କର ସାହିତ୍ୟ ସାଧନା ଓ ସୃଷ୍ଟି । କଲମ ଧୀରେ ଧୀରେ ପୋଷା ମାନି ଥିଲା । କୋଡ଼ିଏରୁ ଊର୍ଦ୍ଧ୍ୱ ବହି ରଚନା କରି ଯାଇଛନ୍ତି ଏଇ ସମୟକାଳ ମଧ୍ୟରେ 'କୁହୁକୁହୁ', 'ରୁଣୁଝୁଣୁ', 'ଗୁଣୁଗୁଣୁ', 'କୁନୁକୁନୁ', 'ସୁଲୁସୁଲୁ' ପୁସ୍ତକର କବିତା ପିଲାଙ୍କ ମନରେ କୁହୁତାନ ସୃଷ୍ଟି କଲା । କୁନୁକୁନୁ ହୋଇ ବୋହି ଯାଉଥିବା ଶିଶୁ ମନରେ ଏହା ସେଇପରି ତାନର ସୃଷ୍ଟି କଲା । ପ୍ରକାଶ ପାଇଲା ହସ ଚାଙ୍ଗୁଡ଼ି (୧୯୫୦) କଷିକାକୁଡ଼ି (୧୯୫୧), ଘଣ୍ଟି ଘାଗୁଡି (୧୯୫୧) ବେଙ୍ଗ ବାହାଦୁର ନା ଡେଙ୍ଗ ବାହାଦୁର(୧୯୬୪) ବହି ପିଲାଙ୍କ ମନରେ ଆଣି ଦେଲା ଶବ୍ଦର ନୂଆ ତାନ । 'କଲାବଉଦ', ଶିଶୁ ସଂଖାଳି (୧୯୩୬), ଭାଉଭଉଣୀ, ଏହିପରି ଅନେକ ବହି ତାଙ୍କ କଲମରୁ ଝରିଲା ।

ସ୍ୱୀକୃତି ଆସିଛି । ଆସିଛି ପୁରସ୍କାର । ୧୯୫୮ ମସିହାରେ ଘଣ୍ଟି ଘାଗୁଡ଼ି, ୧୯୬୪ ମସିହାରେ 'ପିଲାଙ୍କ ପଶୁ ପକ୍ଷୀ ପୁରାଣ' କେନ୍ଦ୍ର ସରକାରଙ୍କ ଦ୍ୱାରା, ୧୯୬୪ ମସିହାରେ 'ବେଙ୍ଗ ବାହାଦୁର' ରାଜ୍ୟ ସରକାରଙ୍କ ଦ୍ୱାରା ପୁରସ୍କୃତ ହୋଇଛି । କଲମ ଧୀର ହୋଇନାହିଁ । ଚାଲିଛି ଅବାରିତ ଗତିରେ ।

ଛୋଟିଆ ଛୋଟିଆ କଥାକୁ ପିଲାଙ୍କ ମନଛୁଆଁ ଭାଷାରେ ପ୍ରକାଶ କରିବା ସହଜ ନୁହେଁ । ଏଇଥି ପାଇଁ ଉପେନ୍ଦ୍ର ତ୍ରିପାଠୀ ସ୍ମୃତ ହୋଇ ରହିବେ ଚିରକାଳ । ପିଲା ଆସିବେ ପଢ଼ିବେ ତାଙ୍କର କବିତା । ସେମାନେ ବଡ଼ ହେବେ, ପର ପୀଢ଼ିକୁ ପଢ଼ାଇବେ । ବାପା ତାଙ୍କର ପିଲାକାଳରେ ଯେମିତି ମୁଗ୍ଧ ହେଉଥିଲେ ଏଇ କବିତା ପଢ଼ି, ପୁଅ ମଧ୍ୟ ସେମିତି ମୁଗ୍ଧ ହେବ । ପୀଢ଼ି ପରେ ପୀଢ଼ି । ଉପେନ୍ଦ୍ର ତ୍ରିପାଠୀ ବଞ୍ଚି ରହିବେ ଜନମାନସରେ ।

ସମୟ ଗଡ଼ି ଚାଲିଲା । ଜୀବନର କୁହୁ ସରି ଆସୁଛି । ଆଉ ଜୀବନର ଗୁଣୁଗୁଣୁ ଶୁଭିବ ନାହିଁ । ୧୯୯୪ ମସିହାର ଶେଷ ଉପେନ୍ଦ୍ର ତ୍ରିପାଠୀକୁ ଦେଖିଲା ନାହିଁ । ମହାକାଳ ବକ୍ଷରେ ଜୀବନର କୁନୁକୁନୁ ତାନ ବିଲୀନ ହୋଇଗଲା । ତାଙ୍କର ଜୀବନର ରୁଣୁଝୁଣୁ ଆଉ ବାଜିବ ନାହିଁ । କିନ୍ତୁ ତାଙ୍କର କବିତାର ସେଇ ତାନ ବୋହି ଚାଲିବ ଅନନ୍ତ କାଳ ପର୍ଯ୍ୟନ୍ତ ।

ସେଇତ ତାଙ୍କର ଜୀବନର ସାର୍ଥକତା ।



# ବନ୍ଧୁର ବିୟୋଗ

ଆଜି ଜୁଲାଇ ୬, ୧୯୯୭ । ସକାଳୁ ଖବର ମିଳିଲା ଯେ ଓ.ପି.ଗୁପ୍ତଙ୍କର ପରଲୋକ ହୋଇଯାଇଛି । ସେ ଗଲା କିଛି ବର୍ଷ ହେଲା ଅସୁସ୍ଥ ଥିଲେ ଏବଂ ରାଜନୀତିରୁ ଅପସରି ଯାଇଥିଲେ । କିନ୍ତୁ ଅସୁସ୍ଥତାରୁ କିଛି ମୁକ୍ତି ପାଇଁ ସେ ଆସୁଥିଲେ ତାଙ୍କର ଦୋକାନ ଗୁପ୍ତା ସ୍ପୋର୍ଟସକୁ । କାଲି ରାତିରେ ହଠାତ୍ ସେ କୌଣସି କାରଣରୁ ଉତ୍ତେଜିତ ହୋଇ ଉଠିଥିଲେ ଏବଂ ସେଇ ରାତିରେ ହିଁ ତାଙ୍କର ପରଲୋକ ହୋଇଗଲା ।

ଓ.ପି.ଗୁପ୍ତ ଓଡ଼ିଶାରେ ଖେଳ ସାମଗ୍ରୀ ଉତ୍ପାଦନରେ ପାଇଓନିଅର । ଖେଳ ସାମଗ୍ରୀ ଉତ୍ପାଦନରେ ପଞ୍ଜାବ ଶୀର୍ଷ ସ୍ଥାନ ଅଧିକାର କରିଛି । ଦେଶରେ ପଞ୍ଜାବର ସେଇଟା ଏକଚାଟିଆ ଅଧିକାର ବୋଲି କହିଲେ ଭୁଲ୍ ହେବ ନାହିଁ । ଓ.ପି.ଗୁପ୍ତ ଆସିଥିଲେ ପଞ୍ଜାବରୁ । ଓଡ଼ିଶାରେ ଦୋକାନ ଖୋଲିଥିଲେ । ପରେ ସେ ଓଡ଼ିଶାରେ କ୍ରୀଡ଼ା ସାମଗ୍ରୀ ଉତ୍ପାଦନ ପାଇଁ ମନୋନିବେଶ କରିଥିଲେ ।

ଓ.ପି.ଗୁପ୍ତ ଓଡ଼ିଶାର କ୍ରୀଡ଼ା ଜଗତରେ ମଧ୍ୟ ବେଶ୍ ଭୂମିକା ଗ୍ରହଣ କରିଥିଲେ । ପ୍ରାୟତଃ ତାଙ୍କୁ ବାରବାଟୀ ଷ୍ଟାଡିୟମ୍ ପରିସର ଭିତରେ ଦେଖା ଯାଉଥିଲା । କ୍ରୀଡ଼ା ସାମଗ୍ରୀ ବିକ୍ରୀ କରିବା ପାଇଁ କେବଳ ନୁହେଁ ଖେଳ ପାଇଁ ଦରଦ ଯୋଗୁଁ ତାଙ୍କୁ ଖେଳ ମଇଦାନରେ ଦେଖିବାକୁ ମିଳୁଥିଲା । ମୋର ଯାହା ମନେ ପଡୁଛି, କିଛି କିଛି କ୍ରୀଡ଼ା ସଂଗଠନର ମଧ୍ୟ ସେ ଛୋଟ ବଡ଼ କର୍ମକର୍ତ୍ତା ବି ଥିଲେ ।

ଡକ୍ଟର ହରେକୃଷ୍ଣ ମହତାବ ତାଙ୍କୁ ପୁଣି ଥରେ ରାଜନୀତି ଭିତରକୁ ଆଣିଥିଲେ । ପୁଣି ଥରେ କହିବାର ଅର୍ଥ ହେଉଛି ଓ.ପି.ଗୁପ୍ତ ଏକଦା ରାଜନୀତିର ଜଣେ ବେଶ୍ ଜଣାଶୁଣା ସକ୍ରିୟ କର୍ମୀ ଥିଲେ । ଓଡ଼ିଶାରେ ସେ ତାଙ୍କର ପୁରାତନ ଭୂମିକାକୁ ଭୁଲିଯାଇ କଂଗ୍ରେସ ଓ ପରେ ଜନତା ଦଳରେ ଯୋଗଦେଇଥିଲେ । କଟକ ପୌର ସଂସ୍ଥାର ମଧ୍ୟ ସେ କାଉନ୍‌ସିଲର ଥିଲେ । କେତେଥର ମୋର ମନେ ନାହିଁ । କିନ୍ତୁ ପୌର କାଉନ୍‌ସିଲରେ ତାଙ୍କୁ ଜଣେ ପୁରୁଖା ମଣିଷ ଭାବରେ ସମ୍ମାନ ମିଳୁଥିବାର ମୁଁ ଦେଖିଛି ।

ଓ.ପି.ଗୁପ୍ତଙ୍କର ମୃତ୍ୟୁ ଖବର ସଂବାଦ ପତ୍ରରେ ପ୍ରକାଶ ପାଇନାହିଁ । ତାଙ୍କୁ ପୌର ସଂସ୍ଥା ସମ୍ମାନ ଜଣାଇଛି କି ନାହିଁ ତା ବି କହି ପାରିବି ନାହିଁ । କାରଣ ନିଜେ ଅସୁସ୍ଥ ଥିବା ହେତୁ ମୁଁ ତାଙ୍କର ଶେଷ ଦର୍ଶନ କରି ପାରିନାହିଁ । ୟୁନିଭର୍ସର ଜଣେ ସକ୍ରିୟ ସଭ୍ୟଙ୍କ ହାତରେ ପୁଷ୍ପମାଲ୍ୟ ପଠାଇ ଦେଇଛି ତାଙ୍କ ଶବାଧାର ଉପରେ ଅର୍ପଣ କରିବା ପାଇଁ ।

କିନ୍ତୁ ଯେଉଁ ଓ.ପି.ଗୁପ୍ତଙ୍କୁ ମୁଁ ହେଜୁଛି ସେ ଏଇ ଓ.ପି.ଗୁପ୍ତ ନୁହଁନ୍ତି । ଅତୀତକୁ ଆଖି ଫେରି ଯାଉଛି । ସେ ଆସିଥିଲେ କଟକକୁ ଏବଂ ବହୁଦିନ ଧରି ସେ 'ବ୍ୟବସାୟୀ' ରୂପରେ

ଆପଣାକୁ ପରିଚିତ କରିବାକୁ ଚେଷ୍ଟା କରିଛନ୍ତି । ମୋର ଦେଖାହୁଏ ଦିନେ ହଠାତ୍ । ମୁଁ ପ୍ରଥମେ ବିଶ୍ୱାସ କରି ପାରିଲି ନାହିଁ । ଯେଉଁ ଲୋକକୁ ମୁଁ ଦେଖୁଛି ସେ ଠିକ୍ ଓ.ପି.ଗୁପ୍ତ ଭଳି ଦେଖାଯାଉଛନ୍ତି କିନ୍ତୁ ସେ ଏଠାକୁ ଆସିବେ କିମିତି ? ସେତ... ।

ମୋର ଭଗ୍ନ ହେଲା ତାଙ୍କର ସମ୍ଭାଷଣରେ । ଓ.ପି.ଗୁପ୍ତ ପଞ୍ଜାବ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଥିଲେ । ପଞ୍ଜାବ ଛାତ୍ର ସଂଘର ନେତା ଥିଲେ ଏବଂ ଛାତ୍ର ସଂଘ ଅଫିସର ସେ ପରିଚାଳକ ଥିଲେ । ଠିକ୍ ଯେତିକିବେଳେ ଆଜି ଭାରତର ପ୍ରଧାନମନ୍ତ୍ରୀ ଇନ୍ଦର କୁମାର ଗୁଜରାଲ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ନେତା ଏବଂ ନିଖିଳ ଭାରତ ଛାତ୍ରସଂଘର ନେତା ଥିଲେ, ଓ.ପି. ଗୁପ୍ତ ପଞ୍ଜାବ ଛାତ୍ର ସଂଘର ଲଢୁଆ ଆନ୍ଦୋଳନରେ ଯେପରି ନେତୃତ୍ୱ ନେଇଛନ୍ତି, ପଞ୍ଜାବ ଟ୍ରେଡ୍ ୟୁନିୟନ୍ ଓ କିଷାନ ସଭାର ଆନ୍ଦୋଳନରେ ଯୋଗ ଦେଇଛନ୍ତି । ଭାରତ ବିଭାଜନକୁ ବିରୋଧ କରି ବହୁ ବିପତ୍ତିର ସମ୍ମୁଖୀନ ହୋଇଛନ୍ତି । ଭାରତ ବିଭାଜନ ତାଙ୍କ ପାଇଁ ବ୍ୟୁତ୍ପାତର କାରଣ ହୋଇଚି ।

ଲକ୍ଷ୍ୟ କରିଛି ଯେ ଭାରତ ବିଭାଜନ ପରେ ପଞ୍ଜାବର ଅନେକ ଛୋଟ କାଟର ନେତା ରାଜନୀତି ଛାଡ଼ି ଦେଇଛନ୍ତି । ଯେପରି ଘଟିଥିଲା ଇନ୍ଦର ଗୁଜରାଲ୍‌ଙ୍କ କ୍ଷେତ୍ରରେ । ପଞ୍ଜାବର ବିଭାଜନ ପରେ ସେ ପ୍ରତ୍ୟକ୍ଷ ରାଜନୀତିରୁ ପ୍ରାୟତଃ ଅପସରି ଯାଇଥିଲେ । ପରେ ଇନ୍ଦିରା ଗାନ୍ଧୀ ତାଙ୍କୁ ଆଣିଥିଲେ ରାଜନୀତିକୁ ପୁଣିଥରେ । ଠିକ୍ ସେଇପରି ହରେକୃଷ୍ଣ ମହତାବ୍ ଓ.ପି.ଗୁପ୍ତଙ୍କୁ ଆଣିଥିଲେ ପୁଣି ଥରେ ରାଜନୀତିକୁ ।

ଓ.ପି.ଗୁପ୍ତ କିନ୍ତୁ ଆଉ ତାଙ୍କ ପୁରୁଣା ରାଜନୀତି କଥା କହନ୍ତି ନାହିଁ । କେବଳ ରାଗିଗଲେ କାହା ଉପରେ ବା ଆମ ସାଙ୍ଗରେ ଖୁବ୍ ଯୁକ୍ତିତର୍କ ହେଲେ ସେ ଉଦ୍‌ଗାରି ପକାନ୍ତି ତାଙ୍କର ପୁରୁଣା ଦିନର କଥା ।

ସମାଜବାଦୀ ଆନ୍ଦୋଳନର ବହୁ ବିଶିଷ୍ଟ ନେତାଙ୍କ ସହିତ ତାଙ୍କର ପରିଚିତି ଥିଲା । କିନ୍ତୁ ସେ ସେମାନଙ୍କ କଥା ପକାନ୍ତି ନାହିଁ ବା ସେମାନେ କେହି ଓଡ଼ିଶାକୁ ଆସିଲେ ତାକୁ ଦେଖା କରନ୍ତି ନାହିଁ ।

ଓ.ପି.ଗୁପ୍ତ ଏପରି ଏକ ନୂତନ ଓ.ପି.ଗୁପ୍ତ ହୋଇଗଲେ ଓଡ଼ିଶାରେ । ଆଜି ସେ ନାହାନ୍ତି । ସେଇ ଯୋଗୁଁ ପୁରୁଣା କଥା ମନରେ ଖେଳି ଯାଉଛି ଏବଂ ତାଙ୍କୁ ଶ୍ରଦ୍ଧାଞ୍ଜଳି ଜଣାଇବା ଉଚିତ ମନେ କରୁଛି ।



# ଇତିହାସର ପୃଷ୍ଠାରେ

୧୯୮୬ ମସିହା ଜୁଲାଇ ଛଅ । କୃପାସିନ୍ଧୁ ପଟ୍ଟନାୟକଙ୍କ ତାଙ୍କ ପୁଅ ପାଖରେ ଭୁବନେଶ୍ୱରରେ ପରଲୋକ ହୋଇଯାଇଛି । ବୟସାଧିକ୍ୟ ଏବଂ ଅସୁସ୍ଥତା ହେତୁ ସେ ଆଉ ତାଙ୍କର କର୍ମପୀଠ ନୟାଗଡ଼ରେ ରହି ପାରିନ ଥିଲେ । ସେଠି ଆଉ କିଏ ଅଛି ତାଙ୍କର ? ସମସାମୟିକ ଲୋକ ହଜି ଗଲେଣି । ହେଜିବା ଖାଲି ହିଁ ସାର । ସମୟ ବଦଳି ଯାଇଛି । ତା ସହିତ ମୂଲ୍ୟବୋଧ ମଧ୍ୟ । କୃପାସିନ୍ଧୁ ଅଲୋଡ଼ା ହୋଇ ଯାଉଛନ୍ତି ଯଦିଓ ସବୁ ସଭା ସମିତି, ମେଳାମହୋତ୍ସବକୁ ତାଙ୍କୁ ଡାକରା ଆସୁଚି, କିନ୍ତୁ ସେ ଡାକରାରେ ମିଠା କେତେ ?

କୃପାସିନ୍ଧୁ ପଟ୍ଟନାୟକଙ୍କ ଘର ଓଳସିଂହ ଗ୍ରାମରେ । ପୁରୀ ଜିଲ୍ଲା । ଆଜି ହେରିବା ଭାରି କଠିନ କାମ । ନେତାଜୀ ସୁଭାଷ ବୋଷ ଏବଂ କୃପାସିନ୍ଧୁଙ୍କର ଜନ୍ମ ଏକା ବର୍ଷ । ପାଠ ପଢ଼ିବାକୁ ସେ ଆସିଥିଲେ କଟକ । ୧୯୧୨ ମସିହାରେ ପ୍ୟାରୀମୋହନ ଏକାଡେମୀରୁ ମାଟ୍ରିକ ପାଶ୍ କରି ରେଭେନ୍ସା କଲେଜରେ ଅଧ୍ୟୟନ ଆରମ୍ଭ । ମାତ୍ର ବର୍ଷକ ମଧ୍ୟରେ ରାଜନୈତିକ କାର୍ଯ୍ୟକଳାପ ପାଇଁ ରେଭେନ୍ସା କଲେଜରୁ ବିଦାୟ । ପଢ଼ିବାର ତୃଷା ତଥାପି ରହିଛି । କୃପାସିନ୍ଧୁ ବଙ୍ଗବାସୀ କଲେଜରୁ ୧୯୨୦ରେ ଆଇ.ଏ. ପାସ୍ କରନ୍ତି । ପ୍ରେସିଡେନ୍ସି କଲେଜରେ ଅଧ୍ୟୟନ । ୧୯୧୮ ମସିହା । କଲିକତା ସହର ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମରେ ଦୁଲୁକୁଛି । ପୁଣି ୧୯୧୭ ମସିହାରେ ଘଟି ଯାଇଛି ଯୁଗାନ୍ତକାରୀ ଅକ୍ଟୋବର ବିପ୍ଳବ ସୋଭିଏତ୍ ରୁଷରେ । ସାରା ପୃଥିବୀରେ ଚମକ ସୃଷ୍ଟି ହୋଇଛି । କୃପାସିନ୍ଧୁ ସେଥିରୁ ବାଦ ପଡ଼ନ୍ତେ କିପରି ? 'ଦି ସୋସାଲିଷ୍ଟ' ନାମକ ପତ୍ରିକା ପ୍ରକାଶ ପାଏ ନବଗଠିତ ସାମ୍ୟବାଦୀ ଗୋଷ୍ଠୀ ତରଫରୁ । ଏବଂ କୃପାସିନ୍ଧୁ ସେଇ ପତ୍ରିକା ସହ ସଂପୃକ୍ତ ହୁଅନ୍ତି । ସୋସାଲିଷ୍ଟ ଏବଂ କମ୍ୟୁନିଷ୍ଟ ପାର୍ଟିର ସର୍ବ ଭାରତୀୟ ନେତୃତ୍ୱ ସହିତ ତାଙ୍କର ପରିଚିତି ହୁଏ ।

କୃପାସିନ୍ଧୁ ଆଇନ ପାଶ୍ କରନ୍ତି କଟକରୁ ଏବଂ ଆଇନ ବ୍ୟବସାୟ ଆରମ୍ଭ କରନ୍ତି । ଭାରତ ଗୌରବେ ମଧୁସୂଦନ ଦାସଙ୍କ ଜୁନିଅର ଭାବରେ ପରବର୍ତ୍ତୀ କାଳରେ ଆଇନ୍ ବ୍ୟବସାୟ । ମହା ଦନ୍ତାବଳ ମାନଙ୍କ ସହିତ ତାଙ୍କର ଆତ୍ମୀୟତା ସେଇ ଦିନରୁ ।

ଦିନେ ହଠାତ୍ ଗୋପବନ୍ଧୁ ଦାସ (ଭାରତମଣି)ଙ୍କର ତାଙ୍କର ଭେଟ ହୁଏ । ଗାଁ ସ୍କୁଲ ଉଜୁଡ଼ି ପଡୁଛି । ଆଉ ତମେ ସେପାଖେ ଉତ୍ତର ପୀଢ଼ି ନ ଗଢ଼ି ଏଠି ଓକିଲାତି କରୁଛ ? କୃପାସିନ୍ଧୁ ଆଇନ ବହିରେ ଡୋରି ବନ୍ଧା ହେଲା । ସେ ଚାଲିଲେ ଗାଁ ଓଳସିଂହ ସ୍କୁଲକୁ । ଇତିହାସ ଇମିତି ଗଢ଼ା ହୁଏ । ଇମିତି ଦିନେ ଘଟିଥିଲା, ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ କ୍ଷେତ୍ରରେ । ସେ ଯାଉଥିଲେ

ଡିପୋଟି ହେବା ପାଇଁ ସାକ୍ଷାତକାରକୁ । ବାଟରେ ଦେଖାହେଲା ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସହ । ହଉ, ତମେ ଡିପୋଟି ହେବାକୁ ଯାଅ । ଦେଶ ତେଣେ ସଢୁ ପରାଧୀନତାର ବନ୍ଧନରେ । ଏଇଆ କହି ଗୋପବନ୍ଧୁ ଶୁଭେଚ୍ଛା ଜଣାଇଥିଲେ ଗୋଦାବରୀଶଙ୍କୁ । ଗୋଦାବରୀଶଙ୍କର ଜୀବନର ଗତି ସେଦିନ ବଦଳି ଯାଇଥିଲା । ସେ ଫେରିଥିଲେ ତାଙ୍କର ଗୁରୁଙ୍କ ସହିତ ?

କୃପାସିନ୍ଧୁ ହୋଇଥିଲେ ଅବୈତନିକ ଶିକ୍ଷକ ଓଳସିଂହ ହାଇସ୍କୁଲରେ । ସବୁ ଦାୟିତ୍ୱ ପଡ଼ିଥିଲା ତାଙ୍କ ଉପରେ, ଯଦିଓ ସେ ଥିଲେ ଜଣେ ଶିକ୍ଷକ ମାତ୍ର । ଅନ୍ୟାନ୍ୟ ସ୍କୁଲ ଛାଡ଼ି ପିଲାମାନେ ଆସୁଥିଲେ ଓଳସିଂହ ହାଇସ୍କୁଲକୁ । କୃପାସିନ୍ଧୁଙ୍କର ବ୍ୟକ୍ତିତ୍ୱ ଥିଲା ପ୍ରଧାନ ଆକର୍ଷଣ । ତଥାପି ଛାଡ଼ିବାକୁ ପଡ଼ିଲା କୃପାସିନ୍ଧୁଙ୍କୁ ସେ ଯାଗାକୁ । ଚକ୍ରାନ୍ତର ଶିକାର ହେଲେ ସେ । ସେ ହିସାବୀ ଲୋକ ନ ଥିଲେ । ସ୍କୁଲ କର, ରାଜନୈତିକ ଦଳରେ ସାମିଲ ହୁଅ, ସାମାଜିକ ସଂଗଠନ କର ସବୁଥିପାଇଁ ଆଜି ଅନେକ ହିସାବ କରିବାକୁ ପଡୁଛି । ସେତେବେଳେ ତାହାର ଆରମ୍ଭ ହୋଇଥିଲା ମାତ୍ର ।

କୃପାସିନ୍ଧୁ ପୁଣି ଫେରିଲେ ଓକିଲାତିକୁ । ସେଇ କାମରେ ସେ ଯାଇଥିଲେ ନୟାଗଡ଼ । ସେଇଠି ରହିଗଲେ ସେ । ନୟାଗଡ଼ ତାଙ୍କର ବାସସ୍ଥାନ ପାଲଟିଗଲା । କିନ୍ତୁ ତା ପୂର୍ବରୁ ସେ ଢେଙ୍କାନାଳ ପ୍ରଜାମଣ୍ଡଳର ପ୍ରତିଷ୍ଠା କାମରେ ସହାୟକ ହୋଇଥିଲେ । ରାଜଶକ୍ତି ବିରୁଦ୍ଧରେ ସେତେବେଳେ ଓକିଲ ମିଳିବା କଷ୍ଟକର ହେଉଥିଲା । ଆଜି ତ ଆଦୌ ମିଳୁ ନାହାନ୍ତି । ସେଦିନ କିନ୍ତୁ ଯେଉଁମାନେ ସେଇ ଅନ୍ଧାର ଭିତରେ ଦିହୁଡ଼ି ହେବାପାଇଁ ପ୍ରସ୍ତୁତ ହୋଇଥିଲେ ସେମାନଙ୍କ ଭିତରେ ଥିଲେ କୃପାସିନ୍ଧୁ । ଢେଙ୍କାନାଳ ରାଜ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମୀ ନେତାମାନଙ୍କର କେବଳ ସେ ଓକିଲ ହେଲେ ନାହିଁ । ସଂଗ୍ରାମକୁ ସାଙ୍ଗଠନିକ ରୂପ ଦେବା ସକାଶେ 'ପ୍ରଜାମଣ୍ଡଳ' ଗଠନ କରିବାରେ ପଣ ହେଲେ । ରାଜାଙ୍କର ଗିରଫଦାରୀକୁ ପରବାୟ ନ କରି ସେ ଢେଙ୍କାନାଳ ଛାଡ଼ିଲେ । ଆଉ ଫେରି ନାହାନ୍ତି ।

ନୟାଗଡ଼ରେ ଓକିଲାତି ଆରମ୍ଭ ହେଲା । ସେ ପ୍ରତିଷ୍ଠିତ ବ୍ୟକ୍ତି ଭାବରେ ପରିଚିତ ହେଲେ । ବହୁ ଅନୁଷ୍ଠାନ ସହିତ ସଂପୃକ୍ତ ହେଲେ । ବହୁ କାର୍ଯ୍ୟ ତାଙ୍କର ଆଲେଖ୍ୟ ବହନ କଲା । ରାଜନୈତିକ କର୍ମୀ ମାନଙ୍କର ସେ ଯେପରି ହେଲେ ପୃଷ୍ଠପୋଷକ, ସେଇପରି ହେଲେ ରାଜାଙ୍କର ପ୍ରକୃତ ପରାମର୍ଶଦାତା । ତାଙ୍କରି ପରାମର୍ଶରେ ନୟାଗଡ଼ ରାଜା ୧୯୪୫ ମସିହାରେ ପ୍ରଜାମାନଙ୍କୁ ଶାସନ ଅଧିକାର ଦେଲେ । ନୂଆ ଯୁଗର ସୂତ୍ରପାତ ହେଲା । ଇତିହାସ ତିଆରି ହେଲା ।

ପୁତ୍ର ଶିବାଜୀ ପଟ୍ଟନାୟକ କମ୍ୟୁନିଷ୍ଟ ପାର୍ଟିର କର୍ମୀ ଭାବରେ ଗିରଫ ହୁଅନ୍ତି ଏବଂ କଟକ ଜେଲରେ ୧୯୪୯ ମସିହାରେ ଐତିହାସିକ ୪୮ ଦିନବ୍ୟାପୀ ଅନଶନ ଆରମ୍ଭ ହୁଏ । ମରଣୋନ୍ମୁଖୀ ପୁତ୍ରକୁ ଦେଖିବା ପାଇଁ ସରକାର ଅନୁମତି ଦିଅନ୍ତି କୃପାସିନ୍ଧୁଙ୍କୁ । ସରକାର ଆଶା କରିଥିଲେ ଯେ ବ୍ୟଥିତ ପିତା ପୁତ୍ରକୁ ଅନଶନ କରିବାରୁ ନିବୃତ୍ତ କରାଇବେ । କିନ୍ତୁ

ଗର୍ବିତ ପିତା ପୁତ୍ରକୁ ଆଶୀର୍ବାଦ କରି କହିଲେ ଯଶସ୍ୱୀ ହୁଅ । ଧର୍ମର ଜୟ ହେଉ । ସରକାର ଅନୁମତି ମୋତେ ସୁଯୋଗ ଦେଲା ଦେଖିବାକୁ ତୋତେ । ଠିକ୍ ସେତିକିବେଳେ କେତେକ ପିତା ଆପଣାର ପୁତ୍ର କନ୍ୟାମାନଙ୍କୁ ଦେଶଦ୍ରୋହୀ ପିତୃଦ୍ରୋହୀ ବୋଲି ଆଖ୍ୟା ଦେଇଥିଲେ ।

ସମୟ ଅତିକ୍ରାନ୍ତ ହୋଇଛି । କୃପାସିନ୍ଧୁ ବାବୁ ଅସୁସ୍ଥ ହୋଇ ପଡ଼ିଛନ୍ତି । ତା ପରେ ? ତାପରେ ଆସିଛି ମୃତ୍ୟୁ । ମୃତ୍ୟୁ ଅଲଂଘନୀୟ । ଜନ୍ମିବା ଆଗରୁ ସେଇ ଗଳା ପିନ୍ଧି ଗଲେ, ଭୂମିଷ୍ଠ ହୁଅଇ ଜନ ଜନନୀ ଗର୍ଭରୁ । କୃପାସିନ୍ଧୁ ଆଉ ନାହାନ୍ତି । କିନ୍ତୁ ସେ ପାଲଟି ଯାଇଛନ୍ତି ଆମର ଐତିହ୍ୟ ଆମର ପରମ୍ପରା ।



# ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ !

**ସେ** ବର୍ଷ ରାମଚନ୍ଦ୍ର ଭବନରେ ସଭା ହେଉଥାଏ । ରଙ୍ଗମଞ୍ଚର ପ୍ରଖ୍ୟାତ ଅଭିନେତ୍ରୀ ରାଧାରାଣୀ ଦେବୀଙ୍କୁ ସମ୍ବର୍ଦ୍ଧନା ଦିଆଯାଉଥାଏ । ସେଦିନର ବହୁ ଯବକର ସ୍ୱପ୍ନ, ମଂଚ ଜଗତର ଅଭିନେତ୍ରୀ କହୁ ଥାଆନ୍ତି ଲୋତକଭରା ନେତ୍ରରେ । ବୟସ ଅତିକ୍ରାନ୍ତ ହୋଇଯାଇଛି । ସେଦିନର ଅଭିନେତ୍ରୀ ଆଜି ପୁରୀର ରାଜଦାଣ୍ଡରେ ଚଣା ବିକୁଛି ଏବଂ ଜୀବନ କଟାଉଛି । ତାଙ୍କ ଆଖିରୁ ଲୁହ ଝରୁଥିଲା । ଏଇ ହେଉଛି ଅଭିନେତ୍ରୀର ଜୀବନ । ଦର୍ଶକମାନଙ୍କର ଆଗ ଧାଡ଼ିରେ ବସିଥିଲେ ଜଣେ ପ୍ରୌଢ଼ । ତାଙ୍କ ଆଖିରୁ ବୋହି ଚାଲିଥିଲା ଧାର ଧାର ଲୁହ । ସେ କିନ୍ତୁ ବସି ରହିଥିଲେ ସ୍ଥିର ଭାବରେ । ସତେ ଯେପରି ପାହାଡ଼ର ବୁକୁ ଚିରି ଲୁହ ଝରଣା ପରି ବୋହି ଯାଉଛି । ଦର ଦର ଲୁହ । କିଏ ଏହି ବ୍ୟକ୍ତି ? କାହିଁକି ତାଙ୍କର ଆଖିରୁ ଏପରି ଲୁହ ଗଡ଼ି ଚାଲିଛି, କଣ ହେଲା ତାଙ୍କର ?

ସେ ମଣିଷଟି ହେଉଛନ୍ତି ଓଡ଼ିଶା ରଂଗମଂଚର ପ୍ରବାଦ ପୁରୁଷ କାର୍ତ୍ତିକ ଘୋଷ । ଅଭିନେତ୍ରୀଙ୍କର ବହୁ ନାଟକରେ ହିରୋ ସେ । କେତେଥର ସେ ଅଭିନୟ କାଳରେ ଏଇ ନାରୀର ଲୁହ ପୋଛି ଦେଇ ନାହାନ୍ତି ? କେତେଥର ଏଇ ନାରୀର ଚଟୁ ଅଧରରେ ସୁହାଗର ବାଣୀ ଜୁହାଇନାହାନ୍ତି ? କିନ୍ତୁ ଆଜି ? ଜୀବନରେ ଲୁହ ପୋଛିବା ପାଇଁ ତାଙ୍କର ଶକ୍ତି ନାହିଁ । ସେ ନିଜେ ମଧ ସେଇ ଗୋଷ୍ଠୀରେ ଅନ୍ତର୍ଭୁକ୍ତ । ସେ ଲୁହର ପ୍ରତ୍ୟୁତ୍ତରରେ ଲୁହ ଦେବା ଛଡ଼ା ସେ ଆଉ କଣ କରି ପାରିବେ ?

ତାଙ୍କ ଚକ୍ଷୁ ବିସ୍ଫାରିତ ହୋଇ ଯାଇଛି । ସତେ ଯେପରି ଅତୀତ ଭିତରୁ ସେ ଉଖାରି ଆଣୁଛନ୍ତି ତାଙ୍କରି ଜୀବନ ସ୍ମୃତିକୁ ।

୧୯୦୩ ମସିହା ଅକ୍ଟୋବର ୨୩ ତାରିଖରେ କଟକର ବାଖରାବାଦରେ ତାଙ୍କର ଜନ୍ମ । ସେ ଦୃଷ୍ଟିରୁ ସେ ବଙ୍ଗାଳୀ । କଲିକତା ରେଡ଼ିଓ ତାଙ୍କର ଏକ ସାକ୍ଷାତକାର ପ୍ରଚାର କରିଥିଲା । ନାମକରଣ ହୋଇଥିଲା - ଗୋଟିଏ ଲୋକ, ଦୁଇଟି ମାତୃଭାଷା । କାର୍ତ୍ତିକ ଘୋଷ ସେଇପରି ବଙ୍ଗାଳୀ, ଯେପରି ବଙ୍ଗାଳୀ ହେଉଛନ୍ତି ଆଧୁନିକ ଓଡ଼ିଆ ସାହିତ୍ୟର ମହାରଥୀ ରାଧାନାଥ ରାୟ, ଆଧୁନିକ ନାଟକର ପ୍ରବାଦ  ପୁରୁଷ ରଚୟିତା ଅଶ୍ୱିନୀ କୁମାର ଘୋଷ ବା କର୍ମବୀର ଗୌରୀ ଶଙ୍କର ରାୟ ବା ରାମଶଙ୍କର ରାୟ ।

ଗୌରୀଶଙ୍କର ଏବଂ ରାମଶଙ୍କର  ରାୟ ଝିଅର ପୁଅ ବା ନାତି ହେଉଛନ୍ତି କାର୍ତ୍ତିକ । କାର୍ତ୍ତିକଙ୍କର ବଡ଼ଭାଇ ହେଉଛନ୍ତି ଅଶ୍ୱିନୀ କୁମାର ଘୋଷ ଯେ ଆପଣାର ଜୀବନ କାଳ

ଭିତରେ ପଚାଶରୁ ଊର୍ଦ୍ଧ୍ୱ ନାଟକ ଲେଖି ଆଧୁନିକ ଓଡ଼ିଆ ନାଟ୍ୟ ସାହିତ୍ୟର ଇମାରତ ଗଢ଼ି ଯାଇଛନ୍ତି । କଳା, ସାହିତ୍ୟ ସହିତ ଦେଶପ୍ରେମ ମଧ ତାଙ୍କ ମନ ଭିତରେ ଦାନା ବାନ୍ଧିଥିଲା । କଟକରେ ପ୍ରାୟ ୧୫ଟି ଜାଗା ବା ଘର ଥିଲା । ସେ ଦୃଷ୍ଟିରୁ ସେ ବେଶ୍ ସ୍ୱଚ୍ଛଳ ଥିଲେ । ନିଶା ଲାଗିଥିଲା, ନାଟକର ପିଲାଦିନରୁ । ପ୍ୟାରୀମୋହନ ଏକାଡ଼େମୀର ଛାତ୍ର ଭାବରେ ମାତ୍ର ୧୫ ବର୍ଷ ବୟସରେ କାର୍ତ୍ତିକ ଘୋଷ ' ସିଦ୍ଧାର୍ଥ' ନାମକ ନାଟକରେ ଅଂଶ ଗ୍ରହଣ କରି ପୁରସ୍କୃତ ହୁଅନ୍ତି । ତାପରେ ରାଧାକୃଷ୍ଣ ଥିଏଟର ନାମକ ପେଶାଦାର ରଂଗମଂଚରେ 'ଗୋବିନ୍ଦ ବିଦ୍ୟାଧର' ନାଟକରେ ଅଭିନୟ ତାଙ୍କୁ ଆଣିଦିଏ ପ୍ରତିଷ୍ଠା ଏବଂ ପ୍ରଶଂସା ।

ନାଟ୍ୟକାର କାର୍ତ୍ତିକ ଘୋଷଙ୍କ ଜୀବନ ଥିଲା ସଂଘର୍ଷମୟ । ଏହା ତ କେବଳ ଏକ ନାଟ୍ୟକାରର ଜୀବନୀ ନୁହେଁ । ୧୯୨୧ ମସିହା । ମହାତ୍ମା ଗାନ୍ଧୀଙ୍କର ଭାଷଣ କାଠଯୋଡ଼ି ବାଲିରେ । ଜାତି ଆଗରେ ସଂଗ୍ରାମର ଡାକରା । ରଂଗମଂଚର ନାଟକ ସହିତ ଜୀବନର ନାଟକର ଉଦାତ୍ତ ଆହ୍ୱାନ । କାର୍ତ୍ତିକ ଘୋଷ ସେଇ ସଂଗ୍ରାମରୁ ବାଦ ରହିବେ କିମରି ? ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ କାରାବରଣ କରନ୍ତି କାର୍ତ୍ତିକ ଘୋଷ ।

କାରାଗାରରୁ ଫେରି ବ୍ୟାଙ୍କରେ ଚାକିରି । କିନ୍ତୁ ଡାକରା ଶୁଭୁଛି ରଂଗମଞ୍ଚରୁ । ବ୍ୟାଙ୍କର ଗଣିତ, ହିସାବ ନିକାଶରେ କେମିତି ବନ୍ଧା ରହି ପାରିବେ ସେ ? ଚାକିରି ସରି ଯାଇଥିଲା ।

କାର୍ତ୍ତିକ ଘୋଷ ଅଭିନେତା, କାର୍ତ୍ତିକ ଘୋଷ ନାଟକ ଲେଖକ, କାର୍ତ୍ତିକ ଘୋଷ ଗାୟକ ଏବଂ ସର୍ବୋପରି କାର୍ତ୍ତିକ ଘୋଷ ନର୍ତ୍ତକ ମଧ । ଏଇପରି ଏକ ଅସାଧାରଣ ପ୍ରତିଭାର ଅଧିକାରୀ ଥିଲେ ସେ । ତଥାପି ଗର୍ବ, ଅହଂକାର ନ ଥିଲା ତାଙ୍କର । 'ୟୁନିଭର୍ସ'ର ବାର୍ଷିକ ଉତ୍ସବରେ ବିଚାରକ ହେବା ପାଇଁ ତାଙ୍କୁ ନିମନ୍ତ୍ରଣ କରିଚୁ ଏବଂ ବିନା ଦ୍ୱିଧାରେ ବର୍ଷ ପରେ ବର୍ଷ ପିଲାଙ୍କ ନାଚ, ଅଭିନୟ, ଆବୃତ୍ତି ପ୍ରତିଯୋଗୀତାରେ ବିଚାରକ ହୋଇଛନ୍ତି । ଘଣ୍ଟା ଘଣ୍ଟା ଧରି ଦେଖିଛନ୍ତି, ବିଚାର କରିଛନ୍ତି ପିଲାମାନଙ୍କର ପ୍ରତିଭା । କ୍ଷମା, କୃତଜ୍ଞତାର ଉତ୍ତରରେ ସେ ବିନମ୍ରତାର ସହିତ କହିଛନ୍ତି ଯେ ସେମାନଙ୍କର କଳା କୌଶଳ ଦେଖି ମୁଁ ମୁଗ୍ଧ ହୋଇଛି । ସେମାନେ ମୋତେ କି ଆନନ୍ଦ ଦେଇଛନ୍ତି ମୁଁ କହି ପାରିବି ନାହିଁ । ସେମାନଙ୍କ ଭିତରେ ମୁଁ ଦେଖୁଛି ମୋର କୈଶୋରକୁ । କହିଲାବେଳେ ଆଖି ଛଳ ଛଳ ହୋଇଯାଉଥିଲା ତାଙ୍କର ।

ଅନେକ ନାଟକ ରଚନା କରି ଯାଇଛନ୍ତି ସେ । ପ୍ରଥମ ନାଟକ 'ଜୁଲିଆ' ହଜି ଯାଇଥିଲା ତେଣୁ ତାଙ୍କର ପ୍ରଥମ ନାଟକ ହେଉଛି 'ମାତୃପୂଜା' କିନ୍ତୁ ତାପରେ ଆଉ ଦୀର୍ଘ ୨୫ ବର୍ଷ ଧରି ଲେଖି ନାହାନ୍ତି । ଅଭିନୟ ଓ ଗୀତ ଗାଇବାରେ ଜୀବନରେ ୨୫ ବର୍ଷ କଟି ଯାଇଛି । ସେ ହେଉଛନ୍ତି ଓଡ଼ିଶାର ବୋଧହୁଏ ଏକମାତ୍ର ବ୍ୟକ୍ତି ଯେ ପ୍ରସିଦ୍ଧ ନୃତ୍ୟ ଶିଳ୍ପୀ ଉଦୟ ଶଙ୍କରଙ୍କ ପାଖରେ ନୃତ୍ୟ ଶିଖିଥିଲେ । ୧୯୨୪-୨୫ ମସିହାରେ ସେ ପ୍ରସିଦ୍ଧ ଏଚ.ଏମ.ଭି. କମ୍ପାନୀରେ ଗୀତ ରେକର୍ଡିଂ କରିବାକୁ ଯାଉଥିବା ଶିଳ୍ପୀ ମାନଙ୍କୁ ତାଲିମ ଦିଅନ୍ତି । ପାଠକମାନଙ୍କର ସ୍ମରଣଥିବ ଯେ ସେ ଏଚ.ମ.ଭି. କମ୍ପାନୀ ହିଁ ପ୍ରଥମେ ଓଡ଼ିଆ ଶିଳ୍ପୀମାନଙ୍କର ଗୀତ ରେକର୍ଡିଂ କରି ମାର୍କେଟକୁ ଛାଡ଼ିଥିଲା ।

କାର୍ତ୍ତିକ ଘୋଷ କେବଳ ଅଭିନେତା ଅଭିନେତ୍ରୀମାନଙ୍କୁ ତାଲିମ ଦେଇନାହାନ୍ତି । ଓଡ଼ିଶାର ବହୁ ନୃତ୍ୟ ଶିଳ୍ପୀଙ୍କୁ ମଧ ନୃତ୍ୟରେ ତାଲିମ ଦେଇଛନ୍ତି । କୁହାଯାଏ ଯେ ବର୍ତ୍ତମାନ ଓଡ଼ିଶାର

ସବୁ ପ୍ରଖ୍ୟାତ ନୃତ୍ୟଶିଳ୍ପୀ ତାଙ୍କର ତାଲିମ ପାଇଛନ୍ତି । ଅନ୍ନପୂର୍ଣ୍ଣା ଏ ଗ୍ରୁପ, ଅନ୍ନପୂର୍ଣ୍ଣା ବି ଗ୍ରୁପ, ଓଡ଼ିଶା ଥିଏଟର୍ସ, ରୂପଶ୍ରୀ ଥିଏଟର୍ସ., ଜନତା ରଙ୍ଗମଂଚ, ସବୁ ଅନୁଷ୍ଠାନ ତାଙ୍କର ଅବଦାନ ପାଇ ଋଦ୍ଧିମନ୍ତ ହୋଇଛନ୍ତି । ତାଙ୍କର ଭାଷା, ଅଭିନୟର ଠାଣି ଦର୍ଶକଙ୍କୁ ମୁଗ୍ଧ କରିଛି, ବିମୋହିତ କରିଛି ।

ଏଣେ ସବୁ ସମ୍ପତ୍ତି ଚାଲି ଯାଉଛି । ସେ ବ୍ୟସ୍ତ ହୋଇ ନାହାନ୍ତି, ବିବ୍ରତ ହୋଇ ନାହାନ୍ତି । ଗୋଟାଏ ଲକ୍ଷ୍ୟରେ ସିଦ୍ଧିଲାଭ କରିବାକୁ ହେଲେ ବାକି ସବୁ ହଜି ଯାଏ । କାର୍ତ୍ତିକ ତାହା ଜାଣିଛନ୍ତି । ପରିବାରରେ ଅସନ୍ତୋଷ ଦେଖା ଦେଇଛି । ଘରଦ୍ୱାର ସବୁ ବିକ୍ରୀ ହୋଇ ଯାଇଛି । ଲବ୍ଧ ଅର୍ଥ ସବୁ ବିନିଯୋଗ ହୋଇ ଯାଉଛି କଳା ପାଇଁ । କାର୍ତ୍ତିକ ଘୋଷ ନାଟ୍ୟ ଜଗତରେ କୌଣସି ବିଭାବକୁ ବାଦ ଦେଇ ନାହାନ୍ତି । ସୁରେନ୍ଦ୍ର ପଟ୍ଟନାୟକ ଏକଦା (ଓଡ଼ିଶାର ରାଜସ୍ୱ, ମନ୍ତ୍ରୀ)ଙ୍କର ପ୍ରସିଦ୍ଧ ନଗସପୁର ଯାତ୍ରା ପାର୍ଟିରେ ତାଙ୍କର ରଚିତ'ବସନ୍ତ ସେନା' ଓ'ତରଣୀ ସେନ'ଚାଞ୍ଚଲ୍ୟ ସୃଷ୍ଟି କରିଥିଲା, ଚହଳ ପକାଇଥିଲା । ବେତାରରେ ମଧ୍ୟ ତାଙ୍କର ନାଟକ ସମ୍ପ୍ରସାରିତ ହୋଇଛି ବହୁବାର ।

କିନ୍ତୁ ଆର୍ଥିକ ଅବସ୍ଥା, ସୁଧୁରି ନାହିଁ । ବରଂ ଶୋଚନୀୟ ହୋଇଛି । ଦି 'ୟୁନିଭର୍ସ'ରେ 'ମୋର ଜୀବନ' ମୋ ନାଟକ ଶୀର୍ଷକ ବକ୍ତୃତାମାଳାରେ ଆପଣାର ଜୀବନ କାହାଣୀ ବର୍ଣ୍ଣନା କଲାବେଳେ ସେ ନିଜର ଦୁଃଖ କହି ନାହାନ୍ତି । କହିଛନ୍ତି ଦୁଃଖରେ ଥିବା ବହୁ ଅଭିନେତା ଅଭିନେତ୍ରୀଙ୍କ କଥା । କହିଛନ୍ତି ରୁଗ୍ଣ ହୋଇ ଆସୁଥିବା ଓଡ଼ିଶାର ରଂଗମଂଚ କଥା । ଆହ୍ୱାନ ଦେଇଛନ୍ତି ଦେଶକୁ ଏହାର ଉଦ୍ଧାର ପାଇଁ ।

ମଇ ମାସ ୧୯ ତାରିଖ, ୧୯୯୭ ମସିହା ଦେହ ଆଉ ବୋଇ ମାନୁନି । ବୟସ ହେଲାଣି ୯୪ ବର୍ଷ । ସାଙ୍ଗ ସାଥୀ ସବୁ ହଜି ଗଲେଣି । ସେ ଆଉ ରହିବେ କାହିଁକି ?

''ଆଜି ଆକାଶେ କି ରଙ୍ଗ ଲାଗିଲା...''ର ସ୍ୱର ଦିନେ ଚମକ ସୃଷ୍ଟି କରିଥିଲା ଦେଶରେ । ଆଜି ସେଇ ଲେଖକର, ସେଇ ଗାୟକର ଜୀବନର ସବୁ ରଂଗ ହଜି ଯାଉଛି, ଜୀବନ ସରି ସରି ଆସୁଛି ।

ହଠାତ୍, ସବୁ ଶେଷ ହୋଇଯାଇଛି । କାର୍ତ୍ତିକ ଘୋଷ ପାଇଟି ଯାଇଛନ୍ତି କାଳର ଚିତ୍ରପଟ୍ଟ । ରୁଗ୍ଣ ଓଡ଼ିଶାର ନାଟ୍ୟ ଜଗତ ଆଉ ଏକ ଧକ୍କା ଖାଇଛି । ବ୍ୟୋମକେଶ ଯାଇଥିଲେ, କାର୍ତ୍ତିକ ଘୋଷ ଗଲେ । ଏହା ପରେ ?

ସେ କଥା ଓଡ଼ିଶାର ଇତିହାସ କହିବ । ତାହା ଦେଖିବାକୁ ଏହି ପ୍ରଥିତଯଶା ଶିଳ୍ପୀ ଆଉ ନ ଥିବେ ।



# ତମପାଇଁ ଧାରେ ଲୁହ

ଆଜି ଏପ୍ରିଲ ୨୭, ୧୯୯୮ । ସମୟ ଆଠଟା ହେବ । ଡାକ୍ତର ପାଖରୁ ଫେରୁଛି । ସ୍ତ୍ରୀ କମଳକୁମାରୀ କହିଲେ କାଲି କରୁଣାକର ଫୋନ କରିଥିଲେ । ସ୍ୱାମୀ ସ୍ତ୍ରୀ ଉଭୟେ କାନ୍ଦୁଥିଲେ । ତମ ଦେହ ଟିକିଏ ଭଲ ହୋଇଗଲେ ଯିବା ତାଙ୍କୁ ଦେଖି ଆସିବା । ଆମେ ତାଙ୍କୁ ବିଭା କରିଥିଲେ । ଏଇ ମନେ ପଡୁଛି କାଲିକାର କଥା ଭଳି । ଅଥଚ ....

କଥା ସରିନାଇଁ ଟେଲିଫୋନ୍ ବାଜିଲା । ଆଉ ସଂବାଦ ମିଳିଲା ଯେ ସକାଳ ସାଢ଼େ ସାତଟା ସମୟରେ କରୁଣାକର ସମସ୍ତଙ୍କୁ ଫାଙ୍କି ଦେଇ ଚାଲି ଯାଇଛି ସେଇଠିକୁ, ଯେଉଁଠାରୁ କେହି କେବେ ବାହୁଡ଼ି ନାହିଁ ।

କରୁଣାକର ନାହିଁ ଏହା ବିଶ୍ୱାସ କରିବା ପାଇଁ ସମୟ ଲାଗିଲା । କାଲି ପରି ମନେ ପଡୁଛି । କରୁଣାକର ପାଇଁ । ମନଲାଖି କନ୍ୟାଟିଏ ମିଳୁନାହାନ୍ତି । ସେ ଆସିବ ସଂକ୍ଷିପ୍ତ ସମୟ ପାଇଁ ଛୁଟିରେ ପୁଣି ଫେରିବ ନାଗାଲାଣ୍ଡକୁ । ତାରି ଭିତରେ ସବୁ ସାରିବାକୁ ହେବ । ଦି ଚାରିଥର ଇମିତି ହେଲାଣି କନ୍ୟା ଜୁଟୁ ନାହାନ୍ତି । ଏଥରକର ଦାୟିତ୍ୱ ପଡ଼ିଲା ଆମ ଦୁହିଁଙ୍କ ଉପରେ । କୌଣସି ଉପାୟ ନାହିଁ । କରୁଣାକରକୁ ନାହିଁ କରିବା କଷ୍ଟକର କଥା । ପାରିବାରିକ ବନ୍ଧୁ ମହାବୀର ସାହୁ (ଟୁନା)ଙ୍କ ଶାଳୀ ସହିତ ବିବାହ ହୋଇଗଲା, ସେଇ ସଂକ୍ଷିପ୍ତ ସମୟ ଭିତରେ । ସେମାନେ ଅନ୍ୟମାନଙ୍କ ପରି ତାହା ଭୁଲି ନ ଥିଲେ । କରୁଣାକର ଯେତେବେଳେ ଆସେ ନିଶ୍ଚୟ ଆସିବ ପ୍ରଥମେ । ତାର କଳ୍ପନା ଅନେକ । ଗପେ , ଓଡ଼ିଶାରେ ସ୍ୱାସ୍ଥ୍ୟସେବା କିପରି ହେବା ଉଚିତ । କଟକ ସହରରେ ଆଉ ଦୁଇ ଚାରିଟା ପାର୍କ କିମିତି ହେବ ? ଇତ୍ୟାଦି ।

ସେ ଫେରି ଯାଏ ପୁଣି ଆସେ । ତାକେ ନାଗାଲାଣ୍ଡ ବୁଲି ଯିବା ପାଇଁ, ପ୍ରତିଥର ତାର ଡାକରା, 'ମୋର ସମ୍ମତି' । ପୁଣି ଡ଼ାକରା, ଇଏ ଚାଲିଥିଲା ବହୁବର୍ଷ ଧରି । ପିଲାଦିନରୁ ସମାଜ ସେବା, ପ୍ରଗତିଶୀଳ ଚିନ୍ତାଧାରା, ଛାତ୍ର ଓ ଯୁବକ ଆନ୍ଦୋଳନ ସବୁ ସହିତ ସେ ଜଡ଼ିତ ହୋଇ ଯାଇଥିଲା ପିଲାଦିନରୁ । ସବୁ ଭାସି ଉଠିଲା ମନ ଭିତରେ । କିନ୍ତୁ କରୁଣାକର ତ ଆଉ ନାହିଁ ।

କରୁଣାକର ଘର ହେଉଛି ଯାଜପୁର ଜିଲ୍ଲା ମଂଗଳପୁର ଗ୍ରାମରେ । ଏଇ ଗ୍ରାମପୁଂଜ ହେଉଛି ରାଜନୈତିକ ଦୃଷ୍ଟିରୁ ଏକ ସଚେତନ ଅଞ୍ଚଳ ।

ଏଇ ଗ୍ରାମପୁଞ୍ଜର ଦଳ ଦଳ ଯୁବକ କେବଳ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ନ ଥିଲେ, ପ୍ରଗତିଶୀଳ ଚିନ୍ତାଧାରା ସେମାନଙ୍କୁ ବିଶେଷ ଅନୁପ୍ରାଣିତ କରିଥିଲା । ପରବର୍ତ୍ତୀ ଜୀବନରେ ଜୀବନର ବିଭିନ୍ନ ବିଭାବରେ ସେମାନେ ପ୍ରତିଷ୍ଠିତ, ବିଭିନ୍ନ ରାଜନୈତିକ ଦଳ ପରିପୁଷ୍ଟ ସେମାନଙ୍କର ଅବଦାନରେ । କିନ୍ତୁ ଜୀବନ ସେମାନେ ଆରମ୍ଭ କରିଥିଲେ ବୈପ୍ଳବିକ ଚେତନାରେ । ସେମାନଙ୍କ ମଧ୍ୟରେ କରୁଣାକର ଅନ୍ୟତମ ।

ସେ ଦୁରାରୋଧ ପାର୍ବତ୍ୟ ଅଞ୍ଚଳ, ସଂତ୍ରାସବାଦୀ ବିଚ୍ଛିନ୍ନତାବାଦୀ ମାନଙ୍କ ଦ୍ୱାରା ସଂକ୍ରମିତ ନାଗାଲାଣ୍ଡରେ ଚାକିରି କରେ । କିନ୍ତୁ ଭୁଲେ ନାହିଁ ଆପଣାର ଗାଁ, ଆପଣାର ମାଟିକୁ, ସଂକ୍ଷିପ୍ତ ଛୁଟିରେ ସମସ୍ତଙ୍କୁ ଲୋଡ଼େ, ସମସ୍ତଙ୍କୁ ଭେଟେ ଏବଂ ଆଲୋଚନା କରେ ସୀମିତି ପରିସ୍ଥିତି ଏବଂ ସମ୍ବଳରେ କଣ କରାଯାଇ ପାରିବ । ଅବରୁଦ୍ଧ ବାୟୁମଣ୍ଡଳ ଭିତରେ ସେ ଆଣିଦିଏ ଝଲକାଏ ପବନ, ତାଜା ପ୍ରାଣସ୍ପର୍ଶୀ ପବନ ।

ବିବାହ କରିଥିଲା । ହୋଇଥିଲା ଦୁଇଟି ପୁତ୍ରର ପିତା, ସ୍ତ୍ରୀ ଏବଂ ପିଲାଛୁଆଙ୍କୁ କହେ ଜୀବନର ସଂଗ୍ରାମ କଥା । ଆଜି ତୁମେମାନେ ହୁଏତ ଅଯସରେ ବଢୁଛ, କିନ୍ତୁ ମନେରଖ ଦେଶ କଥା, ଦରିଦ୍ର ମଣିଷର କଥା । ଭୁଲ ନାହିଁ ସେମାନଙ୍କୁ । ଆମେ ସବୁ ହସୁ ତାର ବକ୍ତୃତା ଦେବା ଛଳରେ କଥା ଶୁଣି ।

କରୁଣାକର ସ୍ୱପ୍ନ ଦେଖେ । ଅବସର ପରେ ବି ଜୀବନ ଦୀର୍ଘ ହୋଇପାରେ । ସେ କଣ ସବୁ କରିବ ତାର ପରିକଳ୍ପନା କରେ । ସ୍ୱପ୍ନ ତାର ସୁଦୂର ପ୍ରସାରୀ । ବର୍ଷ, ଯୁଗ ଶତାବ୍ଦୀ ସବୁ ହାର ମାନେ ତାର ସ୍ୱପ୍ନ ପାଖରେ ।

ମନେ ପଡୁଛି ଲୁହର ଧାର ଭିତରେ । ଦିନେ ଶୀତଦିନଟାରେ ବସିଥିଲୁ ଆମେ ଦୁହେଁ । ମୁଁ ଏବଂ ମୋର ସ୍ତ୍ରୀ । କୌଣସି ଚଦର ଘୋଡ଼ାଇ ନ ହୋଇ ଥିବା ଦେଖି କରୁଣା ଫେରିଗଲା ଏବଂ ଦୁଇଟି ନାଗଗାଲାଣ୍ଡ ଶାଲ ଆଣି ଘୋଡ଼ାଇ ଦେଇଗଲା ଆମ ଦୁହିଁଙ୍କ ଦେହରେ । ସେ ଦୁଇଟି ଅଲନା ଉପରେ ଅନେଇ ରହିଛନ୍ତି ଆମକୁ । କିନ୍ତୁ ଦାତା ଆଉ ନାହିଁ ।

ସେ ଆଉ ଆସିବ ନାହିଁ କିନ୍ତୁ ତାର ପାଦ ଶବ୍ଦ, ତାର କଥା ତ ଶୁଭିବ ଚିରକାଳ, ଜୀବନ ଥିବା ପର୍ଯ୍ୟନ୍ତ । ସେ ତ ହଜିବ ନାହିଁ ସ୍ମୃତି ପଟରୁ କେବେହେଲେ ।



# ସଂଗ୍ରାମ ଓ ତ୍ୟାଗର ଶେଷ କିରଣ

**ଯେଉଁ** ଜୀବନ ଗଢ଼ା ହୋଇଥିଲା ସଂଗ୍ରାମ ପାଇଁ, ତ୍ୟାଗ ପାଇଁ ସେଇ ଜୀବନ ହାରି ନ ଥିଲା ମୁକ୍ତି ପାଇଁ ସଂଗ୍ରାମରେ । ଯେଉଁ ଜୀବନ ହାରି ନ ଥିଲା ସ୍ୱାଧୀନତା ପରେ ନୂତନ ଭାରତବର୍ଷ, ସାଧାରଣ ମଣିଷର ଭାରତବର୍ଷ ଗଢ଼ିବା ପାଇଁ ସଂଗ୍ରାମରେ । ସେଇ ଜୀବନ ହାରିଗଲା ମୃତ୍ୟୁ ସହିତ ସଂଗ୍ରାମରେ ।

ଶ୍ରୀମତୀ କିରଣଲେଖା ମହାନ୍ତି ଆଉ ନାହାନ୍ତି । ୭୧ ବର୍ଷ ବୟସରେ ମଇ ମାସ ୧୧ ତାରିଖରେ ଭୁବନେଶ୍ୱରର ଏକ ନର୍ସିଂହୋମରେ ତାଙ୍କର ପରଲୋକ ହୋଇଯାଇଛି । ନର୍ସିଂହୋମରେ ଚିକିତ୍ସା ଓ ମୃତ୍ୟୁ ବୋଧହୁଏ ତାଙ୍କ ଜୀବନର ପ୍ରଥମ ଓ ଶେଷ ସଂଯୋଗ । ଜନ୍ମ ହୋଇଥିଲେ ଯାଜପୁର ଜିଲ୍ଲା ଅନ୍ତର୍ଗତ ବରୀ ଅଞ୍ଚଳରେ । ଜନ୍ମ ତାରିଖ, ବାପାମାଆଙ୍କ ପରିଚୟ ସବୁ ହଜି ଯାଇଥିଲା କୈଶୋରରୁ । ଧୂଳିଘର, ପୁଚିଖେଳ ଖେଳିବା ବୟସରେ ମାତ୍ର ନଅବର୍ଷ ବୟସରେ ସେ ଜୀବନର ରାଜପଥରେ ଖେଳିବାକୁ ଓହ୍ଲେଇ ଆସିଥିଲେ । ୧୯୩୫ ମସିହାର କଥା । ସେ ଆସିଲେ ପ୍ରବାଦ ପୁରୁଷ ଗୋପବନ୍ଧୁ ଚୌଧୁରୀ ଏବଂ ମାଆ ରମାଦେବୀଙ୍କ ସଂସ୍ପର୍ଶରେ । ବରୀ ଆଶ୍ରମରେ ଜଣେ ଶିକ୍ଷାନବୀଶ ଭାବରେ ସେ ଯୋଗଦିଅନ୍ତି । ଅତୀତ ହଜିଯାଏ ସ୍ମୃତିର ଗର୍ଭରେ । ଆଗରେ ଦୁର୍ଗମ ପଥ । ତଥାପି ସେ ବାଛି ନେଲେ ସେଇ ପଥକୁ । ପାର୍ବତୀ ଗିରି ସ୍ମରଣ ହୁଅନ୍ତି ମୋର ସବୁବେଳେ, କିରଣଦେବୀଙ୍କୁ ଦେଖିଲା ମାତ୍ରେ ।

ମୁକ୍ତିର ନହବତ ବାଜୁଛି । ସେ ଦୁନ୍ଦୁଭିର ଡାକ ଏଡ଼ି ଦେବ କିଏ ? କିରଣଲେଖା ଦେବୀ ସେଥିରେ ଝାସ ଦେଲେ । ୧୯୪୨ର ଭାରତ ଛାଡ଼ ଆନ୍ଦୋଳନ ମୁଣ୍ଡ ଟେକି ଉଠିଛି । ବରୀ ଅଞ୍ଚଳରେ ସେଇ ଦୁନ୍ଦୁଭିର ଡାକ । ସେଇ ତୂର୍ଯ୍ୟନାଦର ଅନ୍ୟତମ ନାୟକ ହେଉଛନ୍ତି କିରଣଲେଖା ଦେବୀ । ଯେଉଁ ଯୌବନରେ କନ୍ୟାଟିଏ ସ୍ୱପ୍ନ ଦେଖେ ଏକ ଭାବୀ ସ୍ୱାମୀର, ସ୍ୱପ୍ନ ଦେଖେ ପ୍ରଣୟର ସେଇ ସମୟରେ ସେ ସ୍ୱପ୍ନ ଦେଖିଲେ ଜନ୍ମମାଟିର ମୁକ୍ତିର । କଟକ ଜେଲ୍‌ରେ ସେ ଥିଲେ ସର୍ବକନିଷ୍ଠ ବନ୍ଦୀ । କିନ୍ତୁ ସେ ମୁଚାଲିକା ଲେଖି ମୁକ୍ତି ପାଇବାକୁ ନାସ୍ତି କରି ଦେଇଥିଲେ । କାରାବରଣ ବରଂ ଶ୍ରେୟସ୍କର । କିନ୍ତୁ ମୁଚାଲିକା ? ଅସମ୍ଭବ, ବୀର କନ୍ୟା ପାଇଁ ତା ସମ୍ଭବ ନୁହେଁ ।

୧୯୪୭ ମସିହା । ସ୍ୱାଧୀନତା ଆସିଲା । ବହୁ ବର୍ଷର ସ୍ୱପ୍ନ ସାର୍ଥକ ହେଲା । କିରଣ ଲେଖାଦେବୀ ସଂସାର ପାତିବେ । କିନ୍ତୁ ବିବାହ କରିବେ ସେ ଏପରି ଏକ ସ୍ୱାଧୀନତା ସଂଗ୍ରାମୀକୁ ଯେ ସ୍ୱାଧୀନତା ସହିତ ଆପଣାର ଜୀବନକୁ ପରିବର୍ତ୍ତନ କରି ଦେବ ନାହିଁ । ସେ ଶ୍ରୀ ଜୟକୃଷ୍ଣ ମହାନ୍ତିଙ୍କୁ ବିବାହ କଲେ । ଜାତି, ଜାତକ, ଯୌତୁକ କିଛି ନାହିଁ । ଅଛି ଖାଲି ତ୍ୟାଗ । ସେ ହିଁ ହେବ ତାଙ୍କର ଯୌତୁକ । ସ୍ୱାଧୀନତା ସଂଗ୍ରାମ ସେମାନଙ୍କୁ ଏକ ନୂଆ ଜାତିରେ ପରିଣତ କରିଥିଲା । ସ୍ୱାଧୀନତା ସଂଗ୍ରାମୀ ହେଉଛି ଉଭୟଙ୍କର ଏକ ଜାତି । ଜାତକ ତ ସେ ବହୁ ଆଗରୁ

ନିଜ ପାଇଁ ତିଆରି କରି ସାରିଥିଲେ । ଲାଠି, ଭୋକ, କାରାବାସ ତାଙ୍କ ପାଇଁ ଜାତକ ସୃଷ୍ଟି କରିଥିଲା, ନୂଆ ଜାତକ । ଏ ବିବାହରେ ଚିରାନୁଚରିତ ପୁରୋହିତର ଆବଶ୍ୟକତା ନ ଥିଲା । ପୁରୋହିତର କାର୍ଯ୍ୟ ସମ୍ପନ୍ନ କରିଥିଲେ ଆଚାର୍ଯ୍ୟ ହରିହର । ସ୍ୱାଧୀନତା ସଂଗ୍ରାମର ମହାରଥୀ ନବକୃଷ୍ଣ ଚୌଧୁରୀ, ବରକର୍ତ୍ତା, ସେଇ ସ୍ୱାଧୀନତା ସଂଗ୍ରାମର ମହାରଥୀ ହରେକୃଷ୍ଣ ମହତାବ କନ୍ୟାକର୍ତ୍ତା । ବିବାହ ସମ୍ପନ୍ନ ହୋଇଥିଲା । ନିଜର ପୁତ୍ର କନ୍ୟା ମାନଙ୍କର ବିବାହ ସମୟରେ କିରଣଲେଖା ଦେବୀ ବା ଜୟକୃଷ୍ଣ ମହାନ୍ତି ସେଇଆ କଲେ କି ନାହିଁ ମୁଁ ଜାଣି ନାହିଁ ।

ସ୍ୱାଧୀନତାର ପ୍ରଥମ ମହକ କଟିଗଲା । ଏ ସ୍ୱାଧୀନତା ତ ସାଧାରଣ ମଣିଷକୁ ଛୁଇଁ ନାହିଁ, ତାର ଜୀବନକୁ ରୂପାୟିତ କରିନାହିଁ । ତା ହେଲେ ଏ କି ସ୍ୱାଧୀନତା ପାଇଲେ ଆମେ ? ନବ ଦମ୍ପତିଙ୍କୁ ଏହା ଘାରିଥିଲା । କିରଣଲେଖା ସର୍ବୋଦୟ ଆନ୍ଦୋଳନରେ ଯୋଗଦେଲେ । ଅନୁଗୋଳର ବାଜିରାଉତ ଛାତ୍ରାବାସ ପ୍ରତିଷ୍ଠା, ଭୂଦାନ ଓ ସର୍ବୋଦୟ ଆନ୍ଦୋଳନରେ ଯୋଗଦେଲେ କିରଣଲେଖା । ବାଜିଲା ଜୟପ୍ରକାଶ ନାରାୟଣଙ୍କ ତୂର୍ଯ୍ୟନାଦ । ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମର ଆହ୍ୱାନ । କିରଣଲେଖାଙ୍କୁ ତ ସେଇ ପ୍ରଶ୍ନ ଘାରିଥିଲା ଅନେକ ଦିନରୁ । ସେ ଝାସ ଦେଲେ ସେଥିରେ । ଜରୋଜୀ ପରିସ୍ଥିତି ପରେ ଯେଉଁ ନିର୍ବାଚନ ହେଲା ସେଥିରେ କିରଣ ଲେଖା ଅଂଶ ଗ୍ରହଣ କରି ପିପିଲି ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହେଲେ ବିଧାନସଭାକୁ । ସେତେବେଳେ ଖୋଜା ପଡ଼ିଥିଲା ଏଇ ଭଳି ପ୍ରାର୍ଥୀମାନଙ୍କୁ ଯେଉଁମାନଙ୍କ ଦେହରେ କାଳିମା ଲାଗି ନ ଥିବ, ଭୋଗର କାଳିମା, କରପ୍ସନ୍‌ର କାଳିମା । କିରଣଲେଖାଙ୍କୁ ବୋଧହୁଏ ସେଇ ଯୋଗୁଁ ବଛା ଯାଇଥିଲା । ସେଇ ତାଙ୍କର ପ୍ରଥମ ଓ ଶେଷ ନିର୍ବାଚନ । ବିଧାନସଭାର ସଭ୍ୟପଦ ତାଙ୍କୁ ବିଶେଷ ପୋଷାଇ ନାହିଁ । କାରଣ ତାଙ୍କର ଚଳଣୀରେ କୌଣସି ପରିବର୍ତ୍ତନ ଦେଖାଯାଇନାହିଁ ।

ସେ ପୁଣି ଫେରିଥିଲେ ଆପଣାର କର୍ମକ୍ଷେତ୍ରକୁ, ଆପଣାର ପରିବାରକୁ । ପିଲାମାନଙ୍କୁ ମଣିଷ କରିବାର ଦାୟିତ୍ୱ ଗ୍ରହଣ କରିଥିଲେ । ସମୟ ଅତିକ୍ରାନ୍ତ ହୋଇଛି । ଦେହ ଓ ମନ ଉଭୟ ଭାଙ୍ଗି ପଡୁଛି । ଆଚାର୍ଯ୍ୟ ମହାଶୟ, ନବକୃଷ୍ଣ, ହରେକୃଷ୍ଣ ବାହୁଡି ଗଲେଣି । ସାଙ୍ଗସାଥୀ ସହକର୍ମୀ ମାନଙ୍କ ମଧ୍ୟରୁ କେତେକ ଗଲେଣି ଚାଲି ଭୋଗର ଶିବିରକୁ । ଆଉ ଯେଉଁମାନେ ଏପଟରେ ଅଛନ୍ତି ସେମାନଙ୍କର ସ୍ୱାସ୍ଥ୍ୟରେ ଅବନତି ଘଟିଲାଣି । ପିଲାମାନେ ମଣିଷ, ଯୋଗ୍ୟ ମଣିଷ ହେଲେଣି । ଦୀର୍ଘ ଦିନର ଅତ୍ୟାଚାର ଶରୀର ଉପରେ । ବର୍ତ୍ତମାନ ଫଳ ଭୋଗିବାକୁ ପଡୁଛି ।

ବର୍ତ୍ତମାନ ଆସିଗଲା ଶେଷ ଅଧ୍ୟାୟ । ଗୁରୁତର ଅସୁସ୍ଥ । ଦୁଇ ସପ୍ତାହର କଠୋର ସଂଗ୍ରାମ, ଆଉ ତା ପରେ ? ସମସ୍ତେ ଘେରି ରହିଛନ୍ତି । ସ୍ୱାମୀ ସ୍ୱାଧୀନତା ସଂଗ୍ରାମୀ ଜୟକୃଷ୍ଣ ମହାନ୍ତି, ପୁଅ ବୋହୂ, ନାତି ନାତୁଣୀ ସମସ୍ତେ । କିରଣଲେଖା ଆଖି ବୁଜି ଦେଇଛନ୍ତି । ସଂଗ୍ରାମର କିରଣ ତାହାର ଶେଷ ଆଲେଖ୍ୟ ଲେଖିବାକୁ ଯାଉଛି । ନର୍ସିଂହୋମରୁ ଘର, ଘରୁ ସ୍ୱର୍ଗଦ୍ୱାର । ତାପରେ ଲେଲିହାନ ଚିତା, ଏବଂ ତାପରେ ମୁଠାଏ ପାଉଁଶ । ଏହା ପରେ ସେ ଇତିହାସ ।



# ସାହିତ୍ୟ-ସଂସ୍କୃତିର ମଶାଲଧାରୀ

ଅଧ୍ୟାପକ କୃଷ୍ଣଚରଣ ସାହୁଙ୍କର ପରଲୋକ ହୋଇଗଲା । ଏପ୍ରିଲ ୬ ତାରିଖ ସକାଳର ସୂର୍ଯ୍ୟୋଦୟ ସହିତ ତାଙ୍କର ଜୀବନର ସୂର୍ଯ୍ୟାସ୍ତ ହୋଇଗଲା । ହଠାତ୍ ସେ ପୀଡ଼ିତ ହେଲେ ଏବଂ ପରୀକ୍ଷା ପରେ ଦେଖାଗଲା ଯେ ସେ କ୍ୟାନସର ରୋଗରେ ଆକ୍ରାନ୍ତ । ସେ ମୋର ସମସାମୟିକ ଥିଲେ । ରେଭେନ୍ସା କଲେଜର ପ୍ରଥମ ବାର୍ଷିକ ଶ୍ରେଣୀରୁହିଁ ତାଙ୍କ ସହିତ ବନ୍ଧୁତାର ଅଙ୍କୁରୋଦ୍‌ଗମ ହୁଏ ଏବଂ ସମୟର ଗତି ସହିତ ସେ ବନ୍ଧୁତା ମହୀରୂହରେ ପରିଣତ ହୁଏ । ହଠାତ୍ ସେଇ ମହୀରୂହ ଉପୁଡ଼ି ପଡ଼ିଚି ମହାକାଳର ବାତ୍ୟାରେ । ମୁଁ ଅନେଇଛି ଆକାଶକୁ । କୃଷ୍ଣ ଗଲା କୁଆଡ଼େ ?

କୃଷ୍ଣଚରଣ ଛାତ୍ର ଜୀବନରୁ ଅଧ୍ୟବସାୟୀ ଥିଲା । ସେ ପରେ ଓଡ଼ିଆ ସାହିତ୍ୟର ବିଶିଷ୍ଟ ଗବେଷକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଛି ଆପଣାର ସିଦ୍ଧି ଓ ସାଧନା ବଳରେ । ଜଗତସିଂହପୁର ନାଚି ଗ୍ରାମରେ ଏପ୍ରିଲ ୧୪ ତାରିଖ ୧୯୨୯ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ପ୍ୟାରୀମୋହନ ଏକାଡେମି ଓ ପରେ ରେଭେନ୍ସା କଲେଜରୁ ଏମ.ଏ. ପାଶ କରିଥିଲେ । ସାହିତ୍ୟ ବିଶେଷତଃ ଓଡ଼ିଶାର ପ୍ରାଚୀନ ମଧ୍ୟଯୁଗୀୟ ସାହିତ୍ୟ ତାକୁ ବେଶୀ ଆକୃଷ୍ଟ କରିଥିଲା । ବଳରାମ ଦାସଙ୍କ ଜଗମୋହନ ରାମାୟଣ ଉପରେ ଗବେଷଣା କରି ଡକ୍ଟରେଟ ଉପାଧି ପାଇଥିଲେ । କିନ୍ତୁ ବିନୀତ, ଉଷ୍ଣ, ବନ୍ଧୁବତ୍ସଳ ଥିଲା ସେଇପରି । ବେଳେବେଳେ ଦେଖାହୁଏ । ବର୍ଷକରେ ଥରେ ତ ନିଶ୍ଚୟ ବନ୍ଧୁ ମନୋରଂଜନ ଦାସ ଓ ବିଭୁରଂଜନ ଦାସଙ୍କ ବାସଗୃହରେ । ସେଇପରି ହସ ହସ ମୁହଁରେ ସ୍ୱାଗତ ବାଣୀ । ହଠାତ୍ ସବୁ ହଜିଗଲା କେମିତି ? ପ୍ରାଚୀନ ପୁସ୍ତକ ମାନଙ୍କର ଶୁଦ୍ଧ ସଂସ୍କରଣରେ ସେ ବ୍ରତି ଥିଲା । ତାଳପତ୍ର ପୋଥିରୁ ସଂଗୃହୀତ ଜଗମୋହନ ରାମାୟଣ, ଭାଗବତ, ହରିବଂଶ, ନୃସିଂହ ପୁରାଣ, ରୁଦ୍ର ସୁଧାନିଧି, ରସକଲ୍ଲୋଳ ପ୍ରଭୃତି ବହିର ଶୁଦ୍ଧ ସଂସ୍କରଣ ତାକୁ ଆଣି ଦେଇଥିଲା ନାମ ଏବଂ ଖ୍ୟାତି । ଏହିଭଳି କଷ୍ଟକର ସାଧନା ଅନ୍ୟ ଗବେଷକ ମାନଙ୍କୁ ମଧ୍ୟ ଅନୁପ୍ରାଣି କରିଥିଲା । ବହୁ ତରୁଣ ଗବେଷକ ଏଇ ମଣିଷର ପ୍ରେରଣା, ସାହାଯ୍ୟ ପାଇଁ କେବଳ କୃତିତ୍ୱ ହାସଲ କରି ନାହାନ୍ତି, ଓଡ଼ିଆ ସାହିତ୍ୟରେ ନୂତନ ଦିଗ୍‌ବଳୟ ଉନ୍ମୋଚନ କରିବା ପାଇଁ ସକ୍ଷମ ହୋଇଛନ୍ତି । ସେଥିଯୋଗୁଁ ଆଜି ତାରି ବିୟୋଗରେ ବହୁ ଅଧ୍ୟାପକ, ଗବେଷକମାନଙ୍କର ଆଖିରୁ ଝରୁଛି ଲୁହ । ସେମାନଙ୍କର କଲମ ହଠାତ୍ ସ୍ତବ୍ଧ, ନିଥର ହୋଇ ଯାଇଛି । ହଠାତ୍ ଯେପରି ଗବେଷଣାର ଏକ ବାରେଣୀ ଖୁମ୍ବ ଉପୁଡ଼ି ପଡ଼ିଛି ପ୍ରଚଣ୍ଡ ବାତ୍ୟାରେ । ଶବ୍ଦତାତ୍ତ୍ୱିକ ଓଡ଼ିଆ ଅଭିଧାନ ଅଧା ରହିଛି । ସହକର୍ମୀମାନେ ଚକିତ ହୋଇ ଅନେଇଛନ୍ତି । କୃଷ୍ଣ ଖସି ପଳେଇଛି । ଆଉ ଫେରିବ ନାହିଁ ।

ଆଗରେ ଟେବୁଲ୍‌ରେ ପଡ଼ି ରହିଛି ଗଦାଗଦା ପାଣ୍ଡୁଲିପି । କିଏ ପୂରା ତ କିଏ ଅଧା ! ବର୍ତ୍ତମାନ କଣ ହେବ ଏ ସବୁର ? କିଏ ସମାପ୍ତ କରିବ ଏଇ ଅସଂପୂର୍ଣ୍ଣ କାର୍ଯ୍ୟ ? ଉତ୍ତର ପୀଢ଼ି ଉପରେ ଏଇ ବିରାଟ ବୋଝ ଲଦି ଦେଇ କୃଷ୍ଣ ଚରଣ ସାହୁ ଚାଲି ଯାଇଛନ୍ତି ବହୁ ଦୂରକୁ । ସେ କଣ ଆଉ ସତରେ ଫେରିବ ନାହିଁ । ଓଡ଼ିଶା ମାଟି, ଓଡ଼ିଶାର ଇତିହାସ, ଓଡ଼ିଶା ସାହିତ୍ୟ ଖୋଜୁଛି ତାକୁ, ଖୋଜୁଥିବ ମଧ୍ୟ ।

ସ୍ତ୍ରୀ ମାନସିକ ରୋଗଗ୍ରସ୍ତ ହୋଇଥିଲେ । କୃଷ୍ଣଚରଣ ବିଶ୍ୱଭାରତୀରେ ଅଧ୍ୟାପକ ଥିଲାବେଳେ, ସେ ଚାଲି ଯାଇଥିଲେ କୃଷ୍ଣକୁ ଏକୁଟିଆ କରିଦେଇ । କୃଷ୍ଣ ରାମ ଭକ୍ତ । ଶ୍ରୀରାମଙ୍କ ପାଖରେ ଆପଣାକୁ ସମର୍ପଣ କରି ସେ ମାନସିକ ଶାନ୍ତି ପାଇଥିଲା କିଛି । ଭଗବତ ବିଶ୍ୱାସୀ ମାନଙ୍କର ସେଇ ଗୋଟିଏ ସୁବିଧା । ଯାହା ଆମ୍ଭମାନଙ୍କ ପରି ନାସ୍ତିକ ବା ଆଗ୍ନୋଷ୍ଟିକ ମାନଙ୍କର ନାହିଁ । କୃଷ୍ଣ ଧାର୍ମିକ, ରାମ ଭକ୍ତ । ମୁଁ ଆଗ୍ନୋଷ୍ଟିକ, ରାମକୁ ମୁଁ ଆଦୌ ପୁରୁଷୋତ୍ତମ ବୋଲି ବିଚାର କରେ ନାହିଁ । କିନ୍ତୁ ଏସବୁ ବିଭେଦ ସତ୍ତ୍ୱେ ତା ସହିତ ବନ୍ଧୁତା ଥିଲା ନିବିଡ଼ । ଦେଖିଲେ କୁଣ୍ଢେଇ ଧରେ । ଆଖିରେ ଏବେ ଲୁହ ଜମି ଆସେ ।

କୃଷ୍ଣ ତାର ଛାତ୍ର ଗବେଷକମାନଙ୍କୁ ପୁଅ ଝିଅ ଭଳି ମନେ କରେ । ସେଥିଯୋଗୁଁ ସେମାନେ ସମସ୍ତେ ଆଜି ପିତୃହୀନ ଭଳି ବୋଧ କରୁଥିବେ । ଡଙ୍ଗା ଚାଲିଛି, କିନ୍ତୁ ହଠାତ୍ କାଣ୍ଡାରୀ ନାହିଁ । ଗବେଷଣାର ଡଙ୍ଗା ଚାଲିବ କେମିତି ? କୃଷ୍ଣକୁ ଯେତେବେଳେ ଦେଖିବ ବାରଣ୍ଡାରେ ବସି କଣ ଗୋଟାଏ ପଢୁଥିବ ନ ହେଲେ ଲେଖୁଥିବ । କିନ୍ତୁ ନିରଭିମାନୀ ମଣିଷଟା ଥିଲା ସେ । ଗର୍ବ, ନାହିଁ କି ଅହଂକାର ନାହିଁ । ସେଇପରି ସରଳ ମଣିଷଟିଏ ମିଳିବା କଠିନ ।

ମଣିଷକୁ ତ ଦିନେ ନା ଦିନେ ଯିବାକୁ ହେବ । କିନ୍ତୁ ହଠାତ୍ ତାକୁ ଯିବାକୁ ପଡ଼ିଲା କାହିଁକି ? କିଛିତ ଅସୁସ୍ଥ ନ ଥିଲା । ମାତ୍ର କେଇ ମାସ ତଳେ ଦେଖା ହୋଇଥିଲା । ସେଇ ଉଷ୍ଣତା, ସେଇ ହସ । କିନ୍ତୁ ହଠାତ୍ ?

କ୍ୟାନ୍‌ସର ରୋଗରେ ଆକ୍ରାନ୍ତ ଓ ମୃତ ବ୍ୟକ୍ତିମାନଙ୍କୁ ଦେଖି ଦେଖି ମୋର କାହିଁକି ମନେ ହେଉଛି ଯେ ସୌନ୍ଦର୍ଯ୍ୟ ଓ ପ୍ରତିଭା ପ୍ରତି ଏଇ ରୋଗର ବିଶେଷ ଆକର୍ଷଣ ରହିଛି । କଣ ବଦଭ୍ୟାସ କୃଷ୍ଣର ଥିଲା ଯେ ସେ କ୍ୟାନସର ରୋଗର ଶିକାର ହେଲା ?

ମୁଁ ଅନେଇଛି । କୃଷ୍ଣ ଛାତ୍ରରୁ ଅଧ୍ୟାପକ, ଗବେଷକ ହୋଇଛି । ପ୍ରତିଷ୍ଠା, ଯଶ ବଢ଼ିଛି । ପ୍ରାଚୀନ ସାହିତ୍ୟର ବହୁ ବିବାଦମାନ ବସ୍ତୁ ଉପରେ ଗବେଷଣା କରି ନୂତନ ଆଲୋକପାତ କରିଛି । ଦୀନକୃଷ୍ଣ ଜଣେ ନା ଦୁଇ ଜଣ ନା ତା ଠାରୁ ବେଶୀ - ଏ ସଂପର୍କରେ ସେ ଯୁକ୍ତି ଉପସ୍ଥାପିତ କରିଛି । ନିଜର ବୈଜ୍ଞାନିକ ଗବେଷଣା ପ୍ରସୂତ ଯୁକ୍ତି । ପ୍ରାଚୀନ ସାହିତ୍ୟ ମଧ୍ୟକାଳୀନ ସାହିତ୍ୟ ତାର କୃତିତ୍ୱ, ତାର ଗବେଷଣାର ଦୁଇଟି ଉଜ୍ଜ୍ୱଳ ସ୍ତମ୍ଭ । ସାହିତ୍ୟ ଏକ ପ୍ରବାହ । ସେ ସେଇ ପ୍ରବାହରେ ଚାଲିଛି । ପ୍ରାଚୀନ ସାହିତ୍ୟ, ମଧ୍ୟଯୁଗୀୟ ସାହିତ୍ୟ, ସୁଫି ତତ୍ତ୍ୱର ଓଡ଼ିଆ ସାହିତ୍ୟରେ ପ୍ରଭାବ, ଫକୀର ମୋହନ, ବଙ୍କିମଚନ୍ଦ୍ରଙ୍କ ତୁଳନା, ପ୍ରେମଚନ୍ଦଙ୍କ ଉପନ୍ୟାସ,

ଔପନ୍ୟାସିକ ଗୋପୀନାଥଙ୍କ ଠାରୁ ଆରମ୍ଭ କରି ନାଟ୍ୟକାର ମନୋରଞ୍ଜନଙ୍କ ପର୍ଯ୍ୟନ୍ତ କେହି ତା ଆଖିରୁ, ତା କଲମରୁ ବାଦ ପଡ଼ି ନାହାନ୍ତି । ଅଧିକା କାଳ ବଞ୍ଚିଥିଲେ ତାର ଅବଦାନରେ ଓଡ଼ିଆ ସାହିତ୍ୟ ଆହୁରି ରସାଣିତ, ପରିସ୍ଫୁଟ ହୋଇ ଥାଆନ୍ତା । କିନ୍ତୁ ତା ହୋଇପାରିଲା ନାହିଁ ।

ସେ ଆଖିବୁଜି ଦେଲା । ଅବିଶ୍ରାନ୍ତ ଚାଲିଥିବା କଲମ ବିଶ୍ରାମ ନେଇଗଲା ଚିରଦିନ ପାଇଁ । ତାର ବିୟୋଗରେ ହଠାତ୍ ସାହିତ୍ୟର ଏକ 'କୁହୁ' ରାବ ନୀରବିତ ହୋଇଗଲା । ଓଲଟି ପଡ଼ିଲା ସାହିତ୍ୟ ସଂସ୍କୃତିର ଏକ ବିରାଟ ଅଧ୍ୟାୟ ।

ରାମଭକ୍ତ ରାମାୟଣର ରାମଚନ୍ଦ୍ରଙ୍କୁ ଖୋଜିଛି ଭାରତବର୍ଷର ସବୁ ସାହିତ୍ୟରେ, ସବୁ କୋଣରେ । ପୁରାଣ ରାମାୟଣ ଯେପରି ତାର ଗବେଷଣା ଭିତରେ, ଠିକ୍ ସେଇପରି ରାମାୟଣର ଐତିହାସିକ ସ୍ୱରୂପ ମଧ୍ୟ । ସେଇ ଗବେଷଣା ରହିଗଲା ଅଧାରେ ।

କୃଷ୍ଣ ତମେ ଗଲ କୁଆଡ଼େ ? ଫେରିବଟି ପୁଣି ।



# ଜୀବନ କୁମୁଦ ଭଳି, ଇସ୍ପାତ ଭଳି ବିଶ୍ୱାସ

କୁମୁଦ ରଂଜନ ବିଶ୍ୱାସଙ୍କର ପରଲୋକ ହୋଇଗଲା ତାଙ୍କର ୨୫୫, ପଞ୍ଚାନନ ତାଲା ରୋଡ଼ (ହାବଡ଼ା)ରେ । କ୍ରମଶଃ ସେ ଆପଣାକୁ ବନ୍ଧୁହୀନ ବୋଲି ମନେ କରୁଥିଲେ । ଯେଉଁ ଜୀବନ କୁମୁଦ ଭଳି ପ୍ରସ୍ଫୁଟିତ ହୋଇ ଆପଣାର ସୁରଭି ବିତରଣ କରୁଥିଲା, ବନ୍ଧୁତ୍ୱର ଅଭାବରେ ସେଇ ଜୀବନ ପୁଷ୍ପ ମଉଳି ଯିବାକୁ ଆରମ୍ଭ କଲା ।

କଲିକତାର ଏକ ସଂଭ୍ରାନ୍ତ ପରିବାରରେ ଜନ୍ମ ଗ୍ରହଣ କରିଥିଲେ କୁମୁଦ ଦା । ବାପା ମାଆଙ୍କର ଶେଷ ସନ୍ତାନ । ନିଶ୍ଚିତ ଭାବରେ ଖୁବ୍ ଗେହ୍ଲା ଏବଂ ଅଲିଅଳ । ଭାଇମାନେ ସବୁ ଇଂଜିନିଅର, ଡାକ୍ତର, କେବଳ ଜଣେ ବଡ଼ଭାଇ ସନ୍ତ୍ରାସବାଦୀ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେଇ ଭାଇଙ୍କର ପ୍ରଭାବ ପଡ଼ିଥିଲା କୁମୁଦ ବାବୁଙ୍କ ଉପରେ । ଦାଦା (ବଡ଼ଭାଇ) ପିଲାଦିନୁ ଶିକ୍ଷା ଦେଇଥିଲେ ସାନ ଭାଇକୁ ନିର୍ଭୀକ ଓ ରେସନାଲ ହେବାପାଇଁ ।

କୁମୁଦବାବୁ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ କାରାବରଣ କରନ୍ତି ଏବଂ ବାପାଙ୍କର ସ୍ୱପ୍ନ ଭାଙ୍ଗିଯାଏ । ବାପା ଚାହିଁଥିଲେ, ପୁଅ କୁମୁଦ ରଂଜନ ପାଠ ପଢ଼ିବ, ବିଲାତ ଯିବ, ବାରିଷ୍ଟର ହୋଇ ଫେରିବ । କିନ୍ତୁ ଏ କଣ ହେଲା ?

ସ୍ୱାଧୀନତା ଆନ୍ଦୋଳନର ଦୁନ୍ଦୁଭି ବାଜୁଛି । ବିବେକାନନ୍ଦ, ରବୀନ୍ଦ୍ରନାଥଙ୍କ ଲେଖା ତରୁଣ ମାନଙ୍କୁ ପ୍ରେରଣା ଦେଉଛି ବସ୍ତୁବାଦୀ ହେବାପାଇଁ, ରୁଷର ସାମାଜବାଦୀ ବିପ୍ଳବ ଯୁବକ ଯୁବତୀ ମାନଙ୍କୁ ଦେଇଛି ନୂତନ ଚିନ୍ତା, ନୂତନ ମାର୍ଗ ନିର୍ଦ୍ଦେଶ । ସମଗ୍ର ବଂଗଳାରେ ଚାଷୀ, ଶ୍ରମିକ ଏବଂ ବୁଦ୍ଧିଜୀବିମାନଙ୍କ ମଧ୍ୟରେ ଦେଖା ଦେଇଛି ଉଦ୍‌ବେଳନ । କୁମୁଦ ବାବୁ ଯୋଗ ଦିଅନ୍ତି ସେଇ ମହାପ୍ରବାହରେ ।

ଘର ଛାଡ଼ି କୁମୁଦ ଦା' ଚାଲି ଆସନ୍ତି ପାର୍ଟି କମ୍ୟୁନିଷ୍ଟକୁ । ସେଇଠି ଜୀବନ କଟେ । ରୁଟି ଆଉ ଗୋ-ମାଂସ ସବୁଠାରୁ ଶସ୍ତା ଖାଦ୍ୟ, ପ୍ରୋଟିନ୍ ବହୁଳ । ସେଇ ହୁଏ ଖାଦ୍ୟ । ପାର୍ଟିର ପାର୍ଟିଆର୍କ ମୁଜାଫର ଅହମ୍ମଦ (କାକାବାବୁ) । ସମସ୍ତଙ୍କ କଥା ବୁଝନ୍ତି । କୁମୁଦ ଦା'ଙ୍କର ସାଙ୍ଗଠନିକ ଶକ୍ତି ଦେଖି କାକା ବାବୁ ଦାୟିତ୍ୱ ଦେଲେ କୁମୁଦ ବାବୁଙ୍କୁ ପାର୍ଟି ସଂଗଠନର । ଏଇ ସମୟରେ କୁମୁଦ ବାବୁଙ୍କର ବାପାଙ୍କର ପରଲୋକ ହୋଇଯାଏ ଏବଂ ସେ ରଖିଯାଇଥିଲେ କୁମୁଦ ବାବୁଙ୍କ ପାଇଁ ବେଶ୍ ମୋଟା ଟଙ୍କା । କୁମୁଦ ବାବୁଙ୍କର ବିଲାତ ଯିବା ଆସିବା ଏବଂ ପାଠପଢ଼ିବା ପାଇଁ ଟଙ୍କା, କୁମୁଦବାବୁ ସେ ଟଙ୍କା ଆଣି ଥୋଇଦେଲେ କାକା ବାବୁଙ୍କ

ପାଦତଳେ । ଏହା ଖର୍ଚ୍ଚ ହେବ ସାମୂହିକ କଲ୍ୟାଣ ପାଇଁ । ସେତେବେଳେ ଇମିତି ହେଉଥିଲା । ବିପ୍ଳବୀମାନେ ଆପଣାର ସମଗ୍ର ସମ୍ପତ୍ତିକୁ ଦାନ କରି ଦେଉଥିଲେ ଆପଣାର ପାର୍ଟିକୁ । ଇ.ଏମ୍.ଏସ୍. ନମ୍ବୁଦ୍ରିପଦ, ପି. ସୁନ୍ଦରାୟାଙ୍କ ଭଳି ବହୁ ନେତା ଓ କର୍ମୀ ଠିକ୍ ଏଇପରି କରିଛନ୍ତି । ନେତାମାନେ ଯେଉଁପରି କାମ କରନ୍ତି କର୍ମୀ ମାନଙ୍କୁ ତାହା ଅନୁପ୍ରାଣିତ କରିଥାଏ । କୁମୁଦ ବାବୁ ନିଜ ଭାଗରେ ପଡ଼ିଥିବା ଘରକୁ ମଧ ପାର୍ଟିକୁ ଦେବାପାଇଁ ଚାହିଁଲେ । କିନ୍ତୁ କାକାବାବୁ ମନା କଲେ । କାଲି ତୁ ବାହାହେବୁ, ପିଲାପିଲି ହେବେ । ସବୁବେଳେ କଣ ଏଇ କମ୍ୟୁନରେ ରହିବୁ ? ତେଣୁ ଘରଟା ଥାଉ । କାକାବାବୁ ଅବିବାହିତ କିନ୍ତୁ ବୁଝନ୍ତି ପରିବାରର ସମସ୍ୟା । ଅବିବାହିତର ପୁଣି ସଂସାର !

କୁମୁଦ ବାବୁଙ୍କର ଜେଲକୁ ଯିବା ଆସିବା ଚାଲିଥାଏ । ସେତେବେଳେ ଜେଲ୍ ଭିତରେ ବନ୍ଦୀ ଥାଆନ୍ତି ଅନେକ ବିଦ୍ୱାନ ବ୍ୟକ୍ତି, ଅନେକ ଅଧ୍ୟାପକ । ଏହାଛଡ଼ା କଲିକତା ବିଶ୍ୱବିଦ୍ୟାଳୟ ମଧ ଜେଲଖାନା ଭିତରୁ ପରୀକ୍ଷା ଦେଇ ପାରିବାର ସୁବିଧା କରିଥାନ୍ତି । ବଙ୍ଗଳା ଜାତୀୟତାବାଦୀ ଆନ୍ଦୋଳନରେ ପ୍ରଭାବ ଥିଲା ଏଇପରି । ଉତ୍କଳ ବିଶ୍ୱବିଦ୍ୟାଳୟ ଜେଲ୍ଖାନାକୁ ଏକ ପରୀକ୍ଷା କେନ୍ଦ୍ର ଭାବରେ ଏ ପର୍ଯ୍ୟନ୍ତ ଘୋଷଣା କରିନାହାନ୍ତି । କୁମୁଦ ବାବୁ ପଢ଼ିଲେ ଏବଂ ପାସ୍ କଲେ ଏମ୍.ଏ. । କିନ୍ତୁ ରାଜନୈତିକ କାର୍ଯ୍ୟ ଅବ୍ୟାହତ ରହିଲା ।

ସେତେବେଳେ ବଙ୍ଗଳା କମ୍ୟୁନିଷ୍ଟ ପାର୍ଟିର ମୁଖ୍ୟ କେନ୍ଦ୍ର ଥିଲା କଲିକତା ସହର । ଶ୍ରମିକ, ବୁଦ୍ଧିଜୀବି, ଅନ୍ୟାନ୍ୟ ଜୀବିକାର ମଣିଷ ସମସ୍ତେ ଏକାଠି ହୋଇଥିଲେ । ଏବଂ ସେଇ ଦାୟିତ୍ୱ ଅର୍ପିତ ହେଲା କୁମୁଦ ବାବୁଙ୍କ ଉପରେ । କଲିକତା ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର ସଂପାଦକ ହେଲେ କୁମୁଦ ବାବୁ । ତାଙ୍କୁ ସମସ୍ତେ 'ହେଡ ମାଷ୍ଟ' ନାମରେ ଡାକୁଥିଲେ । କାରଣ ତାଙ୍କର ଶୃଙ୍ଖଳାଜ୍ଞାନ ଥିଲା କଠୋର, ସାମାନ୍ୟ ଶୃଙ୍ଖଳା ଭଂଗକୁ ସେ ବରଦାସ୍ତ କରି ପାରୁ ନ ଥିଲେ । ସେତେବେଳେ ମୁଜାଫର ଅହମ୍ମଦ, ଭବାନୀ ସେନ୍, ସୋମନାଥ ଲାହିଡ଼ୀ, ଅବଦୁଲ ମୋମିନ, ରସୁଲଙ୍କର ଯୁଗ । ଜ୍ୟୋତିବସୁ ବା ପ୍ରମୋଦ ଦାସଗୁପ୍ତ ସେ ପର୍ଯ୍ୟନ୍ତ ପ୍ରଥମ ଶ୍ରେଣୀର ନେତୃତ୍ୱକୁ ଆସି ନାହାନ୍ତି । କୁମୁଦ ବିଶ୍ୱାସ ଏପରି ଶୃଙ୍ଖଳା ପ୍ରୟୋଗ କରନ୍ତି ଯେ ପାର୍ଟି ବୈଠକକୁ ଡେରିରେ ଆସିଥିବା ବହୁ ନେତାଙ୍କୁ ପାର୍ଟି ବୈଠକ ସ୍ଥାନରେ ବାହାରେ ଠିଆ ହୋଇ ରହିବାକୁ ପଡ଼େ । କାମ ବେଳେ କାମ । ସେ କାହାରି ମୁହଁକୁ ଅନାନ୍ତି ନାହିଁ । କିନ୍ତୁ କାମ ସରିଲା ପରେ ସେ ବାହାରନ୍ତି ପଡ଼ା ବୁଲିବା ପାଇଁ । କେଉଁ ପଡ଼ାରେ କେଉଁ ସହଯୋଦ୍ଧା ବେମାର, କାହାର କଣ ସବୁ ବ୍ୟକ୍ତିଗତ ସମସ୍ୟା, କାହାର ଝିଅ ବିବାହ ହେବ, ପିଲା ପାଠ ପଢ଼ିବ ସବୁ ବୁଝନ୍ତି । ଦିନକୁ ଗୋଟିଏ ଦୁଇଟି ପଡ଼ା ତାଙ୍କର ବୁଲିବାର କାର୍ଯ୍ୟକ୍ରମ ଭିତରେ । ସେଇଟା ହେଉଛି ତାଙ୍କର ମାସ କଣ୍ଟାକ୍ଟ କାର୍ଯ୍ୟକ୍ରମ । ଏଇ କାର୍ଯ୍ୟକ୍ରମ ତାଙ୍କୁ ଆଣିଦିଏ ବହୁ ଲୋକଙ୍କ ସହ ପରିଚିତି । ଅନେକ ସମୟରେ ମୁଁ ଆଶ୍ଚର୍ଯ୍ୟ ହୋଇଛି ତାଙ୍କର ଏଇ ପରିଚିତିର ବିସ୍ତାର ଦେଖି । କେଉଁ କଂପାନୀର ଏକ୍ଜିକ୍ୟୁଟିଭ୍, କେଉଁ ବିଜ୍ଞାନାଗାରର ଗବେଷକ, କେଉଁ ଜାହାଜର କ୍ୟାପଟେନ୍ ସମସ୍ତେ ଏଇ ପର୍ଯ୍ୟାୟଭୁକ୍ତ ।

କୁମୁଦବାବୁ ସେଇ ପାର୍ଟି କମ୍ୟୁନରେ ବିବାହ କରନ୍ତି ତାଙ୍କର ସହଯୋଦ୍ଧା ଶଚି ବିଶ୍ୱାସଙ୍କୁ । ଯଥା ସମୟରେ ତାଙ୍କର ପୁଅଟିଏ ହୁଏ, ଭାସ୍କର ଜ୍ୟୋତି ବିଶ୍ୱାସ ।

ଆସେ ବଙ୍ଗଳା ଦେଶରେ ମନ୍ୱନ୍ତର, ଦୁର୍ଭିକ୍ଷ । ଆସେ ଦ୍ୱିତୀୟ ମହାଯୁଦ୍ଧରେ ଜାପାନୀ ସୈନ୍ୟବାହିନୀର ଆତଙ୍କ । ଏଣେ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନ ମୁଣ୍ଡଟେକେ । ଛାତ୍ର, ଶ୍ରମିକ, ବୁଦ୍ଧିଜୀବିମାନଙ୍କର ମିଳିତ ଅଭ୍ୟୁତ୍ଥାନ ଆଣେ ନୂତନ ଦିଗନ୍ତ । କୁମୁଦ ବାବୁ କେତେବେଳେ ପଳାତକ, କେତେବେଳେ ବନ୍ଦୀ । ଅଣ୍ଡର ଗ୍ରାଉଣ୍ଡ୍ ବା ପଳାତକ ଜୀବନର ରୋମାଞ୍ଚକର କାହାଣୀ ତାଙ୍କୁ ଇସ୍ପାତରେ ପରିଣତ କରେ । ୧୯୫୧ ମସିହାର ଶେଷ ଭାଗରେ ସେ ପୁଣି ଫେରନ୍ତି କମ୍ୟୁନିଷ୍ଟ ପାର୍ଟିର ସାଂଗଠନିକ ଶକ୍ତି ବଢ଼ାଇବା ପାଇଁ । ପାର୍ଟି ଫେରିଆସେ ପାର୍ଲାମେଣ୍ଟାରୀ ଜୀବନକୁ ।

୧୯୪୮-୫୧ ମସିହାର ଦୁଃସାହସୀ ନୀତି ଅନୁସରଣ କଲାବେଳେ କୁମୁଦ ବାବୁଙ୍କ ପ୍ରଥମ ମତଭେଦ ଆରମ୍ଭ ହୁଏ । ତା'ପରେ ମଧ୍ୟ ଏଇ ମତ ଭେଦ ବଢ଼ିଚାଲେ । ଆନ୍ଧ୍ର ନିର୍ବାଚନ, ମିଳିତ ସାମ୍ମୁଖ୍ୟର ରୂପରେଖ ପ୍ରଭୃତି ସହିତ ତାଙ୍କର ମତଭେଦ ଦେଖାଦିଏ ଅନ୍ୟାନ୍ୟ ବହୁ ଘଟଣାରେ । ତା ମଧ୍ୟରୁ ପାର୍ଟି ସଭ୍ୟମାନଙ୍କର ଜୀବନର ଷ୍ଟାଇଲ ବା ଧାରା ପାର୍ଟି କ୍ୟାଡର ମାନଙ୍କର ଯତ୍ନ ଅନ୍ତର୍ଭୁକ୍ତ । କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱ ସହିତ ଏଇ ମତଭେଦ ସୋଭିଏତ୍ ରୁଷ ଓ ଚୀନା କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟକୁ ମଧ୍ୟ ସମ୍ପ୍ରସାରିତ ହୋଇଯାଏ ଏବଂ ସେ କୌଣସି ଗୋଷ୍ଠୀ ସହିତ ଆପଣାକୁ ସାମିଲ କରି ପାରନ୍ତି ନାହିଁ ।

ଏଇ ମତଭେଦ କାଳକ୍ରମେ ତିକ୍ତ ହୋଇଉଠେ । ଶୃଙ୍ଖଳାର ସତର୍କ ପ୍ରହରୀ କୁମୁଦ ବିଶ୍ୱାସ ବହୁ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ କାଠଗଡ଼ାରେ ଠିଆ କରାନ୍ତି । ସମୟ ବଦଳି ଯାଉଛି, ଏ ସଂପର୍କରେ ସେ ସଚେତନ ନୁହନ୍ତି । ଫଳରେ ତାଙ୍କୁ ଶିକାର ହେବାକୁ ପଡ଼େ ରୋଷର, ଉଭୟ ପକ୍ଷରୁ ।

କୁମୁଦ ବିଶ୍ୱାସ ନେତୃତ୍ୱରୁ ଓହରି ଆସନ୍ତି । ପାର୍ଟି ସଭ୍ୟପଦ ତ ସେ ଛାଡ଼ି ପାରିବେ ନାହିଁ । ଏହାରି ଉପରେ ସେ ସମଗ୍ର ଜୀବନକୁ ବାଜି ରଖିଛନ୍ତି । କିନ୍ତୁ ଆଉ ନେତୃତ୍ୱ ନୁହେଁ ।

ହଠାତ୍ ତାଙ୍କ ସାଙ୍ଗରେ ଭେଟ ହୁଏ କଟକର ରାଜରାସ୍ତା ଉପରେ, କୁମୁଦ ବିଶ୍ୱାସ, କଟକରେ ? ନିଜର ପୁରାତନ ସନ୍ତ୍ରାସବାଦୀ ସାଥୀମାନେ ଏକ ମେଡିସିନ୍ କଂପାନୀ କରିଛନ୍ତି । "ଇଷ୍ଟଇଣ୍ଡିଆ ଫାର୍ମାସ୍ୟୁଟିକାଲସ୍" ତାହାରି ଡିପୋ ମ୍ୟାନେଜର ସେ କଟକରେ ।

କିନ୍ତୁ କାମ ଗୋଡ଼ାଉଛି ତାଙ୍କୁ । ଏଇଠି ସେ ଜଡ଼ିତ ହୋଇ ପଡ଼ନ୍ତି ରିଲିଫ୍ କାର୍ଯ୍ୟରେ । ୧୯୫୭-୬୨ ମସିହାମାନଙ୍କରେ ତାଙ୍କୁ ଦେଖାଯାଏ ଓଡ଼ିଶାର ରିଲିଫ୍ କାର୍ଯ୍ୟରେ । ବାତ୍ୟା, ବନ୍ୟା, ମରୁଡ଼ି ଗ୍ରସ୍ତଙ୍କୁ ରିଲିଫ ପାଇଁ । ମଣିଷ ସବୁଠାରେ ସମାନ, କାମ ବି ସମାନ ।

ବେଶୀଦିନ ସେ ରହିଲେ ନାହିଁ ଓଡ଼ିଶାରେ । ଫେରିଗଲେ କଲିକତା । ସେଠାରେ କିଛି କାଳ ସେ ସୋଭିଏତ୍ ଦେଶ କାଗଜରେ ମ୍ୟାନେଜରି କଲେ । ସୋଭିଏତ୍ ୟୁନିୟନ୍‌ରେ ଦେଖା ଦେଇଥିବା ଘଟଣାବଳୀ ତାଙ୍କୁ ଏତେ ବାଧିଲା ଯେ ସେ ସେଥିରୁ ଇସ୍ତଫା ଦେଲେ ।

ସମୟ ଅତିକ୍ରାନ୍ତ ହୋଇଛି । ବନ୍ଧୁହୀନ, ସଖାହୀନ ହୋଇ ଯାଉଛନ୍ତି ସେ । କମ୍ୟୁନିଷ୍ଟ ପାର୍ଟିର ଶକ୍ତି ବଢ଼ିଛି, କ୍ଷମତାସୀନ ହୋଇଛି କେତେକ ଯାଗାରେ । କିନ୍ତୁ ସେ ମାନବିକତା କାହିଁ ? କାହିଁ ସେ ବୈପ୍ଳବିକ ଚରିତ୍ର ? ଯେଉଁ ସୋଭିଏଟ୍ ୟୁନିୟନ୍ ଥିଲା ବିପ୍ଳବୀ ମାନଙ୍କର ନୟନ ପିତୁଳା ସେଇ ସୋଭିଏଟ୍ ୟୁନିୟନ୍ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇ ଯାଉଛି । ସେ ହୋଇଗଲେ ଭଗ୍ନ ହୃଦୟ ।

ତା'ପରେ ସେଇ ରାତି । ହଠାତ୍ ଛାତିରେ ଯନ୍ତ୍ରଣା । ତା'ପରେ ଡାକ୍ତରଖାନା ଯିବା ବାଟରେ ପରଲୋକ ହୋଇଗଲା ତାଙ୍କର । ସେ ପାଲଟିଗଲେ ଇତିହାସର ବସ୍ତୁ ।

ତାଙ୍କର ପରଲୋକ ସଂବାଦ ସୃଷ୍ଟି କଲା ଏକ ବିଷାଦର ଛାୟା, ଯାହା ଦଳ ମତ ଗୋଷ୍ଠୀ ନିର୍ବିଶେଷରେ ସମସ୍ତଙ୍କୁ ଆଚ୍ଛାଦିତ କରିଗଲା । ଓଡ଼ିଶାରେ ବହୁ ବ୍ୟକ୍ତି ତାଙ୍କ ପାଇଁ ଢାଳିଲେ ଲୁହ । କାରଣ ନିଜର ବିଶ୍ୱାସରେ ଅଟଳ ବିଶ୍ୱାସ ନିଜର ବିରୋଧୀ ମତକୁ ମଧ୍ୟ ସମ୍ମାନ ଜଣାନ୍ତି । ତାହା ହିଁ ହେଉଛି ଗଣତାନ୍ତ୍ରିକ ମନୋଭାବ ।

ରାତି ତ ପାହିନାହିଁ । କେବେ ପାହିବ କିଏ କହିବ ? ଯେଉଁମାନେ ଏଇ ନିରନ୍ଧ୍ର ରାତ୍ରିର ପ୍ରହରୀ ସେମାନେ ସ୍ମରଣୀୟ । ତାହାରି ଭିତରେ କୁମୁଦ ବାବୁ ଅନ୍ୟତମ ।



# ଯାହା ହାତରେ ଛୁରୀ କାମ କରୁଥିଲା ତୂଳିପରି

ଅଠେଇଶ ଅଗଷ୍ଟ, ୧୯୯୭ ମସିହା । ମଧ୍ୟାହ୍ନ ହେବା ପାଇଁ ଅଳ୍ପ ସମୟ ବାକି । ହଠାତ୍ ପ୍ରସିଦ୍ଧ ଶଲ୍ୟ ଚିକିତ୍ସକ ଡାକ୍ତର ଗିରିଜା ଶଙ୍କର ଦାସମହାପାତ୍ରଙ୍କର ପରଲୋକ ହୋଇଗଲା । ଯେଉଁ ହୃଦ୍‌ଯନ୍ତ୍ର ଦ୍ୱାରା ପରିଚାଳିତ ହାତ ଅସଂଖ୍ୟ ରୋଗୀଙ୍କୁ ଜୀବନ୍ୟାସ ଦେଉଥିଲା ସେଇ ହୃଦୟ ବନ୍ଦ ହୋଉଗଲା ଚିରଦିନ ପାଇଁ ।

ଡାକ୍ତର ଗିରିଜା ଶଙ୍କର ଦାସମହାପାତ୍ର ଶଲ୍ୟ ଚିକିତ୍ସାର ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ । ୧୯୧୮ ମସିହାରେ ବାଲେଶ୍ୱର ଜିଲ୍ଲା ଅଲାଲପୁର ଗ୍ରାମରେ ତାଙ୍କର ଜନ୍ମ । କିନ୍ତୁ ଶିକ୍ଷାଦୀକ୍ଷା ସବୁ କଟକରେ ଏବଂ ଅନ୍ୟତ୍ର । ପାଠ ପଢ଼ିବାକୁ ଆସିଥିଲେ କଟକ କନ୍ତୁ ରହିଗଲେ ଏଇଠି ।

ସେ ଏକ ପ୍ରବାଦ ପୁରୁଷରେ ପରିଣତ ହୋଇଥିଲେ ଆପଣାର ଦକ୍ଷତା ବଳରେ । କୁହାଯାଏ ସେ ଶରୀରରେ ଛୁରୀ ଚାଳନା କରନ୍ତି ତୂଳିରେ ଚିତ୍ର ଆଙ୍କିଲା ପରି । ସେଥିରେ ରକ୍ତକ୍ଷୟ ସବୁଠାରୁ କମ ହୁଏ । ସେଇଯୋଗୁଁ ସର୍ଜରୀର ଛାତ୍ରମାନେ ଅପେକ୍ଷା କରନ୍ତି ଡାକ୍ତର ଦାସମହାପାତ୍ର କେତେବେଳେ ପ୍ରବେଶ କରିବେ ଅପରେଶନ ଥିଏଟରକୁ ।

ସେତେବେଳେ ଓଡ଼ିଶାରେ ମେଡିକାଲ କଲେଜ ନ ଥିଲା । ସେ ଯାଇଥିଲେ ପାଟନା ପଢ଼ିବା ପାଇଁ । ପାଟନା ବିଶ୍ୱବିଦ୍ୟାଳୟରୁ ସେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହୋଇଥିଲେ । ସେଇ ପାଟନାର ପ୍ରିନ୍‌ସ ଅଫ ୱେଲସ୍ କଲେଜରୁ ୧୯୪୫ ମସିହାରେ ସର୍ଜରୀରେ ମାଷ୍ଟର ଉପାଧିଲାଭ କରିଥିଲେ । ଏହି ପ୍ରତିଭାଶାଳୀ ଯୁବକଙ୍କୁ ଦେଖିଥିଲେ ପାଟନାର ପ୍ରସିଦ୍ଧ ଓଡ଼ିଆ ଆଇନଜୀବି ଗଜେନ୍ଦ୍ର ପ୍ରସାଦ ଦାସଙ୍କର ଜ୍ୟେଷ୍ଠା କନ୍ୟା ବାଣୀ । ସେ ମଧ ଡାକ୍ତର, ତେଣୁ ଗିରିଜାଶଙ୍କରଙ୍କର ସହଯୋଦ୍ଧୃତ୍ୱ ମଧ ପାଇଥିଲେ ସେ । ପରିଣୟ ସୂତ୍ରରେ ଆବଦ୍ଧ ହୋଇଥିଲେ ଗିରିଜା ଓ ବାଣୀ । ୧୯୪୮ ମସିହାରେ ଲଣ୍ଡନରୁ ସେ ଏଫ.ଆର.ସି.ଏସ୍. ଡିଗ୍ରୀ ହାସଲ କରିଥିଲେ । ଶ୍ରୀ ରାମଚନ୍ଦ୍ର ଭଂଜ ମେଡିକାଲ କଲେଜରେ ଗିରିଜା ଶଙ୍କର ଯୋଗଦେଇଥିଲେ ସର୍ଜରୀ ବିଭାଗରେ । ଆଉ ସେ ପଛକୁ ଫେରି ଅନେଇ ନାହାନ୍ତି । ମେଡିକାଲ କଲେଜର ଅଧକ୍ଷ ଏବଂ ପରେ ସ୍ୱାସ୍ଥ୍ୟ ବିଭାଗର ଡାଇରେକ୍ଟର ଭାବରେ ଅବସର ଗ୍ରହଣ କରିଥିଲେ ।

ମେଡିକାଲ କଲେଜ ସର୍ଜରୀ ବିଭାଗର ଘର ତିଆରି ହେଉଛି । ତା ପୂର୍ବରୁ ପ୍ରସୂତି ବିଭାଗର ଘର ତିଆରି ସରିଛି ଏବଂ ସେଥିରେ ରହିଯାଇଛି ଅନେକ ତ୍ରୁଟି । ଡାକ୍ତର ଦାସ

ମହାପାତ୍ର ନିଜେ ତଦାରଖ କଲେ ସର୍କରୀ ବିଭାଗ ଗୃହର ନିର୍ମାଣ କାର୍ଯ୍ୟ । ଇଂଜିନିଅର ଆପତ୍ତି କଲେ କାରଣ ନକ୍ସାର ପରିବର୍ତ୍ତନ ଅସମ୍ଭବ । ଗିରିଜାଶଙ୍କର କିନ୍ତୁ ନଛୋଡ଼ ବନ୍ଧା । କଥା ଗଲା ମୁଖ୍ୟଯନ୍ତ୍ରୀ ଓ ସରକାରଙ୍କ ପାଖକୁ । ଗିରିଜାଶଙ୍କର ସେଇଠି ଠିଆ ହୋଇ ନକ୍ସା କରିବା ଆରମ୍ଭ କଲେ । ର୍‍ୟାମ୍ପି ନାହିଁ, କରିଡ଼ର ନାହିଁ ରୋଗୀମାନଙ୍କର ଷ୍ଟ୍ରେଚର ଯିବ କିମିତି ? ଠିକ୍ ଇଂଜିନିୟରଙ୍କ ଭଳି ନକ୍ସା କାଟିଲେ ଟ୍ରେସିଙ୍ଗ ପେପର ଉପରେ । ଇଂଜିନିୟର ତାଜୁବ୍ । ଏଇ ମଣିଷଟା ସର୍ଜନ ନା ଇଂଜିନିୟର । ସେଦିନ ସମସ୍ତେ ତାଙ୍କୁ ସାର୍ଟିଫିକେଟ୍ ଦେଇଥିଲେ । ଚାହିଁଥିଲେ ସେ ଜଣେ ଦକ୍ଷ ଇଂଜିନିୟର ହୋଇ ପାରିଥାନ୍ତେ ।

ଗିରିଜା ଶଙ୍କର ବେସ୍ ହ୍ୟୁମରସ୍ । ଥଟ୍ଟା, ନକଲ ଯେପରି କରନ୍ତି ସହନ୍ତି ମଧ ସେଇପରି ହସି ହସି । ଥରେ କଲେଜରେ ଡ୍ରାମା ହେଉଥିଲା । ପାଲା ଗାୟକ ଡାକ୍ତରୀ ଛାତ୍ର ଗୋବିନ୍ଦ ସେନାପତି ଗାଉଛନ୍ତି.... ଥନ୍ତଲ ପେଟୁଆ, ମାଗୁର ନିଶୁଆ.... ଗିରିଜାଶଙ୍କର ବସିଛନ୍ତି ଆଗ ଧାଡ଼ିରେ ଏବଂ ହସି ହସି ଗଡ଼ି ଯାଉଛନ୍ତି । କେବଳ ସେତିକି ନୁହେଁ, ଡ୍ରାମା ଶେଷରେ ବଧେଇ ବି ଜଣେଇଛନ୍ତି । ଗୋବିନ୍ଦ ନାହିଁ କି ଗିରିଜାଶଙ୍କର ବି ନାହାନ୍ତି । ତାହା ସହିତ ହ୍ୟୁମର ଓ ତାର ଆପ୍ରିସିଏସନ୍ ମଧ କ୍ଷୟ ହୋଇ ଯାଇଛି ।

ଡାକ୍ତର ଦାସ ମହାପାତ୍ର ମଧ ଜଣେ ଭଲ ଚିତ୍ରକର ଏବଂ ସାହିତ୍ୟିକ ଥିଲେ । ତାଙ୍କର ଚିତ୍ରପଟୁତା କିନ୍ତୁ ସଂକ୍ଷିପ୍ତ ସୀମା ଭିତରେ ରହିଯାଇଥିଲା । କିନ୍ତୁ କିଛି ପୁସ୍ତକ ସେ ରଚନା କରି ଯାଇଛନ୍ତି । ସେଇଥିରୁ ତାଙ୍କର ସୃଜନଶୀଳତାର ପ୍ରମାଣ ମିଳେ । ମନ ଓ ଆବେଗ ତାଙ୍କର ମନର ଆବେଗ ବହନ କରେ ।

ଡାକ୍ତର ଦାସ ମହାପାତ୍ର ପ୍ରତିଷ୍ଠିତ ବ୍ୟକ୍ତି, ଜୀବନରେ ନାଁ କମେଇଛନ୍ତି ଯେପରି ଅର୍ଥ ମଧ କମେଇଛନ୍ତି । ସବୁ କିଛି ଅଛି । ପତ୍ନୀ, ପୁତ୍ର କନ୍ୟା ଜାମାତା । ସମସ୍ତେ ପ୍ରତିଷ୍ଠିତ । କିନ୍ତୁ ତାଙ୍କ ଭିତରେ ହଠାତ୍ ଯେପରି ଏକ ବୈରାଗ୍ୟ ଦେଖାଦେଲା । ସବୁ ହଁ ଭିତରେ କଣ ଗୋଟାଏ ନାହିଁ ଯେପରି ତାଙ୍କୁ ଘାରିଲା । ସେ ଭାବୁକ ହୋଇଗଲେ, ହୋଇଗଲେ ନିର୍ଲିପ୍ତ । ଗୀତା, ଉପନିଷଦ ପଢ଼ିବାକୁ ଆରମ୍ଭ କଲେ । ତା ଉପରେ ଟୀକା ଲେଖିଲେ । ଅବଶ୍ୟ ତାହା ଅସଂପୂର୍ଣ୍ଣ ରହିଗଲା । ଦୂର, ବହୁଦୂରର କୌଣସି ଭାବନା, ତାଙ୍କୁ ଘାରିଲା । ସେ ପ୍ରଗଳ୍ଭ ହୋଇଗଲେ । କହିଲେ ପିଲା ଦିନର ସ୍ମୃତି । କଣ କିଏ ଡାକୁ ଡାକୁଛି କି ଆଉ ସଭା ସମିତିରେ ବକ୍ତୃତା ଦେବାକୁ କହିଲେ ସେ ଶରୀର ବିଜ୍ଞାନ, ଅସ୍ତ୍ରୋପଚାର ସହିତ ସେଇ ଜୀବନ ଦର୍ଶନ ବିଷୟରେ କହିଲେ ।

ଡାକ୍ତର ଦାସମହାପାତ୍ର ଅବସର ନେବା ପରେ ଆରୋଗ୍ୟ ନର୍ସିଂହୋମ କରିଛନ୍ତି ତାଙ୍କ ଗୃହ ପରିସରରେ । ଅଧାପକ ମଧୁସୂଦନ ଦାସ ଇଂରାଜୀ ଅଧାପକଙ୍କ ଆଖିରୁ ଲୁହ ଝରୁଛି । ସେ ଠିଆ ହୋଇଛନ୍ତି ବାଲ୍‌କନିରେ । ଡାକ୍ତର ଦାସମହାପାତ୍ରଙ୍କ ମର ଦେହ ପ୍ରତି ସମ୍ମାନ ଜଣାଇବା ପାଇଁ ଭିଡ଼ ଜମିଛି । ସେମାନେ ଆସିଛନ୍ତି । ଆସିଛନ୍ତି ଜୀବନର ବିଭିନ୍ନ ବିଭାବରୁ । ଗିରିଜାଶଙ୍କର ଦାସମହାପାତ୍ର ଖାଲି ଡାକ୍ତର ବା ସର୍ଜନ ନଥିଲେ । ଥିଲେ ଜଣେ ଦରଦୀ ମଣିଷ

ମଧ୍ୟ । ଆରୋଗ୍ୟ ନର୍ସିଂହୋମର ଅନ୍ତେବାସୀ ମାନଙ୍କର ଆଖିଭିଜା, ଆଜି ମଧ୍ୟ ଆକାଶ, ଧରଣୀ ସବୁ ଭିଜା । ମହାଯାତ୍ରା ଆରମ୍ଭ ହୋଇଛି । ଗୀତା ବହି ରହିଛି ଟେବୁଲ ଉପରେ । " ସବୁଧର୍ମ ପରିତ୍ୟାଗ କରି ହେ ବ୍ରଜ, ତୁମେ ମୋତେ ଆଶ୍ରାକର" । ଗିରିଜା ଶଙ୍କର ଦାସ ମହାପାତ୍ରଙ୍କର ଜୀବନ ଠିକ୍ ସେଇ ସନ୍ଧିକ୍ଷଣରେ ପହଞ୍ଚିଲା । ସବୁ ରହିଯିବ ପଛରେ । ଧନ, ପ୍ରତିଷ୍ଠା, ସମ୍ମାନ, ଘର, ସ୍ତ୍ରୀ, ପୁତ୍ର, ପୁତ୍ରବଧୂ, କନ୍ୟା, ଜାମାତା ସମସ୍ତେ ରହିଯିବେ ପଛରେ । ତାଙ୍କୁ ଯିବାକୁ ପଡିବ, ଏକାକୀ । କେଉଁଠିକୁ ? ସେ ଜାଣନ୍ତି ନାହିଁ ? କେହି ମଧ୍ୟ ଜାଣନ୍ତି ନାହିଁ । ଚରୈବତି, ଚରୈବତି, ଚରୈବତି । ଚାଲ, ଚାଲ, ଆଗେଇ ଚାଲ । ସମସ୍ତେ ଅଛନ୍ତି । ଆଜି ସକାଳୁ ସେ ଭଲ ଥିଲେ । ହଠାତ୍ ଗୋଟାଏ ଦୁଇଟା ହିକ୍କା, ତା'ପରେ ସବୁ ଶେଷ ।

ଖାନନଗରରେ ଧୁଧୁ ଚିତା ଜଳୁଛି । ବହୁ ମଣିଷଙ୍କର ସୁକୁମାର ଦେହରେ ଚିତ୍ରଭଳି ଆଙ୍କି ଯାଇଥିବା ସର୍ଜନର ଦେହ କାଠ, ଘିଅ, ଝୁଣା ଭିତରେ ଶେଷ ହୋଇ ଯାଉଛି । ମୁଖ୍ୟମନ୍ତ୍ରୀଙ୍କ ତରଫରୁ ଶ୍ରଦ୍ଧାଧାରରେ ପୁଷ୍ପ ରଖାଯାଉଛି । କିନ୍ତୁ ଗଲା ଆଠ ମାସ ହେବ ବୈଦ୍ୟୁତିକ ଚୁଲା ଖରାପ ହୋଇ ପଡ଼ିଛି । ତାର ମରାମତି ହେଉନାହିଁ । ଶ୍ମଶାନ ତ ନୁହେଁ ଚବର ଚବର ପାଣି, ଗୁଡ଼ାଏ ଗାଈ, ଗୁଡ଼ାଏ କୋଇଲା ଭିତରେ ଚିତା ଜଳୁଛି ପ୍ରତିଷ୍ଠିତ ବ୍ୟକ୍ତିର । ସଭ୍ୟତା ମୁହଁ ତଳକୁ କରି ଠିଆ ହୋଇଛି । ଆଉ ଟିକକୁ ସବୁ ଶେଷ ହୋଇଯିବ ।

ମହାକାଳ ବକ୍ଷରେ ଲୋପ ପାଇଯିବ ସେଇ ଅଦ୍ଭୁତ ବିନ୍ଧାଣୀ ଯେ ବହୁ ବ୍ୟକ୍ତିଙ୍କୁ ମୃତ୍ୟୁ ମୁହଁରୁ ଫେରାଇ ଆଣିଛି, କିନ୍ତୁ ନିଜେ ଶେଷରେ ଶିକାର ହୋଇଛି ସେଇ ଅଲଂଘନୀୟ ମୃତ୍ୟୁର ।



# କର୍ମଯୋଗୀର କର୍ମାବସାନ

ପ୍ରାୟ ୧୦୦ ବର୍ଷ ଛୁଇଁଥିବା କର୍ମଯୋଗୀ ଗୁଲଜାରିଲାଲ ନନ୍ଦାଙ୍କର ଦେହାବସାନ ହୋଇ ଯାଇଛି । ଜାନୁଆରୀ ୧୫ ତାରିଖରେ ଅହମ୍ମଦାବାଦରେ । ତାଙ୍କର ଜୀବନର ପରିସମାପ୍ତି ସହିତ ଏକ ଯୁଗର ଅବସାନ ହୋଇଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ବାହୁବଳ ଏବଂ ଅର୍ଥବଳ ଯେତେବେଳେ ସାମାଜିକ ଏବଂ ରାଜନୈତିର୍କ ଜୀବନକୁ ଗ୍ରାସ କରିଯାଉଛି ସେତେବେଳେ ଗୁଲଜାରିଲାଲ ନନ୍ଦା ଥିଲେ ତାହାର ଏକ ସଂପୂର୍ଣ୍ଣ ବ୍ୟତିକ୍ରମ । ସେଇ ବ୍ୟତିକ୍ରମର ବିଲୟ ଘଟିଛି ।

ମଣିଷର ସେବାକୁ ସେ ଆପଣାର ଜୀବନର ବ୍ରତ ଭାବରେ ଗ୍ରହଣ କରି ନେଇଥିଲେ । ପ୍ରଚାର ଲୋଡ଼ି ନାହାନ୍ତି, କ୍ଷମତାକୁ ଜାବୋଡ଼ି ଧରିବାର ପ୍ରୟାସ କରି ନାହାନ୍ତି ଜୀବନରେ । ୧୯୬୬ ମସିହାରେ ଗୋହତ୍ୟା ବିରୋଧରେ ବିକ୍ଷୋଭ କରୁଥିବା ଦଳେ ସାଧୁଙ୍କ ଉପରେ ଲାଠିଚାର୍ଜ ନେଇ ପାର୍ଲାମେଣ୍ଟ ଗୃହରେ ପ୍ରକାଶ ପାଇଥିଲା ଉତ୍ତେଜନା । ନନ୍ଦା ଇସ୍ତଫା ଦେଇ ଚାଲି ଯାଇଥିଲେ । ତାପରେ କିଛିକାଳ ପାଇଁ ସେ ରେଳବାଇ ମନ୍ତ୍ରୀ ହୋଇଥିଲେ ସତ୍ୟ କିନ୍ତୁ ସେଥିପ୍ରତି ତାଙ୍କର ନଥିଲା ଆଉ କୌଣସି ଆସକ୍ତି ।

ଜୀବନକୁ ତାଙ୍କର ଦୁଇଟି ଆଦର୍ଶ ରୂପାୟିତ କରିଥିଲା । ଶ୍ରୀକୃଷ୍ଣଙ୍କର ଜୀବନର କର୍ମଯୋଗ ଏବଂ ମହାତ୍ମା ଗାନ୍ଧୀଙ୍କର ଜୀବନର ଅହିଂସା । ଗୁଲଜାରିଲାଲ ନନ୍ଦା ଏକ ସାଧୁ ପ୍ରକୃତିର ମଣିଷ ଥିଲେ । ସେଥିପାଇଁ ସାଧୁ ମାନଙ୍କ ଉପରେ ତାଙ୍କର ଅଖଣ୍ଡ ବିଶ୍ୱାସ ଥିଲା । ସଂସାର ସହିତ ଅନାସକ୍ତ ଥିବା ସାଧୁମାନଙ୍କୁ ଆୟୁଧ କରି ସମାଜର ପରିବର୍ତ୍ତନ ହୋଇ ପାରିବ ବୋଲି ସେ ବିଶ୍ୱାସ କରୁଥିଲେ ଏବଂ ଏଥିପାଇଁ ସେ ଭାରତ ସାଧୁ ସମାଜ ଗଠନ କରିଥିଲେ । କିନ୍ତୁ ତାହା ସଫଳ ହୋଇ ପାରି ନଥିଲା ।

ଗୁଲଜାରିଲାଲ ନନ୍ଦାଙ୍କ ଭାଗ୍ୟରେ ସ୍ଥାୟୀ ପ୍ରଧାନମନ୍ତ୍ରୀ ହେବାର ସୁଯୋଗ ଘଟି ନ ଥିଲା । ଯଦିଓ ଦୁଇଥର ସେ କାମଚଳା ପ୍ରଧାନମନ୍ତ୍ରୀ ହୋଇଥିଲେ । ସବୁବେଳେ, ବିଶେଷତଃ ରାଜନୀତିରେ କଣ ବୟୋଜ୍ୟେଷ୍ଠତା, ସାଧୁତାର ବିଜୟି ହୁଏ ?

ସାରଲ୍ୟରେ ଶାଣିତ ଏଇ ଛୋଟିଆ ମଣିଷଟି, ଆଲାହାବାଦ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାଶ୍ କରିଥିଲେ ଏବଂ ମହାତ୍ମା ଗାନ୍ଧିଙ୍କ ସଂସ୍ପର୍ଶରେ ଆସି ସେ ଜୀବନକୁ ନିୟୋଜିତ କରିଥିଲେ ସ୍ୱାଧୀନତା ସଂଗ୍ରାମରେ ଏବଂ ମଣିଷର ସେବାରେ । ସେଥିରୁ ସେ କଦାପି ବିଚ୍ୟୁତ ହୋଇ ନାହାନ୍ତି । ଭାରତବର୍ଷର ଘରୋଇ ମନ୍ତ୍ରୀ, ଯୋଜନା ମନ୍ତ୍ରୀ, ଜଳସେଚନ ମନ୍ତ୍ରୀ ହୋଇଛନ୍ତି

କିନ୍ତୁ ମନ୍ତ୍ରୀତ୍ୱର ନିଶା ତାଙ୍କୁ ଆଦୌ ଘାରି ନାହିଁ । ବିରୋଧୀ ଦଳର ମତ ପ୍ରତି ତାଙ୍କର ସମ୍ମାନ ପାର୍ଲାମେଣ୍ଟର ଇତିହାସରେ ଅବିସ୍ମରଣୀୟ ।

ଗାନ୍ଧିଜୀଙ୍କର କଳନା ଥିଲା ଏକ ନୂତନ ଧରଣର ଟ୍ରେଡ ୟୁନିୟନ୍ ଗଠନ କରିବା ପାଇଁ । ଏଥିପାଇଁ ସେ ଏକ ଯୋଗ୍ୟ ବ୍ୟକ୍ତି ଖୋଜୁଥିଲେ । ନନ୍ଦାଙ୍କ ଉପରେ ପଡ଼ିଥିଲା ସେ ଦାୟିତ୍ୱ । ତତ୍‌କାଳୀନ ଭାରତବର୍ଷର ଶିଳ୍ପର କେନ୍ଦ୍ରସ୍ଥଳ ଥିଲା ଅହମଦାବାଦ । ବହୁ କାର୍ପାସ ବସ୍ତ୍ର ଶିଳ୍ପର ଏହା ଥିଲା ପୀଠ । ଗୁଲଜାରିଲାଲ ଏକ ବିରାଟ ଲକ୍ଷ୍ୟନେଇ ସେଠାରେ ଗଢ଼ିଥିଲେ ମଜଦୁର ମହାଜନ ସଂଘ । ୧୯୩୭ ମସିହାରେ ବମ୍ବେ ବିଧାନସଭାକୁ ନିର୍ବାଚିତ ହୋଇ ସେ ରୂପ ଦେଇଥିଲେ ବମ୍ବେ ଶିଳ୍ପ ଆକୂର । ଗୁଲଜାରିଲାଲ ଆପଣାର କଳ୍ପନାକୁ ରୂପ ଦେଇ ଗଢ଼ିଥିଲେ ଇଣ୍ଡିଆନ୍ ଟ୍ରେଡ୍ କଂଗ୍ରେସ । ୧୯୪୪ ମସିହା ପର୍ଯ୍ୟନ୍ତ ୨୩ ବର୍ଷ କାଳ ସେ ଟ୍ରେଡ୍ ୟୁନିୟନ୍‌କୁ ଆପଣାର କର୍ମକ୍ଷେତ୍ର ରୂପେ ବାଛିଥିଲେ । କିନ୍ତୁ ମିଲିଟାଣ୍ଟ ବା ସଂଗ୍ରାମୀ ଟ୍ରେଡ୍ ୟୁନିୟନ୍ ଆଗରେ ତାହା ତିଷ୍ଠି ପାରି ନ ଥିଲା ।

୧୯୬୧ ମସିହାରେ ଜବାହାରଲାଲଙ୍କ ସଭାପତିତ୍ୱରେ ସେ ଯୋଜନା କମିଶନର ଉପାଧ୍ୟକ୍ଷ ହୁଅନ୍ତି । ପରେ ମନ୍ତ୍ରୀ ବି ହୁଅନ୍ତି ।

ସେ ଥିଲେ ସମସ୍ତଙ୍କର ପ୍ରିୟ । କିନ୍ତୁ ରାଜନୀତିରେ ତାଙ୍କର ପ୍ରଭାବ ବଳଶାଳୀ ନ ଥିଲା । କୁରୁକ୍ଷେତ୍ର ଥିଲା ସେଇ ପୀଠ ଯେଉଁଠି ଶ୍ରୀକୃଷ୍ଣ ଶୁଣାଇଥିଲେ ଅର୍ଜୁନଙ୍କୁ ଗୀତାର ବାଣୀ । ଶ୍ରୀକୃଷ୍ଣ ଥିଲେ ନନ୍ଦାଙ୍କର ଉପାସ୍ୟ । କୁରୁକ୍ଷେତ୍ରର ବିକାଶ ପାଇଁ ସେ ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରି ଯାଇଛନ୍ତି ।

କର୍ମଯୋଗୀ ଗୁଲଜାରିଲାଲ ପରିଶେଷରେ ଫେରି ଯାଇଥିଲେ କର୍ମକୁ । କ୍ଷମତା, ଟିକଟ, ଗାଦୀ ପଡ଼ି ରହିଥିଲା ପଛରେ । ଘର ନାହିଁ ତାଙ୍କର ବ୍ୟାଙ୍କରେ ଟଙ୍କା ବି ନାହିଁ । ତଥାପି ସେ ଏକାକୀ ପଡ଼ି ରହିଛନ୍ତି । ନିବେଦନ, ଆବେଦନ କିଛି ପାଇଁ ଉଦ୍ୟମ କରି ନାହାନ୍ତି । ତାଙ୍କର ଠିକଣା ହଜି ଯାଇଛି ।

ସେଇ ଠିକଣା ଆଜି ହଜିଗଲା ପୃଥିବୀ ପୃଷ୍ଠରୁ । ସେ ଇତିହାସର ଗର୍ବିତ ସଂପଦ । ଆଜିର ମଣିଷ ତାଙ୍କୁ ହେରିବ ନାହିଁ କିନ୍ତୁ କାଲି ପୁଣି ହେରିବ ।



# ଅତିଥି ବତ୍ସଳ ଗୋପାଳଚନ୍ଦ୍ର

ଶିଳ୍ପପତି, ସମାଜସେବୀ ଗୋପାଳଚନ୍ଦ୍ର ପଟ୍ଟନାୟକଙ୍କର ମାର୍ଚ୍ଚ ୧୨ ତାରିଖ ପତ୍ୟୁଷରେ ପରଲୋକ ହୋଇଯାଇଛି । ରାତିରେ ଶୋଇଥିବା ଅବସ୍ଥାରେ ହିଁ ତାଙ୍କର ପରଲୋକ ହୋଇଗଲା । ମୃତ୍ୟୁ ବେଳକୁ ତାଙ୍କୁ ୮୭ ବର୍ଷ ହୋଇଥିଲା । ଗଲା କେତେ ବର୍ଷ ହେବ ସେ ପ୍ରାୟ ଅଚଳ ହୋଇ ଯାଇଥିଲେ ଏବଂ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କର ମସ୍ତିଷ୍କ ସଂପୂର୍ଣ୍ଣ କ୍ଷମ ଏବଂ ଆଲର୍ଟ ଥିଲା । ସେ ଚୌକିରେ ବସିରହି ସବୁ କଥା ବୁଝୁଥିଲେ ଏବଂ ସମସ୍ତଙ୍କ କଥା, ସବୁ ସମସ୍ୟା କଥା ପଚାରୁଥିଲେ । ସେଇ ଅବସ୍ଥାରେ ହିଁ ସେ ତାଙ୍କର ଚାରି ସାନ ଭାଇଙ୍କର ପରଲୋକ ଜନିତ ଦୁଃଖକୁ ବରଣ କରିଥିଲେ । ପତ୍ନୀ ଶାନ୍ତିଲତା ମଧ ତାଙ୍କର ଏଇ ଅବସ୍ଥାରେ ଛାଡ଼ି ଚାଲି ଯାଇଛନ୍ତି ସେପାରିକୁ । ପତ୍ନୀଙ୍କ ସ୍ମୃତିରେ ନିବେଦିତ ଡାକ୍ତରଖାନା ଏବଂ ଲାଇବ୍ରେରୀ କଥା ବୁଝିବା ତାଙ୍କର ଦୈନନ୍ଦିନ କର୍ତ୍ତବ୍ୟ ମଧରେ ଅର୍ନ୍ତଭୁକ୍ତ ଥିଲା ।

ଗୋପାଳଚନ୍ଦ୍ରଙ୍କର ପିତା ହେଉଛନ୍ତି ପ୍ରସିଦ୍ଧ କବି - ଲେଖକ ବାଳକୃଷ୍ଣ ପଟ୍ଟନାୟକ । ତାଙ୍କର ପୈତୃକ ମାଟି ହେଉଛି ବୟାଳିଶ ମୌଜା ବେଣ୍ଟକାର ଗ୍ରାମରେ । ବାପା ବାଳକୃଷ୍ଣ କିନ୍ତୁ ପୂର୍ବତନ ଗଡ଼ଜାତ ଆଠଗଡ଼କୁ ଉଠି ଯାଇଥିଲେ । ଗୋପାଳଚନ୍ଦ୍ର ଆଠଗଡ଼ ଓ ପୁରୀ ସ୍କୁଲରେ ସ୍କୁଲ ଶିକ୍ଷା ସମାପ୍ତ କରି ରେଭେନ୍ସା କଲେଜରେ ପାଠ ପଢ଼ିଲେ । ସେତେବେଳେ ସ୍ୱାଧୀନତା ପାଇଁ ସଂଗ୍ରାମ । ରେଭେନ୍ସା କଲେଜ ଅଫିସ୍ ଏହି ସମୟରେ ପୋଡ଼ି ଯାଇଥିଲା । ଗୋପାଳଚନ୍ଦ୍ର ସେଥିରେ ସଂପୃକ୍ତ ଥିଲେ । କିନ୍ତୁ ଆପଣାର ବିଚକ୍ଷଣ ଉପସ୍ଥିତି ବୁଦ୍ଧି ଯୋଗୁଁ ତାଙ୍କୁ ସେଥିରେ ଅଭିଯୁକ୍ତ କରାଯାଇ ପାରିଲା ନାହିଁ ।

ପାଠପଢ଼ା ପରେ ଗୋପାଳଚନ୍ଦ୍ର ସେକ୍ରେଟେରିଏଟର କିରାଣି ଭାବରେ କାର୍ଯ୍ୟ ଆରମ୍ଭ କରନ୍ତି । କିନ୍ତୁ ପରିକଳ୍ପନା ଥାଏ ବହୁତ ଉଚ୍ଚରେ । ଏତିକିବେଳେ ଏ ଭୈରବଚନ୍ଦ୍ର ମହାନ୍ତି ଥିଲେ ତାଙ୍କର ସହକର୍ମୀ । ଉଭୟେ କ୍ରୀଡ଼ାପ୍ରେମୀ । ବନ୍ଧୁତା ନିବିଡ଼ ହେଲା । ଯୁଦ୍ଧ ସମୟରେ ଓଡ଼ିଶାର ରାଜଧାନୀ ଉଠିଗଲା ସମ୍ବଲପୁରକୁ । ସେକ୍ରେଟେରିଏଟ୍ ହେଲା ବର୍ତ୍ତମାନ ଗଂଗାଧର ମେହେର କଲେଜର ମୁଖ୍ୟ କୋଠାରେ । ସେତେବେଳେ ତାହା ସମ୍ବଲପୁର ଜିଲ୍ଲା ସ୍କୁଲର ଘର ଥିଲା । ବର୍ତ୍ତମାନ ଯେଉଁଠି ଗଙ୍ଗାଧର ମେହେର ଟ୍ରଷ୍ଟ ଫଣ୍ଡର ଘର ସବୁ ରହିଚି (ବୁଢ଼ାରଜା) ସେଇଠି ସେକ୍ରେଟେରିଏଟର କିରାଣିମାନଙ୍କ ଲାଗି ହେଇଥିବା ତିନୋଟି କଲୋନୀରୁ ଗୋଟିଏ ଗଢ଼ା ହୋଇଥିଲା । ସେଇଠି ଏକ ମେସ୍ ଥିଲା କିରାଣିମାନଙ୍କର ଗୋଟିଏ ଗୋଷ୍ଠୀର । ନାମ ଦିଆଯାଇଥିଲା ' ସିମଳା ମେସ୍' । ବୁଢ଼ାରଜା ପାହାଡ଼ର ଟିକିଏ ଉପରକୁ ଏହି ଘରଟି ତିଆରି

ହୋଇଥିବାରୁ ଏଇଭଳି ନାମକରଣ ହୋଇଥିଲା । ସେଇଠି ସେମାନେ ତାସ୍(ବ୍ରିଜ) ଓ କ୍ୟାରମ ଖେଳନ୍ତି । ସେଇଠି ୰ ଭୈରବଚନ୍ଦ୍ର ମହାନ୍ତି ମଧ ରହୁଥିଲେ । ଭୈରବବାବୁ ସେଇଠି ସରକାରୀ ଚାକିରିରୁ ଇସ୍ତଫା ଦେଇ ଜାତୀୟ କଂଗ୍ରେସରେ ଯୋଗ ଦିଅନ୍ତି । ତାଙ୍କୁ ଗିରଫ କରିବା ପାଇଁ ପରୱାନା ଜାରି ହୁଏ ଏବଂ ସେ ପଳାତକ ହଅନ୍ତି । ଯେଉଁମାନେ ସେଦିନ ତାଙ୍କର ସାହାଯ୍ୟକାରୀ ଥିଲେ ସେମାନଙ୍କ ଭିତରେ ବୋଧହୁଏ ଗୋପାଳ ପଟ୍ଟନାୟକଙ୍କ ପରେ ଏକମାତ୍ର ଜୀବିତ ବ୍ୟକ୍ତି ଅଛନ୍ତି ନନ୍ଦକୃଷ୍ଣ ଦାସ, ପ୍ରସିଦ୍ଧ କ୍ରୀଡ଼ାବିତ୍ । ମାନଗୋବିନ୍ଦ ଭୂୟାଁ, ନନ୍ଦ କିଶୋର ମହାନ୍ତି ପ୍ରଭୃତି ଗଲେଣି ।

ସେଇ ସଖ୍ୟ ତାଙ୍କର ରହିଥିଲା ସେ ସମସ୍ତଙ୍କ ସହିତ ସେମାନଙ୍କର ବାହୁଡ଼ିବା ପର୍ଯ୍ୟନ୍ତ ।

ଗୋପାଳ ବାବୁ ଆଉ ଚାକିରି କରିବାକୁ ଇଛା କଲେ ନାହିଁ । ବୋଧହୁଏ ଉତ୍ସବ ସାମନ୍ତରାୟ ଏବଂ ସେ ଏକା ଦିନରେ ସରକାରୀ ଚାକିରୀ ଛାଡ଼ିଲେ ଏବଂ ସ୍ୱାଧୀନ ବ୍ୟବସାୟ ଆରମ୍ଭ କଲେ ।

ଗୋପାଳ ବାବୁଙ୍କ ବ୍ୟବସାୟ ବହୁ ବିଭାଗକୁ ପରିବ୍ୟାପ୍ତ ଥିଲା । କୃଷି ଯନ୍ତ୍ରପାତି, ଚାରି ଚକିଆ ଟ୍ରାକ୍ଟର, ଫର୍ଗୁସନ ଟ୍ରାକ୍ଟରର ସେ ଥିଲେ ଓଡ଼ିଶା ପାଇଁ ବିତରକ । ଓଡ଼ିଶାକୁ ବିଦେଶୀ ମୋଟର ଗାଡ଼ି ସେ ହିଁ ପ୍ରଥମେ ଆମଦାନୀ କରିଥିଲେ । ଅଷ୍ଟିନ୍ ଠାରୁ କ୍ରାଇସେଲର, ପ୍ଲାଇ ମାଉଥଠାରୁ ବହୁ ପ୍ରକାର ଗାଡ଼ିର ସେ ଥିଲେ ବିତରକ । ଆମେରିକା ତଥା ଅନ୍ୟାନ୍ୟ ବହୁ ରାଷ୍ଟ୍ରରୁ ସେ ଆମଦାନୀ କରିଥିଲେ ବିଭିନ୍ନ ଯନ୍ତ୍ରପାତି । ଔଷଧଠାରୁ ଫିଆଟ୍ ମୋଟର ଗାଡ଼ି, ଗୋପାଳଚନ୍ଦ୍ର ବହୁ ପ୍ରକାର ବ୍ୟବସାୟରେ ହାତ ଦେଇଥିଲେ । ଏହା ସମ୍ଭବ ହୋଇଥିଲା କାରଣ ତାଙ୍କର ନିବିଡ଼ ପରିଚିତ ଥିଲା ବହୁ ନେତୃବୃନ୍ଦଙ୍କ ସହିତ । ହରେକୃଷ୍ଣ ମହତାବଙ୍କଠାରୁ ଆରମ୍ଭ କରି ବିଜୁ ପଟ୍ଟନାୟକଙ୍କ ପର୍ଯ୍ୟନ୍ତ, ବୀରେନ ମିତ୍ରଙ୍କଠାରୁ ଭୈରବଚନ୍ଦ୍ର ମହାନ୍ତିଙ୍କ ପର୍ଯ୍ୟନ୍ତ । ସେସବୁ କେତେ ସଫଳ ହୋଇ ତିଷ୍ଠି ରହି ପାରିଛି, ସେ ଏକ ସ୍ୱତନ୍ତ୍ର କଥା । କିନ୍ତୁ ପାଇଓନିଅର ଭାବରେ ସେ ଆପଣାର ଭାଇମାନଙ୍କ ସମେତ ବହୁ ତରୁଣମାନଙ୍କୁ ଶିଳ୍ପୋଦ୍ୟୋଗୀ କରାଇବା ପାଇଁ ତାହା ସାହାଯ୍ୟ କରିଛି । ପାଇଓନିଅର ଭାବରେ ସେ ସର୍ବଦା ଖ୍ୟାତ ହୋଇ ରହିବେ ।

କେବଳ ସେତିକି ନୁହେଁ । ଓଡ଼ିଶା ଚାମ୍ବର ଅଫ୍ କମର୍ସରେ ସେ କିଛିକାଳ ସଭାପତି, ପ୍ରାଚ୍ୟ ପେଟ୍ରୋଲ ବିତରକ ସଂଘର ସଭାପତି ଭାବରେ ତାଙ୍କର ଅବଦାନ ରହିଛି । ବିଜୁ ପଟ୍ଟନାୟକଙ୍କ ଦ୍ୱାରା ପ୍ରତିଷ୍ଠିତ କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟର ସେ ସଭାପତି ଥିଲେ । ଓଡ଼ିଶା ସରକାରଙ୍କ ଦ୍ୱାରା ମନୋନୀତ ହୋଇ ସେ ବହୁ ଅନୁଷ୍ଠାନରେ ଓଡ଼ିଶାର ପ୍ରତିନିଧିତ୍ୱ କରିଛନ୍ତି । ରେଡ଼କ୍ରସ ସୋସାଇଟି, ଉତ୍କଳ ବାଳାଶ୍ରମ, ଆମଦାନି ରପ୍ତାନୀ କମିଟି, ବୈଷୟିକ ଶିକ୍ଷା କାଉନ୍‌ସିଲ୍‌ର ସଭ୍ୟ ବିଶ୍ୱବିଦ୍ୟାଳୟ ପ୍ରଯୁକ୍ତି କମିଟିର ସଭ୍ୟ, ପରିବାର ନିୟନ୍ତ୍ରଣ ଉପଦେଷ୍ଟା କମିଟି ପ୍ରଭୃତି ବହୁ ଅନୁଷ୍ଠାନ ତାଙ୍କର ଆଲେଖ୍ୟ ବହନ କରିଛି । ପ୍ରତିରକ୍ଷା ସମିତି, ଦକ୍ଷିଣ ପୂର୍ବ ରେଳବାଇ କମିଟି, ଜାତୀୟ ସଂହତି କମିଟିର ସଭ୍ୟ ଭାବରେ ମଧ ସେ କାର୍ଯ୍ୟ କରି ଯାଇଛନ୍ତି ।

ବାରବାଟି ଷ୍ଟାଡିୟମ ନିର୍ମାଣ ପାଇଁ ସଂଗଠିତ ହେବ ବାରବାଟୀ ରାଫଲ୍ ବା ଲଟେରୀ । କିଏ ଯୋଗାଇବ ପ୍ରାଥମିକ ଅର୍ଥ ? ଯେଉଁମାନେ ଏଥିପାଇଁ ଦାନ ଦେଲେ ସେମାନଙ୍କ ଭିତରେ ଗୋପାଳ ବାବୁ ଅନ୍ୟତମ । ୟୁନିଭର୍ସର ସେ ଥିଲେ ଆଜୀବନ ସଭ୍ୟ ଏବଂ ଶୁଭେଚ୍ଛୁ । ଡାକ୍ତର ଗୋପାଳଚନ୍ଦ୍ର ମେମୋରିଆଲ୍ ଟ୍ରଷ୍ଟର ସେ ଥିଲେ ସକ୍ରିୟ ସଭ୍ୟ ।

ସେ ଥିଲେ କ୍ରୀଡ଼ାପ୍ରେମୀ । ବ୍ରିଜ୍ ଏବଂ କ୍ୟାରମ ଖେଳିବା ଥିଲା ତାଙ୍କର ପ୍ରଗାଢ଼ ସଉକ । ପଟ୍ଟନାୟକ ଏଣ୍ଡ କୋଃର ସବା ଉପର ମହଲାରେ ବ୍ରିଜ୍‌ର ଆସର ଜମେ । ସକାଳ ହେବା ପର୍ଯ୍ୟନ୍ତ । କିନ୍ତୁ ସେଦିନର ପାର୍ଟନରମାନଙ୍କ ଭିତରୁ ସମସ୍ତେ ବାହୁଡି ସାରିଲେଣି । ଭୈରବ ମହାନ୍ତି, ସୁବୋଧ ବିଶ୍ୱାସ, ଅମୀୟ ସେନ୍, କେହି ଆଉ ନାହାନ୍ତି । ସେମାନଙ୍କ କଥା ଛଳ ଛଳ ଆଖିରେ ସ୍ମରଣ କରୁଥିଲେ ଏଇ ଅତିଥିବତ୍ସଳ, ଦରଦୀ ବନ୍ଧୁ ଗୋପାଳଚନ୍ଦ୍ର ପଟ୍ଟନାୟକ ।

ସେ ଆଉ ନାହାନ୍ତି । ପରିଣତ ବୟସରେ ତାଙ୍କର ପରଲୋକ ହୋଇ ଯାଇଛି ଏବଂ ଗୋଟିଏ ଅଧ୍ୟାୟର ଯବନିକା ପଡ଼ିଯାଇଛି ମହାକାଳ ହାତରେ ।



# ଶ୍ରଦ୍ଧାଞ୍ଜଳି - ଏକ ଯୋଦ୍ଧାପାଇଁ

**ସ**ମୟର ମହାଳଣ ପଡ଼ି ଆସିଲାଣି । ସାଥୀ ଗୋକୁଳଚନ୍ଦ୍ର ନାୟକ ୧୯୯୭ ମସିହା ମାର୍ଚ୍ଚ ୧୮ ରେ ବିଦାୟ ନେଇଗଲେ ସଂସାରରୁ । ତାଙ୍କୁ ବିଚାର କରିବାକୁ ହେଲେ ନୀଳଗିରି ପ୍ରଜା ଆନ୍ଦୋଳନ, ଗଡ଼ଜାତ ମିଶ୍ରଣ ଆନ୍ଦୋଳନ ଏବଂ ଭାରତୀୟ ମୁକ୍ତି ଆନ୍ଦୋଳନର ପରିପ୍ରେକ୍ଷୀରେ ହିଁ ବିଚାର କରିବାକୁ ହେବ । କାରଣ ଏହା ଛଡ଼ା ତାଙ୍କର ବ୍ୟକ୍ତିଗତ ପ୍ରାୟ କିଛି ନ ଥିଲା । ୧୯୨୧ ମସିହା ଫେବୃଆରୀ ୨୪ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ ।

ସେତେବେଳେ ଦେଶରେ ଅନ୍ଧକାରର ରାଜୁତି । ଭାରତବର୍ଷ ପରାଧୀନ । ବ୍ରିଟିଶ ସରକାରଙ୍କର ଶାସନ ଚାଲିଛି, ଯେଉଁ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତ ହୁଏନା ବୋଲି ଦିନେ ବ୍ରିଟିଶ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ କହିଥିଲେ ଗର୍ବର ସହିତ । କିନ୍ତୁ ଭାରତବର୍ଷର ଗଡ଼ଜାତମାନଙ୍କରେ ଚାଲିଥିଲା ଅନ୍ଧାରୀ ଶାସନ । ପ୍ରତ୍ୟେକ ଗଡ଼ଜାତ ରାଜ୍ୟ ମାନଙ୍କର ଥିଲା ସ୍ୱତନ୍ତ୍ର ପ୍ରକାରର ଶୋଷଣ । ଖଜଣା, ଟିକସ ଛଡ଼ା ପାଶବିକ ଅତ୍ୟାଚାରର ଛାପ ଥିଲା ପ୍ରତ୍ୟେକ ଗଡ଼ଜାତ ରାଜାମାନଙ୍କର ସ୍ୱତନ୍ତ୍ର ଶୈଳୀ । ତେଣୁ ଏହି ରାଜ୍ୟମାନଙ୍କର ଜନସାଧାରଣଙ୍କୁ ଦୁଇଟି ଅତ୍ୟାଚାରର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

କବି ଗୋଦାବରୀଶ ମହାପାତ୍ର ଆପଣାର କବିତାରେ ଲେଖିଥିଲେ :-

ଶତ ବରଷର ଥିଲା ଏଠି ଯେତେକ ଚନ୍ଦ୍ରଶାଳ,<br>
ଥିଲା ଶତଶତ ବିହାର ବାଟିକା, କାମିନୀ ହଂସପୁର<br>
ପାଟ ପ୍ରାଙ୍ଗଣ, ପାଟ ମହାଦେଇ , ପାଟ ଜେମା, ପାଟ ହାତୀ

ଏ ନାମ ସମାଧି ହେଲା ଏଠି ଆଜି, ଲୁଚିଗଲା ପାଟ ଛତୀ<br>
ଘନ ଅନ୍ଧାରେ, ଗିରିକନ୍ଦରେ, ଦେବ ମନ୍ଦିରେ କହ<br>
ହେଲା ଏତେକାଳେ କୌପୀନର ପାଶେ ମକୁଟର ପରାଜୟ,<br>
ଲୁଚିଲା 'ମଣୋହି' ପହୁଡ଼ ଏଠାରେ, ଇତିହାସେ ହେବ ଲେଖା,<br>
ପଛ ଘୁଞ୍ଚାରେ ଛାମୁ ଗଲେ ଛାଡ଼ି ବିଜେ ହେବେ ନାହିଁ ଦେଖା<br>
ଗଡ଼ ଜାତ ହେଲା ମୋଗଲବନ୍ଦୀ ଜାଗି ପ୍ରଜା ପରିଷଦେ<br>
ମସ୍ତକ କର ଅବନତ ଭାଇ, ମହାଉତ୍କଳ ପାଦେ

ଏଇ ମୁକୁଟ ବିରୁଦ୍ଧରେ ବିଦ୍ରୋହର ବୈଜୟନ୍ତୀ ଯେଉଁମାନେ ଉତ୍ତୋଳିତ କରିଥିଲେ ସେମାନଙ୍କ ଭିତରେ ଗୋକୁଳି ନାୟକ ସେମାନଙ୍କ ମଧ୍ୟରେ ଅନ୍ୟତମ । ନୀଳଗିରି ଗୋହିରା ଗାଁରେ ଜନ୍ମ ଗୋକୁଳି ନାୟକ ପିଲାଦିନୁ ମୁକ୍ତିର ନିଶାରେ ଘାରି ହୋଇଥିଲେ । କୈଳାସ ଚନ୍ଦ୍ର

ମହାନ୍ତି ଗଲେଣି । ଗିରିଧାରୀ ପଣ୍ଡା ବି ଗଲେଣି । ଆହୁରି ଅନେକ ସାଥୀ ବାହୁଡି ସାରିଲେଣି । ଅନେକେ ଯାଉ ଯାଉ ଅଟକି ଯାଇଛନ୍ତି ।

ଆଜିର ଯୁବକ କିନ୍ତୁ ସେ ଦିନର କଥା ବିଶ୍ୱାସ କରିବେ ନାହିଁ । କରି ପାରିବେ ନାହିଁ । ମୁଁ ମୋର ପୁଅଝିଅଙ୍କୁ ସେ ଦିନର କଥା କହିଲାବେଳେ ସେମାନେ ଉପରକୁ ଅନାନ୍ତି । ସତରେ କଣ ଇମିତି ହେଉଥିଲା ? ସେ ଦିନର ଅନ୍ଧକାର ଥିଲା ନିରନ୍ଧ୍ର, ତିକ୍ତ, ଆଇଁସିଆ ଅନ୍ଧକାର । କିନ୍ତୁ ତା ବିରୁଦ୍ଧରେ ମଧ୍ୟ ଦିହୁଡ଼ି ଜାଳିବା ପାଇଁ ଦଳ ଦଳ ଯୁବକ ଆପଣାର ଜୀବନକୁ ବାଜି ରଖି ବାହାରିଥିଲେ । ସେମାନଙ୍କ ମଧ୍ୟରେ ଗୋକୁଳି ନାୟକ ଅନ୍ୟତମ ।

ସହଯୋଦ୍ଧା ବନମାଳୀ ଦାସ ଅଦ୍ୟାପି ଜୀବିତ ଅଛନ୍ତି । ସେ ହିଁ ବୋଧହୁଏ ସେ ରାଜ ଅତ୍ୟାଚାରର ଶେଷ ସାକ୍ଷୀ । ୧୯୩୭ ମସିହାରୁ ଗୋକୁଳି ବାବୁ ଯୋଗ ଦେଇଥିଲେ ଏଇ କଠୋର ସଂଗ୍ରାମରେ । ସେତେବେଳେ ବୟସ ମାତ୍ର ୧୬ କି ୧୭ ବର୍ଷ । ଏଇ ବୟସରେ ସ୍ୱପ୍ନଦେଖେ ଯୁବକ ଏକ ଚାକିରିର, ଏକ ସ୍ୱଚ୍ଛନ୍ଦ ଜୀବନର, ଏକ ଯୁବତୀର ଲଜ୍ଜାଧରର ସ୍ୱପ୍ନ । କିନ୍ତୁ ସେମାନେ ସେଦିନ ସ୍ୱପ୍ନ ଦେଖିଥିଲେ ଏକ ନୂତନ ଧରଣର ସ୍ୱପ୍ନ ।

ମୁକ୍ତିର ସ୍ୱପ୍ନ । ମୁକ୍ତିର ମଦିରା ସେମାନଙ୍କୁ ଆସକ୍ତ କରିଥିଲା । ୧୯୩୭, ୧୯୩୮, ୧୯୪୭ ଏବଂ ୧୯୪୮ ମସିହାରେ ସାଥୀ ଗୋକୁଳି ନାୟକ କାରାବରଣ କରିଛନ୍ତି ସେଇ ସ୍ୱପ୍ନରେ ଉନ୍ମତ୍ତ ହୋଇ ।

ଖାଲି ରାଜୁଡ଼ା ଶୋଷଣରୁ ମୁକ୍ତି, ବ୍ରିଟିଶ ସରକାର ଶାସନରୁ ମୁକ୍ତି ତାଙ୍କର ଲକ୍ଷ୍ୟ ନ ଥିଲା । ଶୋଷଣ ମୁକ୍ତ, ସ୍ୱାଧୀନ ଭାରତର ରୂପରେଖ କଣ ହେବ ସେଥିପାଇଁ ମଧ୍ୟ ସେ ପରିକଳ୍ପନା କରିଥିଲେ ଏବଂ ତାହାହିଁ ତାଁଙ୍କୁ ନେଇ ଯାଇଥିଲା ସାମ୍ୟବାଦୀ ଶିବିରକୁ । ସାମ୍ୟବାଦର ମହାମନ୍ତ୍ର ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା । ଠିକ୍ ଯେପରି ତାହା ଉଦ୍‌ବୁଦ୍ଧ କରିଥିଲା ପୃଥିବୀର ବହୁ ଦେଶର ଯୁବକ ଯୁବତୀଙ୍କୁ । ନୀଳଗିରି ପ୍ରଜାମଣ୍ଡଳ ତଥା ନୀଳଗିରି କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱରେ ଥିଲେ ଗୋକୁଳି ନାୟକ ।

ଦେଶ ମିଶ୍ରଣରେ ନୀଳଗିରି ରାଜ୍ୟର ଭୂମିକା ତ ଆଜି ବିଶ୍ୱାସ କରିହେବ ନାହିଁ । ନୀଳଗିରି ହେଉଛି ଭାରତ ବର୍ଷର ପ୍ରଥମ କରଦ ରାଜ୍ୟ ଯାହାର ମିଶ୍ରଣ ହେଇଥିଲା ଭାରତବର୍ଷ ସହିତ (ଓଡ଼ିଶାପ୍ରଦେଶ ସହିତ) ଏବଂ ତାହାହିଁ ଉନ୍ମୁକ୍ତ କରିଥିଲା ଦେଶ ମିଶ୍ରଣକୁ, ଯାହା ଚୂଡ଼ାନ୍ତ ରୂପ ପାଇଥିଲା ୧୯୪୮ ମସିହା ଡିସେମ୍ବର ମାସରେ । ଭାରତବର୍ଷରେ ବହୁ ଗଡ଼ଜାତ ଥିଲା, ନୀଳଗିରି ଠାରୁ ବହୁତ ବଡ଼ । ସେ ରାଜ୍ୟମାନଙ୍କରେ ମଧ୍ୟ ଜନ ସଂଗ୍ରାମ ବେଶ୍ ଜୋର୍‌ଦାର ଥିଲା, ବହୁ ପ୍ରଖ୍ୟାତ ନେତା ଥିଲେ ଏହି ଆନ୍ଦୋଳନର ନେତୃତ୍ୱରେ ।

କିନ୍ତୁ କେଉଁ କାରଣରୁ ନୀଳଗିରି ଏହାର ଆଗଛାମୁଆ ପାଇଓନିଅର ହୋଇପାରିଲା ତାହା ବିଚାର କଲେ ଗୋକୁଳି ନାୟକ ଏବଂ ତାଙ୍କର ନେତା ବନମାଳୀ ଦାସ ତଥା ସହଯୋଦ୍ଧା ମାନଙ୍କ ସ୍ମୃତି ମନକୁ ଆସେ । ନୀଳଗିରି ପ୍ରଜାମଣ୍ଡଳ ଆନ୍ଦୋଳନ ବିରୁଦ୍ଧରେ ରାଜା କିଛି ଲୋକଙ୍କୁ ସଶସ୍ତ୍ର କରନ୍ତି ଏବଂ ଅତ୍ୟାଚାର ରୂପ ବଦଳିଯାଏ । ହାତରେ ଅସ୍ତ୍ର ଧରିବାକୁ ହେବ । ପ୍ରତିରୋଧ କରିବାକୁ ହେବ ଏଇ ସଂଗ୍ରାମକୁ, ସଶସ୍ତ୍ର ପ୍ରତିରୋଧ, । ସେନାବାହିନୀରୁ ବିଦାୟ ନେଇ ଆସିଥିବା ସାଥୀ ବିପୁଳ ଚୌଧୁରୀ, ତାଲିମ ଦିଅନ୍ତି ପ୍ରଜାମଣ୍ଡଳ ଆନ୍ଦୋଳନରେ ଅଗ୍ର ଭାଗରେ

ଥିବା କିଛି ସାଥୀଙ୍କୁ, ଚନ୍ଦକା ଜଙ୍ଗଲ ଭିତରେ । ସଶସ୍ତ୍ର ପ୍ରତିରୋଧ ଆରମ୍ଭ ହୁଏ । ଗୋପୀ ବ୍ରହ୍ମଚାରୀ ଆହତ ହୁଅନ୍ତି । ବୋଧହୁଏ ସେଇ ସେନାପତି ମାନଙ୍କ ଭିତରୁ କେବଳ ଶ୍ରୀନନ୍ଦ କିଶୋର ପଟ୍ଟନାୟକ ଏବଂ ଶ୍ରୀ ଅବଦୁଲ କାଦର (କାଶୀ ମିଶ୍ର) ଜୀବିତ ଅଛନ୍ତି । ଗୋକୁଳି ନାୟକ ସେଇ ସେନାପତି ମାନଙ୍କ ମଧରେ ଅନ୍ୟତମ ।

ଅବସ୍ଥା ଅସମ୍ଭାଳ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ ଓଡ଼ିଶା ପୋଲିସ ବାହିନୀ ପ୍ରେରଣ କଲେ । ଡକ୍ଟର ମହତାବଙ୍କର ନୀଳଗିରି ପ୍ରଜା ଆନ୍ଦୋଳନ ସହିତ ସଂମ୍ପର୍କ ଥିଲା ନିବିଡ଼ । କୈଳାସ ଚନ୍ଦ୍ର ମହାନ୍ତିଏବଂ ବନମାଳୀ ଦାସଙ୍କ ସହିତ ସଖ୍ୟ ଥିଲା ତାଙ୍କର । ନୀଳଗିରିର ମିଶ୍ରଣ ହୋଇଗଲା ଓଡ଼ିଶା ସହିତ । ଗଡ଼ଜାତମାନଙ୍କର ମିଶ୍ରଣ ପାଇଁ ଏହା ପଥ ସୁଗମ କରିଦେଲା । ଏହି ଗୌରବର ଯେଉଁମାନେ ଅଧିକାରୀ ସେମାନଙ୍କ ଭିତରେ ଗୋକୁଳି ବାବୁ ଅନ୍ୟତମ ।

ନୀଳଗିରି ମିଶ୍ରଣ ହୋଇଗଲା, କିନ୍ତୁ କଳ୍ପିତ ସ୍ୱରାଜ୍ୟ କାହିଁ ?

ପୁଣି ଗୋଦାବରୀଶ ମହାପାତ୍ର ଲେଖିଲେ :-

" ସେ ପଟେ ଉଠଇ ତୋପ ବନ୍ଧୁକ କମ୍ପାଇ ବସୁମତୀ,
ଉଠଇ ଏ ପଟେ କୋଟି ଜନତାର
କଣ୍ଠ ତଟର ଗୀତି
ଏ କି କୋଳାହଳ ? ପଚାର ଯାତ୍ରୀ
କାହାର ଏ ଅଭିଯାନ ?
ଶୁଣିବ ଏ ପଟେ ରାଜ ମୁକୁଟକୁ
ସେ ପଟରେ କୌପୀନ ।
ଯୁଗଯୁଗାନ୍ତ ଅନ୍ଧାର ଗିରି
ଗହ୍ୱର ତଳେ ଥାଇ ।
ଲଭିବ ସିନ୍ଧୁ ସଂଗମ ବୋଲି
ଆସିଲା ଯେ ନଈ ଧାଇଁ
ଏତେ ଦିନେ ସେଇ ନୀଳଗିରି
ଗହ୍ୱର ହୋଇ ପାରି
କଙ୍କାଳକୁଳ ରୁଦ୍ଧ ଜୀବନ,
ମୁକ୍ତିର ଅଧିକାରୀ

ମୁକ୍ତି ଓ କୌପୀନ କବିତାରେ ଗୋଦାବରୀଶ ମହାପାତ୍ର ମୁକୁଟର ପରାଜୟ କଥା ଲେଖିଗଲେ, କିନ୍ତୁ କୌପୀନର ବିଜୟ ହେଲା କି ?

ନା - ସେ ପୁଣି ଲେଖିଲେ

" ମହା ଉତ୍କଳେ ଗଡ଼ଜାତ ଥାନେ
ହୋଇଲେଣି ଏବେ ଠିଆ,
ପଚିଶିଟି ରାଜ- ପଚିଶି ବିରଳା,

ପଚିଶିଟି ଯାଯୋଡିଥା
ରାଜା ଗଲେ ଏବେ ପୁଂଜିପତିର,
କୁଞ୍ଜେ ବାଜିଲା ବୀଣା
ରାଜନୀତି ହାଟ ବଜାରେ ଚାଲିବ,
ରାଜିନୀତି ବିକା କିଣା"
କୌପୀନ ଆଉ ମୁକୁଟ ମଝିରେ,
ବିରାଟ ଏ ବ୍ୟବିଧାନ
କହେ କଉପୀନ ଗଲା ଏମୁକୁଟ
ଛାଡି ଦେଇ ତାର ଥାନ,
ସେ ଥାନ ଦଖଲ କରିବା ପାଇଁ କି ,
ସମର ଲାଗିବ କାଲି
ସାମ୍ୟବାଦର ଶଙ୍ଖ ବଜାଇ,
ସମତା ଆଣିବ ବୋଲି,
ଗିରିକନ୍ଦରେ, ଦେବ ମନ୍ଦିରେ, ଘନ ଅନ୍ଧାରେ କହ,
କରିବାକୁ ହେବ ଆହୁରି ସମର ଦୁର୍ଦ୍ଦମ ଭୟାବହ ।"

କୌପୀନର ମହାରଥୀ ଗୋକୁଳି ନାୟକ ଏବଂ ତାଙ୍କର ସହଯୋଦ୍ଧା ମାନଙ୍କ ପାଇଁ ଆରମ୍ଭ ହେଲା ଦ୍ୱିତୀୟ ମୁକ୍ତି ସଂଗ୍ରାମ, ଯାହା ଏ ପର୍ଯ୍ୟନ୍ତ ସରିନାହିଁ । ୧୯୪୮ ରେ ନୀଳଗିରି ପ୍ରଜା ଆନ୍ଦୋଳନର ମହାରଥୀ ଗୋକୁଳି ନାୟକ କାରାରୁଦ୍ଧ ହେଲେ । ମୁକ୍ତିର ଆଉ ଏକ ସ୍ୱାଦ । କାଲିର ସହଯୋଦ୍ଧା ଆଜି ଶାସକ ଏବଂ ତାର ଫଳ ତାଙ୍କୁ ଭୋଗିବାକୁ ପଡ଼ିବ ।

ସଂଗ୍ରାମର ଶେଷ ନାହିଁ । ସାମ୍ୟବାଦୀ ଶିବିର ହୋଇଯାଏ ଦ୍ୱିଧା ବିଭକ୍ତ । ଗୋକୁଳି ବାବୁ ନବ ଗଠିତ ମାର୍କ୍ସବାଦୀ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦିଅନ୍ତି । ପୁଣି ଥରେ ୧୯୬୫ ମସିହାରେ କାରାରୁଦ୍ଧ ହୁଅନ୍ତି ।

ସମୟ ଅତିକ୍ରାନ୍ତ ହୁଏ । ଦୀର୍ଘ ଦିନଧରି ସଂଗ୍ରାମର ରଥୀ ଗୋକୁଳି ନାୟକ କ୍ରମଶଃ ଅସୁସ୍ଥ ହୋଇପଡ଼ନ୍ତି । ରାଜା ଯାହା ପାରି ନ ଥିଲେ, ଯାହା ପାରି ନ ଥିଲା ବ୍ରିଟିଶ ସରକାର, ମହାକାଳ ଆପଣାର ସ୍ପର୍ଶରେ ସେଇଆ କରିବା ପାଇଁ ସକ୍ଷମ ହେଲା । ୧୯୯୭ ମାର୍ଚ୍ଚ ମାସ, ୧୮ ତାରିଖ । ସେଇ ଅଶୁଭ ମୁହୂର୍ତ୍ତ ଆସିଗଲା ଏବଂ ସାଥୀ ଗୋକୁଳି ନାୟକ ଆଖି ବୁଜି ଦେଲେ ଚିରଦିନ ପାଇଁ । ନୀଳଗିରିର ବଣ କନ୍ଦରରେ ହାହାକାରର ପ୍ରତିଧ୍ୱନି ।

ଇତିହାସର ସ୍ରଷ୍ଟା ଆଜି ନିଜେ ଇତିହାସ । ଇତିହାସ କେବଳ ରେକର୍ଡ଼ କରେ ମହାରଥୀ ମାନଙ୍କର କାହାଣୀ । ସେମାନେ ଭାଗ୍ୟବାନ । କିନ୍ତୁ ଯେଉଁମାନଙ୍କର କଠୋର ସଂଗ୍ରାମ, ଜୀବନବ୍ୟାପୀ ମହାଯୁଦ୍ଧ ଇତିହାସକୁ ବଦଳାଇ ପାରିଚି ସେ ସମସ୍ତଙ୍କର ଉପଯୁକ୍ତ ମୂଲ୍ୟାୟନ ବା ରେକର୍ଡ ହୋଇପାରେ ନାହିଁ ହୁଏତ ! କିନ୍ତୁ ମହାକାଳ ବକ୍ଷରେ ସେମାନଙ୍କର ସେ ଭୂମିକା ?

ଗୋକୁଳି ବାବୁ ଆଉ ନାହାନ୍ତି ।



# ତୁମେ ତ ଜାଣିଲ ନାହିଁ
# କିଏ ତୁମ ପଛେ ପଛେ ଗଲା

**କା**ଲି ସନ୍ଧ୍ୟାରେ ଗୋଦାବରୀଶ ମହାପାତ୍ର ଚାଲିଗଲେ କଟକ ବଡ଼ ଡାକ୍ତରଖାନାର କନିକା କଟେଜରେ । ତାଙ୍କର ବାହୁଡ଼ିବା ସହିତ ଓଡ଼ିଆ ପଦ୍ୟ ସାହିତ୍ୟର ଏକ ଯୁଗ ଶେଷ ହୋଇଗଲା । ସେ ହିଁ ଥିଲେ ଆରମ୍ଭ , ସେଇ ଥିଲେ ଶେଷ । ଜୀବନର ଛୋଟ ଛୋଟ ଘଟଣା, ଛୋଟ ଛୋଟ ମଣିଷ, ଛୋଟିଆ ଛୋଟିଆ ବସ୍ତୁକୁ ନେଇ କିପରି ମନୋମୁଗ୍ଧକର ଶାଣିତ କବିତା ହୋଇପାରେ ତାହାର ଉଜ୍ଜ୍ୱଳ ମଶାଲ ଥିଲେ ଗୋଦାବରୀଶ ମହାପାତ୍ର । ଟୁପୁରୁ ଟୁପୁରୁ ବର୍ଷା ହେଉଥିଲା ସେ ଯିବା ବେଳକୁ । ପ୍ରକୃତି ଯେମିତି ଟୋପା ଟୋପା ଲୁହ ବର୍ଷୁଥିଲା । ତାଙ୍କର ଗୁରୁ ଗୋଦାବରୀଶ ମିଶ୍ରଙ୍କ ଯିବାବେଳେ ମଧ ଟୁପୁରୁ ଟୁପୁରୁ ବର୍ଷା ହେଉଥିଲା ଏବଂ ପରେ ବର୍ଷିଥିଲା ଅନର୍ଗଳ । ଗୁରୁଙ୍କ ପାଇଁ ଉଦ୍ଦିଷ୍ଟ କବିତାରେ ସେ ଲେଖିଥିଲେ —

“ ତୁମେ ତ ଜାଣିଲ ନାହିଁ କିଏ ତୁମ ଗଳେ
ଦେଲା ଫୁଲମାଳା
ତୁମେ ତ ଜାଣିଲ ନାହିଁ କିଏ ତୁମ
ପଛେ ପଛେ ଗଲା ।
ଆଜି ବି ସେଇ କଥା ମନେ ପଡୁଥିଲା ।”

ସଂସ୍କୃତି ମନ୍ତ୍ରୀ ଆସି ଫୁଲହାର ଦେଇ ଚାଲିଗଲେଣି । ମୃତ୍ୟୁର କିଛି କାଳ ଆଗରୁ ଗୋଦାବରୀଶ ମହାପାତ୍ର ବେଶ ବିବାଦର ମଣିଷ ହୋଇ ଉଠିଥିଲେ । ସେ ତ ଚିରଦିନ ଥିଲେ ଏକ ବିବାଦର ମଣିଷ । ସେ ଥିଲା ତାଙ୍କର ‘ ନିଆଁ ଖୁଣ୍ଟା’ ପତ୍ରିକାରେ ପ୍ରକାଶିତ ସମ୍ବାଦ ପାଇଁ । ନିଆଁଖୁଣ୍ଟା ପତ୍ରିକା ପଢ଼ିବା ପାଇଁ ଲୋକେ ଅପେକ୍ଷା କରୁଥିଲେ । ସମ୍ବାଦ ପାଇଁ କେବଳ ନୁହେଁ । ଲେଖିବାର ଶୈଳୀ ପାଇଁ, କବିତା ପାଇଁ ।

ଜଗତପୁରରୁ କେନ୍ଦ୍ରାପଡ଼ା ରାସ୍ତା ଖୁବ୍ ଖରାପ ଥିଲା । ଯେତେ କହିଲେ ମଧ ମରାମତି ହେଉ ନ ଥିଲା । ଗୋଦାବରୀଶ ମହାପାତ୍ର ଲେଖିଲେ —

“ ପଡ଼ିଉଠି ଉଠିପଡ଼ି ହେଲିଣି ହିନସ୍ତା
ଜୀବନଟା ହେଲା ସଖି କେନ୍ଦ୍ରାପଡ଼ା ରାସ୍ତା ।”

ବୀରେନ ମିତ୍ର ମୁଖ୍ୟମନ୍ତ୍ରୀ ହେଲାବେଳେ କହିଲେ, ମୁଁ ହେଉଛି ଭରତ ଭଳି । ମୁଖ୍ୟମନ୍ତ୍ରୀ ବିଜୁପଟ୍ଟନାୟକ ହେଉଛନ୍ତି ରାମଚନ୍ଦ୍ର । ଗୋଦାବରୀଶ ବାବୁ ଲେଖିଲେ —

" କଠଉ ତ ନାହିଁ ଏବେ ନିଅ ଏବେ ଚଟି
ମୋର ଆଜ୍ଞା ପାଳି ଏବେ ରାଜ୍ୟ ପାଳିବୁଟି ।। "

ଗଡ଼ଜାତ ମିଶ୍ରଣ ହେଲା । ଭାରତ ଇତିହାସରେ ନୂଆ ଅଧ୍ୟାୟ ଉନ୍ମୋଚିତ ହେଲା । ଓଡ଼ିଶାରେ ଥିଲା ଚବିଶଟି ଗଡ଼ଜାତ । ସେମାନଙ୍କର ଅତ୍ୟାଚାରର କାହାଣୀ ସର୍ବଜନ ବିଦିତ । ଗଡ଼ଜାତ ମିଶ୍ରଣ ହୋଇଗଲା । ଗୋଦାବରୀଶ ଲେଖିଲେ :-

" ଅନ ଅନ୍ଧାରେ, ଦେବ ମନ୍ଦିରେ, ରାଜ ନବରେ କହ,
ଏତେକାଳେ ହେଲା କୌପୀନର ପାଶେ ମୁକୁଟର ପରାଜୟ"

ଗୋଦାବରୀଶ ଚାଲିଗଲେ । ତାଙ୍କର ଶବ ଶୋଭାଯାତ୍ରାରେ ଆମେ ଥିଲୁ ମାତ୍ର ଅଠର ଜଣ । ଟୁପୁ ଟୁପୁ ବର୍ଷା ହେଉଛି । ଆମେ ମଂଗଳାବାଗ, ବକ୍ସିବଜାର, କଟକ ଚଣ୍ଡୀ ଦେଇ ଯିବୁ ସତୀଚୌରା । ମଙ୍ଗଳାବାଗ ଛକରୁ ସର୍କିଟ ହାଉସ ମଝିରେ ଏପଟରୁ ଯାଉଛି ଏକ ବିରାଟ ଶୋଭାଯାତ୍ରା । ହଜାରରୁ ଊର୍ଦ୍ଧ୍ୱ ଲୋକ, ଶହ ଶହ ଗାଡ଼ି । ଅବିର, ଝୁଣାରେ ଭର୍ତ୍ତି ବାୟୁମଣ୍ଡଳ । ହରିବୋଲ ଧ୍ୱନିରେ ଆକାଶ ଫାଟି ପଡୁଛି । ଘଣ୍ଟଖୋଳ ମାଡ଼ରେ ଗଗନ ପବନ ପ୍ରକମ୍ପିତ । ସତେ ଯେପରି ଦେବୀଙ୍କର ଯାତ୍ରା ମଣ୍ଡପ ଉପରକୁ । ଆମେ ସବୁ ଆଉଜି ଗଲୁ ଗୋଟାଏ କଡ଼କୁ । ଆମ ସହିତ ଦୁକୁ ଦୁକୁ ହୋଇ ଜଳୁଥିଲା ଦୁଇଟି ପେଟ୍ରୋମାକ୍ସ । ଆଗରେ ଥିବା ବିରାଟ ରୋଷନି ଆଗରେ ତାହା ନିଷ୍ପ୍ରଭ ହୋଇଗଲା । ଆଗରୁ ସେମାନେ ମାଡି ଆସୁଛନ୍ତି । ଆମେ ଆଉଜିଗଲୁ ଗୋଟାଏ କଡ଼କୁ ।

ଶୋଭାଯାତ୍ରା ପାର ହେଲା ପର୍ଯ୍ୟନ୍ତ ଆମକୁ କଡ଼କୁ ଆଉଜି ଠିଆ ରହିବାକୁ ହେଲା । ମୁଖ୍ୟ ଗାଡ଼ିକୁ ଦେଖିଲା ପରେ ଜାଣିଲୁ ଏହା ଏକ ଶବ ଶୋଭାଯାତ୍ରା । କିଏ ଏଇ ବିଶିଷ୍ଟ ବ୍ୟକ୍ତି କଟକ ସହରର, ଯାହାଙ୍କ ମର ଦେହକୁ ବହନ କରି ଏଇ ବିରାଟ ଶୋଭାଯାତ୍ରା । କୌତୁହଳ ଓ ଉଦ୍‌ବେଗ ଉଭୟକୁ ରକ୍ଷା କରି ନ ପାରି ପଚାରିବାକୁ ପଡ଼ିଲା ସେଇ ଅବସ୍ଥାରେ । କିଏ ଏହି ମହାତ୍ମା ।

ବୁଝିଲୁ ଯେ ଏଇ ବ୍ୟକ୍ତି ହେଉଛନ୍ତି କଟକ ସହରର ମଦ ଓ ଅନ୍ୟାନ୍ୟ ମାଦକ ଦ୍ରବ୍ୟର ବିଶିଷ୍ଟ ବ୍ୟବସାୟୀଙ୍କ ମୁଖ୍ୟ ଡ୍ରାଇଭର । ସେଇ ଯୋଗୁଁ ଏତେ ଭିଡ଼, ଏତେ ଲୋକ ସମାଗମ । ମନେ ପଡ଼ିଲା 'ଥେଇସ୍' ଉପନ୍ୟାସ କଥା ଏବଂ ତାରି ଅବଲମ୍ବନରେ ରଚିତ ''ଦେବୀ ମାଳିନୀ' ଚଳଚ୍ଚିତ୍ର । ଗୋଟାଏ ପଟରୁ ଆସୁଛନ୍ତି ମହର୍ଷି ଶ୍ରୀଜ୍ଞାନ, ଆପଣାର ଗୁରୁଙ୍କ ଶବକୁ କାନ୍ଧରେ ବୋହି । ଆର ପଟରୁ ଆସୁଚି ତାଙ୍କ ପୂର୍ବତନ ବାଗ୍‌ଦତ୍ତା ଏବଂ ଆଜିର ନଗରୀ ଶୋଭାଯାତ୍ରା । କିଏ କାହାକୁ ବାଟ ଛାଡ଼ିଦେବ ? ଜୀବନ ମୃତ୍ୟୁକୁ ନା ମୃତ୍ୟୁ ଜୀବନକୁ ? କବି ଗୋଦାବରୀଶ ଜଣେ ଏକକ ବ୍ୟକ୍ତି ଥିଲେ । ସଂପୂର୍ଣ୍ଣ ' ନିଆଁଖୁଣ୍ଟ ' ଖବର କାଗଜ ତାଙ୍କର କୃତି । ବେଳେବେଳେ କିଏ ଲେଖିଥିବେ କିଛି ପୃଷ୍ଠା ସେଥିରେ । କିନ୍ତୁ ତାଙ୍କର ଅବଦାନ ସଂପୂର୍ଣ୍ଣ । ସେ ମିତ୍ର ସୃଷ୍ଟି କରିଛନ୍ତି ତାହାରି ଭିତରେ, ଶତ୍ରୁ ବି ସୃଷ୍ଟି କରିଛନ୍ତି । ତାଙ୍କ ପୂର୍ବରୁ ଇମିତି ଲେଖା ଓଡ଼ିଆ ସାହିତ୍ୟରେ ପ୍ରାୟ ନ ଥିଲା ଏବଂ ତାଙ୍କ ପରେ ବି ହେବ ନାହିଁ ।

''ଉଠ କଂକାଳ''ର କବି ଗୋଦାବରୀଶ ଉଠିବେ ନାହିଁ ଆଉ । ଓଡ଼ିଶାର କଂକାଳ

କେବେ ଉଠିବ ବାରବାଟୀ ମାଟି ବିଦାରି ତାହା କିଏ କହିବ ? ଓଡ଼ିଆ ଜାତିର ସେଇ ସ୍ୱାଭିମାନ, ସେ ଦୁର୍ଦ୍ଧର୍ଷତା କେବେ ଫେରିବ ତାହା ଇତିହାସ ହିଁ କହିବ ।

ଗୋଦାବରୀଶ ମହାପାତ୍ରଙ୍କର କଲମରୁ କେହି ମୁକ୍ତି ପାଇ ନାହାନ୍ତି । ତାଙ୍କର ଜାମାତା ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା ସେଥିରେ ଅନ୍ତର୍ଭୁକ୍ତ । ଭଂଜ ଜୟନ୍ତୀର ଗୀତିନାଟକୁ ବିଦ୍ରୁପ କରି ସେ ଲେଖିଥିଲେ ।

ତୁମେ କିହୋ ଭଂଜେ ଏଥିପାଇଁ ଲେଖିଥିଲ ଗୀତ,
କୁମାର ଗାଇବେ ଗୀତ ଧରି କୁମାରୀଙ୍କ ହାତ ।
ଅଧ୍ୟାପକ ବ୍ରହ୍ମା ଜଣେ ଭଂଜ ସାହିତ୍ୟର ବାଦଦୂକ ଭାବରେ ବିଦିତ ।

ତାଙ୍କର କଲମରୁ ହ୍ୟୁମର ଯେପରି ଝୁରୁଥିଲା ବିଦ୍ରୁପ ବା ସାଟାୟାର ବି ସେମିତି । ସେ ସବୁ କବିତା ମାନଙ୍କ ମଧ୍ୟରୁ କିଛି ମହାକାଳର ଗର୍ଭରେ ଲୋପ ପାଇଯିବ କିନ୍ତୁ ଅନେକ ରହିବ କାଳଜୟୀ ହୋଇ । ଶଗଡ଼ ହୁଏତ ଦିନେ ହଜିଯିବ ପୃଥିବୀ ପୃଷ୍ଠରୁ । କିନ୍ତୁ 'ମାଗୁଣିର ଶଗଡ଼' ରହିବ ଚିରକାଳ ମଣିଷର ବେଦନା ସୃଷ୍ଟି କରି । ଯେତେବେଳେ ଅସବର୍ଣ୍ଣ ବିବାହ କଥା ଉଠିବ ଯେତେବେଳେ ମନର ମଣିଷ ପାଇଁ ନାରୀଟିଏ ତାର ସମାଜ ଛାଡ଼ିବାକୁ ପ୍ରସ୍ତୁତ ହେବ । 'ନୀଳମାଷ୍ଟ୍ରାଣୀ' ତା ପାଇଁ ପ୍ରେରଣାର ଉତ୍ସ ହୋଇ ରହିବ ।

ସତୀ ଚଉରାରେ ଗୋଦାବରୀଶ ମହାପାତ୍ରଙ୍କର ଚିତା ଜଳୁଛି ।



# ମଣିଷ ହବ ତ ଏମିତି

**ଗୌ**ରହରି ପଣ୍ଡା ଆମର ପଡ଼ୋଶୀ ଥିଲେ କିଛି ବର୍ଷ ଧରି । ଏମିତି ମଣିଷଟି ଆଖିରେ ପଡ଼ିବା କଠିନ । ବିଚାରପତି କାମ କରନ୍ତି । ଅଫିସ୍‌କୁ ଗଲାବେଳେ ଯାଆନ୍ତି ମୋଟର ଗାଡ଼ିରେ, ସୁଟ୍ ଟାଇ ପିନ୍ଧି । ସେତେବେଳେ ମୁହଁ ଗମ୍ଭୀର । ଆଦୌ ସମ୍ବେଦନଶୀଳ ନୁହଁନ୍ତି ବୋଲି ଦେଖିଲେ ମନେହୁଏ । ଘରକୁ ଫେରିଲା ପରେ ସେ ଏକ ସ୍ୱତନ୍ତ୍ର ମଣିଷ । ଧୋତି, ଧଳା ପଞ୍ଜାବୀ ପିନ୍ଧି ସେ ସାଇକେଲ୍‌ରେ ଯାଆନ୍ତି ସବୁଆଡ଼େ । ସବୁ ସମ୍ଭାଷଣ ଗ୍ରହଣ କରିବେ । ପାନଖିଆ ପାଟିରେ ହସ ଉଚ୍ଛୁଳୁ ଥିବ । ଗପ ଜମାଇବେ ବାଟ ଘାଟରେ । କୌଣସି ଇନ୍‌ହିବିସନ ନାହିଁ । ଧନୀ ଦରିଦ୍ର ଭେଦଭାବ ନାହିଁ । ଘର ଭିତରେ ସେ ଆଉ ଏକ ବିଚିତ୍ର ମଣିଷ । ପିନ୍ଧାବସ୍ତ୍ର ହେଉଛି ଗାମୁଛାଟିଏ ଆଉ ହାତରେ ଗୁଡ଼ାଖୁ । ବେଶ୍ ହସ, ଖୁସି ଗପ । ସରକାରୀ ଗାଡ଼ି କେବେ ଦିନେ ବ୍ୟକ୍ତିଗତ କାମରେ ବ୍ୟବହାର କରିବା ଦେଖି ନାହିଁ କି ତାଙ୍କ ସ୍ତ୍ରୀ ବା ପିଲାଏ କେହି ସେ ଗାଡ଼ି ଚଢ଼ିବାର ଦେଖିନାହିଁ । ଅଫିସକୁ ଗଲାବେଳେ ତାଙ୍କ ମୁହଁ ଗାମ୍ଭୀର୍ଯ୍ୟରେ ଫାଟି ପଡୁଚି ଯେମିତି । କୁଆଡ଼କୁ ଚାହିଁବେ ନାହିଁ, କାହାକୁ ଚିହ୍ନିବେ ନାହିଁ । ସିଧା ଅନେଇଥିବେ ଆଗକୁ । ଘରେ ତାର ଠିକ୍ ଓଲଟା । ମନେହେବ ଯେମିତି ତିନିଟା ଅଲଗା ମଣିଷ । ଗୋଟାକର ଆର ସହିତ କିଛି ସଂପର୍କ ନାହିଁ । ବିଚାରପତିଙ୍କ ଘରକୁ ଦିନେ ହେଲେ କେହି କଦଳୀକାନ୍ଧି କି ମିଠା ପ୍ୟାକେଟ୍ ବା ସେଇଭଳି କିଛି ଆଣିବା କେହି ଦେଖି ନାହାନ୍ତି । ତାଙ୍କ ନାମ ଶୁଣିଲେ କେହି ଭରସି ପାରନ୍ତି ନାହିଁ କିଛି କହିବା ପାଇଁ । ବହୁ ଛୋଟ ବଡ଼ ମଣିଷଙ୍କଠାରୁ ଶୁଣିଚି ଯେ ଗୌରହରି ବାବୁଙ୍କୁ କେହି ତାଙ୍କର ବିଚାର ସଂପର୍କରେ ପ୍ରଭାବ ପକାଇବାକୁ ସାହସ କରି ପାରନ୍ତି ନାହିଁ । ଫଳ ଓଲଟା ହେବାର ଭୟ ଥାଏ ।

ଶୁଣିଚି ତାଙ୍କର ଜଣେ ଭାଇ ଥାଆନ୍ତି ଗାଁରେ । ଜଣେ କୌଣସି ସବ୍ ଇନ୍‌ସ୍‌ପେକ୍ଟର ତାଙ୍କୁ ଲାଞ୍ଚ ମାଗିଲେ ହଜାରେ ଟଙ୍କା । ସେ ବିଚରା ଟଙ୍କା ଆଣିବ କେଉଁଠୁ ? ସେ ଆସି ହାଜର ଗୌରହରି ବାବୁଙ୍କ ପାଖରେ । ଗୌରହରି ବାବୁ ସବୁ ଶୁଣିଲେ, ଟଙ୍କା ଦେଲେ କିନ୍ତୁ ସେଥିରେ ଭିଜିଲାନ୍ସ ବିଭଗର କେମିକାଲ ଦିଆଯାଇଥିଲା । ଭିଜିଲାନ୍ସ ବିଭାଗ ଉକ୍ତ ସବ୍ ଇନିସ୍‌ପେକ୍ଟରଙ୍କୁ ମାଡ଼ି ବସିଲେ । ପ୍ରମାଣ ହାତେ ହାତେ । ଭିଜିଲାନ୍ସ ବିଭାଗର ଚେଷ୍ଟା ସତ୍ତ୍ୱେ ପୁଲିସ୍ ବିଭାଗର ଦକ୍ଷତା ହେତୁ ସେ ଖଲାସ ହୋଇଗଲେ । ଗୌରହରି ବାବୁଙ୍କୁ ତାହା ବାଧିଥିଲା ଏବଂ ତା ପରଠାରୁ ସେ ପୋଲିସ୍ ଉପରେ ଆଉ ଆସ୍ଥାରଖି ପାରିଲେ ନାହିଁ ।

ସେ ବିପତ୍ନୀକ ହୋଇ ଯାଇଥିଲେ । କିନ୍ତୁ ଆଉ ତାର ପରିଗ୍ରହ କରି ନ ଥିଲେ । ପୁତ୍ର କନ୍ୟାମାନଙ୍କ ଗହଣରେ ଏବଂ ସେମାନଙ୍କର ଆନନ୍ଦରେ ସେ ପତ୍ନୀ ଶୋକକୁ ଭୁଲିଯିବାକୁ ଚେଷ୍ଟା କରୁଥିଲେ । ଏହା ସତ୍ତ୍ୱେ ସେ ଥିଲେ ଶୃଙ୍ଖଳାରେ କଠୋର । ପୁତ୍ରକନ୍ୟାମାନେ ମଧ ସେଥିରୁ ମୁକ୍ତ ନ ଥିଲେ ।

ବିଭିନ୍ନ ପଦପଦବୀରେ ରହି ସେ ୧୯୮୨ ମସିହାରେ ଅବସର ଗ୍ରହଣ କଲେ । ଚାକିରିରୁ ସିନା ଅବସର ନେଲେ କର୍ମରୁ ନୁହେଁ । ଆଇନଜୀବି ଭାବରେ ସେ କାର୍ଯ୍ୟ ଆରମ୍ଭ କଲେ । ବିଚାରପତି ଭାବରେ ଯେପରି ଅନୁଗ୍ରହ ଦେଖାଇ ନାହାନ୍ତି, ଆଇନଜୀବି ଭାବରେ ଠିକ୍ ସେହିପରି କାହାଠାରୁ ଅନୁଗ୍ରହ ଲୋଡ଼ି ନାହାନ୍ତି । ଖଣ୍ଡାଧାରରେ ଚାଲି ସେ ଜୀବନଟାକୁ କଟାଇ ଦେଇଛନ୍ତି । ବିଚାରପତି ଭାବରେ ସେ ଗମ୍ଭୀର, ନିରପେକ୍ଷ ଏବଂ ନିର୍ଲିପ୍ତ ଓ ବନ୍ଧୁ ଭାବରେ ସେ ମେଳାପୀ, ବିନମ୍ର । ମନେପଡୁଛି, ସେଦିନ ଜଣେ ବୟୋଜ୍ୟେଷ୍ଠ ପ୍ରାକ୍ତନ ରାଜନୈତିକ ନେତା ଆମ ଘରୁ ଯାଉଥିଲେ ୟୁନିଭର୍ସକୁ । ହଠାତ୍ ଦେଖାଗଲା ଯେ ଜଣେ କେହି ରାସ୍ତାଁ ଉପରେ ତାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରୁଛନ୍ତି । କିରେ, ଗଉ, ଉଠ୍ ଉଠ୍ । ତୁ ଏଇଠି ଅଛୁ । ବିନମ୍ର ଭାବରେ ଗୌରହରିବାବୁ ତାଙ୍କୁ କହିଲେ, ଆମ ଘରେ ଟିକିଏ ପାଦ ଦେଇ ଯିବେ । ପିଲାମାନଙ୍କୁ ଆଶୀର୍ବାଦ ଦେବେ । ସେମାନେ ମଣିଷ ହେବେ, ଆପଣଙ୍କ ପରି । କହିବା ବାହୁଲ୍ୟ, ଉକ୍ତ ନେତା ରାଜନୈତିକ ଜୀବନର ପଙ୍କିଳତା ଦେଖି ରାଜନୈତିକ ଜୀବନରୁ ସନ୍ୟାସ ନେଇ ଯାଇଛନ୍ତି ।

ଗୌରହରି ବାବୁ ଅସୁସ୍ଥ ହୋଇ ଉଠିଲେ । କାହିଁକି ତାଙ୍କୁ କ୍ୟାନସର ବ୍ୟାଧି ଧରିଲା ମୁଁ କହି ପାରିବି ନାହିଁ । ତେବେ ଗଲା କେଇ ବର୍ଷ ଭିତରେ କ୍ୟାନସର ରୋଗରେ ମୃତ ବହୁ ବନ୍ଧୁଙ୍କୁ ଦେଖି ମୋର ମନେ ହୋଇଛି ଯେ ପ୍ରତିଭା ପ୍ରତି ଏଇ ରୋଗର ବିଶେଷ ଆକର୍ଷଣ ଅଛି ବୋଲି ମନେହୁଏ । ରଣଜିତ ମହାନ୍ତି, ବୀରେନ୍ଦ୍ର ମୋହନ ପଟ୍ଟନାୟକ, ପଦ୍ମାଳୟା ଦାସ, ଅଖିଳ ମୋହନ ପଟ୍ଟନାୟକ, ସୁକୁମାର ସେନଙ୍କର କ୍ୟାନସର ରୋଗରେ ପରଲୋକ ମୋର ଏଇ ଧାରଣାକୁ ଦୃଢ଼ୀଭୂତ କରିଛି ।

ସେଇ ସନ୍ଧ୍ୟା, ଦି ପହରେ ତାଙ୍କ ପୁଅ କହିଲା ଯେ, ଗୌରହରି ବାବୁ ହୋଲି ଦିନଠାରୁ ବେମାର ଅଛନ୍ତି । ମୁଁ ଏହା ଜାଣି ନ ଥିଲି । କାଲି ଯିବି ତାଙ୍କୁ ଦେଖିବାକୁ । ସନ୍ଧ୍ୟାରେ ଜଷ୍ଟିସ ଯୁଗଳ କିଶୋର ମହାନ୍ତିଙ୍କ ଏକାଦଶାହ ସେଇଠି ଶୁଣିଲି ଯେ ଗୌରହରି ବାବୁଙ୍କର ସେଇ ଦି ପହରେ ହିଁ ପରଲୋକ ହୋଇ ଯାଇଛି । ମୁଁ ଶୁଣିଲାବେଳକୁ ତାଙ୍କର ମରଦେହ ସତୀ ଚଉରାରେ ପୋଡ଼ି ପାଉଁଶ ହୋଇ ଯାଇଛି ।

ସେଇ ବାଟରେ ଫେରିଲି । କେହି ନାହାନ୍ତି । ସବୁ ଶୂନ୍‌ଶାନ୍ । କେବଳ ରହିଛି ରଡ଼ ନିଆଁ ଆଉ ସେଇଭଳି ସ୍ମୃତି ।



# ସଂଗ୍ରାମର ଦୁରନ୍ତ ସେନାପତି

ଗଲା ସପ୍ତାହର କଥା । ଚଳିତ ବର୍ଷ ୧୯୭୩ ମସିହା ଆରମ୍ଭ ହୋଇଛି । ବର୍ଷର ପ୍ରଥମ ଦିନ ହିଁ ସମ୍ବାଦ ପ୍ରକାଶିତ ହେଲା । ବିପ୍ଲବୀ ଚକ୍ରଧର ଆଉ ନାହାନ୍ତି । ଦୁଃଖିନୀ କନିକାର ମହାରଥୀ ବିଦାୟ ନେଲେ ଏଇ ପୃଥିବୀରୁ । ସଂଗ୍ରାମରେ ତ କ୍ଳାନ୍ତ ହୋଇ ନ ଥିଲେ, ଆଜି ଜୀବନରେ କିମିତି କ୍ଳାନ୍ତ ହୋଇ ପଡ଼ିଲେ ସେ !

" ବନ୍ଦୋବସ୍ତ ପରେ ଆସେ ବନ୍ଦୋବସ୍ତ
ପ୍ରଜାକୁଳ କ୍ରମେ ଲଭିଲେଣି ଅସ୍ତ "

ଦୁଃଖିନୀ କନିକାର କାହାଣୀ ସାରା ଭାରତରେ ବିଛୁରିତ । ଠିକ୍ ସେଇପରି ବିଚ୍ଛୁରିତ ସେଇ ଭୟାବହ ଅତ୍ୟାଚାର ବିରୁଦ୍ଧରେ ଜନସଂଗ୍ରାମ ।

୧୮୯୪ ମସିହା ଜୁଲାଇ ୧୬ ତାରିଖରେ ଭଦ୍ରଖ ଜିଲ୍ଲାର ଅଂଜପଡ଼ା ଗ୍ରାମରେ ପିଲାଟିଏ ଜନ୍ମ ହୁଏ । ବାପାମାଆ ନାମ ରଖନ୍ତି ଚକ୍ରଧର । ନାମର ସାର୍ଥକତା କରି ଏଇ ଶିଶୁ ଯେ କନିକା ଅତ୍ୟାଚାର ବିରୁଦ୍ଧରେ କଠୋର୍ ସଂଗ୍ରାମରେ ଲିପ୍ତ ହେବ ଏବଂ ତାହାର ସେନାପତି ହେବ ଏକଥା କିଏ ଜାଣିଥିଲା ?

ଚକ୍ରଧର ରାଜ ଦରବାରରେ ଚାକିରି ଆରମ୍ଭ କରନ୍ତି । ରାଜ ଅତ୍ୟାଚାର ସହିତ ପ୍ରତ୍ୟକ୍ଷ ପରିଚୟ ହୋଇଯାଏ । ବିଦ୍ରୋହର ଗୈରିକ ପତାକା ଉତ୍ତୋଳିତ କରନ୍ତି ସେ । ସେ ପାଲଟିଲେ ରାଜଦ୍ରୋହୀ । ମାତୃଭୂମିର ଦୁର୍ବାର ଆହ୍ବାନ । ସେ ଡାକରାକୁ ଏଡି ଦେବ କିଏ ? କନିକା ପ୍ରଜା ଆନ୍ଦୋଳନର ନେତୃତ୍ୱ ନେଲେ ସେ । ଇତିହାସର ଏକ ନୂତନ ଅଧ୍ୟାୟ ସୃଷ୍ଟି ହେଲା ।

କନିକା ରାଜା ପ୍ରଚଳନ କରିଥିଲେ ୭୪ ପ୍ରକାରର କର । ପୃଥିବୀ ଇତିହାସରେ ଏହା ଥିଲା ଏକ କଳଙ୍କିତ ଇତିହାସ । ସେ ଦିନର ରାଜା ନାହାନ୍ତି କି ସେ ପ୍ରକାରର ରାଜ ଅତ୍ୟାଚାର ନାହିଁ । ଆଜି ବି ଅତ୍ୟାଚାର ଅଛି ଶୋଷଣ ଅଛି କିନ୍ତୁ ତାର ଚରିତ୍ର ଭିନ୍ନ । ଆଜିର ପୀଢ଼ିର ଲୋକେ ସେ ଦିନର କଥା ବିଶ୍ୱାସ କରି ପାରିବେ ନାହିଁ । ଉଜ୍ଜୀବିତ ହୋଇଥିବା କଠୋର ସଂଗ୍ରାମ କଥା ମଧ୍ୟ ବିଶ୍ୱାସ କରି ପାରିବେ ନାହିଁ । କିନ୍ତୁ ଆଜିର ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମରତ ଯୋଦ୍ଧାମାନେ ସେଦିନର କଥା ଏବଂ ସେଦିନର ଯୋଦ୍ଧାମାନଙ୍କୁ ସ୍ମରଣ କରିବାକୁ ବାଧ୍ୟ । କାରଣ ସେମାନେ କେବଳ ସେଦିନର ଆଇଁସିଆ ତିକ୍ତ ଅଂଧକାର ଭିତରେ ମୁକ୍ତିର ମଶାଲ ପ୍ରଜ୍ଜ୍ୱଳିତ କରି ନଥିଲେ, ସେ ଦିହୁଡି ଥିଲା ଭବିଷ୍ୟତ ପାଇଁ ମଧ୍ୟ ।

ଚକ୍ରଧର ବେହେରା ସେମାନଙ୍କ ମଧ୍ୟରେ ଅନ୍ୟତମ । ୧୯୩୦ ମସିହା ଜୁନ୍ ୨୯ରେ ସେ ଗିରଫ ହେଲେ । କିନ୍ତୁ ଆନ୍ଦୋଳନ ପ୍ରଶମିତ ହେଲା ନାହିଁ । ରାଜ ଦରବାରରୁ ଇସ୍ତଫା ଦେଇଥିଲେ । ରାଜ ଅତ୍ୟାଚାରର ପ୍ରତିବାଦ କରି । ତାହା ଯେତିକି ଚମକ ସୃଷ୍ଟି କରି ନ ଥିଲା ତା ଠାରୁ ବେଶୀ ଚମକ ସୃଷ୍ଟି କରିଥିଲା ତାଙ୍କର ପ୍ରଜା ଆନ୍ଦୋଳନର ନେତୃତ୍ୱ ନେବା ।

ଅନେକ କଷଣ ସହ୍ୟ କରିବାକୁ ପଡ଼ିଛି । ରାଜ ଅତ୍ୟାଚାରରୁ କନିକାକୁ ମୁକ୍ତ କରିବା ପାଇଁ ସେ ଗଢ଼ିଛନ୍ତି ଚାଷୀ ମୂଲିଆମାନଙ୍କର ସଂଗଠନ । କନିକା ରାଜ ଅତ୍ୟାଚାର ଯେପରି ଐତିହାସିକ ଠିକ୍ ସେଇପରି ଐତିହାସିକ ହେଉଛି, ଏହି ଅତ୍ୟାଚାର ବିରୁଦ୍ଧରେ ଜନ ସଂଗ୍ରାମ । କନିକା 'ଦୁଃଖିନୀ କନିକା' ନାମରେ ଖ୍ୟାତି ଲାଭ କରିଥିଲା । ସେ ସମୟ ବଦଳି ଯାଇଛି । କନିକାର ମାଟି ବୀରମାଟି ପାଲଟିଛି । କନିକା ବର୍ତ୍ତମାନ ବିପ୍ଳବୀ କନିକା ନାମରେ ଖ୍ୟାତି ଲାଭ କରିଛି । ଏହାର ଜନନାୟକ ଚକ୍ରଧର ଆଜି ଆଉ ନାହାନ୍ତି ।

ଇତିହାସର ସ୍ରଷ୍ଟା ଆଜି ନିଜେ ଇତିହାସ । ସମୟର ଚୋରାବାଲିରେ ହଜିଯିବ ଦିନେ ତାଙ୍କର ଜୀବନ କାହାଣୀ । କିନ୍ତୁ ସବୁଦିନ ପାଇଁ ନୁହେଁ । ନୂଆ ଅତ୍ୟାଚାର ବିରୁଦ୍ଧରେ ଯେତେବେଳେ ସଂଗ୍ରାମ ଆରମ୍ଭ ହେବ, ତରୁଣ ବିପ୍ଳବୀମାନେ ହେରିବେ ଚକ୍ରଧର ବେହେରାଙ୍କୁ, ତାଙ୍କରି ପରି ମଣିଷକୁ ।

ସେଇ ରାତି ଥିଲା କଳା କିଟିକିଟି କଳାଘୁମ ଅଜଗର ରାତି । ଏ ରାତି କଣ ସତରେ ପାହିବ ? ଅନେକ ବିଶ୍ୱାସ କରୁ ନଥିଲେ । କନିକାର ରାଜ ଅତ୍ୟାଚାରର ମୁଖ୍ୟ ପୃଷ୍ଠପୋଷକ ବ୍ରିଟିଶ ସରକାର । ଗଡ଼ଜାତ ବା ଜମିଦାରୀର ପ୍ରଜାମାନଙ୍କୁ ସେଇ ଯୋଗୁଁ ଦୁଇଟି ଅତ୍ୟାଚାର ବିରୁଦ୍ଧରେ ଏକାଠି ସଂଗ୍ରାମ କରିବା ପାଇଁ ପଡୁ ଥିଲା । ଖୁବ୍ କାଠିକର ପାଠ । ତଥାପି ଯୁବକମାନେ ଜୀବନକୁ ବାଜି ରଖିଲେ । ପାଣି ଆଉ ମାଟି ଛୁଇଁ ସେମାନେ ଶପଥ ନେଲେ । ବିପ୍ଳବର ଅମୃତଧାରୀ ପାଲଟିଲେ । କନିକାର ମାଟିରେ ନୂତନ ପଦଧ୍ୱନି । କନିକାର ଆକାଶ ନୂତନ ଆବାଜରେ ପ୍ରତିଧ୍ୱନିତ । ଏଇ ନାଟକର ମହାନାୟକ ବିପ୍ଳବୀ ଚକ୍ରଧର ଆଉ ନାହାନ୍ତି । ରାଜ ଅତ୍ୟାଚାର ଲୋପ ପାଇଛି । ଜମିଦାରୀ ଯାଇଛି । କିନ୍ତୁ ତାହାର ନାୟକ ଚକ୍ରଧରଙ୍କୁ ବହୁ କଷଣର ସମ୍ମୁଖୀନ ହେବାକୁ ପଡୁଛି ।

୧୯୪୨ ମସିହା । ସମଗ୍ର ଭାରତବର୍ଷରେ ଭାରତଛାଡ଼ ଆନ୍ଦୋଳନର ରଣ ଦୁନ୍ଦୁଭି ନିନାଦିତ । କନିକା ସେଥିରୁ ମୁକ୍ତ ରହିବ କିପରି ? କନିକାର ପ୍ରଜା ଆନ୍ଦୋଳନକୁ ପ୍ରତିହତ କରିବା ପାଇଁ ରାଜା ଗୁଣ୍ଡା ଆମଦାନି କଲେ ରାଜ୍ୟ ବାହାରୁ । ରାଜାଙ୍କର ନିଜର ସଶସ୍ତ୍ର ପୁଲିସ, ଭଡ଼ାଟିଆ ଗୁଣ୍ଡା, ବାହାରୁ ଆମଦାନୀ ହୋଇଥିବା ସମସ୍ତ ଗୁଣ୍ଡା ଆକ୍ରମଣ କଲେ ପ୍ରଜାମାନଙ୍କର ସଂଗଠିତ ଆନ୍ଦୋଳନ ଉପରେ । କିନ୍ତୁ ସମ୍ମିଳିତ ଜନ ଆନ୍ଦୋଳନ ଆଗରେ ତାହା ସଫଳ ହୋଇନଥିଲା । ଜଣେ ଭଡ଼ାଟିଆ ଗୁଣ୍ଡାର ମୃତ୍ୟୁ ହେଲା ଏବଂ ନରହତ୍ୟା ଅପରାଧରେ ଚକ୍ରଧର ଗିରଫ ହେଲେ । ୧୯୪୭ ମସିହା ସ୍ୱାଧୀନତାର ସୂର୍ଯ୍ୟୋଦୟ ହିଁ ତାଙ୍କୁ ମୁକ୍ତ କଲା କାରାଗାରରୁ ।

୧୯୪୬ ମସିହା ପ୍ରଥମ ସାଧାରଣ ନିର୍ବାଚନରେ ଚକ୍ରଧର ରାଜ ମନୋନୀତ ପ୍ରାର୍ଥୀଙ୍କୁ ପରାସ୍ତ କରି ବିଧାନସଭାକୁ ନିର୍ବାଚିତ ହେଲେ । ଜମିଦାର ମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ କନିକାର ରାଜା; କିନ୍ତୁ ସେ ମେଳି ସର୍ଦ୍ଦାର ଚକ୍ରଧରଙ୍କ ସହିତ ସମାନ ଆସନରେ ବସିବାକୁ ରାଜି ନ ହୋଇ ସଭ୍ୟ ପଦରୁ ଇସ୍ତଫା ଦେଲେ ।

ଚକ୍ରଧର ବେହେରାଙ୍କ ଅସୁସ୍ଥତା ସତ୍ୱେ ସେ ୧୯୫୨ ରେ ପୁଣି ବିଧାନସଭାକୁ ନିର୍ବାଚିତ ହୁଅନ୍ତି । କିନ୍ତୁ ନୂଆ ରାଜନୈତିକ ପରିବେଶ ସହିତ ଆପଣାକୁ ଖାପ ଖୁଆଇ ପାରିନାହାନ୍ତି । ସେ କ୍ରମଶଃ ଆପଣାକୁ ପରିତ୍ୟକ୍ତ ଏବଂ ଏକାକୀ ମନେ କରିଛନ୍ତି । ୧୯୫୩ ମସିହାର ଜାନୁଆରୀ ୧, ବର୍ଷର ପ୍ରଥମ ଦିନରେ ହିଁ ସେ ଇତିହାସରେ ଆପଣାର ଉଜ୍ଜ୍ୱଳ ସତକ ରଖି ବିଦାୟ ଗ୍ରହଣ କଲେ ଏଇ ସଂସାରରୁ । ପାଲଟି ଗଲେ ଇତିହାସ ।



# ତୋରି ପାଇଁ

ହଠାତ୍ ଖବର ମିଳିଲା ଯେ ବାଦାମ ପାହାଡ଼ ଡାକ୍ତରଖାନାର ମୁଖ୍ୟ ଚିକିତ୍ସକ ଡାକ୍ତର ଚାରୁଚନ୍ଦ୍ର ପଟ୍ଟନାୟକଙ୍କର ରାଇରଂଗପୁର ଡାକ୍ତରଖାନାରେ ପରଲୋକ ହୋଇଯାଇଛି । ସମ୍ବାଦ ଠିକ୍ ମୃତ୍ୟୁ ପରି, ଅଚାନକ । କିଛି ତ ହୋଇନ ଥିଲା ।

ଚାରୁ ମୋର ମାମୁଁ ପୁଅ ଭାଇ । କିନ୍ତୁ ସଂପର୍କଟା ସେତିକିରେ ସୀମିତ ନ ଥିଲା । ସେ ପିଲାଦିନୁ ଆମ ପରିବାର ସହିତ ନିବିଡ଼ ଭାବରେ ଜଡ଼ିତ ଥିଲା । ତାକୁ ଏଇ ଯୋଗୁଁ ସମସ୍ତେ ଭଲ ପାଆନ୍ତି । ସେ ସମସ୍ତଙ୍କ ସାଙ୍ଗରେ ମିଶିଯାଏ । କୌଣସି ଇନହିବିସନ ନ ଥିଲା ତାର । କୌଣସି ପରିବାରରେ ସେ ଆପଣାକୁ ଅତିଥି ବୋଲି ମନେ କରୁ ନ ଥିଲା । ସତେ ଯେପରି ସେ ପରିବାରର ଏକ ଅଂଗ ।

ଡାକ୍ତରୀ ପଢୁଥିଲା । ପାଠ ଛଡ଼ା ଆଉ ଗୋଟିଏ ନିଶା ଥିଲା । ସେଇଟା ହେଉଛି ସଂଗୀତ ପ୍ରତି ତାର ଅନୁରକ୍ତି । ଓଡ଼ିଆ ସଂଗୀତ ବିଶେଷତଃ କ୍ଲାସିକାଲ ସଂଗୀତ ତାର ଖୁବ ପ୍ରିୟ ଥିଲା ଏବଂ ଅନେକ ସମୟରେ ବେକରେ ଷ୍ଟେଥସ୍କୋପ ପକାଇ ତାକୁ ଦେଖାଯାଏ ସଂଗୀତ ଆସରରେ ।

ରକ୍ଷଣଶୀଳତା ଏବଂ ପାରମ୍ପରିକତା ତାର ଆଉ ଏକ ଦୁର୍ବଳତା । ଡାକ୍ତରୀ ପାଠ ପଢୁଥିଲା ସତ୍ୟ, କିନ୍ତୁ ଅନେକ ପ୍ରକାର କୁସଂସ୍କାର ଓ ପାରମ୍ପରିକ ତା ମୁଣ୍ଡରେ ବସା ବାନ୍ଧିଥିଲା । ମୋ ବାପାଙ୍କର ଗୋଡ଼ ଭାଙ୍ଗି ଯାଇଛି । ଡାକ୍ତର ତେଜେଶ୍ୱର ରାଓ ୱାର୍ଡରେ ପ୍ଲାଷ୍ଟର କଲେ ଗୋଡ଼କୁ ଏବଂ ସେ ଓ୍ୟାର୍ଡଟିରେ ବହୁତ ରୋଗୀ ଥିବାରୁ ସେ ତାକୁ ନେଇଗଲେ ଗୋଟିଏ ଭଲ ଓ୍ୟାର୍ଡକୁ । ସେଠାରେ ଭିଡ଼ ନ ଥିଲା । କିନ୍ତୁ ହଠାତ୍ ସେଠାରେ ପହଞ୍ଚିବାର କିଛି ସମୟ ପରେ ତାଙ୍କର ପରଲୋକ ହୋଇଗଲା । ଡାକ୍ତର ଚାରୁଚନ୍ଦ୍ରଙ୍କର ମନ ଖରାପ ବହୁତ ତାଙ୍କର ମତରେ ଯେ ସେ ୱାର୍ଡଟା ଏକ ମରା ଓ୍ୟାର୍ଡ, ସେଇଯୋଗୁଁ ସେଠାକୁ ବାପାଙ୍କୁ ନେବା ଉଚିତ ହୋଇ ନାହିଁ ।

ଚାରୁଚନ୍ଦ୍ର ଖୁବ୍ ମେଳାପି । ବଡ଼ ସାନ ସମସ୍ତଙ୍କ ସାଂଗରେ ମିଶି ଯାଇ ପାରନ୍ତି । ପୁରୁଷ ସ୍ତ୍ରୀ ସମସ୍ତଙ୍କ ସାଂଗରେ । ଇମିତି ଏକ ହସଖୁସିଆ ମଣିଷର ହଠାତ୍ ଇମିତି ପରଲୋକ ହୋଇଗଲା କାହିଁକି ? ଚାରୁ ଭଲ ଚିକିତ୍ସକ ଥିଲା । ରୋଗ ନିଦାନ କରିବାରେ ଥିଲା ବେଶ୍ ଧୂରନ୍ଧର । ନିଜର ବହୁମୂତ୍ର ରୋଗ ଥିଲା, ଜାଣିଥିଲା ସେ । ଔଷଧ ବି ଖାଉଥିଲା । ଖାଦ୍ୟ ମଧ୍ୟ ନିୟନ୍ତ୍ରଣ କରିଥିଲା । କିନ୍ତୁ କାହିଁକି କେଜାଣି ସେ ଔଷଧ ଖାଇବା ବନ୍ଦ କରି ଦେଇଥିଲା ।

କାହିଁକି ? ମଣିଷ କ'ଣ ମଣିଷର ସବୁ କଥା ଜାଣିପାରେ ? କେଉଁ ସୂକ୍ଷ୍ମ ତନ୍ତ୍ରୀରେ କଣ ଆଘାତ ଯୋଗୁଁ ସେ ଏହା କରିଥିଲା ମୁଁ କହିପାରିବି ନାହିଁ ।

ମାଉଁ କାନ୍ଦୁଛନ୍ତି । ତାଙ୍କୁ ସାନ୍ତ୍ୱନା ଦେବ କିଏ ? ଦେଇ କଣ ହେବ ସାନ୍ତ୍ୱନା ? ବରଂ ତାଙ୍କୁ କାନ୍ଦିବାକୁ ଛାଡ଼ି ଦେବା ଭଲ । ସେ କାନ୍ଦୁଛନ୍ତି ପୁଣି ହଠାତ୍ ଚୁପ୍ ହୋଇ ଆକାଶକୁ ଅନଉଛନ୍ତି କିଛିକ୍ଷଣ ? ଆଖି ଯେପରି ଖୋଜୁଛି କଣ ଗୋଟାଏ ସେଇ ଆକାଶରେ । ପୁଣି ବାହୁନୁଛନ୍ତି । ସବା ବଡ଼ଭାଇ କିନ୍ତୁ ନିର୍ଲିପ୍ତ । ତାଙ୍କର ସ୍ମରଣଶକ୍ତି ହଜି ଯାଇଛି ବେଶ୍ କିଛି ମାସ ହେଲା । ସେ ଜାଣି ପାରୁନାହାନ୍ତି ଚାରୁର ମୃତ୍ୟୁ କଥା । ସେ ଖାଇବାକୁ ମାଗୁଛନ୍ତି । ଆଇଁଷ ଖୋଜୁଛନ୍ତି । ତାଙ୍କୁ ଦେଖି ମାଉଁ ଆହୁରି ବାହୁନୁଛନ୍ତି । ଚାରୁର ସ୍ତ୍ରୀକୁ ଦେଖିବା ପାଇଁ ସାହାସ ହେଲା ନାହିଁ । କିନ୍ତୁ ଭେଟିବାକୁ ତ ହେବ । ଉପାୟ ନାହିଁ । ସେ କିଛି କହୁନାହାନ୍ତି, କାନ୍ଦୁ ନାହାନ୍ତି । ଖାଲି ଚୁପ୍ ହୋଇ ଅନେଇଛନ୍ତି, ଆଖିରୁ ଧାର ଧାର ଲୁହ ଗଡ଼ି ଯାଉଛି । ପଥର ଫାଟି ଯେପରି ରକ୍ତ ଝରୁଛି ପାଣି ହୋଇ । ମନେ ପଡ଼ିଲା ରାଜନ୍ ଙ୍କର ସେଇ ଗଳ୍ପ । ରାଜା ପଚାରିଲେ ପଣ୍ଡିତଙ୍କୁ । ଆପଣ ତ ସର୍ବଜ୍ଞ । କୁହନ୍ତୁ ତ ମୋତେ, କାହିଁକି ସ୍ତ୍ରୀ ଆଗରେ ସ୍ୱାମୀର, ମାତା ଆଗରେ ପୁତ୍ରର ମୃତ୍ୟୁ ହୁଏ ? ପଣ୍ଡିତ ଉତ୍ତର ଦେଲେ, ରାଜନ୍, ସେ ହେଉଛ ଅନନ୍ତ ପ୍ରଶ୍ନ ଯାହାର ଉତ୍ତର ମିଳିନାହିଁ । ସେଇ ପ୍ରଶ୍ନର ଉତ୍ତର ଖୋଜିବାକୁ ଯାଇ ତ ଗୌତମ ପାଇଟିଲେ ବୁଦ୍ଧ ।

ଖୁଣ୍ଟକଟା ଗ୍ରାମର ସୀମାନ୍ତରେ ଜୁଇ ଜଳୁଛି । ଲହ ଲହ ଚିତା । ଚାରୁ ଭାରି କୋମଳ ଓ ସଉକିନିଆ । ସେଇ ସଉକିନିଆ ଦେହଟା ଜଳି ପାଉଁଶ ହୋଇ ଯାଉଛି ଆଗରେ । ଦେଖିବା ଭାରି କଷ୍ଟକର । ବଡ଼ ଥାଉଁ ଥାଉଁ ସାନର ପରଲୋକ ହୋଇ ଯିବ । ସହି ହୁଏନା । ଆଖି ଫେରାଇଲି ଅନ୍ୟ ଦିଗକୁ ।

ମୋ ସ୍ତ୍ରୀକୁ ମୋର ସବୁ ସାନ ଭାଇ ଡାକନ୍ତି, 'ଅପା' ବୋଲି । କେବଳ ଚାରୁ ଡାକେ 'ନୂଆବୋଉ' । ସେ ଅନେଇଛନ୍ତି ଚିତାକୁ ଆଉ ମେଞ୍ଚା ମେଞ୍ଚା ଫୁଲ ପିଙ୍ଗୁଛନ୍ତି ଅଗ୍ନି ଭିତରକୁ । ଚାରୁ ସବୁବେଳେ, ସବୁ ଦୁର୍ଦ୍ଦିନରେ ଆମ ପାଖରେ ଠିଆ ହୋଇଛି । ପିଲାମାନେ ଜନ୍ମ ହେଲାବେଳେ ସେ ବି ଧାତ୍ରୀ ହୋଇଛି ଡାକ୍ତର ହୋଇ । ସେ ଆଉ ନାହିଁ ।



# ସାମ୍ବାଦିକ ମଉଡ଼ମଣି

ଗଲାକାଲି ଭାରତର ପ୍ରଖ୍ୟାତ ସାମ୍ବାଦିକ ଚଳପତି ରାଓଙ୍କ ପରଲୋକ ହୋଇଯାଇଛି କରୁଣ ପରିସ୍ଥିତିରେ । ସେ ସକାଳୁ ନିଜ ଗାଡ଼ିରେ ଯାଇଥିଲେ ଦିଲ୍ଲୀର ସେଇ ଅଞ୍ଚଳକୁ ଯେଉଁଠି ସାମ୍ବାଦିକମାନଙ୍କର ବସତି । କୌଣସି ବନ୍ଧୁଙ୍କୁ ଦେଖା କରିବେ ଏବଂ ସେଇଠି ବେଶ୍ କିଛି ସମୟ କଟାଇବେ ଫେରିବା ପୂର୍ବରୁ । ବନ୍ଧୁଙ୍କ ଘରେ ଓହ୍ଲାଇ ସେ ଡ୍ରାଇଭରକୁ ଘରକୁ ଫେରିଯିବା ପାଇଁ କହିଲେ । ସେ ଫେରିବେ ଟାକ୍ସିରେ ବା ବନ୍ଧୁଙ୍କ ଗାଡ଼ିରେ । ଡ୍ରାଇଭର ଗାଡ଼ି ନେଇ ଚାଲିଗଲା । କିନ୍ତୁ ସେ ଗେଟ୍ ଖୋଲି ଦେଖନ୍ତି ଯେ ବନ୍ଧୁଙ୍କ ଘରେ ତାଲା ଝୁଲୁଛି । ସେ ଫେରିବେ । ମନେ ହେଲା ରାସ୍ତା ପାଖ ଚାହା ଦୋକାନରେ କପେ ଚା ପିଇଦେଇ ଗଲେ ଭଲ ହୁଅନ୍ତା । ସେ ଚା ପାଇଁ ଅର୍ଡର ଦେଲେ ଏବଂ ମୁଣ୍ଡକୁ ହାତ ଉପରେ ରଖି କଣ ଭାବିବାକୁ ଲାଗିଲେ । ହୋଟେଲ ବୟ ଚା ନେଇ ଆସି ଡାକିଲା । କିନ୍ତୁ ସେ ଶୁଣିଲେ ନାହିଁ । ବାଧ ହୋଇ ମାଲିକ ଆସି ଡାକିଲା ଏବଂ ହଲାଇଦେଲା ଦେହକୁ ।

ଚଳପତି ରାଓ ଆଉ ନାହାନ୍ତି । କିନ୍ତୁ ହୋଟେଲବାଲା ତ ତାଙ୍କୁ ଚିହ୍ନେ ନାହିଁ, ପାଖ ଆଖ ଲୋକ ଆସି ଜୁଟିଲେ । କେହି ଚିହ୍ନି ପାରିଲେ ନାହିଁ । ସାମ୍ବାଦିକମାନଙ୍କ କଲୋନୀ । କିନ୍ତୁ ସବୁ ସାମ୍ବାଦିକ କର୍ମକ୍ଷେତ୍ରରେ । ଚଳପତି ରାଓଙ୍କୁ ଚିହ୍ନିବ କିଏ ? ତାଙ୍କର ଫଟୋତ ଦିନେ ହେଲେ ସମ୍ବାଦପତ୍ରର ପୃଷ୍ଠା ମଣ୍ଡନ କରି ନାହିଁ । ସେ ବିବୃତି, ଭାଷଣ ଦେଇ ନାହାନ୍ତି । ମନ୍ତ୍ରୀ, ଏମ୍. ପି. କାହାରି ସହିତ ଲଟର ପଟର ହୋଇ ନାହାନ୍ତି ଯେ ତାଙ୍କୁ କିଏ ଜାଣିବ ଚେହେରାରୁ । ଚଳପତି ରାଓଙ୍କୁ ଜାଣନ୍ତି ସମସ୍ତେ ତାଙ୍କର ବଳିଷ୍ଠ କଲମରୁ । ତାଙ୍କ କଲମ ବହୁ ନାମହୀନ ବ୍ୟକ୍ତିଙ୍କୁ ଉତ୍ତୋଳିତ କରିଛି, ଠିକ୍ ସେଇପରି ତାଙ୍କର ଶାଣିତ କଲମ ବହୁ ପ୍ରତିଷ୍ଠିତ ବ୍ୟକ୍ତିଙ୍କର ଉଦ୍‌ବେଗ, ଆତଙ୍କର କାରଣ ହୋଇଚି । ସେ ନିଜେ କିନ୍ତୁ ରହିଯାଇଛନ୍ତି ଅଗୋଚରରେ । ସେ ହେଉଛନ୍ତି ଟିପିକାଲ ସାମ୍ବାଦିକ, ଯିଏ ଆପଣାକୁ ସମ୍ବୋଧିତ କରିବାକୁ ଦିଏ ନାହିଁ । ରହିଯାଏ ସମସ୍ତଙ୍କ ଅଜାଣତରେ । ସବୁ ଦୃଶ୍ୟର ବ୍ୟାକ୍ ଗ୍ରାଉଣ୍ଡରେ । ଯାହା ସଚରାଚର ସାମ୍ବାଦିକମାନେ କରି ଆସିଛନ୍ତି । ଏକ ଭାନିସିଙ୍ଗ ଟ୍ରାଇବ ବା ଉଭାଇ ଯାଉଥିବା ମଣିଷର ପ୍ରତିନିଧି । ପ୍ରଚଣ୍ଡ ଅନ୍‌କନ୍‌ଭେନସନାଲ ମଣିଷ । ପକେଟରେ ପରିଚୟ ପତ୍ର ନାହିଁ । କିଏ ଏଇ ଭଦ୍ରଲୋକ ? ବାଧହୋଇ ତାଙ୍କୁ ପାଖ ଏକ ଡାକ୍ତରଖାନାକୁ ନିଆଗଲା । ସେଠାରେ ଡାକ୍ତର ଘୋଷଣା କଲେ ଯେ ସେ ମୃତ । ହଠାତ୍ ହୃଦ୍‌ଯନ୍ତ୍ର କ୍ରିୟା ବନ୍ଦ ହୋଇ ତାଙ୍କର ମୃତ୍ୟୁ

ହୋଇଯାଇଛି । ତାଙ୍କର ପରିଚୟ ନ ମିଳିବାରୁ ଏବଂ ତାଙ୍କର ଦାବିଦାର କେହି ନ ଥିବାରୁ "ଅପରିଚିତ ଦାବିଦାର ନ ଥିବା ମୃତ ଦେହକୁ" ପାଖ ମୋର୍ଗ (Morgue) କୁ ପଠାଇ ଦିଆଗଲା ଏବଂ ସେଠି ଅନକ୍ଲେମଡ୍ ବଡ଼ି ଭାବରେ ପଡ଼ି ରହିଲେ ସାମ୍ବାଦିକମାନଙ୍କର ମଉଡ଼ମଣି ଚଳପତି ରାଓ । ତାଙ୍କର ମରଦେହର ଦାବିଦାର କିଏ ? ସତରେ ଦାବିଦାର କିଏ ? ସେ ବିବାହ କରି ନାହାନ୍ତି । କୈମାର୍ଯ୍ୟକୁ ବୋଧହୁଏ ସେ ଗ୍ରହଣ କରି ନେଇଥିଲେ ଆପଣାର ଉଦ୍ଦାମତା, ନିର୍ଭୀକତାକୁ ଚିର ଶାଣିତ କରି ରଖିବା ପାଇଁ । କାହାରି ଦୟା, ଅନୁକମ୍ପା ଲୋଡ଼ି ନାହାନ୍ତି । ଘର କରିବା ପାଇଁ ସିମେଣ୍ଟ, ଛଡ଼ ମାଗି ନାହାନ୍ତି । ସାମ୍ବାଦିକତାର ନିରପେକ୍ଷତା ରକ୍ଷା କରି ସେ କାହାରି ପୋ-ରୋଲ୍‌ରେ ରହିନାହାନ୍ତି । ତାଙ୍କୁ ଉତ୍କୋଚ ଯାଚିବା ପାଇଁ କେହି ସାହସ କରି ନାହାନ୍ତି ।

ଜବାହାରଲାଲ ନେହେରୁଙ୍କ ଦ୍ୱାରା ପ୍ରତିଷ୍ଠିତ 'ନେସନାଲ ହେରାଲ୍ଡ' ର ସେ ସଂପାଦକ । ଜବାହାର ହେଉଛନ୍ତି ତାଙ୍କର ସେଣ୍ଟର । ତାଙ୍କ ପ୍ରତି ହିଁ ଚଳପତିଙ୍କର ସମ୍ମାନ ଥିଲା ପ୍ରଭୂତ । ତଥାପି ସାମ୍ବାଦିକ ଭାବରେ କଲମ ଧରିଲାକ୍ଷଣି ସେ ପରିବର୍ତ୍ତିତ ହୋଇ ଯାଆନ୍ତି । ସେତେବେଳେ ସେ କେବଳ ସାମ୍ବାଦିକ । ସମ୍ବାଦ ସତ୍ୟ କହିବ ଅପ୍ରିୟ ହେଲେବି । ଅନେକ ସମୟରେ ବହୁ କଂଗ୍ରେସ ନେତା ଜବାହାରଲାଲଙ୍କ ପାଖରେ ଚଳପତି ରାଓଙ୍କ ବିରୁଦ୍ଧରେ ଫେରାଦ ହୋଇଛନ୍ତି । ଜବାହାରଲାଲ ଜାଣନ୍ତି ଚଳପତି ରାଓଙ୍କ ପ୍ରକୃତି । ଭାଙ୍ଗିଯିବେ ପଛେ ନଇଁବେ ନାହିଁ । ଜବାହାରଲାଲ ବେଳେବେଳେ ହସି ହସି ପଚାରନ୍ତି, ଚଳପତି, ତମେ କଣ ତା ଉପରେ ଖୁବ୍ ରାଗି ଯାଇଛ ? ଚଳପତି ସାଙ୍ଗେ ସାଙ୍ଗେ ଉତ୍ତର ଦିଅନ୍ତି, ଯେମିତି କର୍ମ ସେମିତି କଲମ । ଦିନେ ଦିନେ ପଚାରିବେ ଜବାହାରଲାଲ ତମେ କଣ ଚଳପତି ଭାବୁଚ ଯେ ସବୁ ମଣିଷ ଦେବତା ବା ଆଇଡିଏଲ ବା ପର୍‌ଫେକ୍ଟ । ଚଳପତି ଉତ୍ତର ଦିଅନ୍ତି - ତା ମୁଁ ଭାବୁ ନାହିଁ । କିନ୍ତୁ କଲମର ଗୋବା ନ ଖାଇଲେ ସେମାନେ ଅସୁର ହୋଇଯିବେ ବା ଡେଭିଲ୍ ହୋଇଯିବେ ବୋଲି ଘୋର ଆଶଙ୍କା । ମେଣ୍ଟର ଜାବହାରଲାଲଙ୍କ ସହିତ ସାମ୍ବାଦିକ ସଂପାଦକ ଚଳପତି ରାଓଙ୍କ ଏହିପରି ଖୁବ୍ ମଜାମଜା ଡାଇଲଗ୍ ରହିଛି ।

' ନେସନାଲ ହେରାଲ୍ଡ ' ଏକ ସାଧାରଣ ଖବରକାଗଜ ନ ଥିଲା ସେତେବେଳେ । ଏହା ଥିଲା ଭାରତୀୟ ମୁକ୍ତି ସଂଗ୍ରାମର ମୁଖପତ୍ର, ଥିଲା ଭାରତୀୟ ଜାତୀୟ କଂଗ୍ରେସର ପ୍ରଗତିଶୀଳ ଗୋଷ୍ଠୀର ମୁଖପତ୍ର । ଏହା ଖବରକାଗଜ ନ ଥିଲା, ଥିଲା ଏକ ହତିଆର । ଚଳପତି ରାଓ ସେ କାର୍ଯ୍ୟ ସମ୍ପନ୍ନ କରି ଯାଇଛନ୍ତି । ଦକ୍ଷତାର ସହିତ, ନିର୍ଭୀକର ସହିତ । ଚଳପତି ରାଓ ବିବାହ କରିବା ପାଇଁ ଯେପରି ସମୟ ପାଇ ଥିଲେ । ଖବର କାଗଜର ସ୍ତମ୍ଭରେ ବିନା ନାମରେ ଲେଖା ଲେଖୁଲେଖୁ ଆଉ କୌଣସି ବହି ଲେଖିବା ପାଇଁ ସମୟ ବି ପାଉନଥିଲେ । ତାଙ୍କ ସାନ ଭାଇ ବାଳକୃଷ୍ଣ ରାଓ କଟକ କେନ୍ଦ୍ର ଧାନ ଗବେଷଣା କେନ୍ଦ୍ରର ଜଣେ ବୈଜ୍ଞାନିକ । ବାଳକୃଷ୍ଣ ବିବାହ କରିଛନ୍ତି ଗୋଟିଏ ଓଡ଼ିଆ ଝିଅକୁ । ସୁପ୍ରଭା ମହାନ୍ତି, ବର୍ତ୍ତମାନ ସୁପ୍ରଭା ରାଓ । ଚଳପତି ରାଓ ଆନନ୍ଦରେ ଏହାକୁ ଅନୁମୋଦନ କରିଛନ୍ତି ଏବଂ ତାଙ୍କ ଘରେ ବିଶ୍ରାମ ନେବାପାଇଁ ମଝିରେ ମଝିରେ ଆସନ୍ତି କଟକ । ଏଇଠି ଦେଖାବି ହୋଇଛି ଦୁଇ ଚାରି ଥର, ଦିଲ୍ଲୀ ଛଡ଼ା ।

ଚଳପତି ରାଓ ନିଜର ନୀତିରେ ଅଟଳ । ସେ କାହାକୁ ମାନନ୍ତି ନାହିଁ । ଇନ୍ଦିରା ଗାନ୍ଧୀଙ୍କ ରାଜୁତିକାଳ, ତାଙ୍କ ମନ୍ତ୍ରୀମଣ୍ଡଳର ଜଣେ ପ୍ରଭାବଶାଳୀ ମହିଳା ମନ୍ତ୍ରୀଙ୍କ ବିରୁଦ୍ଧରେ ଲେଖନ୍ତି ଚଳପତି ରାଓ । ଉକ୍ତ ମନ୍ତ୍ରୀ ଯାଇ ଇନ୍ଦିରା ଗାନ୍ଧୀଙ୍କ ପାଖରେ ଫେରାଦ ହୁଅନ୍ତି । ଇନ୍ଦିରା ଗାନ୍ଧୀ ଆପଣାର ଅସହାୟତା ପ୍ରକାଶ କରି କହନ୍ତି ଯେ ତମେ ତାଙ୍କୁ ଜାଣ । ସେ ବାପାଙ୍କୁ ମାନୁନଥିଲେ । ମୋତେ ସେ ତ କନ୍ୟା ବୋଲି ବିଚାର କରି ମୋ କଥା ଜମା ଶୁଣନ୍ତି ନାହିଁ । ତେବେ ମୁଁ ଗୋଟାଏ କଥା କରୁଚି, ତାଙ୍କୁ ଏକ ଡିନର୍ ପାଇଁ ନିମନ୍ତ୍ରଣ କରୁଛି । ତୁମକୁ ବି ମୁଁ ସେଠିକି ଡାକିବି । ଦେଖିବା କଣ ହେଉଛି ।

ଡିନର ପାଇଁ ଦିନ ଧାର୍ଯ୍ୟ ହେଲା । ରାତ୍ରିରେ ଡିନର୍ । ହଠାତ୍ ଅପରାହ୍ଣ ୪ଟାରେ ଇନ୍ଦିରା ଗାନ୍ଧୀଙ୍କୁ ଫୋନ୍ କଲେ ଚଳପତି ରାଓ । ଇନ୍ଦୁ, ତୁମେ ସେ ଡିନ୍ନରକୁ ଉକ୍ତ ଭଦ୍ର ମହିଳାଙ୍କୁ ଡାକିଛୁ ବୋଲି ଶୁଣିଲି, ମୁଁ ସେ ଡିନରକୁ ଯାଉନାହିଁ । ଇନ୍ଦିରାଗାନ୍ଧୀ କିଛି କହିବା ପୂର୍ବରୁ ଚଳପତି ରାଓ ଟେଲିଫୋନ୍ ଥୋଇ ଦେଇଛନ୍ତି ।

ଚଳପତି ରାଓ ଶୋଇଛନ୍ତି ମୋର୍ଗରେ । ପରଦିନ ସକାଳୁ ଡ୍ରାଇଭର ତାଙ୍କ ଘରେ ପହଞ୍ଚି ଦେଖେ ଯେ ଚଳପତି ରାଓ ନାହାନ୍ତି । ଖୋଜା ଚାଲିଲା । ପୁଲିସ୍ ତନାଘନା ଅନୁସନ୍ଧାନ ଆରମ୍ଭ କଲେ । ଚଳପତି ରାଓ, ସାମ୍ବାଦିକମାନଙ୍କର ମଉଡ଼ମଣି ଗଲେ କୁଆଡ଼େ ? ପରିଶେଷରେ ଦେଖାଗଲା, ଯେ ଚଳପତି ରାଓଙ୍କ ମରଦେହ ପଡ଼ିରହିଛି ମୋର୍ଗରେ ଚିହ୍ନଟ ହୋଇ ନ ପାରି । କେତେ ଲୋକଙ୍କୁ ସେ ପରିଚିତ କରାଇନାହାନ୍ତି ପୃଥିବୀରେ ଅଥଚ ସେ ପଡ଼ି ରହିଛନ୍ତି ଚିହ୍ନଟ ହୋଇ ନ ପାରି । କି କ୍ରୂର ପରିହାସ ନିୟତିର ।

ଚଳପତି ରାଓଙ୍କୁ ନିମନ୍ତ୍ରଣ କରିଥିଲୁ ୟୁନିଭର୍ସକୁ । ତାଙ୍କର ଗୋଟାଏ ପଟ ଅଙ୍ଗ ସେତେବେଳକୁ ପାରାଲାଇଜଡ୍ ହୋଇ ଯାଇଥିଲା । କଣ୍ଠନାଳୀ ମଧ୍ୟ । କିନ୍ତୁ ସେଇ ରାତିରେ ସେ ଭାଷଣ ଦେଇଥିଲେ ଘଣ୍ଟାଏରୁ ଊର୍ଦ୍ଧ୍ୱକାଳ । ତା ପରେ ପୁରାତନ ବନ୍ଧୁ 'ସମାଜ' ସଂପାଦକ ଶ୍ରୀ ରାଧାନାଥ ରଥଙ୍କ ସହିତ ଆଲୋଚନା କଲେ ଘଣ୍ଟାଏରୁ ଊର୍ଦ୍ଧ୍ୱ ସମୟ । ୟୁନିଭର୍ସ ଦେଖି ସେ କହିଲେ ରାଧାନାଥ ବାବୁ, ଆପଣ ଜାଣନ୍ତି ଯେ ମୁଁ ସ୍ପଷ୍ଟ ଏବଂ କଡ଼ା କଥା କହେ । ମୋର ଧାରଣା ଥିଲା ଯେ ଓଡ଼ିଆ ସବୁ ଅପଦାର୍ଥ, ନଚେତ୍ ପ୍ରାକୃତିକ ସମ୍ପଦରେ ଭରପୂର ଓଡ଼ିଆମାନେ ଏକ ବିରାଟ ବାଣିଜ୍ୟିକ ପରମ୍ପରାର ଦାୟାଦମାନେ କାହିଁକି ଭାରତର ସବୁଠାରୁ ଦରିଦ୍ର ? କିନ୍ତୁ ୟୁନିଭର୍ସ ଦେଖି ମୋର ସେ ଧାରଣା ପରିବର୍ତ୍ତନ ହୋଇଛି । ମୁଁ ବିଦାୟ ନେବା ପୂର୍ବରୁ ଏଇ କଥାଟି କହିଯାଏ, ନଚେତ୍ ଅନ୍ୟାୟ ହେବ ।

ପୁରାତନ ବନ୍ଧୁ ରାଧାନାଥ ବାବୁ ତାଙ୍କୁ କୁଣ୍ଢାଇ ପକାଇଥିଲେ ଏବଂ ଦୁହିଁଙ୍କ ଆଖିରୁ ଲୋତକର ଧାରା ଝରି ପଡ଼ିଥିଲା, ସମସ୍ତଙ୍କୁ ସ୍ତମ୍ଭୀଭୂତ କରି । ତାଙ୍କୁ ରାଧାନାଥବାବୁ ନିମନ୍ତ୍ରଣ କରିଥିଲେ ଆଉ ଦିନେ ଆସିବା ପାଇଁ । ସେ ହଁ ଭରିଥିଲେ କିନ୍ତୁ ସେ ଆଉ ଆସିନାହାନ୍ତି ।



# ଚିରକୁମାରର ଚିର ବିଦାୟ

ଅକ୍ଟୋବର ୫ , ୧୯୯୭ ମସିହା । ଦାନାପୁର-ହାଓଡ଼ା ଏକ୍ସପ୍ରେସ୍‌ର ପ୍ରଥମ ଶ୍ରେଣୀର ଯାତ୍ରୀ ଚିତ୍ତବସୁ । ପାଟନାରେ ଏକ ବିଶାଳ ଲାଲୁ ବିରୋଧୀ ସଭାରେ ଉଦ୍‌ବୋଧନ ଦେଇ କଲିକତା ଫେରୁଛନ୍ତି । ହଠାତ୍ ଛାତିରେ ଯନ୍ତ୍ରଣା ଏବଂ ଅଶ୍ୱସ୍ତି । ଝାଝା ଷ୍ଟେସନରେ ଡାକ୍ତରମାନେ ତାଙ୍କୁ ପରୀକ୍ଷା କରି କିଛି ଔଷଧ ଦିଅନ୍ତି । କିନ୍ତୁ ଦାନାପୁର ଷ୍ଟେସନ୍‌ରେ ଗାଡ଼ି ପହଞ୍ଚିଲାବେଳକୁ ସେ ଚାଲିଯାଇଛନ୍ତି ଚିରଦିନ ପାଇଁ । ଜୀବନ ତମାମ ସେ ଏକାକୀ ଥିଲେ । ସଂସାର ପାତି ନ ଥିଲେ । ଆଜି ବି ସେ ଏକାକୀ ଚାଲିଗଲେ ।

ଚିତ୍ତବସୁ ନମ୍ର ସ୍ୱଭାବର ମଣିଷ । କଥା ବିନମ୍ର । ସେ ସେଇ ପୁରୁଣା ପୀଢ଼ିର ନେତା, ରାଜନୀତି ଯେଉଁ ମାନଙ୍କର ପେଶା ନ ଥିଲା, ଥିଲା ବିଶ୍ୱାସର ନୀତିର । ବାଂଲାଦେଶ ରାଜଧାନୀ ଢାକାରେ ୧୯୨୬ ମସିହାରେ ସେ ଜନ୍ମ ଗ୍ରହଣ କରିଥିଲେ । କଲିକତା ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାଶ କରିବା ପରେ ସେ ପ୍ରତ୍ୟକ୍ଷ ରାଜନୀତିରେ ଯୋଗ ଦେଇଥିଲେ । ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଥିଲେ ତାଙ୍କର ଆଦର୍ଶ ଏବଂ ପ୍ରେରଣାର ଉତ୍ସ । ଛାତ୍ର ଜୀବନରୁ ହିଁ ସେ ରାଜନୈତିକ କାର୍ଯ୍ୟକଳାପରେ ଜଡ଼ିତ ହୋଇଥିଲେ । ସେଇ ସମୟ ଥିଲା ବଂଗ ଦେଶର ଉଦ୍‌ବେଳନର ସମୟ । ପ୍ରତ୍ୟେକ ଯୁବକର ଆଖିରେ ଥିଲା ସ୍ୱପ୍ନ, ରକ୍ତରେ ଥିଲା ଅଗ୍ନି । ଚିତ୍ତବସୁ ୧୯୪୫ ମସିହାରେ ଫରୱାର୍ଡ ବ୍ଲକରେ ଯୋଗ ଦିଅନ୍ତି ଏବଂ ସେ ଆଉ ପଛକୁ ଫେରି ଅନେଇ ନାହାନ୍ତି । ବାମପନ୍ଥୀ ଆନ୍ଦୋଳନରେ ଏଇ ମହାନ୍ ନେତା ବାମପନ୍ଥୀ ଐକ୍ୟ ପାଇଁ ଆପ୍ରାଣ ଉଦ୍ୟମ କରି ଯାଇଛନ୍ତି । ବାମପନ୍ଥୀ ଐକ୍ୟ ଥିଲା ତାଙ୍କର ବିଶ୍ୱାସ ।

ପାର୍ଟି ଅଫିସ ହିଁ ଥିଲା ତାଙ୍କର କର୍ମପୀଠ ଏବଂ ବାସସ୍ଥାନ । ସେ ଘରକୁ ଆଉ ଫେରି ନାହାନ୍ତି । ବିବାହ କରିବାକୁ ସମୟ ପାଇ ନାହାନ୍ତି କି ମନ ବଳାଇ ନାହାନ୍ତି । ୧୯୫୭ ମସିହାରୁ କେବଳ ଥରକୁ ବାଦ ଦେଲେ, ସେ ମୃତ୍ୟୁ ପର୍ଯ୍ୟନ୍ତ ବରସାତ୍ ନିର୍ବାଚନ ମଣ୍ଡଳୀରୁ ପାର୍ଲ୍ୟାମେଣ୍ଟକୁ ନିର୍ବାଚିତ ହୋଇ ଆସିଛନ୍ତି । ସେ ୧୯୫୭ ମସିହାରେ ବରସାତ୍ ନିର୍ବାଚନ ମଣ୍ଡଳୀରୁ ବିଧାନସଭାକୁ ନିର୍ବାଚିତ ହୋଇଥିଲେ ଏବଂ କେବଳ ୧୯୬୬ ମସିହାରେ ସେ ରାଜ୍ୟ ସଭାକୁ ନିର୍ବାଚିତ ହୋଇଥିଲେ । ବରସାତ୍ ତାଙ୍କର ଅଭେଦ୍ୟ ଦୁର୍ଗ ଥିଲା ।

ପାର୍ଲାମେଣ୍ଟରେ ତାଙ୍କର ଅବଦାନ ବିପୁଳ । ତାଙ୍କର କାର୍ଯ୍ୟ ପାଇଁ ସେ ଲୋକସଭାର ଚେୟାରମ୍ୟାନ୍ ମଣ୍ଡଳୀର ସଭ୍ୟପଦ ଅଳଙ୍କୃତ କରିଛନ୍ତି ।

ଫରୱାର୍ଡ ବ୍ଲକ ପାଇଁ, ବାମପନ୍ଥୀ ସାମ୍ମୁଖ୍ୟ ପାଇଁ ତାଙ୍କର ଅବଦାନ ସକାଶେ ସେ ସ୍ମରଣୀୟ ହୋଇ ରହିବେ । ବକ୍ତା ଭାବରେ ତାଙ୍କର ଖ୍ୟାତି ଥିଲା । ଜନତାକୁ ମନ୍ତ୍ରମୁଗ୍ଧ କରିବାର ଶକ୍ତି ତାଙ୍କର ଥିଲା । ଫରୱାର୍ଡ ବ୍ଲକ୍‌ର ସେ ଥିଲେ ତୁଙ୍ଗ ନାୟକ । ୧୯୫୨ ରୁ ୧୯୫୭ ପର୍ଯ୍ୟନ୍ତ ସେ ଫରୱାର୍ଡ ବ୍ଲକର ସାଧାରଣ ସଂପାଦକ ଥିଲେ ।

ସେଇ ପୀଢ଼ିର ବଞ୍ଚିଥିବା ଜନନେତା ମାନଙ୍କର ସଂଖ୍ୟା ବର୍ତ୍ତମାନ ହାତ ଗଣତିରେ ଗଣି ହୋଇଯିବ । ତାଙ୍କର ପରଲୋକରେ ସେଇ ଭଦ୍ର ଲୋକ ରାଜନୀତିଜ୍ଞଙ୍କ ସଂଖ୍ୟା କମିଗଲା । ସେମିତି ମଣିଷ ଆଉ ମିଳିବେ ନାହିଁ । କିନ୍ତୁ ମନାନ୍ତର ହେଇନାହିଁ କାହାରି ସାଙ୍ଗରେ । ଭାରତୀୟ ଗଣତାନ୍ତ୍ରିକ ଆନ୍ଦୋଳନ ତାଙ୍କୁ ହରାଇ ଦରିଦ୍ର ହୋଇଛି ।



# ଇତିହାସର ବିସ୍ମୃତ ଚରିତ୍ର

ଅନେକ ବର୍ଷ ହେଲା ଖବରକାଗଜର ପୃଷ୍ଠା ମଣ୍ଡନ କରିନାହିଁ ତାଙ୍କର ନାମ । ସେଇଥିପାଇଁ ସେ ଏକ ବିସ୍ମୃତ ଚରିତ୍ର । କିନ୍ତୁ ଦାସ ସବୁଦିନେ ଏଇଆ ନ ଥିଲେ । ଭାରତର ସ୍ୱାଧୀନତା ଆନ୍ଦୋଳନର ଏକ ମହାରଥୀ ଜଗତକୃଷ୍ଣ ସ୍ୱାଧୀନତାର ପ୍ରାକ୍‌କାଳରେ ବହୁ ଆନ୍ଦୋଳନ ସହିତ ସଂପୃକ୍ତ ଥିଲେ, ଏହାର ନେତା ଭାବରେ ।

କେବଳ ସେତିକି ନୁହେଁ ପ୍ରତ୍ୟକ୍ଷ ରାଜନୀତି ଥିଲା ତାଙ୍କର ଜୀବନର ଗୋଟିଏ ଦିଗ । ଆର ଦିଗଟି ଥିଲା ଜନସେବା, ରୁଗ୍‌ଣ ମଣିଷର ସେବା । ସେତେବେଳେ ସେ ଦଳ, ମତ, ଗୋଷ୍ଠୀ ସବୁ ଭୁଲି ଯାଆନ୍ତି । କାହାର ବାହାଘର ହେଲେ ଜଗତକୃଷ୍ଣଙ୍କୁ ଦେଖିବାକୁ ମିଳେ ରନ୍ଧାଶାଳରେ, ତଦାରଖ କାମରେ । ସେମିତି କାହାରି ରକ୍ତ ଦରକାର ହେଲେ ଦେଖାଯିବ ଯେ ସେ ଖୋଜୁଛନ୍ତି ରକ୍ତ ଦାନକାରୀ । କେହି ବେମାର ପଡ଼ିଲେ ସେ ଯାଇ ଡାକ୍ତରଙ୍କ ପାଖରେ, ନର୍ସ ପାଖରେ ନେହୁରା ହୁଅନ୍ତି ରୋଗୀର ଚିକିତ୍ସା ପାଇଁ । ସେତେବେଳେ ସେ ଭୁଲି ଯାଆନ୍ତି ଆପଣାର ରାଜନୈତିକ ମତବାଦ, ଭୁଲି ଯାଆନ୍ତି ସାହାଯ୍ୟ ଚାହୁଁଥିବା ଲୋକର ସାମାଜିକ ସ୍ଥିତି ବା ରାଜନୈତିକ ମତବାଦ ।

ଏଇ ଶତାବ୍ଦୀର ଚତୁର୍ଥ ଦଶକରେ ଜଗତକୃଷ୍ଣ ଛାତ୍ରାବସ୍ଥାରୁ ହିଁ ଆପଣାର ସଂଗ୍ରାମୀ ମନୋଭାବ ପରିଚୟ ଦେଇଥିଲେ । ତାଙ୍କ ସାଙ୍ଗରେ କାମ କରିଥିବା ବ୍ୟକ୍ତିମାନଙ୍କ ଭିତରେ ଗୁରୁଚରଣ ପଟ୍ଟନାୟକ ବିବୁଧେନ୍ଦୁ ମିଶ୍ର, ମନ ମୋହନ ମିଶ୍ର ପ୍ରଭୃତି ବର୍ତ୍ତମାନ ବି ଅଛନ୍ତି ଆମ ଭିତରେ । ନରସିଂହ ତ୍ରିପାଠୀ, ରାମଚନ୍ଦ୍ର ରାମ ବାହୁଡ଼ି ସାରିଲେଣି । ସେତେବେଳେ ଆମ ମାଟି ଦୁଲୁକୁ ଥିଲା, ଛାତ୍ର ଓ ଶ୍ରମିକ ମାନଙ୍କର ଆନ୍ଦୋଳନରେ । ସାମ୍ରାଜ୍ୟବାଦ ବିରୁଦ୍ଧରେ ଶେଷ ଆଘାତ ହାଣିବାକୁ ହେବ । ଏଇ ଥିଲା ଡାକରା । ଜଗତକୃଷ୍ଣ ଥିଲେ ସେମାନଙ୍କର ସଂଗଠନକମାନଙ୍କ ମଧ୍ୟରେ ଅନ୍ୟତମ । ବ୍ରଜରାଜନଗର ଶ୍ରମିକ ଆନ୍ଦୋଳନ, ବାରଙ୍ଗ କାଚ କାରଖାନା ଶ୍ରମିକ ଆନ୍ଦୋଳନ, କଟକ ପ୍ରେସ ଶ୍ରମିକ ଆନ୍ଦୋଳନ ଠାରୁ ଆରମ୍ଭ କରି ଆଇ.ଏନ୍.ଏ. ସେନାପତି ମାନଙ୍କର ମୁକ୍ତି ଆନ୍ଦୋଳନ, ରାମେଶ୍ୱର ବାନାର୍ଜୀ ଦିବସ ଧର୍ମଘଟ, ୟୁନିୟନ ଜ୍ୟାକ୍ ବିରୋଧୀ ଛାତ୍ର ଆନ୍ଦୋଳନ ସବୁ ତାଙ୍କର ଆଲେଖ୍ୟ ବହନ କରିଥିଲା । ଜଗତକୃଷ୍ଣ ସେଇ ଐତିହାସିକ ସମୟରେ, ୧୯୪୬ ମସିହାରେ ନିଖିଳ ଉତ୍କଳ ଛାତ୍ରସଂଘର ସମ୍ପାଦକ ନିର୍ବାଚିତ ହୁଅନ୍ତି, ବ୍ରହ୍ମପୁର ସମ୍ମିଳନୀରେ । ଛାତ୍ରସଂଘର ନେତୃତ୍ୱରେ ହିଁ ପ୍ରସିଦ୍ଧ ୟୁନିୟନ୍ ଜ୍ୟାକ୍ ବିରୋଧୀ ଆନ୍ଦୋଳନ, ଅଟିନେଲେକ୍ ବୟକଟ୍ ଆନ୍ଦୋଳନ, ଡୁଡୁମା ଚୁକ୍ତି ବରୋଧରେ ଆନ୍ଦୋଳନ ସାମ୍ରାଜ୍ୟବାଦର ଅନ୍ତିମ ବିଗୁଲ୍ ହୋଇଥିଲା, ଏଇ ମାଟିରେ ।

ରେଭେନ୍ସା କଲେଜରେ ଆଡମିସନ କାଉଣ୍ଟରରେ ତାଙ୍କୁ ଠିଆ ହୋଇଥିବାର ଦେଖାଯାଏ । ସେତେବେଳେ ବ୍ଲଡ ବ୍ୟାଙ୍କ ବା ରକ୍ତଭଣ୍ଡାର ନଥିଲା । ନାମ ଲେଖାଇବାକୁ ଆସିଥିବା ସବୁ ପିଲାଙ୍କ ଠାରୁ ସେ ସମ୍ମତି ଲୋଡ଼ନ୍ତି ବର୍ଷକୁ ଅନ୍ତତଃ ଥରେ ରକ୍ତଦାନ ପାଇଁ । ଆଉ ସେ ତାଙ୍କୁ ନେଇ ଯାଆନ୍ତି ତାଙ୍କର ରକ୍ତ ଗ୍ରୁପ୍ ପରୀକ୍ଷା କରିବା ପାଇଁ । ଏଇପରି ଏକ ବିଶାଳ ତାଲିକା ତାଙ୍କ ପାଖରେ ପ୍ରସ୍ତୁତ ଥାଏ । ବର୍ଷ ଯାକ ପାଇଁ ।

ଠିକ୍ ସେଇପରି, ସେ ଗଢ଼ନ୍ତି ଶବ ସଂସ୍କାର ସମିତି । ଡାକ୍ତର ଖାନାରେ କୌଣସି ଅସହାୟ ରୋଗୀର ମୃତ୍ୟୁ ହେଲେ ତାର ଶବ ସଂସ୍କାର ପାଇଁ ବାହାରି ପଡ଼ନ୍ତି ଏଇ ଯୁବକ ଦଳ ।

ଡାକ୍ତରଖାନାରେ ପଡ଼ିଥିବା ରୋଗୀମାନଙ୍କର ପାଖରେ ଆଟେଣ୍ଡାଣ୍ଟ କାମ କରିବାକୁ ସେ ଠିକ୍ କରନ୍ତି ଯୁବ ଗୋଷ୍ଠୀ । ବର୍ଷଯାକ ଏଇ କାମ ଚାଲିଥାଏ । ଏଇ କାମ ତାଙ୍କୁ ନେଇଯାଏ ଦଳ,ମତ, ଗୋଷ୍ଠୀର ଉର୍ଦ୍ଧ୍ୱକୁ ।

ପରବର୍ତ୍ତୀ କାଳରେ ଜଗତକୃଷ୍ଣ କିଛିକାଳ ପାଇଁ କଳିଙ୍ଗ ଟ୍ୟୁବ୍‌ସ୍‌ରେ ଜୀବିକା ନିର୍ବାହ କରନ୍ତି । ରାଜନୈତିକ ବ୍ୟବସ୍ଥିତତା ଅତୁଟ ରହିପାରେ ନାହିଁ । ପାରିବାରିକ ସମସ୍ୟା ଜଟିଳ ହେଇଯାଏ । ସେ ନିଷ୍କ୍ରାନ୍ତ କରିନିଅନ୍ତି ନିଜକୁ ରାଜନୈତିକ ମୁଖ୍ୟଧାରାରୁ । ତାପରେ ସେ କେବେ କେବେ ରାଜନୈତିକ ସୀମାନ୍ତକୁ ଆସିବାର ଦେଖାଯାଇଥାଏ । କିନ୍ତୁ ତାହା ସୀମାନ୍ତ ମାତ୍ର । ସେ ଭୁବନେଶ୍ୱରରେ, ଯେଉଁଠୁ ମନେହୁଏ ସୂର୍ଯ୍ୟ ନଗରରେ ହିଁ ବାସିନ୍ଦା ହୋଇଯାଆନ୍ତି ।

ତଥାପି ତାଙ୍କୁ ଦେଖାଯାଏ ସେକ୍ରେଟେରିଏଟର କରିଡରରେ, ସେକ୍ରେଟେରୀ ବା ଅଫିସର ମାନଙ୍କ ପାଖରେ, ଫାଇଲ ଗଦାଭିତରେ ବସିଥିବା କିରାଣୀ ମାନଙ୍କର ସାଙ୍ଗରେ । ବିଭିନ୍ନ ବ୍ୟକ୍ତିର ବ୍ୟକ୍ତିଗତ ସମସ୍ୟାଠାରୁ ଆରମ୍ଭ କରି ସାମୂହିକ ସମସ୍ୟା ପର୍ଯ୍ୟନ୍ତ ବିଭିନ୍ନ କାର୍ଯ୍ୟରେ । ଯାହା ପାଇଁ ଆସିଛନ୍ତି ତାକୁ ହୁଏତ ସେ ଭଲ କରି ଚିହ୍ନନ୍ତି ନାହିଁ, କାଲି ବି କାମ ସରିଲେ ତା ସାଙ୍ଗରେ ଆଉ ଭେଟ ମିଳିବ ନାହିଁ । କିନ୍ତୁ ମଣିଷର ସେବା ପାଇଁ, ତାର କାର୍ଯ୍ୟରେ ଠିଆ ହେବା ପାଇଁ । ସେ ତ ଯଥେଷ୍ଟ । ସେଇତ ତାଙ୍କର ପରିଚିତି ଓ ସାଫଲ୍ୟ ।

ବୟସ ବଢ଼ିଛି,ବଢ଼ିଛି ପାରିବାରିକ ସମସ୍ୟା । ରୋଗ ଦେଖାଦେଇଛି ଦେହରେ । ତଥାପି ସେ ଚାଲିଛନ୍ତି । ପାଦର ଗତି ଶିଥିଳ ହୋଇଗଲାଣି । କାହାରି ସାହାଯ୍ୟ ଦରକାର ପଡୁଚି ଯିବା ଆସିବା ପାଇଁ । କିନ୍ତୁ ସେ ଚାଲିଛନ୍ତି । ସେଇ ଚାଲୁ ଚାଲୁ କାଲି ସେ ଅଟକି ଗଲେ, ଆଉ ତ ଫେରିବେ ନାହିଁ । କିନ୍ତୁ ସେ ସ୍ମୃତ ହୋଇ ରହିବେ ଚିରକାଳ ଆମ୍ଭମାନଙ୍କ ଭିତରେ ।



# ଗୀତିର ଶେଷ ସୁର

**ସେ**ପ୍ଟେମ୍ବର ୨ ତାରିଖ, ୧୯୯୮ । ସବୁଦିନ ପରି ଦିଲ୍ଲୀ ସହରରେ ସକାଳ ଆସିଛି । କିନ୍ତୁ ତାଙ୍କ ଜୀବନର ରାତି ଆଉ ପାହିନାହିଁ । ଲୋକ ସଂସ୍କୃତିର ଖ୍ୟାତନାମା ବାବଦୂକ ଜୀବନାନନ୍ଦ ପାଣିଙ୍କର ପରଲୋକ ହୋଇଯାଇଛି । ତାଙ୍କର ଦିଲ୍ଲୀ ମଡେଲ ଟାଉନ ଘରେ । କିଛି ନ ଥିଲା । ସବୁଦିନ ପରି ସେ ଶୋଇବାକୁ ଯାଇଥିଲେ ରାତିରେ । କିଛି ଚିଠି, କିଛି ଲେଖା ଲେଖିଥିଲେ । ଆଉ ସବୁ ଅଧାରେ ରହିଥିଲା । ବହିର ପୃଷ୍ଠାରେ ଚିହ୍ନ ଦିଆଯାଇଛି, ଲେଖା ଅଧା ରହିଛି । ସବୁ ଅଧାରେ ଛାଡ଼ି ଚାଲିଯିବାର ନାମ ହେଉଛି ଜୀବନ । ଜୀବନାନନ୍ଦ ସେଇ କଥାଟିକୁ ସୂକ୍ଷ୍ମରେ ନୀରବତାର ମନଛୁଆଁ ଝଙ୍କାରରେ କହି ଚାଲି ଯାଇଛନ୍ତି ।

ଜୀବନାନନ୍ଦ ମୋର ସମସାମୟିକ । ମୋ ଠାରୁ ଦୁଇ ବର୍ଷ ସାନ । କିନ୍ତୁ ସେ ବ୍ୟବଧାନ ସୀମା ଭାଙ୍ଗି ଯାଇଥିଲା ଅନେକ ଦିନରୁ । ଦିଲ୍ଲୀରେ ତାଙ୍କ ସାଙ୍ଗରେ ଦେଖା ହୋଇଚି ଅନେକବାର । ସ୍ମୃତି ପଖାଳିଛୁ । ଆଲୋଚନା କରିଛୁ ଓଡ଼ିଶା ଲୋକ ସଂସ୍କୃତି ସଂପର୍କରେ, ଲୋକଗୀତିର କାହାଣୀ ଓ ସୁର ସଂପର୍କରେ । ଜୀବନାନନ୍ଦ ବାବୁ, ଏଇ ଲୋକଗୀତ ସବୁ ରହିଛି ପୃଥିବୀର ବିଭିନ୍ନ ଦେଶରେ, ଭାଷା ସ୍ୱତନ୍ତ୍ର କିନ୍ତୁ ସୁର ଓ ବିଷୟ ବସ୍ତୁରେ କେତେ ସାମଞ୍ଜସ୍ୟ ରହିଛି କହିଲେ ଦେଖି ? ଜୀବନାନନ୍ଦ ବିହ୍ୱଳ ହୋଇ ଉଠିଛନ୍ତି । ଆଖି ମୁଦି ସେ କହି ଚାଲିଛନ୍ତି ମଣିଷ ସବୁଠି ସମାନ । ତାର ଆଦ୍ୟ ଭାବନା ବି ସମାନ । ଆଉ ପ୍ରକୃତିର ଆଦ୍ୟ ସୁର ମଧ୍ୟ ସବୁଠି ସମାନ ।

ଜୀବନାନନ୍ଦ ଜନ୍ମ ହୋଇଥିଲେ ୧୯୩୩ ମସିହା ମାର୍ଚ୍ଚ ମାସ ୧୩ ତାରିଖରେ ମୟୂରଭଞ୍ଜରେ । ୧୯୫୪ ମସିହାରେ ସେ ଯୋଗ ଦିଅନ୍ତି ଓଡ଼ିଶା ପ୍ରଶାସନିକ ସେବାରେ । ପ୍ରକୃତିର ବାସଭୂମି ବାରିପଦା ତାଙ୍କୁ କିନ୍ତୁ ଗଢ଼ିଥିଲା ସ୍ୱତନ୍ତ୍ର ଭାବରେ । ପ୍ରଶାସନ ତାଙ୍କ ପାଇଁ ଏକ ଅଡୁଆ କାମ, ଶ୍ୱାସରୁଦ୍ଧି କାମ ବୋଲି ମନେ ହେଉଥିଲା । ଓଡ଼ିଶାର ପ୍ରାଚୀନ ସମୃଦ୍ଧି ଏବଂ ଉଜ୍ଜ୍ୱଳ ପରମ୍ପରା ଉପରେ ଗବେଷଣା ଓ ଗୀତି କବିତା ରଚନା କରିବା ଥିଲା ତାଙ୍କର ନିଶା । ୧୯୬୨ ମସିହାରେ ସେ ତାଙ୍କ ଜନ୍ମପୀଠର ସୁର ଓ ନୃତ୍ୟ ଉପରେ ତାଙ୍କର ଗବେଷଣା ଓ ନିବନ୍ଧ ତାଙ୍କୁ ଆଣି ଦେଇଥିଲା ଜାତୀୟ ଏବଂ ଆନ୍ତର୍ଜାତୀୟ ପରିଚିତି ଏବଂ ସ୍ୱୀକୃତି । ସେ ଆଉ ପଛକୁ ଫେରି ଅନେଇ ନାହାନ୍ତି । ଛଉ ଏବଂ ବନ୍ଧନୃତ୍ୟ ଉପରେ ତାଙ୍କର ଗବେଷଣା, ଓ ସୃଜନାତ୍ମକ ପ୍ରତିଭା ତାଙ୍କୁ ଆଣିଦିଏ ପ୍ରସିଦ୍ଧ ମାର୍ଗ ପତ୍ରିକାର ଛଉ ନୃତ୍ୟ ବିଶେଷାଙ୍କର ସଂପାଦନା କରିବାର ଦାୟିତ୍ୱ । ସେ ପରିଶେଷରେ ଯୋଗଦିଅନ୍ତି କେନ୍ଦ୍ର ସଂଗୀତ ନାଟକ ଏକାଡେମୀରେ ।

ଜୀବନାନନ୍ଦ ବହୁ ପ୍ରତିଭାର ଅଧିକାରୀ । ଗୀତିକବିତା ରଚନା କରିଛନ୍ତି ଅସୁମାରି । ସେ ମଧ୍ୟରୁ ଅନେକ ବହୁ ବର୍ଷ ଧରି ଶ୍ରୋତାମାନଙ୍କର ସ୍ମୃତିରେ ସଜାଗ ହୋଇ ରହିଛି । ତାହା ହିଁ ତାଙ୍କର ସାଫଲ୍ୟ । କବିତା ଲେଖନ୍ତି । ସୂର୍ଯ୍ୟ ମୋର ନୁହେଁ ପ୍ରତିଦ୍ୱନ୍ଦୀ କବିତା ପାଇଁ ସେ ପ୍ରଶଂସା ଲାଭ କରିଛନ୍ତି । ଇଂରାଜୀରେ ଲେଖନ୍ତି world of other faces, Indian mask living dolls ସେମାନଙ୍କ ମଧ୍ୟରେ ଅନ୍ୟତମ ।

୧୯୭୫ ମସିହା ତାଙ୍କ ପାଇଁ ଥିଲା ଏକ ମାଇଲ ଖୁଣ୍ଟ । ଏହି ବର୍ଷ ଓଡ଼ିଶୀ ସଙ୍ଗୀତ ଉପରେ ମୌଳିକ ଗବେଷଣା ଓ ନୂତନ ଆଲୋକପାତ ତାଙ୍କୁ ଏ ଜାତି ପାଇଁ ଚିରସ୍ମରଣୀୟ କରିଦେଲା । ସେ ଥିଲେ ଜଣେ ପ୍ରାମାଣିକ ଚଳଚ୍ଚିତ୍ର ନିର୍ଦ୍ଦେଶକ । ଓଡ଼ିଶାର କଳା, ସଂସ୍କୃତି, ଐତିହ୍ୟକୁ ଆନ୍ତର୍ଜାତିକ ସ୍ତରରେ ପରିଚୟ କରାଇବା ପାଇଁ ସେ ପ୍ରସ୍ତୁତ କରିଥିଲେ ଅନେକ ଗୁଡ଼ିଏ ପ୍ରାମାଣିକ ଚଳଚ୍ଚିତ୍ର । ଲୋର୍କାଙ୍କ କବିତାଗୁଡ଼ିକୁ ସେ କେବଳ ଅନୁବାଦ କରି ନଥିଲେ । ଆବୃତ୍ତି ମଧ୍ୟ ଦରି ପାରୁଥିଲେ ସୁନ୍ଦର ଭାବରେ । ଦିଲ୍ଲୀରେ ଏଇ ଲୋକଙ୍କ ସଂପର୍କରେ ଆଲୋଚନା ହେଉ ହେଉ ଅନେକ ସନ୍ଧ୍ୟା ଅତିକ୍ରାନ୍ତ ହୋଇ ବିଳମ୍ବିତ ପ୍ରହରରେ ପରିଣତ ହୋଇଛି ।

ଏଇଭଳି ଏକ ପ୍ରତିଭାଶାଳୀ ମଣିଷଟିଏ ହଠାତ୍ ଇମିତି ହଜିଯିବ ଏକଥା ତାଙ୍କର ଅଗଣିତ ବନ୍ଧୁଙ୍କୁ ସ୍ତବ୍ଧ, ଚକିତ କରି ଦେଇଛି ଏବଂ ଏହି ପ୍ରକାର ରାଜକୀୟ ମୃତ୍ୟୁ ଅନେକଙ୍କୁ ଈର୍ଷାତୁର କରିଛି । ମୃତ୍ୟୁ କେତେ ଧୀରେ, ବିନା ଶବ୍ଦରେ , ବିନା ଯନ୍ତ୍ରଣାରେ ଆସିଛି ଏବଂ ଧୀରେ ଧୀରେ କୋଳାଗ୍ରତ କରି ନେଇଛି ଏଇ ପ୍ରତିଭାକୁ ।

କିନ୍ତୁ ମହାକାଳ ବକ୍ଷରେ ସେ ଦୁକୁ ଦୁକୁ ହୋଇ ଜଳିବେ ବହୁକାଳ, ମଣିଷର ସ୍ମୃତିରେ । ଜୀବନର ବହୁ ବିଭାବକୁ ସେ ଛୁଇଁ ଯାଇଛନ୍ତି ଏବଂ ରଖିଯାଇଛନ୍ତି ଆପଣାର ସ୍ୱାକ୍ଷର ବହୁକାଳ ପାଇଁ ।



# ମଣିଷ ରୂପରେ ଦେବତାଟିଏ

ଦେବତାମାନଙ୍କୁ ମୁଁ ଦେଖିନାହିଁ । ଖୁବ୍ ଭଲ ମଣିଷଟିକୁ ଲୋକେ ଦେବତା ବୋଲି କହନ୍ତି । ଏଇ ମଣିଷଟି ପାଖରେ ପ୍ରତିଦିନ ଭିଡ଼ ଜମେ । ରୋଗୀମାନଙ୍କର, ଆର୍ତ୍ତମାନଙ୍କର, ଦୁସ୍ଥମାନଙ୍କର । ସେ ଡାକ୍ତର । ରୋଗୀ ଦେଖନ୍ତି । କିଏ ବଡ଼, କିଏ ସାନ କିଛି ବିଚାର କରନ୍ତି ନାହିଁ । ରୋଗୀ ହେଉଛି ରୋଗୀ । ତାର ସେବା କରିବା ହେଉଛି ମଣିଷର, ଡାକ୍ତରର ଧର୍ମ । ସେ ରୋଗୀ ଦେଖନ୍ତି । ସେ କେତେ ବଡ଼ ଡାକ୍ତର ମୁଁ କହି ପାରିବି ନାହିଁ । ସେ କଥା ବିଚାର କରିବାର ବୟସ ବି ମୋର ହୋଇ ନ ଥିଲା । କିନ୍ତୁ ରୋଗୀ ଅଧା ଭଲ ହୋଇଯାଏ ତାଙ୍କର କଥାରେ, ତାଙ୍କର ବ୍ୟବହାରରେ । ରୋଗୀ ଆସେ ତାଙ୍କ ପାଖକୁ ବିଶ୍ୱାସରେ, ଭରସାରେ । ସେ ହାତ ଦେଲେ ଭଲ ହୋଇଯିବ ସବୁ ରୋଗ ।

୧୮୯୩ ମସିହା ନଭେମ୍ବର ମାସ ୧୦ ତାରିଖରେ ରେଢ଼ାଖୋଲରେ ତାଙ୍କର ଜନ୍ମ । ୧୯୪୩ ବେଳକୁ ମଧ ରେଢ଼ାଖୋଲ ଥିଲା ଅଗନାଅଗନି ବନସ୍ତର ଦେଶ । ଦିନ ଦିପହରରେ ରାସ୍ତା ଉପରେ ମହାବଳ ବାଘ ଦେଖିବାକୁ ମିଳିଛି । ବହୁବାର ରାଜପଥ ଅବରୁଦ୍ଧ କରି ଠିଆ ହୋଇ ଥିବା ହସ୍ତୀ ଯୂଥକୁ ଘଉଡ଼େଇ ନ ପାରି ବସ୍ ଫେରିଛି ସମ୍ବଲପୁରକୁ ବା ଅନୁଗୋଳକୁ । ତାର ୫୦ ବର୍ଷ ପୂର୍ବରୁ ରେଢ଼ାଖୋଲ କିପରି ଥିବ କଳ୍ପନା କରି ହେଉନାହିଁ । ତାଙ୍କର ପିତା ଦାଶରଥି ପୂଜାରୀ ରେଢ଼ାଖୋଲ ରାଜ ଦରବାରରେ ଦେବାନ ଥିଲେ । ପିଲାଦିନରୁ ଜନାର୍ଦ୍ଦନ ସବୁବେଳେ ଚିନ୍ତାମଗ୍ନ ଥିଲେ । ରେଢ଼ାଖୋଲ ହେଉଛି ପ୍ରସିଦ୍ଧ କବି ଓ ଭାବୁକ ଭୀମଭୋଇଙ୍କ ରାଜ୍ୟ ।

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ,
ସୁଖଦୁଃଖ ଦେଖୁ କେ ହୁ
ମୋ ଜୀବନ ପଛେ ନର୍କେପଡ଼ିଥାଉ
ଜଗତ ଉଦ୍ଧାର ହେଉ ।"

ମନେହୁଏ ରେଢ଼ାଖୋଲର ଘନ ଅରଣ୍ୟାନୀ ଭିତରେ ବହୁତ ଭାବୁକ, ଯୋଗୀ ଋଷି ରହିଥିଲେ । ଯେଉଁମାନେ ସଂସାରର ମୁକ୍ତି ପାଇଁ ଚିନ୍ତା କରୁଥିଲେ ବା ସାଧନାରେ ରତ ଥିଲେ । କୁହାଯାଏ ମାତ୍ର ଆଠ ନଅ ବର୍ଷ ବୟସରେ କୌଣସି ସିଦ୍ଧ ଯୋଗୀ ପୁରୁଷଙ୍କର ସାକ୍ଷାତ ସେ ପାଇଥିଲେ । ଯୋଗାଭ୍ୟାସ ତାଙ୍କର ସେଇଦିନୁ ଆରମ୍ଭ ହୋଇଯାଇ ଥିଲା । ସ୍କୁଲରେ ପଢୁଥିବା ସମୟରେ ଅନେକ ନୀତିବାକ୍ୟ ସମ୍ବଳିତ ଧର୍ମ ପୁସ୍ତକ ସେ ରଚନା କରିଥିଲେ ।

ସେ ଡାକ୍ତର । ଡାକ୍ତରୀ ତାଙ୍କର ପେଶା, ନିଶା ଓ ଧର୍ମ, ଆଗରେ ଥୁଆ ହୋଇଛି ପୁରୁଣା କାଳିଆ ଦୁଆତ ଦାନୀ , କାଠର । ତାରି ଉପରେ ରୋଗୀ ପରୀକ୍ଷା ପରେ ଥୋଇ ଯାଉଛି କିଛି ଅର୍ଥ । ସେ ଅର୍ଥକୁ ସେ ଅନାଉ ବି ନାହାନ୍ତି । ଦୁଇଅଣା, ଚାରିଅଣା, ଅଧୁଲିଟିଏ ବା ଟଙ୍କାଟିଏ । ତା ଠାରୁ ବେଶୀ କିଏ ଦେବା ମୁଁ ଦେଖିନାହିଁ । ରୋଗୀ ଦେଖା ସରିବ ମଧ୍ୟାହ୍ନର ବହୁ ସମୟ ପରେ । ମୁଠା ମୁଠା କରି ସେ ତାକୁ ତିନି ଭାଗ କରି ଦେବେ । କେଉଁଥିରେ କମ ହେଲା, କେଉଁଥିରେ ବେଶୀ ରହିଲା ସେ ଅନାନ୍ତି ନାହିଁ । ଗୋଟିଏ ଯିବ ଧର୍ମ କାର୍ଯ୍ୟକୁ, ଗୋଟିଏ ଯିବ ସାମାଜିକ କଲ୍ୟାଣ ପାଇଁ ଆଉ ତୃତୀୟଟି ଯିବ ଘରକୁ ନିଜର ଅନ୍ନ ସଂସ୍ଥାନ ପାଇଁ । କେତେଥର ଯାଇଛି ତାଙ୍କ ପାଖକୁ ଏକାକୀ, ଟିଉସନ୍ ସାର୍ ଚିତ୍ରସେନ ପାଢ଼ୀଙ୍କ ସଙ୍ଗରେ, କେବେ ଦାଦା ବିରଞ୍ଚିନାରାୟଣଙ୍କ ସାଙ୍ଗରେ । ସେଇ ଦୃଶ୍ୟ, ସେଇ ଭାଷା, ସେଇ ସ୍ନେହ ବୋଳା, ଆଶ୍ୱାସନା ଭରା କଥା ।

ଲୋକେ ତାଁକୁ "ଡାକ୍ତର ବାପା" ବୋଲି ଡାକନ୍ତି ।

୧୯୧୨ ମସିହାରେ ସମ୍ବଲପୁର ଜିଲ୍ଲା ସ୍କୁଲରୁ ମାଟ୍ରିକୁଲେଶନ ପାଶ୍ କରି ସେ ଚାଲିଲେ ଡାକ୍ତର ହେବା ଆଶାରେ । କଲିକତା, ହଂକଂ , ଜାପାନ୍, ଆମେରିକା ବହୁ ରାଜ୍ୟ ବୁଲିଲେ ଡାକ୍ତର ହେବା ପାଇଁ । କଣ ପାଇଁ ସେ ସବୁ ସ୍ଥାନରେ ସେ ପଢ଼ି ପାରିଲେ ନାହିଁ କହି ପାରିବି ନାହିଁ । କିନ୍ତୁ ବୁଢ଼ା ମାନଙ୍କଠାରୁ ଶୁଣିଛି ଯେ କୌଣସି ଏକ ଛୋଟ କଥାରେ ସେ ସୁଯୋଗ ହରାଇ ବସିଲେ ସେ । କିନ୍ତୁ ଦୁରାରୋଧ ଥିଲା ସେ ଯାତ୍ରା । ପ୍ରତିକୂଳ ପରିସ୍ଥିତିରେ ସମୁଦ୍ରରେ ଯାତ୍ରା । ତଥାପି ତାଙ୍କର ଅଭିଳାଷ ପୂରଣ ହୋଇ ପାରିଲା ନାହିଁ । ସେ କଲିକତାରୁ ହିଁ ଅବଶେଷରେ ଡାକ୍ତରୀ ପାଶ୍ କଲେ । ପାଶ କରି ସ ସରକାରୀ ଚାକିରି କଲେ ନାହିଁ । କରି ପାରିଥାନ୍ତେ ସହଜରେ । କିନ୍ତୁ ସେ ବନ୍ଧନ ତାଙ୍କୁ ସୁହାଇବ ନାହିଁ । ତେଣୁ ସେ ଘରୋଇ ଚିକିତ୍ସକ ହେବାକୁ ସ୍ଥିର କଲେ ।

ରୋଗୀ ଫିସ୍ ଦିଏ କି ଦିଏ ନାହିଁ ସେ ଅନାନ୍ତି ନାହିଁ । ଓଲଟି ଦରିଦ୍ର ରୋଗୀଟିଏ ଦେଖିଲେ ପାଖରେ ଥିବା ଔଷଧ ଦେବା ଦେଖିଚି । ଦେଖିଚି ଆଗରେ ଥିବା ଫିସ୍ ପଇସାରୁ ମୁଠାଏ ବାହାର କରି ତା ହାତରେ ଦେବା ଚିକିତ୍ସା ପାଇଁ, ଘରକୁ ଫେରିବା ପାଇଁ ବାଟ ଖର୍ଚ୍ଚ ପାଇଁ । ଡାକ୍ତର ନୁହଁନ୍ତି ତ ସେ କରୁଣାର ଅବତାର ।

ଏହାର କାରଣ ସଂସାର ଭିତରେ ରହିଥିଲେ ମଧ୍ୟ ତାଙ୍କର ଦୃଷ୍ଟି ଥିଲା ଉର୍ଦ୍ଧ୍ୱରେ । ଅନେକ ଉର୍ଦ୍ଧ୍ୱରେ । ଏକ ଶାନ୍ତ ଶୀତଳ ସୌମ୍ୟ ବୈରାଗ୍ୟ ତାଙ୍କ ମୁଖମଣ୍ଡଳରେ ପ୍ରତିଭାତ ହେଉଥିଲା । ଯେପରି ମନେ ହେଉଥିଲା ସେ ଅଛନ୍ତି କିନ୍ତୁ ନାହାନ୍ତି । ପ୍ରଶାନ୍ତ ନିର୍ଲିପ୍ତତା ତାଙ୍କର ଶରୀରରେ ପ୍ରତିଭାତ ହେଉଥିଲା । ସମ୍ବଲପୁର ସହର ମହାନଦୀ କୂଳରେ "ଗୀତାଗୁଡ଼ି' ତାଙ୍କର ଧର୍ମପୀଠ ଥିଲା । ଏହାର ପ୍ରତିଷ୍ଠାତା ଥିଲେ ସେ । ଧର୍ମକୁ ଯେପରି ଅନେକେ ଆପଣାର କୁକର୍ମର ଢାଲ ପରି ବ୍ୟବହାର କରନ୍ତି, ତାଙ୍କର ଧର୍ମ ତାହା ନ ଥିଲା । ଯାହା ଧାରଣ କରେ ତାହାହିଁ ଥିଲା ତାଙ୍କର ଧର୍ମ । ତାଙ୍କର ଅନ୍ୟତମ ପୀଠ ଥିଲା ବଉଁଶରା ଗ୍ରାମ ନିକଟରେ ଅବସ୍ଥିତ "କଲ୍ୟାଣ

ଆଶ୍ରମ'' । ମାସରେ ତିନିଦିନ ସେ ସେଇଠି ରହିବେ - ତ୍ରୟୋଦଶୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ, ଭଗବତ୍ ଚିନ୍ତାରେ ନିମଜ୍ଜିତ କରି ରଖିବେ ନିଜକୁ ସେଇ ତିନିଦିନ । ବାକିଦିନ ହେଉଛି ନରନାରାୟଣ ସେବା ।

୧୯୩୬ ମସିହାରେ ସେ ଚାଲିଲେ ହିମାଳୟ ଯାତ୍ରାରେ । ଗଙ୍ଗୋତ୍ରୀ, ଯମୁନୋତ୍ରୀ, କେଦାରନାଥ, ବଦ୍ରିନାଥ, ଉତ୍ତରାଖଣ୍ଡ, କୈଳାସ ଓ ମାନସରୋବର ଦର୍ଶନ କରି ଫେରିଲେ । ସେତେବେଳେ ଯାତାୟତର କୌଣସି ସୁବିଧା ନ ଥିଲା । ସମ୍ବଲପୁରର ଗ୍ରୀଷ୍ମରେ ବଢ଼ିଥିବା ଜନାର୍ଦ୍ଦନ ପୂଜାରୀ ହିମାଳୟର ବରଫାବୃତ ଭୂଖଣ୍ଡରେ କମ୍ବଳଧରି ଚାଲିଲେ ଅସୀମ ସାହସ ଓ ନିର୍ଭୀକତାର ସହିତ ।

କର୍ମ ହିଁ ମଣିଷର ମାନଦଣ୍ଡ । କର୍ମରେ ହିଁ ସେ ଜୀଇଁରହେ ।

୧୯୬୧ ମସିହା ଡିସେମ୍ବର ମାସ ୫ ତାରିଖ ଥିଲା ସମ୍ବଲପୁରବାସୀଙ୍କ ପାଇଁ ଏକ ଅଶୁଭର ଦିନ । ସେଇଦିନ ଏହି ମହାପୁରୁଷଙ୍କର ମର୍ତ୍ତ୍ୟବାସ ସାଙ୍ଗ ହୋଇଗଲା । ସେ ଯାତ୍ରା କଲେ, ମହାଯାତ୍ରାରେ । ରଖିଗଲେ ତ୍ୟାଗ ଓ ନିଷ୍ଠାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ପରପୀଢ଼ି ପାଇଁ, ତାଙ୍କର ବିୟୋଗରେ ଓଡ଼ିଶାବାସୀ ହରାଇ ବସିଲେ ଏକ ମଣିଷକୁ, ଯାହାଙ୍କୁ ଲୋକେ ଦେବତା ବୋଲି ଡାକୁଥିଲେ ।

ସେ ବିସ୍ମୃତ ହୋଇଯିବେ ଇତିହାସ ଗର୍ଭରେ । କିନ୍ତୁ ଯେ ପର୍ଯ୍ୟନ୍ତ ରୋଗ ଥିବ, ଆର୍ତ୍ତ ମଣିଷର ଚିତ୍କାର ଶୁଭୁଥିବ ସେ ପର୍ଯ୍ୟନ୍ତ ସେ ଉଜ୍ଜ୍ୱଳି ରହିବେ ମହାକାଳ ବକ୍ଷରେ ।



# ପ୍ରତିଭାର ଅବସାନ

ଗଲା ମାସ ୨୯ ଜୁନ୍ ୧୯୬୬ ମସିହାର ଉଷା ଆଉ ସେ ପ୍ରତିଭାକୁ ଦେଖି ପାରିଲା ନାହିଁ । ମଣିଷର ସାମଗ୍ରିକ ଚିନ୍ତାଧାରରେ ହଠାତ୍ ଏକ ଶୂନ୍ୟତା ଦେଖାଗଲା । ଯାହା ପୂରଣ ହେବାପାଇଁ ବହୁ ଯୁଗ ଲାଗିଯିବ । ରାତିରେ ଅଧ୍ୟାପକ ଦାମୋଦର ଧର୍ମାନନ୍ଦ କୋସ୍ୱାମୀ ପ୍ରତିଦିନ ପରି ଶୋଇବାକୁ ଯାଇଥିଲେ । ଡାକ୍ତରମାନେ ତାଙ୍କୁ ପରୀକ୍ଷା କରି କହିଥିଲେ ସବୁ ଠିକ୍ ଅଛି । କିନ୍ତୁ ସକାଳୁ ସେ ଆଉ ଉଠିଲେ ନାହିଁ । ସେହି ନିଦ୍ରା ହିଁ ମହାନିଦ୍ରାରେ ପରିଣତ ହୋଇଗଲା । ଆର୍ଥାଇଟ୍ରିସ ବା ଆଣ୍ଠୁଗଣ୍ଠି ବାତରେ ସେ ପୀଡ଼ିତ ଥିଲେ । କିନ୍ତୁ ତାଙ୍କର ଅବସ୍ଥା ଇମିତି କିଛି ଗୁରୁତର ନ ଥିଲା । ହଠାତ୍ ମାଇଓକାର୍ଡିଆଲ ଇନଫାରେକ୍ସନ (ଏକ ଗୁରୁତର ହୃଦ୍‌ରୋଗ)ରେ ଆକ୍ରାନ୍ତ ହୋଇଥିଲେ ବୋଲି ପରେ ଜଣାପଡ଼ିଲା । ୧୯୦୭ ଜୁଲାଇ ୩୧ ତାରିଖରେ ଯେଉଁ ଜୀବନ ପ୍ରଦୀପ ଜଳି ଜ୍ଞାନର ଗନ୍ତାଘରକୁ ଆଲୋକିତ କରିବାକୁ ଆରମ୍ଭ କରିଥିଲା ସେଇ ପ୍ରଦୀପ ନିର୍ବାପିତ ହୋଇଗଲା ଚିରଦିନ ପାଇଁ । କିନ୍ତୁ ସତରେ କଣ ତାହା ନିର୍ବାପିତ ହୋଇଗଲା ନା ଆଜିଠାରୁ ବହୁଯୁଗ ପର୍ଯ୍ୟନ୍ତ ତାଙ୍କର ଗବେଷଣା, ତାଙ୍କର ରଚନାବଳୀ, ତାଙ୍କର ଅନୁସନ୍ଧିତ୍ସୁ ଦୃଷ୍ଟିକୋଣ ପୃଥିବୀର ବହୁ ଗବେଷକଙ୍କୁ ଆଲୋକ ପ୍ରଦାନ କରି ଚାଲିଥିବ ଜ୍ଞାନର ଅନ୍ୱେଷଣରେ ?

ଅଧ୍ୟାପକ କୋସାମ୍ବୀ ଜନ୍ମ ହୋଇଥିଲେ ଗୋଆରେ । ପର୍ତ୍ତୁଗୀଜ ଅଧୀନରେ ଥିଲା ଗୋଆ । ମୁକ୍ତି ପାଇଁ ତୃଷ୍ଣା ସମସ୍ତଙ୍କୁ ଘାରିଥିଲା । କୋସ୍ୱାମ ସେଥିରୁ ମୁକ୍ତ ନ ଥିଲେ । ତାଙ୍କର ପିତା ଧର୍ମାନନ୍ଦ କୋସ୍ୱାମ ଜଣେ ବୌଦ୍ଧଦର୍ଶନର ପ୍ରଖ୍ୟାତ ପଣ୍ଡିତ ଥିଲେ । ବିଦିତ ଥିଲେ । ବୌଦ୍ଧ ଦର୍ଶନର ତୃପ୍ତିହୀନ ଜିଜ୍ଞାସା, ପରିଭ୍ରମଣ ପାଇଁ ଅହେତୁକ ଆଗ୍ରହ ଏବଂ ଜ୍ଞାନ ଆହରଣ ପାଇଁ ଦୁରନ୍ତ ପିପାସା ବସା ବାନ୍ଧିଥିଲା କୋସାମ୍ବୀଙ୍କ ମନରେ ପିଲାଦିନରୁ । ସୁରଟରେ କିଛି ସ୍କୁଲ ପାଠ ପରେ କୋସ୍ୱାମ ଯାଆନ୍ତି ବିଶ୍ୱ ପ୍ରସିଦ୍ଧ ହାବାର୍ଡ ବିଶ୍ୱବିଦ୍ୟାଳୟର କେମ୍ବ୍ରିଜ୍ ଲାଟିନ ସ୍କୁଲକୁ । ବାପା ସେଇ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରନ୍ତି । ଆଠବର୍ଷ ପାଠପଢ଼ା ପରେ କୋସାମ୍ବୀ ଗଣିତ, ଇତିହାସ ଏବଂ ଭାଷା ବିଷୟ ନେଇ ସେଇ ବିଶ୍ୱବିଦ୍ୟାଳୟର ସ୍ନାତକ ହୁଅନ୍ତି ।

ଭାରତବର୍ଷକୁ ଫେରି ସେ କିଛିକାଳ ବନାରସ ବିଶ୍ୱବିଦ୍ୟାଳୟ ଓ ଆଲିଗଡ଼ ମୁସଲିମ୍ ବିଶ୍ୱ ବିଦ୍ୟାଳୟରେ ଅଧ୍ୟାପନା କରନ୍ତି । ଆମେରିକାରେ ଥିବା ସମୟରୁହିଁ ଆପଣାର ବୈଜ୍ଞାନିକ

ଓ ରେସନାଲ ଦୃଷ୍ଟିକୋଣର ସ୍ୱାଭାବିକ ପରିଣତି ଭାବରେ ସେ ମାର୍କ୍ସବାଦୀ ହୋଇ ସାରିଥିଲେ । କିନ୍ତୁ ମାର୍କ୍ସବାଦ ତାଙ୍କ ପାଇଁ ଏକ ତଗମା ନଥିଲା ଏହା ଥିଲା ସାମାଜିକ ବିକାଶର ଇତିହାସ ଅନୁଧ୍ୟାନ କରିବା ପାଇଁ ସହାୟକ ଏକ ଦର୍ଶନ । ଅନେକ ସ୍ଥଳରେ ଦେଖାଯାଇଛି ଯେ, ଅଧ୍ୟାପକ କୋସାମ୍ବୀ ଆପଣାର ନିଜସ୍ୱ ସୃଜନଶୀଳ ଅନୁସନ୍ଧାନର ଧାରଣାକୁ ଅନୁସରଣ କରି ମାର୍କ୍ସବାଦୀ ଗଡ୍ଡାଳିକା ପ୍ରବାହରୁ ସେ ସଂପୂର୍ଣ୍ଣ ଭିନ୍ନ ସ୍ୱାଦର ମତ ପ୍ରଦାନ କରିଛନ୍ତି ।

୧୯୩୨ ମସିହାରେ ସେ ପୁଣେ ସହରର ପ୍ରସିଦ୍ଧ ଫର୍ଗୁସନ କଲେଜରେ ଗଣିତ ଅଧ୍ୟାପକ ଭାବରେ ଯୋଗ ଦିଅନ୍ତି । ତାଙ୍କ ବାପା ଏହି କଲେଜରେ ଅନେକ ଦିନ ଧରି ଅଧ୍ୟାପନା କରୁଥିଲେ ଏବଂ ପଶ୍ଚିମ ଭାରତବର୍ଷରେ ବୌଦ୍ଧ ଗବେଷଣାର ପ୍ରଥମ ପାହାଚ ପକାଇଥିଲେ । ଏଇ କଲେଜରେ ରହଣୀ ସମୟରେ କୋସ୍ୱାମ ଆପଣାକୁ ଜଣେ ପ୍ରତିଭାଶାଳୀ ଗବେଷକ ଭାବରେ ପ୍ରତିଷ୍ଠିତ କରିପାରନ୍ତି ।

ଗଣିତ ଗବେଷଣା ଭିତରୁ ସେ ଯେଉଁ ପଦ୍ଧତିରେ ବ୍ୟୁତ୍ପତ୍ତି ଲାଭ କଲେ, ସେହି ପଦ୍ଧତିକୁ ସେ ବ୍ୟବହାର କଲେ ମଣିଷର ସାମୂହିକ ଚିନ୍ତାଧାରା ଓ ଦର୍ଶନର ଗବେଷଣା ପାଇଁ । ନୁମିଷମାଟିକ୍ ବା ମୁଦ୍ରା ସଂପର୍କୀୟ ଗବେଷଣାରେ ସେ ଆପଣାର ଷ୍ଟାଟିସ୍‌ଟିକାଲ ପଦ୍ଧତି ପ୍ରୟୋଗ କରି ଗବେଷଣା ଆରମ୍ଭ କଲେ । ଭାରତବର୍ଷର ବିଭିନ୍ନ ଅଞ୍ଚଳରୁ ସଂଗୃହୀତ ମୁଦ୍ରାଗୁଡ଼ିକୁ ସେ ସାବଧାନତାର ସହିତ ଗଭୀର ପରିଶ୍ରମ କରି ଓଜନ କରିବାର ଦେଖାଗଲା । କେଉଁ ସମୟରେ, କେଉଁ ପରିସ୍ଥିତିରେ ଏଗୁଡ଼ିକର ମୁଦ୍ରଣ ହୋଇଥିଲା ତା ଉପରେ ରତ ଡକ୍ଟର କୋସାମ୍ବୀଙ୍କ ଆଗରେ ଭାରତୀୟ ସଂସ୍କୃତି, ଐତିହ୍ୟର ବର୍ଣ୍ଣାଢ଼୍ୟ ମନୋରମ ଚିତ୍ର ଅନୁସନ୍ଧାନ ଉନ୍ମୋଚିତ ହେବାକୁ ଲାଗିଲା ।

ସେ ଫେରି ଗଲେ ଆପଣାର ସଂସ୍କୃତିର ଐତିହ୍ୟକୁ । ବେଦ ଓ ପୁରାଣର ନୂତନ ବୟାନ ତାଙ୍କ ପାଇଁ ଆଣିଦେଲା ନୂତନ ଦିଗନ୍ତ ବିସ୍ତାରୀ ଖ୍ୟାତି ।

ଗଣିତରୁ ସଂସ୍କୃତ । ଅଙ୍କରୁ ଇତିହାସ, କୋସାମ୍ବୀଙ୍କର ଜୀବନର ପଟ୍ଟ ପରିବର୍ତ୍ତନ ହୋଇଯାଉଛି । ସେ ଫର୍ଗୁସନ କଲେଜ ଛାଡ଼ିଲେ । କାରଣ ସେଠାରେ ତାଙ୍କର ଆଉ କୌଣସି କାର୍ଯ୍ୟ ନ ଥିଲା । ଗଣିତ ଭିତରେ ସେ ଆଉ ସୀମିତ ନ ଥିଲେ । ଟାଟା ଇନ୍‌ଷ୍ଟିଚ୍ୟୁଟ୍ ଅଫ ଫଣ୍ଡାମେଣ୍ଟାଲ ରିସର୍ଚ୍ଚରେ ଯୋଗଦେଲେ ସେ ୧୯୪୬ ମସିହାରେ ଏବଂ ସେଇଠି ରହିଗଲେ ବାରବର୍ଷ । ଏହି ସମୟ କାଳରେ ସେ ପ୍ରତିଦିନ ପୁନାରେ ଆପଣାର ଘରୁ ଯାଉଥିଲେ ବମ୍ବେ ଟ୍ରେନ୍‌ରେ । ଏହି ପଦବୀ ତାଙ୍କୁ ଆଣିଦେଲା ପୃଥିବୀର ବିଭିନ୍ନ ଦେଶର ଗବେଷକଙ୍କ ସହିତ ସାନ୍ନିଧ୍ୟ । ଆପଣାର ଗବେଷଣା ପାଇଁ ପର୍ଯ୍ୟାପ୍ତ ଅନୁଦାନ ପାଇବା ମଧ୍ୟ ତାଙ୍କ ପାଇଁ ସମ୍ଭବ ହେଲା ।

କିନ୍ତୁ ସ୍ୱାଧୀନଚେତା କୋସାମ୍ବୀ ଖୋଜୁଥିଲେ ସଂପୂର୍ଣ୍ଣ ସ୍ୱାଧୀନତା ଆପଣାର ଗବେଷଣା ପାଇଁ । ତାଙ୍କ ଶେଷ ବହି ହେଉଛି The Culture and Civilisation of Ancient India in Historical Outline. ଏହା ପୃଥିବୀର ବିଭିନ୍ନ ଭାଷାରେ ଅନୁଦିତ ହୋଇଛି, ମାନବୀୟ ସଭ୍ୟତାର ବିକାଶ ପାଇଁ ମୌଳିକ ଉଦ୍ୟୋଗ ଉପରେ ତାଙ୍କର ଆଲୋକପାତ ତାଙ୍କୁ ଆଣିଦେଲା ଆନ୍ତର୍ଜାତିକ ସ୍ୱୀକୃତି ।

ତାଙ୍କର କାର୍ଯ୍ୟ ସମ୍ପ୍ରସାରିତ ହେଲା । ସେ ଇତିହାସ ଓ ସଂସ୍କୃତିର ମାର୍କ୍ସବାଦୀ ବୟାନ ଓ ବିଶ୍ଳେଷଣ କରିଛନ୍ତି । ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର କଷଟିରେ ସେ ନିରୀକ୍ଷା କରିଛନ୍ତି ଇତିହାସ, ସଭ୍ୟତା ଓ ସଂସ୍କୃତିକୁ । ପୃଥିବୀରେ ଶାନ୍ତି ପ୍ରତିଷ୍ଠା ନ ହେଲେ ସବୁ ଗବେଷଣା, ସବୁ ସଂସ୍କୃତି ଧ୍ୱଂସ ପାଇଯିବ । ତାହା ହେବ ମୂଲ୍ୟହୀନ । ସେଇ ଯୋଗୁଁ କୋସାମ୍ବୀ ବିଶ୍ୱଶାନ୍ତି ଆନ୍ଦୋଳନରେ ଯୋଗ ଦିଅନ୍ତି । ଏଇ ପରିପ୍ରେକ୍ଷୀରେ ତାଙ୍କ ସହିତ ସାକ୍ଷାତ ହୋଇଛି ବହୁବାର । ଓଡ଼ିଶାର ଇତିହାସ, ସଂସ୍କୃତି ପ୍ରତି ତାଙ୍କର ଥିଲା ଅଗାଧ ଆଗ୍ରହ । ଦେଖାହେଲେ ସେ ପଚାରନ୍ତି ଓଡ଼ିଶା ବିଷୟରେ । ମୋର ଇତିହାସର ଜ୍ଞାନ ପ୍ରାଥମିକ । ତଥାପି ସେ ପିଲାଙ୍କ ଭଳି ନୋଟ କରିଯାଆନ୍ତି, ଯେଉଁ ବକ୍ତବ୍ୟ ତାଙ୍କ ମନକୁ ପାଇଲା । ପରବର୍ତ୍ତୀ ଦେଖାରେ ସେ ପୁଣି ପଚାରନ୍ତି ସେ ବିଷୟରେ ବିଶ୍ଳେଷଣ ।

ସେ ମାର୍କ୍ସବାଦୀ ଥିଲେ । କିନ୍ତୁ ମାର୍କ୍ସବାଦ ତାଙ୍କ ପାଇଁ ଏକ ଡଗ୍‌ମା ନ ଥିଲା । ଆଧୁନିକ ଗବେଷଣା ଫଳରେ ଗଢ଼ି ଉଠୁଥିବା ନୂତନ ବୟାନକୁ ସେ ଉପସ୍ଥାପିତ କରୁଥିଲେ ନିର୍ଭୀକତାର ସହିତ । ମାର୍କ୍ସ କଣ ସବୁ କଥା ଜାଣିଥିଲେ ? ପୃଥିବୀରେ ଅନେକ ପରିବର୍ତ୍ତନ ଘଟି ଯାଇଛି । ମାର୍କ୍ସ ସମାଜ ବିଶ୍ଳେଷଣର ଧାରା ଦେଇ ଯାଉଛନ୍ତି । କିନ୍ତ ତାହାର ପରିବର୍ତ୍ତନ ଘଟିବ ନୂତନ ପରିପ୍ରେକ୍ଷୀରେ । ସେଇ ହେବ ସୃଜନଶୀଳ ମାର୍କ୍ସବାଦ । ଏହି ଥିଲା ତାଙ୍କର ମତ । ତାହାକୁ ସେ ନିର୍ଭୀକ ଭାବରେ ଉପସ୍ଥାପିତ କରିଯାଇଛନ୍ତି ।

ତାଙ୍କୁ ଅନେକ ସମୟରେ କଠୋର ଓ ଅସହିଷ୍ଣୁ ହେବା ଦେଖାଯାଇଛି । ଉତ୍ସବ, ଉଦ୍‌ଘାଟନ ଇତ୍ୟାଦି ବାହ୍ୟ ଆଡ଼ମ୍ବରର ସେ ଘୋର ବିରୋଧୀ ଥିଲେ । ଏଥିରେ ସମୟ ନଷ୍ଟ କରିବାକୁ ତାଙ୍କ ର ସମୟ ନ ଥିଲା । ଗତାନୁଗତିକ ପନ୍ଥାରେ ଗଡ୍ଡାଳିକା ପ୍ରବାହରେ ସେ ଆଦୌ ବିଶ୍ୱାସ କରୁ ନ ଥିଲେ ।

ବ୍ୟକ୍ତିଗତ ଜୀବନରେ ସେ ପିଲାଳିଆ ଥିଲେ । କାର୍ଯ୍ୟର କ୍ଳାନ୍ତି ଅପନୋଦନ ପାଇଁ ତାଙ୍କର ମୁହଁରୁ ଝରୁଥିଲା ହସ ଏବଂ ହ୍ୟୁମର । ବନ୍ଧୁମାନଙ୍କ ପାଇଁ ସେ ଥିଲେ ଉଦାର । ଏଇ ଉଦାରତା ତାଙ୍କର ଏକ ଦୁର୍ବଳତା ।

ଚାଲ ଆଜି ସନ୍ଧ୍ୟାରେ ଖାଇବାକୁ ଯିବା । ସେ ସବୁ ଖର୍ଚ୍ଚ ବହନ କରିବେ । ଖାଇଲା ବେଳେ ହସ ମଉଜିଆ କଥାରେ ପେଟ ଫାଟିଯିବ । କିନ୍ତୁ ଖାଇବା ସରିଲା ପରେ ସେ ତୁରନ୍ତ ଫେରି ଯାଉଥିଲେ ଆପଣାର ଗାମ୍ଭୀର୍ଯ୍ୟ ଭିତରକୁ ଗବେଷଣା ଭିତରକୁ ।

ଅଧୁନାତନ ଭାରତବର୍ଷର ଏହି ମହାନ ଗବେଷକ ଆଉ ନାହାନ୍ତି । ବୈଜ୍ଞାନିକ ଏବଂ ନିର୍ଭୀକ ଚିନ୍ତାଧାରା ତାଙ୍କୁ ଅମଳିନ ରଖିବ ଚିରକାଳ ।



# ଇତିହାସ ନିର୍ମାତାର ବିଦାୟ

**କା**ର୍ଲମାର୍କ୍ସ ତାଙ୍କର ବିଶ୍ୱପ୍ରସିଦ୍ଧ ପୁସ୍ତକ 'ଡ୍ୟାସ କ୍ୟାପିଟାଲ' ଲେଖିଲା ବେଳେ ଲେଖିଥିଲେ ଯେ ଜର୍ମାନୀ ଦେଶରେ ପ୍ରଥମେ ସାମ୍ୟବାଦୀ ବିପ୍ଳବ ସଫଳ ହେବ । ଏହି ଦେଶର ଶିଳ୍ପରେ ଅଗ୍ରଗତି ଏବଂ ବିଶାଳ ଶ୍ରେଣୀ ସଚେତନ ଶ୍ରମଜୀବି ମଣିଷକୁ ଦେଖି ସେ ଏହି କଳ୍ପନା କରିଥିଲେ । କିନ୍ତୁ ଏହି ଦେଶରେ ହିଁ ଫାସିବାଦର ଅଭ୍ୟୁଦୟ ହେଲା, ଇତିହାସର ବିଚିତ୍ର ଧାରାରେ । ରୁଷ ଦେଶ ଥିଲା ମୁଖ୍ୟତଃ ଏକ କୃଷିପ୍ରଧାନ ଏବଂ ନିରକ୍ଷର ଦେଶ ଯଦିଓ ଏହି ଦେଶରେ ଶିଳ୍ପ କ୍ଷେତ୍ରରେ ଅଗ୍ରଗତି ଫଳରେ ଏକ ଶ୍ରମଜୀବି ଶ୍ରେଣୀ ବୃଦ୍ଧି ପାଇଥିଲା । ଏହି ଶ୍ରମଜୀବି ଶ୍ରେଣୀ, ବୁଦ୍ଧିଜୀବି ଏବଂ କୃଷକ ମାନଙ୍କୁ ଏକତ୍ରିତ କରି ଲେନିନ " ପୁଞ୍ଜିବାଦୀ ସଭ୍ୟତାର ଦୁର୍ବଳତମ ଶିକୁଳି" ରୁଷରେ ସମାଜବାଦୀ ବିପ୍ଳବ ସଂଗଠିତ କଲେ ଏବଂ ଏହି ଦେଶରେ ବିଶ୍ୱର ପ୍ରଥମ ଶ୍ରମଜୀବି ମାନଙ୍କର ରାଷ୍ଟ୍ର ପ୍ରତିଷ୍ଠା କଲେ । ଲେନିନବାଦକୁ ତେଣୁ ସାମ୍ୟବାଦୀମାନେ "ସୃଜନଶୀଳ ମାର୍କ୍ସବାଦ" ବୋଲି ଆଖ୍ୟା ଦେଲେ । ତେଣେ ଚୀନ୍ ଦେଶ ଥିଲା ଲୋକସଂଖ୍ୟା ଦୃଷ୍ଟିରୁ ପୃଥିବୀର ସବୁଠାରୁ ବୃହତ ରାଷ୍ଟ୍ର । ଅଫିମ ଖାଇ ଏଇ ଦେଶ ଶୋଇ ପଡ଼ିଥିଲା । ସାମ୍ରାଜ୍ୟବାଦୀ-ସାମନ୍ତବାଦୀ ମାନଙ୍କର ଚକ୍ରାନ୍ତରେ । ଦକ୍ଷିଣ ଚୀନରେ ଶିଳ୍ପ ବିକାଶ ହେତୁ ଗଢ଼ି ଉଠିଥିଲା ଶିଳ୍ପାଞ୍ଚଳ ଏବଂ ତହିଁର ଶ୍ରମଜୀବି ଜନତା କଠୋର ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମରେ ଶାଣିତ ହୋଇଥିଲେ । ଚୀନ୍ ଦେଶ ହେଉଛି ପୃଥିବୀର ଆଦ୍ୟ ସଭ୍ୟତାର ଅନ୍ୟତମ ଭୂମି । ଏହି ଦେଶରେ କନଫୁସିଅସ୍ ପ୍ରଭୃତି ଦାର୍ଶନିକ ଜନ୍ମ ଗ୍ରହଣ କରିଥିଲେ । ପୃଥିବୀର ପ୍ରଥମ ମୁଦ୍ରଣ ଯନ୍ତ୍ର ଏହି ଦେଶରୁ ହିଁ ଜନ୍ମ ଲାଭ କରିଥିଲା । ଏହି ଦେଶର ବହୁ ଯୁବକ ଯୁବତୀ ଜନ୍ମମାଟି ଛାଡ଼ିଥିଲେ ଶିକ୍ଷା ଓ କାର୍ଯ୍ୟପାଇଁ । ବିଦେଶରେ ବିଶେଷତଃ ଫ୍ରାନ୍ସରେ ଏହି ମାନଙ୍କ ମଧ୍ୟରୁ ଅନେକ ସମାଜବାଦୀ ଚିନ୍ତାପ୍ରତି ଆକୃଷ୍ଟ ହୋଇଥିଲେ । ମାଓ-ସେ-ତୁଂ ଏହି ଦେଶର କୃଷକ, ବୁଦ୍ଧିଜୀବି ଏବଂ ଶ୍ରମିକମାନଙ୍କୁ ଏକତ୍ରିତ କରି ୧୯୪୯ ମସିହାରେ ସମାଜବାଦୀ ରାଷ୍ଟ୍ର ପ୍ରତିଷ୍ଠା କରିବା ପାଇଁ ସକ୍ଷମ ହୋଇଥିଲେ । ତାହା ପୃଥିବୀକୁ ଚକିତ କରିଥିଲା । ମାଓ-ସେ-ତୁଂଙ୍କର ଦର୍ଶନ ଏବଂ ରଣକୌଶଳକୁ ତେଣୁ " ଏସିଆଟିକ୍ ମାର୍କ୍ସବାଦ " ବୋଲି ଅଭିହିତ କରାଯାଇଥିଲା । ଅବଶ୍ୟ ଏହା ପୂର୍ବରୁ ପ୍ରଧାବିତ ଶତ୍ରୁ ସୈନ୍ୟକୁ ଅନୁଧାବନ କରି ବିଜୟ ହାସଲ କରିଥିବା ସୋଭିଏଟ ସୈନ୍ୟ ବାହିନୀ ଏବଂ ପୂର୍ବ ଇଉରୋପୀୟ ଦେଶ ମାନଙ୍କର ସମାଜବାଦୀ ଶକ୍ତି ମାନଙ୍କର ମିଳିତ ଉଦ୍ୟମରେ ପୂର୍ବ ଇଉରୋପରେ ସମାଜବାଦୀ ରାଷ୍ଟ୍ର ପ୍ରତିଷ୍ଠାର ହୋଇଥିଲା । ଏବଂ ଏହାର ପରବର୍ତ୍ତୀ କାଳରେ

ଭିଏତ୍‌ନାମ ଏବଂ କ୍ୟୁବାରେ ଆପଣାର ସ୍ୱତନ୍ତ୍ର ପରିସ୍ଥିତିରେ ସମାଜବାଦୀ ବିପ୍ଳବ ସଫଳ ଲାଭ କରିଛି ।

ଜୋସେଫ୍ ଷ୍ଟାଲିନଙ୍କ ପରଲୋକ ପରେ ସୋଭିଏତ୍ ୟୁନିୟନ୍‌ରେ ଭାଙ୍ଗନ ଦେଖାଗଲା । ନିକିତା କ୍ରୁଶଭଙ୍କଠାରୁ ଗୋର୍ବାଚୋଭଙ୍କ ପର୍ଯ୍ୟନ୍ତ ଇତିହାସ ହେଉଛି ସମାଜବାଦର ପ୍ରଥମ ସଫଳ ପରୀକ୍ଷାର ବିଲୟର ଇତିହାସ । ତାପରେ ସୋଭିଏତ ରାଷ୍ଟ୍ର ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଯାଇଛି ଏବଂ ଋଷରେ ସମାଜବାଦ ବିରୋଧୀ ନେତା ୟେଲ୍‌ସିନ୍ ଶାସନ କ୍ଷମତାରେ ।

ଏହି ସମୟ ଭିତରେ ଚୀନା ସମାଜବାଦର ପ୍ରତିଷ୍ଠାତା ନେତୃବୃନ୍ଦ ଚାଉ ଏନ୍ ଲାଇ, ଲିଓ ଶାଓ ଚୀ, ଚୁଟେ ଏବଂ ପରିଶେଷରେ, ମାଓ ସେ ତୁଂ ଧରାପୃଷ୍ଠରୁ ବିଦାୟ ନେଇଥିଲେ ।

ସୋଭିଏତ୍ ୟୁନିୟନ୍ ଭାଙ୍ଗି ଯିବାପରେ ପୃଥିବୀ ଏକ ମେରୁ ବିଶିଷ୍ଟ ହୋଇଯାଇଛି । ମୁକ୍ତ ବଜାର ବ୍ୟବସ୍ଥା ସମଗ୍ର ପୃଥିବୀରେ ବ୍ୟାପି ଯାଇଛି । କୌଣସି ଦେଶର ବଜାର ବା ଉତ୍ପାଦନ ସାମଗ୍ରୀକୁ ସେଇ ଦେଶ ମଧ୍ୟରେ ଆବଦ୍ଧ ରଖିହେବ ନାହିଁ । ବର୍ତ୍ତମାନ ଚୀନ ଉପରେ ସମସ୍ତଙ୍କର ଆଖି । କଣ ହେବ ଚୀନର ଭବିଷ୍ୟତ ମାଓଙ୍କ ପରେ ? ଚୀନ ଦେଶ ବିଶ୍ୱମୁକ୍ତ ବଜାର ଭିତରକୁ ପ୍ରବେଶ କରିବ ନା ନାହିଁ ? ଡେଙ୍ଗ ଏହାର ଉତ୍ତର ଦେଇଥିଲେ - ଚୀନ ପ୍ରବେଶ କରିବ ମୁକ୍ତ ବଜାରକୁ, କିନ୍ତୁ ଆପଣାର ସର୍ତ୍ତରେ । ତାକୁ କେହି ବରାଦ ବା ଧମକ ଦେଇ ପାରିବ ନାହିଁ । ଶହେରୁ ଊର୍ଦ୍ଧ୍ୱକୋଟି ଚୀନା ବଜାର ଯଦି ଆପଣାର ସର୍ତ୍ତ ଆରୋପ କରି ପାରିବ ନାହିଁ, ତା ହେଲେ କରିବ କିଏ ? ଚୀନ ଦେଶରେ ଯେଉଁ ନୂତନ ସୃଜନଶୀଳ ଅର୍ଥନୀତି ଚାଲୁ ହେଲା ତାହାକୁ କୁହାଗଲା ସାମାଜବାଦୀ ନିୟନ୍ତ୍ରଣ କିନ୍ତୁ ମୁକ୍ତ ବ୍ୟବସାୟ । ଏହା ଫଳରେ ଚୀନରେ ବିରାଟ ପରିବର୍ତ୍ତନ ଦେଖାଗଲା । ଚୀନ ବଜାର ଛାଇ ହୋଇଗଲା ବିଦେଶୀ ଜିନିଷରେ, ଚୀନ ସେଇ ପରି ଆପଣାର ଉତ୍ପାଦନକୁ ବିକ୍ରୀକଲା ବିଶ୍ୱ ମାର୍କେଟ୍‌ରେ । ଜନସାଧାରଣଙ୍କର ବ୍ୟକ୍ତିଗତ ଆୟ ବୃଦ୍ଧି ପାଇଛି ଅସମ୍ଭବ ଠିକ୍ ସେଇପରି ଜାତୀୟ ଆୟ ବୃଦ୍ଧି ପାଇଛି ଏବଂ ଚୀନା ଅର୍ଥନୀତିର ବିକାଶକୁ 'ମିରାକଲ' ବୋଲି ଅନ୍ୟମାନେ ଆଖ୍ୟା ଦେଇଛନ୍ତି । ଚୀନ ସମାଜରେ ଯେଭଳି ଧନାଢ୍ୟ ବ୍ୟକ୍ତି ଦେଖା ଦେଇଛନ୍ତି, ଠିକ୍ ସେଇପରି ସମାଜର ସବୁଠାରୁ ତଳେ ଥିବା ମଣିଷର ଆୟ ବୃଦ୍ଧି ଘଟିଛି । ସାମାଜିକ କଲ୍ୟାଣର ଯୋଜନା ସମ୍ପ୍ରସାରିତ ହେବା ଫଳରେ ତଳେ ଥିବା ମଣିଷ ଅନେକ ସ୍ୱତନ୍ତ୍ର ସୁବିଧା ପାଇଛି ।

ଡେଙ୍ଗ ଙ୍କର ଅନ୍ୟତମ ଅବଦାନ ହେଉଛି - "ଗୋଟିଏ ଦେଶ - ଦୁଇଟି ବ୍ୟବସ୍ଥା" । ହଂକଂ ହେଉଛି ଚୀନ ଦେଶର । କିନ୍ତୁ ତତ୍‌କାଳୀନ ଚୀନା ସରକାର ସହିତ ବ୍ରିଟିଶ ସରକାରର ଏକ ରାଜିନାମା ବଳରେ ଏହା ବ୍ରିଟିଶ ସରକାରଙ୍କର ଅଧିକୃତ ଅଛି । ମାତ୍ର ୧୯୯୭ ମସିହାରେଏହି ଚୁକ୍ତିର ସମୟ ପୂରିଯିବ । ହଂକଂ ଫେରିବ ଚୀନ ମୂଳ ଭୂଖଣ୍ଡକୁ । ଠିକ୍ ଯେତେବେଳେ ସମଗ୍ର ଚୀନ୍ ଅଫିମ ଖାଇ ଶୋଇ ପଡ଼ିଥିଲା ଠିକ୍ ସେତିକିବେଳେ ହଂକଂ ମୁକ୍ତ ବାଣିଜ୍ୟର ପେଣ୍ଠ ଭାବରେ ସମୃଦ୍ଧ ହୋଇଥିଲା । ଚୀନ୍ ଏବଂ ହଂକଂ ଯେପରି ପରସ୍ପରର ବୀପରିତ । ଏହାଛଡ଼ା ହଂକଂର ସ୍ୱତନ୍ତ୍ର ସ୍ଥିତି ଏବଂ ସମୃଦ୍ଧିରେ ଆକର୍ଷିତ ହୋଇ ପୃଥିବୀର ବିଭିନ୍ନ ଦେଶରୁ ବହୁ ବ୍ୟକ୍ତି ଆସି ଏଠାରେ ସ୍ଥାୟୀ ଭାବରେ ରହିଯାଇଛନ୍ତି । ବେତକଙ୍କର

ବ୍ରିଟିଶ ବା ଭାରତୀୟ ପାସପୋର୍ଟ ରହିଛି କିନ୍ତୁ ଅଧିକାଂଶଙ୍କର ନାହିଁ । ମୁକ୍ତ ବାଣିଜ୍ୟର ପୀଠ, ସମୃଦ୍ଧିଶାଳୀ ହଂକଂ କିପରି ଫେରିବ ଚୀନା ମୂଳ ଭୂଖଣ୍ଡକୁ ? ସମଗ୍ର ବିଶ୍ୱରେ ଏହି ପ୍ରଶ୍ନ । ପୁଂଜିବାଦୀମାନେ ତ ସାରା ପୃଥିବୀବ୍ୟାପୀ ଚିତ୍କାର ଆରମ୍ଭ କରି ଦେଇଛନ୍ତି ।

ଏହାର ଉତ୍ତରରେ ଡେଙ୍ଗଙ୍କର ଫର୍ମୁଲା ହେଉଛି " ଗୋଟିଏ ଦେଶ ଦୁଇଟି ବ୍ୟବସ୍ଥା" । ହଂକଂ ରହିବ ସେଇପରି । ଏହା ଚୀନା ବାଣିଜ୍ୟକୁ ସମୃଦ୍ଧ କରିବ ଏବଂ ଗଭୀର ବଶ୍ୱାସର ସହିତ ସେ କହିଥିଲେ ଯେ କାହାରି ଆତଙ୍କିତ ହେବାର କୌଣସି କାରଣ ନାହିଁ । ଆମେ ଜାଣୁ ହଂକଂର ସମସ୍ୟା ଓ ସମ୍ଭାବନା । ଚୀନା ଜନସାଧାରଣ ଆଉ ହଂକଂକୁ ଅଲଗା ହୋଇ ରହିବାକୁ ଦେବେ ନାହିଁ । ହଂକଂ ଫେରିବ ମୂଳ ଭୂଖଣ୍ଡକୁ - ଡେଙ୍ଗଙ୍କର ବଜ୍ର ଘୋଷଣା ।

ଡେଙ୍ଗଙ୍କ ଜୀବନୀର ବହୁ ଉତ୍ଥାନ ପତନର କାହାଣୀରେ ଭରା । କିନ୍ତୁ ମାଓଙ୍କ ପ୍ରତି ତାଙ୍କର ଆନୁଗତ୍ୟ କଦାପି ଶିଥିଳ ହୋଇନାହିଁ । ଯଦିଓ ମାଓବାଦର ବହୁ ସୃଜନଶୀଳ ପରିବର୍ତ୍ତନ ସେ କରିଛନ୍ତି । ଅଭିଯୋଗ ହୋଇଛି ଯେ ଡେଙ୍ଗ ମାଓଙ୍କ ନାଁରେ ମାଓଙ୍କର ସବୁ ନୀତିର ପରିବର୍ତ୍ତନ କରିଦେଇଛନ୍ତି । ସମୟ ବଦଳି ଯାଇଛି । ବିଂଶ ଶତାବ୍ଦୀ ହେଉଛି ମଣିଷ ସମାଜର ଇତିହାସରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଶତାବ୍ଦୀ । ମଣିଷର ଉଦ୍‌ଭାବନ ଯେପରି ଖୋଲିଛି ଅଫୁରନ୍ତ ସମ୍ଭାବନାର ଉତ୍ସ ଠିକ୍ ସେଇପରି ସୃଷ୍ଟି କରିଛି ଭୟାନକ ସାମୂହିକ ଧ୍ୱଂସର ଆତଙ୍କ । ପରିବର୍ତ୍ତିତ ହୋଇଯାଉଛି ପୃଥିବୀ ପ୍ରତ୍ୟେକ ମୁହୂର୍ତ୍ତରେ । ଏହି ପରିବର୍ତ୍ତନ ସହିତ ଖାପଖୁଆଇ ନୀତି ନିର୍ଦ୍ଧାରଣ କରିବାକୁ ହେବ ।

ଡେଙ୍ଗଙ୍କୁ ୧୯୩୦ ମସିହାରେ ଚୀନା କମ୍ୟୁନିଷ୍ଟ ପାର୍ଟିର ସବୁ ପଦବୀରୁ ବହିଷ୍କୃତ କରାଯାଇଥିଲା । ପ୍ରସିଦ୍ଧ ଲିଲିଶାନ୍ ନୀତି ବିରୋଧରେ ସେ ରହିଥିଲେ ମାଓଙ୍କ ନୀତି ସହିତ । ଗ୍ରାମରେ ଗରିଲା ଯୁଦ୍ଧ ଓ ସହରରେ ସଶସ୍ତ୍ର ଜାଗରଣ । ମାଓଙ୍କ ସହିତ ଐତିହାସିକ 'ଲଙ୍ଗ୍ ମାର୍ଚ୍ଚ'ରେ ଥିଲେ ଡେଙ୍ଗ । ପରବର୍ତ୍ତୀ କାଳରେ ଚୀନା ସଂସ୍କୃତିକ ବିପ୍ଳବ ସମୟରେ ଗ୍ୟାଙ୍ଗ ଅଫ ଫୋର ଦ୍ୱାରା ଦୁଇଥର ପଦଚ୍ୟୁତ, ଅପମାନିତ ହୋଇଛନ୍ତି । " ସଂସ୍କୃତିକ ବିପ୍ଳବ" ପରେ ସେ ଯେତେବେଳେ ପୁଣି ଫେରିଲେ ପାର୍ଟି ପଦବୀକୁ ସେତେବେଳେ ସେ ଘୋଷଣା କଲେ ଯେ ଶାସନ କ୍ଷମତା ଓ କାମ ଭିତରୁ ମୋତେ ଗୋଟିକକୁ ବାଛି ନେବାକୁ ହେବ । ମୁଁ ସମାଜବାଦୀ ଭାବରେ କାମକୁ ହିଁ ବାଛିବି କାରଣ କ୍ଷମତାର ମୋହ ମୋତେ ଆକୃଷ୍ଟ କରି ପାରିବ ନାହିଁ ବା ପାରି ନାହିଁ ।

କମ୍ୟୁନିଷ୍ଟ ପାର୍ଟି ବା ସରକାରରେ ବଡ଼ ବଡ଼ ପଦବୀରେ ଜଣେ ଲୋକ ବହୁ କାଳ ଧରି ରହିବା ବିରୁଦ୍ଧରେ ସେ ଘୋଷଣା କଲେ ୧୯୯୦ ମସିହାରେ ଏବଂ ନିଜ କ୍ଷେତ୍ରରେ ତାହା ପ୍ରମାଣିତ କରି ପୃଥିବୀକୁ ଆଦର୍ଶ ଦେଖାଇଗଲେ । କେନ୍ଦ୍ର ମିଲିଟାରୀ ମିଶନର ଚେୟାରମ୍ୟାନ୍ ପଦବୀ ଥିଲା ତାଙ୍କର ଶେଷ ସରକାରୀ ପଦବୀ । ସେଥିରୁ ସେ ଇସ୍ତଫା ଦେଇଦେଲେ । ଦେଶର ରାଜନୈତିକ ବ୍ୟବସ୍ଥାରେ ଏକ ନୂତନ ଯୁଗର ଉଦ୍ରେକ ହେଲା ।

ଏକ ବିରାଟ ସଂଗ୍ରାମୀର ଜୀବନର ଅବସାନ ହୋଇଚି । ମିଳିତ ଜାତି ସଂଘର ପତାକା

ଅର୍ଦ୍ଧ ନମିତ ହୋଇଛି ଏପରି ଏକ ବ୍ୟକ୍ତି ପାଇଁ ଯାହାଙ୍କର ସରକାରୀ ପଦବୀ ନ ଥିଲା କିନ୍ତୁ ଯାହାଙ୍କୁ ବାଦ୍‌ଦେଇ ୧ ୦ ୦ କୋଟି ଅଧିବାସୀଙ୍କର ଚୀନ ସଂପର୍କରେ ଚିନ୍ତା ବି କରାଯାଇପାରୁ ନ ଥିଲା ।

୧ ୯ ୨ ୨ରେ ସେ ଚୀନା କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ । ଫ୍ରାନ୍ସ ଯାଇଥିଲେ କାମ ଓ ଅଧ୍ୟୟନର ସଂସଧାନରେ । ସେଇଠି ସାମ୍ୟବାଦର ମହାମନ୍ତ୍ରରେ ଦୀକ୍ଷିତ ହୋଇଥିଲେ ସେ । ୧ ୯ ୨ ୨ ରୁ ୧ ୯ ୯ ୭ ଦୀର୍ଘ କର୍ମମୟ ଜୀବନର ସମାପ୍ତି ହୋଇଛି । ୧ ୯ ୨ ୯ ମସିହାରେ ଯେଉଁ ଗୁଆଙ୍ଗକ୍ସିରେ ସେ ପ୍ରଥମେ ସଶସ୍ତ୍ର ଅଭ୍ୟୁତ୍ଥାନର ସଂଗଠନ କରିଥିଲେ ସେଇ ଅଞ୍ଚଳ ନିସ୍ତବ୍ଧ ହୋଇଯାଇଛି । ସମସ୍ତେ ଅର୍ଦ୍ଧନମିତ ମସ୍ତକରେ ସମ୍ମାନ ଜଣାଉଛନ୍ତି ମୁକ୍ତିର ପ୍ରଥମ ସିଂହାରୀ ଡେଙ୍ଗଙ୍କୁ ।

ଦୁଇ ଦଶନ୍ଧିର ସମସ୍ତ ସଂଗ୍ରାମ ଏବଂ ଜାପାନୀ ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମ (୧ ୯ ୩ ୭ ରୁ ୧ ୯ ୪ ୫) ତାଙ୍କୁ ଶାଣିତ କରିଥିଲା । ଲୁହା ପରିଣତ ହୋଇଗଲା ଇସ୍ପାତ୍‌ରେ ।

୧ ୯ ୪ ୯ ମସିହା ମୁକ୍ତି ସଂଗ୍ରାମର ଶେଷ ତୂର୍ଯ୍ୟନାଦ । ଆଗରେ ରହିଛି ୟାଂସି ନଈ । ଖରସ୍ରୋତା ୟାଂସି । ଆରପଟରେ ରହିଛି ଚୀନ ରାଜଧାନୀ ନାନକିଙ୍ଗ । କିନ୍ତୁ ମଇ ପହିଲା ପୂର୍ବରୁ ନାନକିଙ୍ଗ୍ ଦଖଲ କରିବାକୁ ହେବ । ନଈର ସବୁ ପୋଲ ଉଡ଼ାଇ ଦିଆଯାଇଛି । ଡେଙ୍ଗ ଥିଲେ ସେଇ ନେତୃତ୍ୱରେ ଯେଉଁ ନେତୃତ୍ୱ ଶିହରଣ, ଉନ୍ମାଦନା ସୃଷ୍ଟି କରିଥିଲା ସେନାବାହିନୀ ଭିତରେ । ଧାଡି ଧାଡି ମଣିଷ ଠିଆ ହୋଇଗଲେ କାନ୍ଧରେ ଖୁଣ୍ଟବୋହି । ତାରି ଉପର ଦେଇ ଛୁଟି ଚାଲିଲା ଟ୍ୟାଙ୍କ୍ ବାହିନୀ । ବିଶ୍ୱ ଚକିତ ହୋଇଠିଆ ହୋଇଥିଲା, ତ୍ୟାଗର ଏ କି ଅମୃତ ସ୍ୱାଦ !

ଦ୍ୱିତୀୟ ମହାଯୁଦ୍ଧ ଭିତରେ ଯେଉଁ ନେତୃତ୍ୱ ୨ ୪ ନିୟୁତ ଜନସାଧାରଣ ଏବଂ ତିନିଲକ୍ଷ ସୈନ୍ୟଙ୍କୁ ନେଇ ମୁକ୍ତ ଅଞ୍ଚଳ ଗଠନ କରି ପାରିଥିଲା, ଜାପାନୀ ମାନଙ୍କ କବଳରୁ ସେଇ ନେତୃତ୍ୱ ଆଜି ୫,୫୫,୦୦୦ କୁମିନଟାଂ ସୈନ୍ୟଙ୍କୁ ନିପାତ କରି ଚୀନ ଜନସାଧାରଣଙ୍କ ପାଇଁ ଆଣିଦେଲା । ଚୀନ ଆକାଶରେ ବଜ୍ର ଭଳି ସମାଜବାଦର ପ୍ରଭାତ ।

" ମୁଁ ଚୀନା ମାଟି, ଚୀନା ପାଣି, ଚୀନା ମଣିଷକୁ ଗଭୀର ଭାବରେ ଭଲପାଏ । ତେଣୁ ମୋର ଭସ୍ମାବଶେଷକୁ ବିଞ୍ଚିଦେବ ଚୀନା ମାଟି ଓ ସାଗରରେ । ମୋର ଚକ୍ଷୁ ଦାନ କରି ଯାଇଛି । ତାକୁ ଦେଇଦେବ ଚକ୍ଷୁ ବ୍ୟାଙ୍କକୁ ।" ଏହା ଥିଲା ତାଙ୍କର ଶେଷ ଇଚ୍ଛା ।

ତାହା ପାଳିତ ହୋଇଛି । ସମଗ୍ର ବିଶ୍ୱ ମଥାବନତ କରି ଠିଆ ହୋଇଛି, ଏହି ମାଟିର ନାୟକଙ୍କୁ ସମ୍ମାନ ଜଣାଇବା ପାଇଁ ।



# ଟ୍ରେଡ଼ ୟୁନିୟନ୍ ଆନ୍ଦୋଳନର ପ୍ରବାଦ ପୁରୁଷ

ଜାନୁଆରୀ ୧୩, ୧୯୯୭, ସକାଳୁ ଫୋନ୍ ବାଜୁଛି ଅହରହ । ଫୋନ୍ ଧରିବାକୁ ମୋର ଶକ୍ତି ନାହିଁ । ରାତ୍ରିରେ ଶର୍କରାଶୂନ୍ୟତା ହେତୁ ଦେହ ଅବସ୍ଥା ସାଂଘାତିକ । କୌଣସି ମତେ ଧରିଲି । ସେ ପଟରୁ ପ୍ରବୁଦ୍ଧ ମାର୍କ୍ସବାଦୀ ଗୁରୁଚରଣ ପଟ୍ଟନାୟକଙ୍କର କଣ୍ଠସ୍ୱର ବାଷ୍ପାକୁଳ, ରୁଦ୍ଧ । ଶୁଣିଲଣି, ଗଲା ରାତିରେ ଦୁର୍ଗା ଚାଲିଗଲା । ନିହାର ଜାଣିଲା ସକାଳୁ ।

ଦୁର୍ଗା ମହାନ୍ତି ଆଉ ନାହାନ୍ତି । ଓଡ଼ିଶା ଟ୍ରେଡ଼ ୟୁନିୟନ୍‌ର ପ୍ରବାଦ ପୁରୁଷ, ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର ମହାରଥୀ ଦୁର୍ଗା ମହାନ୍ତି । ବହୁ ସଂଗ୍ରାମରେ ଶାଣିତ, ବହୁ ଜଟିଳ ସମସ୍ୟାରୁ ଉବୁରି ଆସିଥିବା ଦୁର୍ଗା ମହାନ୍ତିଙ୍କର ବୟସ ହୋଇଥିଲା କିନ୍ତୁ ବିଶ୍ରାମ ଆସି ନଥିଲା । ସେ ରୋଗରେ ପୀଡ଼ିତ ହୋଇଛନ୍ତି କିନ୍ତୁ ରୋଗ ତାଙ୍କୁ ଆକ୍ରାନ୍ତ କରି ପାରି ନ ଥିଲା । ୧୯୪୮ ମସିହାରେ ସେ ଯେପରି ଓଡ଼ିଶା ସାରା ଖେଦି ବୁଲୁଥିଲେ, ୧୯୯୪ ମସିହାରେ ବି ସେଇପରି । ବୟସ୍କ ନେତାମାନଙ୍କ ଭିତରେ ସେ ଥିଲେ ସବୁଠାରୁ ସକ୍ରିୟ । ପ୍ରତିଦିନ ବାଦାମବାଡ଼ିରୁ ଭୁବନେଶ୍ୱର ପାର୍ଟି ଅଫିସକୁ ଯାତ୍ରା ନିଶ୍ଚୟ, ଯଦି କୁଆଡ଼େ କାର୍ଯ୍ୟକ୍ରମ ନାହିଁ ବାହାରେ । ଶ୍ୱାସ ରୋଗରେ ପୀଡ଼ିତ । ସେଇ ଯୋଗୁଁ ଖାଇଲା ପରେ ଦୁଇ ଘଣ୍ଟା ସେ ନିଶ୍ଚୟ ସକ୍ରିୟ ରହିବେ ଏବଂ ତାପରେ ଯାଇ ବିଶ୍ରାମ । ତାଙ୍କର ପରଲୋକ ହୋଇଗଲା କିମିତି ? କିନ୍ତୁ ଏହାର ଉତ୍ତର କିଏ ଦେବ ? ସେ ଅନନ୍ତ ପ୍ରଶ୍ନର ତ ଉତ୍ତର ମିଳିନାହିଁ ।

ଦେହରେ ଚମକ ଲାଗିଲା । ଯିବାର ତ ଶକ୍ତି ନାହିଁ । ଭାବନା ସବୁ ହାବୁକା ମାରିବାକୁ ଲାଗିଲେ । ବହୁ ସୁଖଦୁଃଖର ସାଥୀ ସେ । ବହୁ ଉତ୍ଥାନ ପତନ ଭିତରେ ତାଙ୍କ ସହିତ ସୌହାର୍ଦ୍ଦ୍ୟତା । ରାଜନୀତିରୁ ବିଦାୟ ନେଇଛି । ସମାଜ ସେବାରୁ ନୁହେଁ । ଦୁର୍ଗାବାବୁଙ୍କ ସହିତ ସଂପର୍କ ସେଇପରି ଜୀବନ୍ତ ରହିଛି । ମଇ ଦିବସରେ ଭାଷଣ ଦେବାପାଇଁ ହଠାତ୍ ଆକାଶବାଣୀର ନିମନ୍ତ୍ରଣ । ସକ୍ରିୟ ରାଜନୀତିରୁ ବିଦାୟ ନେଇଥିବା ହେତୁ ଅନେକ ଘଟଣା ମନେ ପଡ଼ୁନି । କିନ୍ତୁ ଦୁର୍ଗାବାବୁ ଅଛନ୍ତି । ପଚାରିବା ମାତ୍ରେ କହିଯିବେ ସବୁ ।

ପଳାତକ ଜୀବନ । ପୁଲିସ ଆଖିରୁ ଖସିବା ପାଇଁ ପ୍ରାଣମୂର୍ଚ୍ଛା ଦୌଡ଼ । ଗଭୀର ଅରଣ୍ୟ ଭିତରେ ଆଶ୍ରା । କ୍ଳାନ୍ତି ପ୍ରଚୁର । ଗୋଡ଼ହାତ ବିନ୍ଧୁଛି ଭୟାନକ । ହଠାତ୍ ନିଦ ଭାଙ୍ଗିଲା ବେଳକୁ ମନେ ହେଲା ଜଣେ କି· ·ୋଡ଼ ଘଷୁଛି । କିଏ ଏହି ଦୟାଳୁ ? ଆଉ କେହି ନୁହନ୍ତି । ନିଜର ପ୍ରଚୁର କ୍ଳାନ୍ତି ସତ୍ତ୍ୱେ ସେ ଗୋଡ଼ ଘଷୁଛନ୍ତି କନିଷ୍ଠର । କ୍ୟାଡ଼ର ମ୍ୟାନେଜମେଣ୍ଟରେ ଦୁର୍ଗା ବାବୁ ଧୁରନ୍ଧର, ଗଭୀର ମାନବିକତାରେ ରସାଣିତ ତାଙ୍କର ହୃଦୟ । କନିଷ୍ଠ ସହଯୋଦ୍ଧାମାନଙ୍କର ସୁଖଦୁଃଖ ବୁଝିବେ, ଟିକିନିଖି କଥା । ଆମେ ଦୁହେଁ ଏକା ସାଙ୍ଗରେ ପଳାତକ ହୋଇଥିଲୁ ।

ଏକା ସାଙ୍ଗରେ ଗିରଫ ମଧ ହୋଇଥିଲୁ । ପଚ୍ଛାତକ ଜୀବନ । ମୁଁ ସର୍ବକନିଷ୍ଠ ପଚ୍ଛାତକ । ଚା ପିଏ କି ନାହିଁ, ବିଡ଼ି ସିଗାରେଟ୍ ଅଭ୍ୟାସ ଅଛି କି ନାହିଁ, ସବୁ ବୁଝିବେ । ସାଥୀ ମାନଙ୍କୁ କହିଯିବେ ବୁଝିବା ପାଇଁ । ନିଜେ କିନ୍ତୁ ବିଡ଼ି, ସିଗାରେଟ୍, ଚା କିଛି ଖାଇବେ ନାହିଁ ।

ଦୁର୍ଗା ମହାନ୍ତି ଟ୍ରେଡ଼ ୟୁନିୟନ୍‌ର ସଂଗ୍ରାମରେ ଓସ୍ତାଦ୍ । ନେଗୋସିଏସନ୍‌ରେ ମଧ ଧୁରନ୍ଧର । କୌଣସି ଓକିଲ ତାଙ୍କର ସମକକ୍ଷ ନୁହଁନ୍ତି । ବିରଳା, ଟାଟା, ପ୍ରତିନିଧିମାନେ ସ୍ୱୀକାର କରନ୍ତି ଯେ ସେମାନେ ନେଗୋସିଏସନ୍‌ରେ ଏଭଳି ଧୁରନ୍ଧର ଲୋକ ଦେଖି ନାହାନ୍ତି । ଯେତେ ବଡ଼ ଜଟିଳ ପରିସ୍ଥିତି ହେଉନା କାହିଁକି ଦୁର୍ଗା ମହାନ୍ତିଙ୍କୁ ଖାପଚାରେ ପକାଇବା ସହଜ ନୁହେଁ । ଦୁର୍ଗା ମହାନ୍ତି ଓଡ଼ିଶାର ବହୁ ଶ୍ରମିକ ସଂଗଠନର ନେତା । ତାଙ୍କର କାର୍ଯ୍ୟ ପାଇଁ, ସାଫଲ୍ୟ ପାଇଁ ଜାତୀୟ ସ୍ତରରେ, ଆନ୍ତର୍ଜାତିକ ସ୍ତରରେ ମିଳିଛି ସ୍ୱୀକୃତି । ଓଡ଼ିଶାର ଟ୍ରେଡ ୟୁନିୟନ୍ ଇତିହାସର ଏକ ବିରାଟ ଅଧ୍ୟାୟ ଦୁର୍ଗା ମହାନ୍ତି ।

ଦୁର୍ଗା ମହାନ୍ତି ଛାତ୍ର ଆନ୍ଦୋଳନ ଏବଂ ଛାତ୍ର ସଂଘ ମଧ ଦେଇ ଆସନ୍ତି କମ୍ୟୁନିଷ୍ଟ ପାର୍ଟିକୁ ଚଳିତ ଶତାବ୍ଦୀର ଚତୁର୍ଥ ଦଶନ୍ଧିରେ । ଜୀବନର ଶେଷ ମୁହୂର୍ତ୍ତ କମ୍ୟୁନିଷ୍ଟ ପାର୍ଟିର ବହୁ ଉତ୍ଥାନ ପତନ ସହିତ ସେ ନିବିଡ଼ ଭାବରେ ଜଡ଼ିତ ଏବଂ ଏକ ବିରାଟ ଅଧ୍ୟାୟର ନିୟନ୍ତ୍ରକ ମଧ । ଜୀବନର ଅପରାହ୍ନରେ ଯେତେବେଳେ ନିୟନ୍ତ୍ରକ ଭୂମିକା ତାଙ୍କ ହାତରୁ ଖସି ଯାଇଛି ସେତେବେଳେ ଜୀବନରୁ ମଧ ସେ ଖସି ଯାଇଛନ୍ତି । ଦୁର୍ଗା ମହାନ୍ତି କମ୍ୟୁନିଷ୍ଟ ପାର୍ଟିର ମଧ ଏକ ଅଧ୍ୟାୟ ।

ଦୁର୍ଗା ମହାନ୍ତି ଖୋର୍ଦ୍ଧା ସ୍କୁଲରେ ଅଧ୍ୟୟନ କଲା ବେଳୁ ଗୋକୁଳ ମୋହନ ରାୟ ଚୂଡ଼ାମଣିଙ୍କର ପ୍ରେରଣାରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନରେ ଯୋଗଦେଇ ସେ ୧୯୪୫ ମସିହା ପର୍ଯ୍ୟନ୍ତ କାରାବରଣ କରିଥିଲେ । ଆଇ.ଏନ୍.ଏ. ସେନାପତି ମାନଙ୍କର ମୁକ୍ତି ପାଇଁ ଓଡ଼ିଶାରେ ହୋଇଥିବା ବିଶାଳ ଧର୍ମଘଟରେ ସେ ଅଂଶ ଗ୍ରହଣ କରିଥିଲେ । ସ୍ୱାଧୀନତା ସଂଗ୍ରାମର ଏହି ଅଯୁତ ସିପାହୀ ଭାରତବର୍ଷର ରାଜନୈତିକ ମୁକ୍ତିରେ ତୃପ୍ତ ହୋଇ ନ ଥିଲେ । ତାଙ୍କ ପାଇଁ ଅର୍ଥନୈତିକ ସାମ୍ୟର ଆହ୍ୱାନ ଥିଲା ଦୁର୍ବା ।

ଦୁର୍ଗା ମହାନ୍ତି ଏକ କଲର୍‌ଫୁଲ ପର୍ସନାଲିଟି । କାରୁଣ୍ୟ, ଦୟା, ବନ୍ଧୁତା ଯେମିତି ଠିକ୍ ସେଇପରି କଠୋରତା, ଲକ୍ଷ୍ୟସିଦ୍ଧି ପାଇଁ ଦାମ୍ଭିକତା, ନୃଶଂସତା ମଧ୍ୟ ସେଇପରି । ଶ୍ରମିକର ଭଙ୍ଗାଟିଣ ଘରେ ସେ ଯେପରି ହୋମ୍‌ଲି, ଠିକ୍ ସେଇପରି ମିଲ୍ ମାଲିକର ବୈଠକଖାନାରେ ଡିଗ୍‌ନିଫାଏଡ୍ ଶ୍ରମଜୀବି ନେତା ଭାବରେ ହୋମ୍‌ଲି ।

ସେଇ ଦୁର୍ଗା ମହାନ୍ତି ଆଉ ନାହାନ୍ତି । ଇତିହାସର ଏକ ଅଧ୍ୟାୟ ଉପରେ ମହାକାଳ ଆପଣାର ଯବନିକା ଟାଣି ଦେଇଛି ।



# ସାଧକ ଦିବ୍ୟସିଂହ ମଣିଷ ଦିବ୍ୟସିଂହ

ମରଣ ହେଉଛି ଘର ବାହୁଡ଼ା ପରି । ତେଣୁ ସେଥିରେ ଦୁଃଖ କରିବାର କିଛି ନାହିଁ 'କେବଳ ମରଣ ସୁନ୍ଦର ହେଲେ ହେଲା' - ମଦର ଟେରେସା କହନ୍ତି । ଦିବ୍ୟସିଂହଙ୍କର ଯିବା ବା ବାହୁଡ଼ିବାର କିଛି ବର୍ଷ ପୂରି ଯାଇଛି । ସମୟର, ମହାକାଳ ଆଞ୍ଜୁଳାଏ ପାଣି ପକେଇଛି ସ୍ମୃତିର ନିଆଁ ଉପରେ । ସେ ନିଆଁର ଧାସ ଲିଭି ଗଲାଣି । ସେ ବାହୁଡ଼ିବାର ପରେ କେତେ ଶିକ୍ଷକ ବାହୁଡ଼ି ସାରିଲେଣି । କିନ୍ତୁ ସ୍ମୃତିର ସେ ନିଆଁ କ'ଣ ଲିଭିବ ? ଦୁକୁ ଦୁକୁ ହୋଇ ସେ ଜଳିବ, ଆଗାମୀ ଯୁଗର ବଂଶଧରମାନଙ୍କ ପଥକୁ ଆଲୋକିତ କରି । ପୁଣି ସେ ଆଲୋକିତ କରିବ ଅଜ୍ଞାନର ଅନ୍ଧକାରକୁ । ଛାତ୍ରଥିବା ପର୍ଯ୍ୟନ୍ତ ଶିକ୍ଷକ ରହିବେ ଏବଂ ବଞ୍ଚି ରହିବେ ଶିକ୍ଷକ ଦିବ୍ୟସିଂହ ।

ବାଙ୍ଗରା ମଣିଷ, କଳା ରଂଗ । ଖୁବ୍ ବେଶୀ ମନଭୁଲାଣିଆ ଲକ୍ଷଣ, କିଛି ନାହିଁ । ସଭୁ ପର୍ଶୁରାମ ବର୍ମା । (ସାକ୍ଷାତରେ ପର୍ଶୁରାମ) ପ୍ରଧାନଶିକ୍ଷକ, ଦିବ୍ୟସିଂହ ପଟ୍ଟନାୟକ ଶିକ୍ଷକ । ଓଡ଼ିଶା ପ୍ରଦେଶ ନୂଆ ଗଠନ ହୋଇଥାଏ । ତତ୍‌କାଳୀନ ରସେଲକୋଣ୍ଡା ବା ଆଜିର ଭଂଜନଗର ସହରର ବୋର୍ଡ଼ ହାଇସ୍କୁଲ । ସେହିଦିନୁ ଦେଖି ଆସିଛି ତାଙ୍କୁ । ଖାଲି ମୁଁ ତ ଦେଖିନାହିଁ ଅନେକ ଛାତ୍ର ଦେଖିଛନ୍ତି । ମୋର ମନେଥିବା ଭିତରେ ବ୍ରହ୍ମାନନ୍ଦ ପଣ୍ଡାଙ୍କ ଠାରୁ ଆରମ୍ଭ କରି ପଞ୍ଚାନନ ତ୍ରିପାଠୀଙ୍କ ପର୍ଯ୍ୟନ୍ତ, ମହୀମୋହନଙ୍କଠାରୁ ଆରମ୍ଭ କରି ଯଜ୍ଞଦତ୍ତ ପଣ୍ଡାଙ୍କ ପର୍ଯ୍ୟନ୍ତ । ସମସ୍ତଙ୍କ ପାଇଁ ସମାନ ଶିକ୍ଷକ ମିଳିବା ବିରଳ । ସେହି ବିରଳତାର ଅନ୍ୟତମ ପ୍ରତୀକ ଦିବ୍ୟସିଂହ ପଟ୍ଟନାୟକ ।

ସ୍କୁଲ, ସ୍କୁଲ ଏବଂ ସ୍କୁଲ । ସନ୍ଧ୍ୟା ହେଲାଣି । ପତାକା ସ୍ତମ୍ଭ ପାଖରେ ଜଣେ କିଏ ବସି ଅନେଇଛି ସ୍କୁଲ ଆଡ଼କୁ । ଆଖିରେ ତାର ସ୍ୱପ୍ନ । ସାୟନ୍ତନ ରବି ଭଳି । ସେ ଆଉ କେହି ନୁହନ୍ତି । ନିଶ୍ଚୟ ଦିବ୍ୟସିଂହ ପଟ୍ଟନାୟକ । ରାତି ପାହିନାହିଁ, କୋଡ଼ି ଧରି ସ୍କୁଲ ପଡ଼ିଆ ସଫା କରୁଛନ୍ତି ଜଣେ କିଏ... କିଏ ? ସେ ନିଶ୍ଚୟ ଦିବ୍ୟସିଂହ ପଟ୍ଟନାୟକ । ସ୍କୁଲ ତାଙ୍କର ଖାଲି ପେଷା ନୁହେଁ, ନିଶା ମଧ୍ୟ ।

ସମଗ୍ର ଗଞ୍ଜାମ ଜିଲ୍ଲାରେ ବ୍ୟାପକ ଛାତ୍ର ଧର୍ମଘଟ । ଟେଷ୍ଟ ପରୀକ୍ଷାରେ ଅଟକ ପ୍ରଥା ହେଉଛି ମ୍ୟାକ୍‌ଲେଙ୍କ ଶିକ୍ଷା ପ୍ରଣାଳୀ । ପ୍ରଧାନଶିକ୍ଷକଙ୍କୁ ଚରମ ପତ୍ର ଦିଆଯିବ । ଦେବ କିଏ ? ଦିବ୍ୟସିଂହ ପଟ୍ଟନାୟକଙ୍କୁ ସ୍ତମ୍ଭୀଭୂତ କରି ଚରମପତ୍ର ହାତରେ ଦେଲେ ଯେଉଁ ପ୍ରତିନିଧି ଦଳ, ସେଥିରେ ଅନ୍ତର୍ଭୁକ୍ତ ଥିଲେ ତାଙ୍କରି ପୁତ୍ର ସୁରସିଂହ ।

ଶିକ୍ଷକ ଦିବ୍ୟସିଂହଙ୍କର ଶାନ୍ତ ମୁଖମଣ୍ଡଳ ଉପରେ କ୍ଷୀଣ କୁଞ୍ଚିତ ରେଖା ଉକୁଟି ମିଳାଇ ଗଲା ମାତ୍ର । ଛାତ୍ରମାନଙ୍କର ଜୟ, ପୁତ୍ରର ଜୟ ଥିଲା । ଶିକ୍ଷକର ଜୟ, ପୁତ୍ରର ଜୟ ।

ସ୍ୱାଧୀନତାର ପ୍ରାକ୍‌କାଳ । ଓଡ଼ିଶାର ନୂତନ ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବଙ୍କର ଅଭ୍ୟର୍ଥନା ପାଇଁ ବିରାଟ ସାଧାରଣ ସଭା । ଯାହାର ଯାହା ଆପତ୍ତି କହିପାର । ବନ୍ଧୁମାନଙ୍କ ଦ୍ୱାରା ଉତ୍ସାହିତ ହୋଇ ସ୍କୁଲ ସମସ୍ୟା ସମ୍ପର୍କରେ ପ୍ରଶ୍ନ ପଚାରିଲି । ଏହି ସଭାର ସଭାପତି ଥିଲେ, ଜିଲ୍ଲା ବୋର୍ଡ଼ର ସଭାପତି ଦୀନବନ୍ଧୁ ବେହେରା । ପ୍ରଧାନମନ୍ତ୍ରୀଙ୍କର ନିର୍ଦ୍ଦେଶରେ କେତେକ ବାକି ଥିବା ବଡ଼ ବଡ଼ କାର୍ଯ୍ୟ ପାଇଁ ସେ ରାଜି ହୋଇଗଲେ । କିନ୍ତୁ ଘରେ ଆଉ ଏକ ସଭା ଏବଂ ଭୂମିକମ୍ପ । ବାପା ସରକାରୀ କର୍ମଚାରୀ ଆଉ ପୁଅ ପଚାରି ଦେଇଛି ପ୍ରଶ୍ନ । ଆଉ ରକ୍ଷା ଅଛି ? ଆତଙ୍କର ଛାୟା । ପୁଅର ଦେଖାନାହିଁ । କିନ୍ତୁ ଗର୍ବିତ ଦିବ୍ୟସିଂହ ଖୋଜି ଖୋଜି ବୁଲୁଛନ୍ତି ତାଙ୍କର ଛାତ୍ରକୁ । ଆଖିରୁ ତାଙ୍କର ସ୍ନେହ ଝରୁଛି ।

ମନେ ପଡ଼ୁଛି ରାଜନୈତିକ ନେତାମାନେ ଅନ୍ୟର ପିଲାମାନଙ୍କୁ ରାଜନୀତିରେ ଯୋଗ ଦେବାପାଇଁ ପ୍ରେରଣା ଦେଲାବେଳେ, ନିଜର ଝିଅ ଲାଗି ଆଇ.ଏ.ଏସ୍. ଜୋଇଁ ଖୋଜନ୍ତି । ପୁଅକୁ ଇଂଜିନିଅର, ଡାକ୍ତର କରାନ୍ତି । ଯୁଦ୍ଧ ସମୟ, ତାରି ଭିତରେ ବିଭା ଦିଅନ୍ତି ଝିଅକୁ ରାଜନୈତିକ ଦଳର ସଦାବେଳିଆ କର୍ମୀ ସହିତ । ପୁଣି ଲିବରାଲ ଶ୍ୱଶୁର ଜୋଇଁ କରନ୍ତି ଅଗ୍ନିମୁଖ ବିପ୍ଳବୀକୁ । ସେଇ ହେଉଛି କଥା ଓ କାର୍ଯ୍ୟରେ ସମନ୍ୱୟ ଦିବ୍ୟସିଂହ ।

ବିଶ୍ରାମ ନାହିଁ । ଅବସର ପରେ ଅବସର । କିନ୍ତୁ କାମର ଶେଷନାହିଁ । ଗଞ୍ଜାମରୁ ଖୋର୍ଦ୍ଧା, ସ୍କୁଲରୁ ବ୍ୟାଙ୍କ । ସମବାୟ ସମିତିରୁ କଲେଜ । ଦିବ୍ୟସିଂହଙ୍କର କଳା ଦିହ ଉପରେ କେଶ ହେଲାଣି ରଜତ ଶୁଭ୍ର । ମନ ଥକି ନାହିଁ, ପାଦ ଥକି ନାହିଁ । ସେ ଏକ ନିରନ୍ତ ପ୍ରବାହ ।

ଜୀବନ ଆକସ୍ମିକ ନୁହେଁ । ମୃତ୍ୟୁ ବି ନୁହେଁ । ଜୀବନ ଏକ ଯୋଜନାର ଅନ୍ତର୍ଭୁକ୍ତ । ଆଉ ସେହି ଯୋଜନା ଭିତରେ ମୃତ୍ୟୁ ନିହିତ । ଯଦି ତାହା ହିଁ ସତ୍ୟ ହୁଏ ଦିବ୍ୟସିଂହ ବାହୁଡ଼ିଲେ, ଏକ ଯୋଜନାର ଅଂଶ ଭାବରେ । ଆଉ ପଛକୁ ଛାଡ଼ିଗଲେ ଏକ ଜାଜ୍ୱଲ୍ୟମାନ ରେଖା । ଯାହା ତାଙ୍କର ମୃତ୍ୟୁର ବହୁ ବର୍ଷ ପରେ ମଧ ଉଜ୍ଜ୍ୱଳ ରହିବ ଭବିଷ୍ୟତର ବଂଶଧରମାନଙ୍କ ପାଇଁ ।



# ଆତ୍ମହରାର ବିଦାୟ

ଦେବେନ୍ଦ୍ର ଶତପଥୀ ଆଉ ନାହାନ୍ତି । ଢେଙ୍କାନାଳରେ ତାଙ୍କର ନୂଆ ତିଆରି ଘରେ ପ୍ରାୟ ରହୁଥିଲେ କିଛି କାଳ ହେଲା । ରାଜନୀତି ଏବଂ ତତ ସଂଲଗ୍ନ ସବୁ କାର୍ଯ୍ୟରୁ କେବଳ ମାନସିକ ଦୃଷ୍ଟିରୁ ଏବଂ ଶାରିରୀକ ଦୃଷ୍ଟିରୁ ଦୂରରେ ରହିବା ପାଇଁ ତାଙ୍କର ପ୍ରଚେଷ୍ଟା । କିନ୍ତୁ ଏହା କଣ ସଫଳ ହୋଇଥିଲା । ତମେ ରାଜନୀତି ଛାଡ଼ିବାକୁ ଚାହିଁଲେ ବି ରାଜନୀତି ଛାଡୁଚି ତମକୁ କେଉଁଠି ? ହଠାତ୍ ସେ ହୃଦ୍‌ରୋଗରେ ଆକ୍ରାନ୍ତ ହେଲେ ଏବଂ ତାଙ୍କୁ ଭୁବନେଶ୍ୱର ନେଇଯିବା ବାଟରେ ରସୁଲଗଡ଼ ପାଖାପାଖି ସ୍ଥାନରେ ସେ ଆଖିବୁଜି ଦେଲେ ଚିରଦିନ ପାଇଁ । କିନ୍ତୁ ଢେଙ୍କାନାଳରୁ ଭୁବନେଶ୍ୱର ଯିବା ବାଟରେ କଟକରେ ତାଙ୍କୁ କାହିଁକି ଡାକ୍ତରଖାନାରେ ଭର୍ତ୍ତି କରା ନ ଗଲା ? ଭୁବନେଶ୍ୱର ଡାକ୍ତରଖାନା ଅପେକ୍ଷା କଟକ ବଡ଼ ଡାକ୍ତରଖାନାରେ ତ ବେଶୀ ଅଭିଜ୍ଞ ଡାକ୍ତର, ଇନ୍‌ଟେନସିଭ୍ କେୟାର ୟୁନିଟ୍ ରହିଛି । ବୋଧହୁଏ ଦେବବାବୁ ଚାହିଁଲେ ଭୁବନେଶ୍ୱର ଯିବା ପାଇଁ । ହୁଏତ ଭୁବନେଶ୍ୱର ବଡ଼ ଡାକ୍ତରଖାନାରେ ଚିକିତ୍ସା ପାଇଁ ଡାକ୍ତରମାନେ ତୁରନ୍ତ ଧ୍ୟାନ ଦେଇପାରନ୍ତି ଏଭଳି ଏକ ଅହେତୁକ ଆଶା ସହଯୋଗୀ ମାନଙ୍କର ଥିଲା ।

କିନ୍ତୁ ସେ ଯାହା ହେଉନା କାହିଁକି ଆତ୍ମହରା ଦେବେନ୍ଦ୍ର କାଳକ୍ରମେ ସଂସାର ପ୍ରତି ବୀତସ୍ପୃହ ହୋଇ ଉଠିଥିଲେ । ଅତି ମାନସ ଶକ୍ତିର ଅବତରଣକୁ ସେ ଅପେକ୍ଷା କରୁଥିଲେ, ଯାହାର ସ୍ପର୍ଶରେ ଆଜିର ମଣିଷ ଏକ ସ୍ୱତନ୍ତ୍ର ମଣିଷ ବା ଅତିମାନବରେ ପରିଣତ ହେବ । ଏଇ ସମାଜ, ଏଇ ରାଜନୀତି, ଏଇ ପରିବାର, ଏଇ ବନ୍ଧୁଗୋଷ୍ଠୀ.... ଦେବେନ୍ଦ୍ରବାବୁ କାଳକ୍ରମେ ସବୁରି ପ୍ରତି ଆଗ୍ରହହୀନ ହୋଇ ଯାଉଥିଲେ । ଜୀବନ ଯଦି ଏକ ବୃତ୍ତଭଳି ତା ହେଲେ ସେ ବୃତ୍ତ ଦେବେନ୍ଦ୍ରବାବୁଙ୍କ ପାଇଁ ସଂପୂର୍ଣ୍ଣ ହୋଇଯାଇଥିଲା । ତେଣୁ ସେ ଆଉ ରହନ୍ତେ କାହିଁକି ?

ଦେବେନ୍ଦ୍ର ବାବୁଙ୍କ ଘର ଢେଙ୍କାନାଳରେ । ଢେଙ୍କାନାଳ ଲୋକଙ୍କୁ ଅନ୍ୟ ଆଡ଼ର ଲୋକ ପଛୁଆ ଓ ବୋକା ବୋଲି ଭାବନ୍ତି । କିନ୍ତୁ ପ୍ରଜାମଣ୍ଡଳ ଆନ୍ଦୋଳନ ଫଳରେ ଏବଂ ଉଚ୍ଚ ଦରର ସ୍କୁଲ ଶିକ୍ଷା ହେତୁ ଏହି ଜିଲ୍ଲାର ଛାତ୍ରମାନେ ଉଭୟ ଶିକ୍ଷାକ୍ଷେତ୍ରରେ ଏବଂ ରାଜନୈତିକ କ୍ଷେତ୍ରରେ ବେଶ୍ ଅଗ୍ରଗଣ୍ୟ ଥିଲେ । ସେଇଯୋଗୁଁ ସେମାନଙ୍କ ମଧ୍ୟରୁ ଅନେକ ବିଚାର ବିଭାଗରେ, ଶାସନ କଳରେ, ଶିକ୍ଷାକ୍ଷେତ୍ରରେ ଏବଂ ରାଜନୈତିକ କ୍ଷେତ୍ରରେ ଅଗ୍ରଗଣ୍ୟ ହୋଇ ପାରିଛନ୍ତି ।

ଦେବେନ୍ଦ୍ର ଶତପଥୀ ଖ୍ରୀଷ୍ଟ କଲେଜରେ ପାଠ ପଢୁଥିଲେ ଏବଂ ବାମପନ୍ଥୀ ଛାତ୍ର ଆନ୍ଦୋଳନ ତଥା କମ୍ୟୁନିଷ୍ଟ ପାର୍ଟି ସହିତ ସଂଶ୍ଳିଷ୍ଟ ହୋଇଥିଲେ । ନନ୍ଦିନୀ ପାଣିଗ୍ରାହୀଙ୍କ ସହିତ ତାଙ୍କର ପରିଚୟ ସେଇଥିରୁ ଏବଂ କାଳକ୍ରମେ ଏହା ପାଣିଗ୍ରହଣରେ ରୂପାନ୍ତରିତ ହୁଏ । କିନ୍ତୁ ଏଇ ସମୟ କାଳରେ କେତକ ଦୁର୍ଘଟଣା ସେ ଉଭୟଙ୍କୁ ଏହି ବନ୍ଧୁ ଗୋଷ୍ଠୀରୁ ଦୂରକୁ ଦେଇଯାଏ । ନନ୍ଦିନୀ ଦେବୀ ପରବର୍ତ୍ତୀ କାଳରେ ଫେରି ଆସନ୍ତି କିଛି କାଳ ପାଇଁ ଛାତ୍ର ଆନ୍ଦୋଳନ ଏବଂ ପୁରାତନ ବନ୍ଧୁ ଗୋଷ୍ଠୀକୁ । କିନ୍ତୁ ଦେବେନ୍ଦ୍ର ବାବୁ ଆଉ ଫେରନ୍ତି ନାହିଁ । ପରିବାର ଚଳାଇବା ପାଇଁ ସେ ଜୀବନବୀମା ସଂସ୍ଥାରେ ଯୋଗଦିଅନ୍ତି ।

ନନ୍ଦିନୀ ଦେବୀ ସମାଜବାଦୀ ଗୋଷ୍ଠୀ ଛାଡ଼ି ସର୍ବୋଦୟ ଆନ୍ଦୋଳନରେ ସାମିଲ ହୁଅନ୍ତି । ଏତିକିବେଳେ ତାଙ୍କର ଶ୍ରୀମତୀ ଇନ୍ଦିରାଗାନ୍ଧିଙ୍କ ସହ ପରିଚୟ ହୁଏ ଏବଂ ଏହି ଘନିଷ୍ଠତା ପରବର୍ତ୍ତୀ କାଳରେ ଭାରତର ତଥା ଓଡ଼ିଶାର ରାଜନୀତିକୁ ପ୍ରଭାବିତ କରେ । ଦେବେନ୍ଦ୍ର ବାବୁ ମଧ ଟାଣି ହୋଇ ଯାଆନ୍ତି ସେଇ ରାଜନୀତିର ଘୂର୍ଣ୍ଣି ଭିତରକୁ । କିଛିକାଳ ଆକାଶବାଣୀରେ ଘୋଷକ ଏବଂ ପରେ ପାର୍ଲାମେଣ୍ଟ ସଭ୍ୟ ହୁଅନ୍ତି । ଚାଖନ୍ତି ରାଜନୀତିର ସ୍ୱାଦ ଏବଂ ଦେଖନ୍ତି ରାଜନୀତିର ଘୂଣ୍ଡି । ତାହାରି ଭିତରେ " ଧରିତ୍ରୀ " କାଗଜର ସଂପାଦକ ହୁଅନ୍ତି । ଦେବବାବୁ ବନ୍ଧୁବତ୍ସଳ । ତାଙ୍କର ବନ୍ଧୁତାର ପରିସୀମା ରାଜନୀତିର ପରିସୀମା ଭିତରେ ନଥିଲା । ସେଇ ବ୍ୟାପକତା ତାଙ୍କୁ ସମାଜର ବିଭିନ୍ନ ସ୍ତରରେ ଆଦୃତ କରିଥିଲା । କ୍ଷମତାରେ ଥିଲାବେଳେ ନନ୍ଦିନୀ ଦେବୀଙ୍କୁ ଲୋକେ ଭୟ କରନ୍ତି, ଦେବେନ୍ଦ୍ର ବାବୁଙ୍କୁ ଭଲ ପାଆନ୍ତି । ତାହାରି ପ୍ରତିଫଳନ କାଲି ଦେଖାଯାଇଥିଲା ଭୁବନେଶ୍ୱର ଗରାବଡୁ ଶ୍ମଶାନରେ । ଏଭଳି ଅନେକ ଥିଲେ ଯେଉଁମାନେ ପ୍ରତିଷ୍ଠିତ, ଏଭଳି ଅନେକଥିଲେ ଯେଉଁମାନଙ୍କର ନାଆଁ ପ୍ରତିଷ୍ଠିତ ତାଲିକାରେ ନାହିଁ ।

ଦେବେନ୍ଦ୍ର ବାବୁ ଅନେକ ଦିନୁ ଶ୍ରୀ ଅରବିନ୍ଦ ଓ ଶ୍ରୀ ମା'ଙ୍କର ଭକ୍ତ ହୋଇ ସାରିଥିଲେ । ପ୍ରଚଳିତ ସମାଜର ଧାରା ତାଙ୍କୁ ବୀତସ୍ପୃହ କରିଦେଇଥିଲା, ଚଳନ୍ତି ସମାଜ ପ୍ରତି । ତଥାକଥିତ ପ୍ରତିଷ୍ଠା ପାଇଁ ମାନବିକ ମୂଲ୍ୟବୋଧକୁ ବଳି ଦେବାକୁ ହୁଏ ? କ୍ଷମତା ପାଇବା ସହିତ ମଣିଷର ଯେଉଁ ସବୁ ସୂକ୍ଷ୍ମ ବିଚାରକୁ ଛାଡ଼ିବାକୁ ହେବ ? ବେଦନାର ସହିତ ଦେବବାବୁ ଲକ୍ଷ୍ୟ କରିଥିଲେ ସେ ଅବକ୍ଷୟକୁ ଏବଂ ଖୋଜି ଥିଲେ ଏକ ନୂତନ ମଣିଷ, ନୂତନ ପୃଥିବୀକୁ । ଶ୍ରୀମା, ଶ୍ରୀ ଅରବିନ୍ଦଙ୍କ ଦର୍ଶନରେ ସେ ବିହ୍ୱଳିତ ହୋଇଥିଲେ, ଆପଣାକୁ ନିବେଦିତ କରି ଦେଇଥିଲେ ସଂପୂର୍ଣ୍ଣ ଭାବରେ । ପ୍ରତିବର୍ଷ ଯାଉଥିଲେ ପଣ୍ଡିଚେରୀ, ନିଜର ଆତ୍ମସମର୍ପଣକୁ ଦୋହରାଇବା ପାଇଁ , ଦୃଢ଼ୀଭୂତ କରିବା ପାଇଁ ।

ରାଜନୀତିର ଘୂର୍ଣ୍ଣି ବାହାରେ ମଣିଷ ବୋଲି ଯେଉଁ ବସ୍ତୁ ରହିଚି ଦେବେନ୍ଦ୍ର ବାବୁଙ୍କ ସହିତ ପରିଚୟ ଘଟୁଥିଲା ତାହା ସହିତ । ପତ୍ନୀ ନନ୍ଦିନୀ ଦେବୀଙ୍କ ପ୍ରତିଷ୍ଠାର ସହଜ ଆରପଟେ ଦେବେନ୍ଦ୍ର ବାବୁଙ୍କର ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ମୁଣ୍ଡଟେକି ଥିଲା ଧୀରେ ଧୀରେ । ସେଇ ସମୟରେ ଦେବେନ୍ଦ୍ରବାବୁଙ୍କ ସହିତ ଦେଖା ହୋଇଛି ଅନେକ ଥର । ଉଷ୍ଣତା ରହିଥିଲା ତାଙ୍କର

ସଂଖୋଳିବାରେ । ପୁରାତନ ବନ୍ଧୁମାନଙ୍କ ସହିତ ସଂପର୍କକୁ ଅତୁଟ ରଖିବା ସହିତ ନୂତନ ବନ୍ଧୁମାନଙ୍କ ସହିତ ସାନ୍ନିଧର ସମନ୍ୱୟ ଘଟିଥିଲା ତାଙ୍କ ଜୀବନରେ ।

ହଠାତ୍ ତାଙ୍କର ପରଲୋକ ସଂବାଦ । କାହିଁକି ସେ ଗଲେ ? ଏଇ ପ୍ରଶ୍ନର ଉତ୍ତରରେ ଯେପରି ଆଉ ଗୋଟାଏ ପ୍ରଶ୍ନ ? ସେ ରହନ୍ତେ କାହିଁକି ? କଣ ଅଧିକ ଦେଖିବା ପାଇଁ ? ତାଙ୍କର ମରଦେହକୁ ପୋଡ଼ି ଦେଇ ଫେରିଲା ବାଟରେ ମନରେ ସେଇ ପୁରାତନ ପ୍ରଶ୍ନ ମୁଣ୍ଡ ଟେକୁଥିଲା ।

ଆମ ବଞ୍ଚିବା ଆଉ ମରିବା କଣ ଆକସ୍ମିକ ନା ଏସବୁ ଏକ ବିଧାନର ବନ୍ଧନ ତା ପରେ 'ବ୍ରିଜ୍ ଅଫ୍ ସାନ୍ ଲୁଇ' ବହିରେ ସେଇ ପ୍ରଶ୍ନର ଉତ୍ତର । ଆମେ ସବୁ ଏକ ବିଧାନର ଅନ୍ତର୍ଭୁକ୍ତ । ମୃତ୍ୟୁ ଆସେ ସେତିକିବେଳେ ଯେତେବେଳେ ଜୀବନର ଚକ ସଂପୂର୍ଣ୍ଣ ଭାବରେ ଘୁରି ଯାଇଥାଏ ।

ଦେବେନ୍ଦ୍ର ଶତପଥୀ ଆଉ ନାହାନ୍ତି ।



# ସେ ତ ଆଉ ଫେରିବେ ନାହିଁ

ସବୁ ଅଧାରେ ରହିଯିବ । କେତେ କଥା ଲେଖିଥିଲେ ଏହି କିଛି ଦିନ ତଳେ । କେତେ ପରିକଳ୍ପନା କରିଥିଲେ । ଭାବର କେତେ ଦିଆନିଆ ବାକି ଥିଲା । ରେଭେନ୍ସା କଲେଜର କେତେ ପୁରୁଣା ସ୍ମୃତି, ସ୍କୁଲ ବେଳର କେତେ କବିତା ସେ ଆଉଡ଼େଇ ନ ଥିଲେ ତାଙ୍କର ଚିଠି ସବୁରେ । ଏଇ ସହର ଗୋଲାମ ନଗରୀ ନାଁରେ ପରିଚିତ ଥିଲା । ଏଠି ହତାଶ ଲାଗେ ଅଫିମିଆ ରାସ୍ତା, ଫର୍ମାଲ ବିହେଭିଅର ଯୋଗୁଁ । କିନ୍ତୁ ଏବେ ବଦଳି ଯାଉଛି ମାନଚିତ୍ର । ବୟସ ଏବଂ ଦୂରତ୍ୱ ମାଡ଼ି ବସୁଛି । ଯାଇ ହେଉନି ଅନେକ ସଭାକୁ, ଆଲୋଚନାକୁ । ତଥାପି ଏସବୁ ପ୍ରାଣ ପଶିଲା ପରି ମନେ ହେଉଛି । ଦେଖାଯାଉ, ଆସିବେ କେବେ । ହେରିବା ଜୀବନକୁ । ହଜିଲା ଦିନକୁ । ରେଭେନ୍ସା କଲେଜର ବି କାମ ପାଇଁ ଆପଣମାନେ ପୁରୁଣା ଛାତ୍ରମାନେ ଟ୍ରଷ୍ଟ ଗଢ଼ିଛନ୍ତି । କେତେ ଆନନ୍ଦ ଲାଗୁଛି । ମୋର ସହକର୍ମୀ ଅମୀୟ (ତ୍ରିପାଠୀ) ନେତୃତ୍ୱ ନେଉଛନ୍ତି । ଇଚ୍ଛା ହଉଛି, ମୁଁ ବି ଗାଣ୍ଡୁଆଏ ମାଟି ପକାଇ ପାରନ୍ତି କି ?

ଦୁର୍ଗାମାଧବ ମିଶ୍ର ହଠାତ୍ ଚାଲିଗଲେ । କିଛି ତ କାରଣ ନ ଥିଲା । ରୋଗ ନାହିଁ, ବଇରାଗ ନାହିଁ । ତଥାକଥିତ ଖରାପ ଅଭ୍ୟାସ କିଛି ନାହିଁ । କେଡ଼େ ସମ୍ବେଦନଶୀଳ, କାବ୍ୟିକ ହୃଦୟ । ବାହାରେ ଏ ବର୍ଷର ପହିଲି ବସନ୍ତ ପବନର ଢେଉ । ଉତଳା ପବନ । କବିତା ଲେଖିବାର, ପ୍ରଣୟିନୀ କଥା ଲେଖିବାର ସମୟ । ଏତିକିବେଳେ ମୃତ୍ୟୁ ଭଳି କଠୋର ନିମିଷ ଆସିଲା କେଉଁଠୁ ? ତାର ଉତ୍ତର କିଏ ଦେବ ?

କାଲି ମୁଁ ଭୁବନେଶ୍ୱରରେ ଥିଲି । ଶରୀର ଅସୁସ୍ଥତା ସତ୍ତ୍ୱେ । କେତେ ଲେଖକ, କଳାକାର, ଅଧ୍ୟାପକ ସହିତ ସନ୍ଧ୍ୟା ପର୍ଯ୍ୟନ୍ତ କଥା ହୋଇଛି । ଭେଟିଛି, ପ୍ରାୟ ସାଢ଼େ ପାଞ୍ଚଟା ସମୟରେ ମଡର୍ଣ୍ଣ ବୁକ୍ ଡିପୋରେ ଶୁଣିଲି କଲିକତା ପୁସ୍ତକ ମେଳାରେ ନିଆଁ ଲାଗିଛି । ଉପନ୍ୟାସ, କାବ୍ୟ ସବୁ ଜଳୁଛି । ଜଳୁଛି କବି ଲେଖକର କୃତି । କିନ୍ତୁ କେହିତ କହିଲେ ନାହିଁ ଏଇ ଲେଖକର ଚିତା କଥା । ଲେଖାର ଚିତା କଥା ଶୁଣିଲି କିନ୍ତୁ ଲେଖକର ଚିତା କଥା ତ ଶୁଣି ପାରିଲି ନାହିଁ । ଭାଗ୍ୟର ବିଡ଼ମ୍ବନା । ଦୁର୍ଗାମାଧବ ବାବୁ ଆମ ଉପର ଶ୍ରେଣୀରେ ପଢୁଥିଲେ । କିନ୍ତୁ କାବ୍ୟିକ ମହକରେ ସେ ପରିଚିତ ହୋଇ ସାରିଥିଲେ କଲେଜରେ ପଢୁଥିବା ସବୁ ଛାତ୍ରଙ୍କ ମହଲରେ । ବାପା ଚନ୍ଦ୍ରମାଧବ ମିଶ୍ର ରେଭେନ୍ସା କଲେଜରେ ହେଡ୍ କ୍ଲର୍କ । ଘର ନୟାଗଡ଼ । ସେଇଠି ଆମେ ଠିଆ ହୋଇ ଦେଖିଛୁ ୟୁନିୟନ ଜ୍ୟାକର ଅବତରଣ ଏବଂ ତ୍ରିରଙ୍ଗା ପତାକାର ଉତ୍ତୋଳନ । ସ୍ୱାଧୀନତାର ବହୁ ପୂର୍ବରୁ ରେଭେନ୍ସା କଲେଜରେ ୧୯୪୬ ମସିହା ଡିସେମ୍ବର ମାସରେ ୟୁନିୟନ୍ ଜ୍ୟାକର ଅବତରଣ ହୋଇ ତ୍ରିରଙ୍ଗା ପତାକା ଉଡ଼ି ସାରିଥିଲା ।

ଦୁର୍ଗାମାଧବ କବିତା ଲେଖନ୍ତି । ସେ ଆବୃତ୍ତି କରନ୍ତି କବିତାକୁ ବିଭିନ୍ନ ଆସରରେ । ସେତେବେଳେ କଲେଜରେ ଏଇପରି କବିତା ଆସର ପ୍ରଚୁର ହେଉଥିଲା । ବ୍ରେକ୍-ଡ୍ୟାନ୍ସ ଆମକୁ ଗ୍ରାସ କରିବା ପାଇଁ ଡେରି ଥିଲା । ଦୁର୍ଗାମାଧବ ବାବୁ ଆଇ.ପି.ଏସ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପୁଲିସ ବିଭାଗରେ ଯୋଗ ଦିଅନ୍ତି । କିନ୍ତୁ ବଲମ ସହିତ କଲମ ବି ଚାଲିଥିଲା । ଦେଖାହୁଏ ମଝିରେ ମଝିରେ । ପୁଲିସ ବିଭାଗର ବଡ଼ ଅଫିସର । କିନ୍ତୁ ସ୍ୱଭାବ ବିନମ୍ର । ପଡ଼ିଆରେ ହୁଇସିଲ୍ ଫୁଙ୍କୁ ଫୁଙ୍କୁ ଯଦି ଜଣେ ହଠାତ୍ ସାହିତ୍ୟର ନିୟାମକ ହୋଇଯାଏ ସେ ଗର୍ବରେ ଫାଟିପଡ଼େ । କିନ୍ତୁ ଦୁର୍ଗାମାଧବ ମିଶ୍ର ଓଲଟି ହେରନ୍ତି କିଏ ତାଙ୍କୁ କୁକୁର ଛୁଆଟିଏ ଦେଇଥିଲା ବହୁ ଦିନର ଅନୁରୋଧକୁ ନ ଭୁଲି । ଖୋଦ୍ ଘରୋଇ ବିଭାଗ ମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟଙ୍କ ସ୍ତ୍ରୀ ନଳିନୀ ଦେବୀ କିପରି ତାଙ୍କ ଘର ଆଗରେ ରିକ୍ସାରୁ ଓହ୍ଲାଇ ମାଗିଲେ ଲେଖାଟିଏ ' ମରୁତୀର୍ଥ ' ପାଇଁ - ଜୀବନର ଏଇଭଳି ଟିକିନିକି କଥା ସେ ମନେ ରଖିଥିଲେ ଏବଂ ଲେଖୁଥିଲେ । ବିନମ୍ରତା ତାଙ୍କର ଗୁଣ ଥିଲା ।

ଦୁର୍ଗାମାଧବ ଗାଳ୍ପିକ । ଗଳ୍ପ ସବୁର ବିଷୟବସ୍ତୁ ସାଧାରଣ ଜୀବନରୁ କିନ୍ତୁ ପାରମ୍ପରିକ ନୁହନ୍ତି । କୁଆଡୁ ଆଣନ୍ତି ଆପଣ ଏହି ଚରିତ୍ର ସବୁ ? ହସି ହସି କହନ୍ତି । ମୁଁ କଣ ଲେଖକ ! ଜୀବନର ରାଜପଥରେ ଯେଉଁ ସବୁ ବିଚିତ୍ର ଚରିତ୍ର ସହିତ ଭେଟ ହୋଇଛି ସେଇଗୁଡ଼ିକୁ ମୁଁ ପାଠକ ପାଖରେ ଥୋଇ ଦେଇଚି, ଟିକିଏ ସଜଡ଼ା ସଜଡ଼ି କରି । ଝିଅଟିଏ ଯେମିତି ଆପଣାର ଆଲୁଳାୟିତ କୁନ୍ତଳକୁ ସଜାଡ଼ି ଦିଏ ବାହାରକୁ ଯିବା ପୂର୍ବରୁ । ସମସ୍ତେ ହସି ଉଠନ୍ତି ।

ଦୁର୍ଗାମାଧବ ବାବୁ ପ୍ରତିଷ୍ଠା ପାଇଥିଲେ ଆପଣାର ଚାକିରି ଜୀବନରେ, ଆପଣାର ଗାଳ୍ପିକ ଜୀବନରେ । କିନ୍ତୁ ସବୁଠାରୁ ବଡ଼ ପ୍ରତିଷ୍ଠା ସେ ପାଇଛନ୍ତି ମଣିଷ ଭାବରେ । ଏଡ଼େ ବଡ଼ ଅଫିସର, ଏତେ ବଡ଼ ଗାଳ୍ପିକ କିନ୍ତୁ ସ୍ୱଭାବ ସେମିତି ବିନମ୍ର ।

ସେଦିନ ମନେ ପଡୁଛି । ଜର୍ମାନ କନସୁଲେଟରେ ପହଞ୍ଚିଲା ବେଳକୁ ଖବର ସେଠାରେ ପହଞ୍ଚିଲା । ଇନ୍ଦିରାଗାନ୍ଧୀ ଆପଣାର ଦେହରକ୍ଷୀର ଗୁଳି ମାଡ଼ରେ ନିହତ । କନସୁଲେଟ୍ ବନ୍ଦ କରି ଦିଆଗଲା । ଗାଡ଼ି ସବୁ ବନ୍ଦ ହୋଇଯାଉଛି । ଆମେ ଦୁଇଜଣ, ଉମେଶ ଚନ୍ଦ୍ର ନାୟକ ଓ ମୁଁ ଟାକସିରେ ଆସି ପହଞ୍ଚିଲୁ ପାର୍କ ଷ୍ଟ୍ରୀଟ୍‌ରେ, ଚେକୋସ୍ଲୋଭାକ କନସୁଲେଟରେ । ସେଠି ବି ସେହି ସଂବାଦ ପହଞ୍ଚି ସାରିଛି ଏବଂ ଅବସ୍ଥା ସେଇଆ । ଦୋକାନ ବଜାର ସବୁ ବନ୍ଦ ହୋଇ ଯାଇଛି । ରାସ୍ତାଘାଟ ନିଶୂନ ହୋଇଗଲାଣି । କେଉଁଠି କେଉଁଠି ନିଆଁ ଲାଗିବାର ଖବର ପହଞ୍ଚିବାକୁ ଆରମ୍ଭ କରିଛି । ଆମେ ରହିଥାଉ ସେଇ ପାର୍କଷ୍ଟ୍ରିଟ୍‌ର ଏକ ଅତିଥି ନିବାସରେ । ସେଠାରେ ଖାଇବାର ବ୍ୟବସ୍ଥା ନାହିଁ । କୌଣସି ମତେ ମଧ୍ୟାହ୍ନ ଭୋଜନ ମିଳିଗଲା । କିନ୍ତୁ ତାପରେ ? ତା ପରଦିନ ସନ୍ଧ୍ୟାରେ ଆମକୁ ଫେରିବାକୁ ପଡ଼ିବ । ଟିକେଟ୍ କିଣା ସରିଛି । କିନ୍ତୁ ପାର୍କଷ୍ଟ୍ରିଟରୁ ହାଓଡ଼ା ଯିବୁ କେମିତି ? ସବୁ ତ ବନ୍ଦ । କର୍ଫ୍ୟୁ ଜାରି ହୋଇ ଯାଇଛି । ପରିସ୍ଥିତି ଭୟାନକ । ଗୁଳି ମାଡ଼ର ଶବ୍ଦ ଶୁଭୁଛି । ରାସ୍ତାରେ ଯାଉଥିବା ବ୍ୟକ୍ତିମାନେ ହାତ ଉପରକୁ ଟେକି ଯାଉଛନ୍ତି । ଯାହାକୁ ଫୋନ କଲେ ସବୁ ଗାଡ଼ି ବାଲା ଆପଣାର ଅସହାୟତା ପ୍ରକାଶ କରୁଛନ୍ତି । କଣ କରାଯିବ ?

ହଠାତ୍ ମନେ ପଡ଼ିଲା ଦୁର୍ଗାମାଧବ ମିଶ୍ରଙ୍କ କଥା । ସେ କେନ୍ଦ୍ରସୁରକ୍ଷା ବାହିନୀର ମୁଖ୍ୟ କଲିକତାରେ ଅବସ୍ଥାପିତ । ଫୋନ ବୁଲାଇ ବୁଲାଇ ତାଙ୍କୁ ପାଇଲି । ସେ ଆପଣାର ବାହିନୀକୁ ସହରର ବିଭିନ୍ନ ଯାଗାରେ ମୁତୟନ କରିବାରେ ବ୍ୟସ୍ତ । ତାଙ୍କୁ କହିଲି ଦୂରାବସ୍ଥାର କଥା । ସେ ସାଙ୍ଗେ ସାଙ୍ଗେ ଜଣେ ଆଇ.ପି.ଏସ୍. ଅଫିସର ଏବଂ ଦୁଇଟି ସାଞ୍ଜୁଆ ଆରକ୍ଷୀ ବାହିନୀକୁ ପଠାଇଲେ ଆମକୁ ହାବଡ଼ା ଷ୍ଟେସନ୍‌କୁ ନେବା ପାଇଁ । ସେ ସାହାଯ୍ୟ ଭୁଲିବାର ନୁହେଁ । ଗାଡ଼ି ପହଞ୍ଚିଲା । ଇନ୍ଦିରା ଗାନ୍ଧିଙ୍କ ହତ୍ୟା ସଂକ୍ରାନ୍ତରେ କୌଣସି ଆସାମୀ ଧରା ପଡ଼ିଛି ଭାବି ଶହ ଶହ ଲୋକ ଠୁ ଳ ହେଲେ । ଆମର ଅତିଥିଶାଳାର ପିଅନ କପିଳ ସେମାନଙ୍କୁ ବୁଝାଇଦେଲା ଯେ ଘଟଣା ତାହା ନୁହେଁ । ଜଣେ ଅତିଥିକୁ ଷ୍ଟେସନ୍‌କୁ ନେବା ପାଇଁ ପୁଲିସ ବାହିନୀ ଆସିଛନ୍ତି । ଆମେ ସବୁ ଭି.ଭି.ଆଇ.ପି. ହୋଇଥିବୁ ନିଶ୍ଚୟ ଭାବି ଆହୁରି ଲୋକ ଠୁଳ ହେଲେ ଦେଖିବା ପାଇଁ ।

ପରେ ମୁଁ ବହୁ ମାସ ପରେ ଦୁର୍ଗାମାଧବ ବାବୁଙ୍କୁ କହିଲି ଏଇ ଅଭିଜ୍ଞତାର କଥା । ଗୋଟାଏ ଗଳ୍ପର ବିଷୟ ବସ୍ତୁ ମିଳିଗଲା ବୋଲି ଦୁର୍ଗାମାଧ ବାବୁ ହସି ହସି କହିଲେ ।

କଣ ହେଲା ତାଙ୍କର ? କିଛି ତ ରୋଗ ନ ଥିଲା କେବେ ? କିନ୍ତୁ ସେ ପ୍ରଶ୍ନର ଉତ୍ତର କଣ ମିଳିପାରିବ ? ସଂବେଦନଶୀଳ ହୃଦୟରେ କଣ ହେଲା ତାହା କହିବା ବା ଜାଣିବା ଆମର ଉର୍ଦ୍ଧ୍ୱରେ ।

ସେ ନାହାନ୍ତି କିନ୍ତୁ ସେ ତ ମନେ ରହିବେ ଆମ ପାଇଁ ସବୁଦିନେ । କେବଳ ଗାନ୍ଧିକ ଭାବରେ ନୁହେଁ ? ମଣିଷ ଭାବରେ ।



# ମଣିଷ ପରି ବୈଜ୍ଞାନିକଟିଏ

ଡକ୍ଟର ଦୟାନିଧି ପଟ୍ଟନାୟକ ଆଉ ନାହାନ୍ତି । ହଠାତ୍ ତାଙ୍କର ପରଲୋକ ହୋଇଯାଇଛି । ଶ୍ୱାସରୋଗ ତାଙ୍କର ଚିର ସହଚର ଥିଲା । ମାନସିକ ଅବସାଦ ଏ ରୋଗକୁ ବଢ଼ାଇଥାଏ । ଏ ରୋଗରେ ଜୀବନର ସ୍ପୃହା କମିଯାଏ ଏବଂ ଜୀବନରେ ସ୍ପୃହା କମିଯିବା ସହିତ ଏ ରୋଗ ବଢ଼ି ଯାଇଥାଏ । ଡକ୍ଟର ଦୟାନିଧି ପଟ୍ଟନାୟକ ଚାକିରି ଛାଡ଼ି ଭୂଦାନ ଆନ୍ଦୋଳନରେ ଯୋଗ ଦେଇଥିଲେ, କ୍ରାନ୍ତି ପାଇଁ କୁର୍ଣ୍ଣିସ ପାଇଁ ନୁହେଁ । ଅଧ୍ୟାପକ ଚାକିରି ପରି ନିରୀହ ଚାକିରିରେ ମଧ୍ୟ ସେ ତୃପ୍ତ ହୋଇ ପାରିନଥିଲେ । ତାଙ୍କର ମନେ ହେଉଥିଲା ଯେପରି ଶତ୍ରୁ ତାଙ୍କୁ ଚାରିଆଡୁ ଘେରି ଆସୁଚି । ଡକ୍ଟର ଦୟାନିଧି ପଟ୍ଟନାୟକ ଛାତ୍ରାବସ୍ଥାରୁ ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନ ଏବଂ ତତ୍କାଳୀନ କଂଗ୍ରେସ ଦଳ ସହିତ ଜଡ଼ିତ ହୋଇ ଯାଇଥିଲେ । ବଡ଼ ଭାଇ ହରମୋହନ ପଟ୍ଟନାୟକ ତାଙ୍କୁ ଦେଇଥିଲେ ପ୍ରେରଣା । ପିଲାଦିନୁ ହିଁ ସେ ଖଦଡ଼ ପିନ୍ଧିବା ଏବଂ ସରଳ ଜୀବନ ଯାପନ କରିବା ପାଇଁ ନିଷ୍ପତ୍ତି ନେଇଥିଲେ । ବିଜ୍ଞାନର କୃତୀ ଛାତ୍ର ଦୟାନିଧି ପଟ୍ଟନାୟକ ଫିଜିକାଲ କେମିଷ୍ଟ୍ରିରେ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଉପାଧି ହାସଲ କରିଥିଲେ ଏବଂ ଆପଣାର ସୃଜନଶୀଳ ଗବେଷଣା ପାଇଁ ସମ୍ମାନିତ, ପ୍ରଶଂସିତ ହୋଇଥିଲେ । ଫିଜିକାଲ କେମିଷ୍ଟ୍ରି ଏକ ଦୁରୂହ ପାଠ । ଏଥିରେ ଗବେଷଣା କରି ଡକ୍ଟରେଟ୍ ଉପାଧି ପାଇବା ବ୍ୟକ୍ତି ଆଜି ମଧ୍ୟ ବିରଳ । ତାଙ୍କୁ ବିଲାତ ଆମେରିକାରେ ରହି ଉଚ୍ଚତର ଗବେଷଣା କରିବା ପାଇଁ ଅନେକ ଲୋଭନୀୟ ପ୍ରସ୍ତାବ ଆସିଥିଲା । କିନ୍ତୁ ଗର୍ବିତ ଜାତୀୟତାବାଦୀ ଦୟାନିଧି ପଟ୍ଟନାୟକ ଫେରିଥିଲେ ଭାରତବର୍ଷକୁ ପାଠ୍ୟକାର୍ଯ୍ୟକ୍ରମ ସମାପ୍ତ କରି । ସେ ଅବିବାହିତ ଥିଲେ ଏବଂ ଖୁସିରେ ସେ ଏଇ ବିଦେଶରେ ରହିଯିବାର ବିକଳ୍ପ ପ୍ରସ୍ତାବକୁ ଗ୍ରହଣ କରିନେବା ଉଚିତ ବୋଲି ଅନେକ ଉପଦେଶ ଦେଇଥିଲେ । କିନ୍ତୁ ନୂତନ ଭାରତବର୍ଷ ଗଠନ କରିବାକୁ ହେବ ଏବଂ ଗଠନର ସାଫଲ୍ୟ ପାଇଁ ପ୍ରଥମେ ଆବଶ୍ୟକ ଶିକ୍ଷା । ତେଣୁ ଶିକ୍ଷାକୁ ହିଁ ଆଧାର କରିବାକୁ ହେବ ।

ଡକ୍ଟର ଦୟାନିଧି ପଟ୍ଟନାୟକ ରେଭେନ୍ସା କଲେଜର ଅଧ୍ୟାପକ ଭାବରେ ପୁଣି ଯୋଗଦେଲେ । ସେ ଫିଜିକାଲ କେମିଷ୍ଟ୍ରି ଭଳି ଜଟିଳ ପାଠକୁ କିପରି ସରଳ ଏବଂ ମନୋମୁଗ୍ଧକର ଭାବରେ ପଢ଼ାନ୍ତି ତାହା ଆଜି ମଧ୍ୟ ସ୍ମରଣ କରନ୍ତି ତାଙ୍କର ଛାତ୍ରମାନେ । ପଢ଼ାଇବାର ଭଙ୍ଗୀ ସହିତ ତାଙ୍କର ଉଚ୍ଚାରଣ ଏବଂ କ୍ଲାସର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଦଉଡ଼ ସହିତ ପ୍ରତ୍ୟେକ ପିଲାକୁ ପ୍ରଶ୍ନ ଏ ପର୍ଯ୍ୟନ୍ତ ରେଭେନ୍ସା କଲେଜ କରିଡ଼ରରେ ପ୍ରତିଧ୍ୱନିତ ହୁଏ । ଡକ୍ଟର ଦୟାନିଧି ପଟ୍ଟନାୟକ ଉଚ୍ଚକୋଟିର ଗବେଷକ ଏବଂ ଉଚ୍ଚ କୋଟିର ଗାଇଡ଼ ମଧ୍ୟ ।

ପିଲାଙ୍କର ଭିଡ଼ ଜମେ, ଜମେ ଖାଲି ଗବେଷଣା ପାଇଁ ନୁହେଁ, ଜମେ ଏଇ ସମ୍ବେଦନଶୀଳ ମଣିଷଟି ପାଇଁ, ତାଙ୍କର ଉଷ୍ମତା ଏବଂ ଦୟା ପାଇଁ । ତାଙ୍କ ଘର ଯେପରି ଗୋଟାଏ ମେସ । ବହୁ ଗରିବ ମେଧାବୀ ଛାତ୍ର ସେଠାରେ ଆଶ୍ରୟ ପାଆନ୍ତି ।

ଡକ୍ଟର ଦୟାନିଧି ପଟ୍ଟନାୟକ ଭାରି ସ୍ପର୍ଶକାତର ମଣିଷ । ଟିକିଏ ଟିକିଏ କଥାକୁ ସେ ନେଇ ଯାଆନ୍ତି ଅନେକ ଦୂର । ଛୋଟ ଛୋଟ କଥା ତାଙ୍କୁ ଆଘାତ ଦିଏ ପ୍ରଚୁର । ସାମ୍ରାଜ୍ୟବାଦୀ ମାନଙ୍କର ଲେଲିହାନ ଶିଖା ଜାତୀୟ ଜୀବନର ପ୍ରତି ସ୍ତରକୁ ବ୍ୟାପୀ ଯାଇଛି ବୋଲି ତାଙ୍କର ବିଶ୍ୱାସ ଥିଲା । ସାମ୍ରାଜ୍ୟବାଦର ଏକୁଡ଼ିଶାଳ ଦେଖି ଆସିଛନ୍ତି ସେ । ସାମ୍ରାଜ୍ୟବାଦ କିପରି ଅର୍ଥନୀତି ଠାରୁ ଆରମ୍ଭ କରି ସାହିତ୍ୟ ପର୍ଯ୍ୟନ୍ତ, କଳା ଠାରୁ ଆରମ୍ଭ କରି ବିଜ୍ଞାନ ପର୍ଯ୍ୟନ୍ତ ସବୁ ସ୍ତରକୁ ଭେଦ କରିଛି, ତାହା ସେ ଦେଖିଛନ୍ତି ସାମ୍ରାଜ୍ୟର ଗଡାଘରରୁ । ପରେ ଦେଖିଛନ୍ତି ସାମ୍ରାଜ୍ୟବାଦ ବିରୋଧୀ ଦୟାନିଧି ପଟ୍ଟନାୟକଙ୍କ ସବୁ କ୍ଷେତ୍ରରେ ସାମ୍ରାଜ୍ୟବାଦୀ ମାନଙ୍କର ଭୂତ ଦେଖିବାକୁ ପାଇଲେ । ଏଇ ଭୂତ ତାଙ୍କୁ ଏବଂ ତାଙ୍କର ଭାଇକୁ ଗ୍ରାସ କରିଥିଲା ତୀବ୍ର ଭାବରେ ।

ଡକ୍ଟର ଦୟାନିଧି ପଟ୍ଟନାୟକ ନିଜେ କାହାରି ଶତ୍ରୁ ନ ଥିଲେ । ସାମ୍ରାଜ୍ୟବାଦୀମାନଙ୍କ ଛଡ଼ା ଆଉ କାହାକୁ ସେ ଶତ୍ରୁ ରୂପରେ ଗଣନା କରୁ ନଥିଲେ । କିନ୍ତୁ ତା ଅର୍ଥ କଣ ତାଙ୍କର କେହି ଶତ୍ରୁ ହେବେ ନାହିଁ ? ପୁଣି ଓଡ଼ିଶା ଭଳି ଦେଶରେ ? ଏଇପରି ଏକ ଗୋଷ୍ଠୀ ତାଙ୍କର ସ୍ପର୍ଶକାତର ଦୁର୍ବଳତାର ସୁଯୋଗ ନେଇ ତାଙ୍କ ଘରକୁ ଏକ ନକଲି ଭିଜିଲାନ୍ସ ସ୍କ୍ୱାର୍ଡ ପଠାଇଲେ । ସାଙ୍ଗେ ସାଙ୍ଗେ ଦୟାନିଧି ବାବୁ ବୁଝିଗଲେ ଯେ ଏ ସବୁ ହେଉଛି ସାମ୍ରାଜ୍ୟବାଦୀ ମାନଙ୍କ ଷଡ଼ଯନ୍ତ୍ର । ତାଙ୍କୁ ଆଉ ଚାକିରିରେ ରଖି ନ ଦେବା ପାଇଁ ସାମ୍ରାଜ୍ୟବାଦୀମାନେ ସ୍ଥିର କରିଛନ୍ତି । ଶତ୍ରୁ ଯେ ପାଚିରୀ ଆରପଟରେ, ସେ କଥା ଦୟାନିଧି ବାବୁ ବୁଝିବାକୁ ରାଜି ହେଲେ ନାହିଁ ।

ଚାକିରି ଛାଡ଼ି ସେ ଯୋଗଦେଲେ ସର୍ବୋଦୟ ଆନ୍ଦୋଳନରେ ।

ଥରେ ପ୍ରସିଦ୍ଧ ବୈଜ୍ଞାନିକ ଅଧ୍ୟାପକ ସତ୍ୟେନ୍ ବୋଷଙ୍କୁ କୌଣସି ଏକ ଭୋଜି ସଭାରେ ଜ୍ୟୋତି ବସୁ, ଭବାନୀ ସେନ ପ୍ରମୁଖ କମ୍ୟୁନିଷ୍ଟ ପାର୍ଟିର ନେତାମାନଙ୍କୁ ପରିଚୟ କରାଇ ଦେବା ଅବସ୍ଥାରେ ସେ ଉତ୍ତର ଦେଲେ - ମୁଁ କମ୍ୟୁନିଷ୍ଟ ମାନଙ୍କ ଉପରେ ଖୁବ୍ ରାଗିଚି ।

ବଙ୍ଗଳା କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱ ଏହାକୁ ଉଦ୍‌ବେଗତାର ସହିତ ଗ୍ରହଣ କଲା ଏବଂ ତା' ପରଦିନ କମ୍ୟୁନିଷ୍ଟ ପାର୍ଟିର ବହୁ ପ୍ରବୁଦ୍ଧ ନେତୃବୃନ୍ଦ ଅଧ୍ୟାପକ ସତ୍ୟେନ୍ ବୋଷଙ୍କୁ ଭେଟିଲେ ଏବଂ ପଚାରିଲେ - ସାର୍, ଆପଣ କାହିଁକି ଆମ ଉପରେ ରାଗିଛନ୍ତି ? କଣ ଆମର ଦୋଷ ?

ସତ୍ୟେନ ବୋଷ ଉତ୍ତର ଦେଲେ ନାହିଁ ମୁଁ ରାଗିଚି କୌଣସି ଦୋଷ ପାଇଁ ନୁହେଁ । ତମ ମାନଙ୍କୁତ ଅନେକ ରାଜନୈତିକ କ୍ୟାଡ଼ର ମିଳିଥାନ୍ତା । ତମେ କାହିଁକି ଡକ୍ଟର ଗଂଗାଧର ଅଧିକାରୀଙ୍କୁ ନେଇଗଲ ରାଜନୈତିକ କାର୍ଯ୍ୟ ପାଇଁ ? କାହିଁକି ଆମ ଜଗତକୁ ତମେ ଦରିଦ୍ର କରିଦେଲ ? କେଉଁଠୁ ଆମେ ପାଇବୁ ଏ ଭଳି ଜଣେ ବୈଜ୍ଞାନିକ ଉଭୟ ପଦାର୍ଥ ବିଜ୍ଞାନ ଏବଂ ରସାୟନ ବିଜ୍ଞାନରେ ଡକ୍ଟରେଟ୍ କରି ପାରିଛି ? ଫିଜିକାଲ କେମିଷ୍ଟ୍ରି ପାଇଁ ଆମକୁ ଜ୍ଞାନ ଦେବ କିଏ ?

କହିବା ବାହୁଲ୍ୟ ଯେ ଡକ୍ଟର ଗଂଗାଧର ଅଧିକାରୀ କମ୍ୟୁନିଷ୍ଟ ପାର୍ଟିର ତୁଙ୍ଗ ନେତାମାନଙ୍କ ମଧ୍ୟରେ ଅନ୍ୟତମ ।

ଡକ୍ଟର ଦୟାନିଧି ପଟ୍ଟନାୟକ ଏକ ଷଡ଼ଯନ୍ତ୍ରର ଶିକାର ହୋଇ ଶିକ୍ଷକତା ଛାଡ଼ି ଦେଉଥିବା ଶୁଣି ତାଙ୍କର ଗୁରୁ ପ୍ରସିଦ୍ଧ ରସାୟନବିଦ୍ ଅଧ୍ୟାପକ ବଳଭଦ୍ର ପ୍ରସାଦ ସେଇ କଥା କହିଥିଲେ କ୍ଷୋଭରେ ।

କେଉଁଠୁ ଆମେ ଆଉ ପାଇବା ସେଭଳି ଜଣେ ଗବେଷକ, ଅଧ୍ୟାପକ ଯିଏ ଫିଜିକାଲ କେମିଷ୍ଟ୍ରି ଭଳି ଜଟିଳ ବିଷୟକୁ ସରଳ ଭାବରେ ବୁଝାଇ ପାରନ୍ତି, କେଉଁଠୁ ଆମେ ଆଉ ପାଇବା ସେଇପରି ଜଣେ ବୈଜ୍ଞାନିକ ।

ଏହା ସତ୍ତ୍ୱେ ଡକ୍ଟର ଦୟାନିଧି ପଟ୍ଟନାୟକ ଆଉ ଫେରି ନ ଥିଲେ । ସେ ପୂରା ସମୟ ଦେଇ ଭୂଦାନ ଓ କ୍ରାନ୍ତି ପାଇଁ କାମ କରିବାକୁ ଲାଗିଲେ । କିନ୍ତୁ ସମୟ ବଦଳିଗଲା । ଦେଶରେ ଜରୋରୀ ଶାସନ ପ୍ରବର୍ତ୍ତନ ହେଲା ଏବଂ ସନ୍ଥ ବିନୋବା ଏହାକୁ ଏକ ଅନୁଶାସନର ପର୍ବ ବୋଲି ସ୍ୱାଗତ କଲେ । ବିନୋବାଙ୍କ ସହିତ ତାଙ୍କର ସଂପର୍କ ଛିନ୍ନ ହୋଇଗଲା । ଡକ୍ଟର ଦୟାନିଧି ରହିଲେ ଜୟ ପ୍ରକାଶଙ୍କ ସହିତ । ଏମରଜେନ୍ସି ସହିତ ସାଲିସ କରିବା ତାଙ୍କ ପାଇଁ ସମ୍ଭବପର ନ ଥିଲା । ସେ ଫେରିଲେ ଘରକୁ - ଦୁଇ ଭାଇ ଏକାକୀ ।

ଯାହା ହୁଏ ତାହା ହିଁ ଘଟିଲା ।

ରୋଗ ତାଙ୍କୁ ଖାଇ ଯିବାକୁ ଲାଗିଲା । ସେ ଅସୁସ୍ଥ ହେବାକୁ ଲାଗିଲେ । ପରିଶେଷରେ ଗଲାକାଲି ସେଇ ଦିନ ଆସିଗଲା, ଯାହା ପରେ ସେ ଆଉ ଫେରିବେ ନାହିଁ ।

ତଥାପି ଢେଙ୍କାନାଳ ପ୍ରତି ଓ ଢେଙ୍କାନାଳର ଶିକ୍ଷା ପ୍ରତି ତାଙ୍କର ଦରଦ ଥିଲା ପ୍ରଚୁର ।

ସେ ଚାଲିଗଲେ କିନ୍ତୁ ଛାଡ଼ି ଦେଇଗଲେ ଏକ ଉଜ୍ଜ୍ୱଳ ଇତିହାସ , ପରମ୍ପରା ଯାହା ଉତ୍ତର ପୀଢ଼ି ମନେ ରଖିବ ଆପଣାର ପାଇଁ ।



# ଗୋଟାଏ ଅଧ୍ୟାୟର ପରିସମାପ୍ତି

ଗାଁଲାକାଲି ନବବର୍ଷ ଥିଲା । ୧୯୬୬ ମସିହାର ନବବର୍ଷ ଆସିଛି । ସମସ୍ତେ ହର୍ଷୋତ୍‌ଫୁଲ୍ଲ ଆନନ୍ଦିତ ।

ବସ୍‌ଟିଏ ଯାଉଛି । ବସ୍‌ର ସବୁ ଯାତ୍ରୀ କଥାବାର୍ତ୍ତାରେ ରତ ଆନନ୍ଦରେ ମଗ୍ନ, ହଠାତ୍ ଦ୍ରୁତଗାମୀ ବସଟି ରାସ୍ତାରେ ନ ଯାଇ ଚାଲିବାକୁ ଆରମ୍ଭ କଲା ଏ ପଟ ସେପଟ ହୋଇ । ଡ୍ରାଇଭର ଷ୍ଟିଅରିଂ, ବ୍ରେକ୍, ଗିଅର ବ୍ରେକ ସବୁ ବ୍ୟବହାର କରି ବସଟିକୁ କୌଣସିମତେ ରାସ୍ତା ଉପରେ ଚ଼ଳାଇବାକୁ ଚାହିଁଲେ ।

ବସରେ ଥିବା ଯାତ୍ରୀମାନଙ୍କ ଭିତରେ ଆତଙ୍କ ।

ବସିଛନ୍ତି ଜଣେ ବୟସ୍କ ବ୍ୟକ୍ତି । ଖଦଡ଼ ପିନ୍ଧିଛନ୍ତି । ପାଞ୍ଚହାତିଆ ମଣିଷ । ବାଳ ପାଚି ଯାଇଛି । ଦାନ୍ତ ବେଶୀ ନାହିଁ । ସେ ପାଟି କରୁଛନ୍ତି । କି ଗ୍ରହାଚାର ହେଲାରେ । ପିଲାମାନଙ୍କୁ ରକ୍ଷା କରେରେ । ମାଇପିଲାମାନଙ୍କୁ ସମ୍ଭାଳରେ ।

ନିଜର ମୃତ୍ୟୁ ପାଇଁ ଭୟ ନାହିଁ । କିନ୍ତୁ ବସ୍‌ରେ ଥିବା ସାନ ପିଲା ଆଉ ସ୍ତ୍ରୀ ଲୋକମାନଙ୍କ ପାଇଁ ତାଙ୍କର ଉଦ୍‌ବେଗ । ସେ ସିଟ୍ ଉପରେ ବସି ପାରୁନାହାନ୍ତି । ଉଠି ଠିଆ ହେଲେ । ଦୌଡ଼ିଲେ ଡ୍ରାଇଭରର ପାଖକୁ । ହଠାତ୍ କ'ଣ ଗୋଟାଏରେ ପିଟି ହୋଇ ବସ୍‌ଟା ଓଲଟି ପଡିଲା । ଆଉ ଆଘାତ ପ୍ରାପ୍ତ ହୋଇ ସେଇ ବୟସ୍କ ବ୍ୟକ୍ତିଙ୍କର ପ୍ରାଣବାୟୁ ଉଡ଼ିଗଲା ।

ଗଂଜାମ ଜିଲ୍ଲାର ରାଜନୈତିକ ଇତିହାସରେ ଏକ ଅଧ୍ୟାୟ ପରିସମାପ୍ତି ଘଟିଲା । ଓଡ଼ିଶାର ରାଜନୈତିକ ତଥା ଓଡ଼ିଆ ଭାଷା ଆନ୍ଦୋଳନର ଏକ ମହାରଥୀ ହଠାତ୍ ଅନ୍ତର୍ହିତ ।

ସେ ହେଉଛନ୍ତି ଦିବାକର ପଟ୍ଟନାୟକ । ଯାହାଙ୍କର ପ୍ରତାପରେ ଦିନେ ସମଗ୍ର ଦକ୍ଷିଣ ଓଡ଼ିଶା କମ୍ପୁଥିଲା ।

ଗଂଜାମ, କୋରାପୁଟ ଜିଲ୍ଲାର ରାଜନୈତିକ ନେତାମାନଙ୍କର ଜନ୍ମ ଓ ବିକାଶ ଏକ ଦ୍ୱୈତ ସଂଗ୍ରାମରୁ । ଭାରତର ସ୍ୱାଧୀନତା ଆନ୍ଦୋଳନ ଏବଂ ଓଡ଼ିଆ ଭାଷାଭାଷୀ ଆନ୍ଦୋଳନ ତଥା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ପାଇଁ ଆନ୍ଦୋଳନ ଦିବାକର ପଟ୍ଟନାୟକ ତାର ବ୍ୟତିକ୍ରମ ନ ଥିଲେ ।

୧୮୮୯ ମସିହାରେ ଚିକିଟିରେ ଜନ୍ମଗ୍ରହଣ କରିଥିଲେ ଦିବାକର ବାବୁ । ଚିକିଟି ଗଡ଼ରେ ପ୍ରାଥମିକ ଶିକ୍ଷା । ତା'ପରେ ବ୍ରହ୍ମପୁର ବ୍ୟାପଟିଷ୍ଟ ମିଶନ ବା ତା'ପରେ କଟକରେ ଭିକ୍ଟୋରିଆ ସ୍କୁଲ (ବର୍ତ୍ତମାନ ଭକ୍ତମଧୁ ବିଦ୍ୟାପୀଠ)ରେ ଅଧ୍ୟୟନ । ତା'ପରେ ସେ ବଂଗଳାଦେଶର ବ୍ରହ୍ମପୁରକୁ ଯାଆନ୍ତି ଅଧ୍ୟୟନ ପାଇଁ । ସେଇଠି ମାଟ୍ରିକୁଲେଶନ ପାଶ କରି ଆଇ.ଏ. ପଢୁଥିଲେ ଦିବାକର ବାବୁ ।

ମହାତ୍ମା ଗାନ୍ଧିଙ୍କର ଅସହଯୋଗ ଡାକରା ବାଜିଲା ତାଙ୍କ କାନରେ । ପାଠପଢ଼ାରେ ଡୋର ବନ୍ଧାହେଲା । ଜୀବନର ରାଜପଥକୁ ସେ ଓହ୍ଲାଇଲେ ପାଠ ପଢ଼ିବା ପାଇଁ ଜୀବନର ପାଠ । ଜନ୍ମସ୍ଥଳୀ ଚିକିଟିରେ କଂଗ୍ରେସ କାମ ଆରମ୍ଭ କଲେ ଏବଂ ମୁଷ୍ଟିଭିକ୍ଷା କରି ପ୍ରତିଷ୍ଠା କଲେ ଚିକିଟିରେ ବାଳିକାମାନଙ୍କ ପାଇଁ ଅଖଣ୍ଡ ବାଳିକା ବିଦ୍ୟାଳୟ ଓ ଅଖଣ୍ଡ ପାଠାଗାର । ଅଦ୍ୟାପି ସେ ଦୁଇଟି ଅନୁଷ୍ଠାନ ତାଙ୍କର ସ୍ମୃତି ବହନ କରେ ।

୧୯୨୧ରେ କାରାବରଣ କଲେ । ୧୯୨୪ରେ କାରାଗାରରୁ ମୁକ୍ତି ପାଇ ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନ ରେ ସେ ଯୋଗଦାନ କରନ୍ତି । ଫିଲିପସ୍ ଡଫ୍ କମିଟି ଆଗରେ ଓଡ଼ିଶା ପ୍ରଦେଶ ଗଠନ ସକାଶେ ଦାବିପତ୍ର ପାଇଁ ଦିବାକର ବାବୁ ଖେଦିଲେ ଗାଁ କୁ ଗାଁ ତଥ୍ୟ ସଂଗ୍ରହ କରି । କିନ୍ତୁ କାରାବରଣ ପୁଣି କରିବାକୁ ପଡ଼ିଲା ତାଙ୍କୁ । ବର୍ଷକ ପରେ ସେଥିରୁ ମୁକ୍ତି ପାଇ ପୁଣି ଲାଗିଲେ କାମରେ । ୧୯୩୨ ମସିହାରେ ଜିଲ୍ଲା କଂଗ୍ରେସର ସଭାପତି ହେଲେ । ଜେଲ୍ ଓ ଲାଠି ଚାଳନାର ନିର୍ଯ୍ୟାତନାରେ ସେ ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହେଲେ । ବିଶାଖାପାଟନା ଡାକ୍ତରଖାନାରେ ଚିକିତ୍ସିତ ହୋଇ ସୁସ୍ଥ ହେଲାପରେ ସେ ୧୯୩୫ ମସିହାରେ ଗଂଜାମ ଜିଲ୍ଲା ବୋର୍ଡ଼ର ଉପସଭାପତି, ୧୯୩୮ରେ ସଭାପତି ହେଲେ । ୧୨ବର୍ଷ ସେ ରହିଲେ ଜିଲ୍ଲା ବୋର୍ଡର ସଭାପତି । ସେତେବେଳେ ଏହା ଏକ ଦାୟିତ୍ୱମୂଳକ ଏବଂ ସମ୍ମାନାସ୍ପଦ ପଦବୀ ଥିଲା । ଗଂଜାମ ଜିଲ୍ଲାରେ ଶିକ୍ଷାର ପ୍ରସାର, ଉଚ୍ଚଧରଣର ଶିକ୍ଷା ପ୍ରଦାନ ଦିବାକର ବାବୁଙ୍କର ଆଲେଖ୍ୟ ବହନ କରେ । ୨୬ଟି ହାଇସ୍କୁଲ, ୩୦ଟି ଡାକ୍ତରଖାନା, ୬୨ଟି ପାଠାଗାର ଏବଂ ୬୫୦ ମାଇଲ ରାଜପଥ ତାଙ୍କର ନେତୃତ୍ୱରେ ହୋଇ ଥିଲା ଗଂଜାମ ଜିଲ୍ଲାରେ । ଏହା ସେତେବେଳେ ଏକ ସର୍ବଭାରତୀୟ ରେକର୍ଡ । ଗଂଜାମ ଜିଲ୍ଲା ଓଡ଼ିଶାର ଏକ ସଚେତନ, ଶିକ୍ଷିତ ଜିଲ୍ଲାରେ ପରିଣତ ହେଲା ତାଙ୍କରି ନେତୃତ୍ୱରେ । ସାରା ଓଡ଼ିଶାରେ (ଗଡ଼ଜାତ ସମେତ) ସ୍କୁଲ ସଂଖ୍ୟା ତୁଳନାରେ ଗଂଜାମ ଜିଲ୍ଲାରେ ଶିକ୍ଷାୟତନର ସଂଖ୍ୟା, ଉନ୍ନତ ରାଜପଥ ତାଙ୍କୁ ଲୋକପ୍ରିୟ କରାଇ ପାରିଥିଲା ।

୧୯୪୨-୪୩ରେ ଦୁର୍ଭିକ୍ଷ ମରୁଡ଼ି ଦେଖାଦିଏ ଗଂଜାମ ଜିଲ୍ଲାରେ । ସେଇ ସମୟରେ ଦିବାକର ବାବୁଙ୍କ ନେତୃତ୍ୱ ଆହୁରି ପ୍ରକଟିତ ହୋଇଥିଲା । ରିଲିଫ୍ ବଣ୍ଟନ ସହିତ ନିଜ କାନ୍ଧରେ ବୋହି ମଶାଣିରେ ଶବ ପୋଡ଼ିବା ପର୍ଯ୍ୟନ୍ତ ସବୁଠାରେ ଦେଖା ମିଳୁଥିଲା ତାଙ୍କୁ ।

୧୯୫୧ ମସହିାରେ ବିଧାନସଭାକୁ ସେ ନିର୍ବାଚିତ ହୁଅନ୍ତି ବିନା ପ୍ରତିଦ୍ୱନ୍ଦ୍ୱିତାରେ । ୧୯୫୮ ମସିହାରେ ରାଜ୍ୟସଭାକୁ ନିର୍ବାଚିତ ହୁଅନ୍ତି । ପୁଣି ୧୯୬୬ ମସିହାରେ ପାତ୍ରପୁର ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୁଅନ୍ତି । ମହାତ୍ମା ଗାନ୍ଧୀ ଏବଂ ନେତାଜୀ ସୁଭାଷ ଥିଲେ ତାଙ୍କର ଗୁରୁ । ସେ ବର୍ମା ଫେରନ୍ତା ମାନଙ୍କର ଥଇଥାନ ପାଇଁ କାର୍ଯ୍ୟ କରନ୍ତି କାରଣ ବର୍ମା ଦେଶର ଓଡ଼ିଆ ମାନଙ୍କ ସହିତ ତାଙ୍କର ପରିଚିତି ଥିଲା ପ୍ରଭୂତ । ସେ କଂଗ୍ରେସ ଛାଡ଼ି ଫରୱାର୍ଡ ବ୍ଲକ୍‌ରେ ଯୋଗ ଦିଅନ୍ତି ଏବଂ ଗଂଜାମ ଜିଲ୍ଲାରେ କଂଗ୍ରେସ ବିରୋଧୀ ମିଳିତ ସାମ୍ମୁଖ୍ୟ ଗୋବିନ୍ଦ ପ୍ରଧାନ, ହରିହର ଦାସ, ବନମାଳୀ ମହାରଣାଙ୍କ ସହିତ ଗଢ଼ି ତୋଳନ୍ତି ।

ସେ ଥିଲେ ପ୍ରଚଣ୍ଡ ଓଡ଼ିଆପ୍ରେମୀ । ସେତିକିବେଳେ କଂଗ୍ରେସ ଦଳର ସଭାପତି ପଟ୍ଟାଭି ସୀତାରାମାୟା ବ୍ରହ୍ମପୁରକୁ ଆନ୍ଧ୍ର ପ୍ରଦେଶ ସହିତ ମିଶାଇବା ପାଇଁ ଦାବି କରନ୍ତି । ଦିବାକର ବାବୁ କଂଗ୍ରେସ ଦଳର ନେତା । ପଟ୍ଟାଭି ଆସନ୍ତି ବ୍ରହ୍ମପୁରକୁ ସଭା କରିବା ପାଇଁ । ତାଙ୍କୁ ଚେଁଖାଏ ଦେବା ପାଇଁ ଆହୂତ ସଭାରେ ଦିବାକର ବାବୁ ସଭାପତି ହୁଅନ୍ତି । ଦିବାକର ବାବୁଙ୍କ ଭାଷଣ ପରେ ସେ ପଟ୍ଟାଭିଙ୍କୁ ନିମନ୍ତ୍ରଣ କରନ୍ତି କରିବା ପାଇଁ । ହଠାତ୍ ଦେଖାଯାଏ ସଭା ଭିତରେ ବହୁତ ସାପ ଓ ବିରୁଡ଼ି । ସଭା ଛାଡ଼ି ସମସ୍ତେ ପଳାୟନ କରନ୍ତି । ସଭାର ଗୋଟିଏ କଡ଼ରେ ଝଟକା ଘୋଡ଼ା ମାନଙ୍କୁ ଧାଡ଼ି ଧାଡ଼ି କରି ରଖିଥିଲେ ସେ । ସେମାନଙ୍କୁ ବିରୁଡ଼ି ଦଂଶିବା ହେତୁ ସେମାନେ ବିକଟାଳ ଶବ୍ଦ କରି ସଭା ଭିତରେ ଦୌଡ଼ନ୍ତି । ସଭାରେ ଆଉ କେହି ଲୋକ ନାହାନ୍ତି । କେବଳ ଦିବାକର ବାବୁ ମୁଣ୍ଡରେ ଏକ ଚଦର ପକାଇ କି ଗ୍ରହାଚାର ହେଲାରେ ବୋଲି ପାଟି କରନ୍ତି । ପଟ୍ଟାଭିଙ୍କୁ ସଭା ଛାଡ଼ି ଚାଲିଯିବା ପାଇଁ ତର ସହିଲା ନାହିଁ । ବୋଲିବା ବାହୁଲ୍ୟ ଯେ ଏ ସବୁର ଆୟୋଜନ କରିଥିଲେ ସେ ନିଜେ ପଟ୍ଟାଭିଙ୍କୁ ଶିକ୍ଷା ଦେବା ପାଇଁ ।

ଏହିପରି ଏକ ବର୍ଣ୍ଣାଢ଼୍ୟ ନେତାର ପରଲୋକ ହୋଇ ଯାଇଛି ଦୁର୍ଘଟଣାରେ । ବେଶ୍ ରସିକିଆ ଲୋକ, ବେଶ ଗପ ଜମାଇ ପାରନ୍ତି, ମଉଜିଆ ମଉଜିଆ କଥା କହି । ତାଙ୍କ ସଙ୍ଗରେ ନିର୍ବାଚନ ପ୍ରଚାରକୁ ଗଲେ କ୍ଳାନ୍ତି ଲାଗେନାହିଁ ।

ସେ ନାହାନ୍ତି । କିନ୍ତୁ ସ୍ମୃତ ହୋଇ ରହି ସେ ତାଙ୍କର ଅସଂଖ୍ୟ ବନ୍ଧୁ ମାନଙ୍କ ମଧ୍ୟରେ ଚିରକାଳ ।



# ସାଧନାର ଶତାବ୍ଦୀ ପୁରୁଷ

ତାଙ୍କ ସାଙ୍ଗରେ ମୋର ପ୍ରଥମ ଭେଟ ହୁଏ ଏଇ ଶତାବ୍ଦୀର ଷଷ୍ଠ ଦଶକରେ । ଗେରୁଆ ଆଣ୍ଠୁଲୁଚା ଲୁଗାଟିଏ । ଦେହରେ ସେଇ ପରି ଏକ ଚଦର । ଖୋଲା ଦେହ । ନିଜର ପରିଚୟ ଦେଇ ସେ କହିଲେ ଫରେଷ୍ଟ ଗାର୍ଡ ଚାକିରିରୁ ଅବସର ନେଇ ମୁଁ ଲାଇବ୍ରେରୀଟିଏ କରିବାକୁ ଆରମ୍ଭ କରିଛି ଆମ ଗାଁ ନୂଆଗାଁ ଉଦୟପୁରରେ । ନୟାଗଡ଼ରୁ ଦଶପଲ୍ଲା ଯିବା ବାଟରେ । ବାପା, ଦାଦା, ମଉସା, ମାମୁଁ ସମସ୍ତେ ବନ୍ୟ ବିଭାଗରେ କାମ କରିଥିବାରୁ ଏବଂ ଅରଣ୍ୟ ଭିତରେ ଜୀବନର ଅନେକ ଦିନ କଟାଇଥିବାରୁ ଅରଣ୍ୟ ପ୍ରତି ମୋର ଅହେତୁକ ଦୁର୍ବଳତା ରହିଚି । କ'ଣ ଗଛର ଅରଣ୍ୟରୁ ବହିର ଅରଣ୍ୟକୁ ଲମ୍ଫ ପ୍ରଦାନ କରିବାର ଉଦ୍ୟମ ? ଏତ ବିରାଟ ଲଙ୍ଗ୍ ଜମ୍ପ ! ସେ ହସିଦେଇ କହିଲେ ଯେ ଏହା କ'ଣ ଆପଣମାନଙ୍କ ବିନା ସାହାଯ୍ୟରେ ହୋଇ ପାରିବ ? କଣ ଦରକାର ଆପଣଙ୍କର ? ବହି ଏବଂ ଦଶୋଟି ପଇସା ସାହାଯ୍ୟ ପାଇଁ । ମୁଁ ବହି ଦେବି । କିନ୍ତୁ ଦଶ ପଇସା ଆପଣଙ୍କୁ ଦେଇ ପାରିବି ନାହିଁ । ବହି କିନ୍ତୁ ନେବେ କେମିତି ? ଆପଣ ଦିଅନ୍ତୁ ଦେବା ଦାୟିତ୍ୱ ମୋର । କ'ଣ ରିକ୍ସା ଡାକିବି ? ରିକ୍ସା କ'ଣ ହେବ ? ବହି ମୋ ପାଖରେ ଅନେକ ଥିଲା । ବହିଗୁଡ଼ାକ, ଭାବିଲି ଏ ବୃଦ୍ଧ ଏହାକୁ ନେବେ କେମିତି ? ବହିର ଥାକ ଗଦା ହୋଇଗଲା । ଯାହା ଦେଖିଲି ଆଖି ଖୋସି ହୋଇଗଲା । ଶୀତଦିନ, ଦେହରୁ ଚାଦର ଖଣ୍ଡ କାଢ଼ି ସବୁ ବହି ଗୁଡ଼ାଇ ମୁଣ୍ଡ ଉପରେ ଥୋଇ ବୃଦ୍ଧ ଚାଲିଲେ ବାରବାଟୀ ଷ୍ଟାଡ଼ିୟମରୁ ଚାନ୍ଦିନିଚୌକକୁ । ସେତେବେଳେ ଚାନ୍ଦିନିଚୌକରେ ବସ୍‌ଷ୍ଟାଣ୍ଡ ଥିଲା ।

ସେଇଦିନୁ ତାଙ୍କୁ ମୁଁ ଦେଖି ଆସିଚି । ମାଗି ମାଗି ସେ ସଂଗ୍ରହ କରିଛନ୍ତି ବହି, ପୁରୁଣା ମେଗାଜିନ୍ ,ତାଳପତ୍ର ପୋଥି, ଡାକଟିକଟ, ବିଭିନ୍ନ ଦେଶର ମୁଦ୍ରା । ସୀମାହୀନ ସେ ସଂଗ୍ରହର ତୃଷ୍ଣା । ମହୁମାଛି ବସାଠାରୁ ଆରମ୍ଭ କରି ପକ୍ଷୀ କୋରଡ଼ । କିଛି ଛାଡ଼ିବାକୁ ସେ ରାଜି ନୁହଁନ୍ତି । ସବୁ ସଂଗ୍ରହ କରିବେ ।

ରଖିବେ କେମିତି ? ଦିନେ ଯାଇ ନୂଆଗାଁରେ ପହଞ୍ଚିଲି ଅଚାନକ । ଚାଳ ଘର । ବୃଦ୍ଧ ସବୁ ଜିନିଷକୁ ସାଇତି ରଖି ଚାଲିଛନ୍ତି । କିଛି ବାଦ ଯାଉ ନାହିଁ । ସହଯୋଗ ମିଳିଲେ କୃତଜ୍ଞତାରେ ସେ ଉତୁରି ପଡୁଛନ୍ତି । ଅସହଯୋଗ ପାଇଲେ ମୁହେଁ ମୁହେଁ ଉତ୍ତର ଦେଉଛନ୍ତି । ବାର୍ଦ୍ଧକ୍ୟ ତାଙ୍କର ଦେହକୁ ଗ୍ରାସ କରିଚାଲିଛି । କିନ୍ତୁ ମନ ରହି ଯାଇଛି ସେଇ ତାରୁଣ୍ୟରେ । ଯାହାର ଅସ୍ତ ଅଛି କିନ୍ତୁ ବିଲୟ ନାହିଁ ।

ବର୍ଷ ବର୍ଷର ଖବର କାଗଜ ଥାକ କରି ଗଦା ହୋଇଛି ତାରି ପାଖରେ ବହି, ତାରି ପାଖରେ ତାଳପତ୍ର ପୋଥି । ଆପଣ ଏ ଖବରକାଗଜକୁ ଇମିତି ଗଦା କରି ରଖି ଲାଭ କ'ଣ ?

କିମିତି ରଖି ପାରିବେ ବର୍ଷ ବର୍ଷ ଧରି ଖବରକାଗଜ ? ଏହା କଣ ସମ୍ଭବ ? ବୃଦ୍ଧ ବୁଝି ପାରୁଛନ୍ତି ସମସ୍ୟା, କିନ୍ତୁ ମନ ବୁଝୁନାହିଁ । ରଖୁଚିତ , ଯେତେଦିନ ପାରିବି, ମୋ ପରେ କ'ଣ ହେବ ତା' ଭଗବାନଙ୍କୁ ଗୋଚର ।

ଚିଠି ଦିଅନ୍ତି ମଝିରେ ମଝିରେ । ଆପଣଙ୍କର ସଂସ୍ଥା ଦ୍ୱାରା ପ୍ରକାଶିତ 'ହଜାର ବର୍ଷର କଟକ' ବହି ମୋତେ କିମିତି ମିଳିଲା ନାହିଁ । ଧାଡ଼ି ଏ ଚିଠି । କିମିତି ମିଳିଲା ନାହିଁ 'ଶ୍ରଦ୍ଧାଞ୍ଜଳି' ବହି ଏ ପର୍ଯ୍ୟନ୍ତ ? ଏ ଜିଗର, ଏ ଦାବିକୁ ଏଡ଼ାଇ ହୁଏନା । ବହି ପଠେଇବାକୁ ପଡ଼େ । ମଝିରେ ମଝିରେ ଡାକଟିକଟ ପଠାଏ । ବିଳମ୍ୱ ହୋଇଗଲେ ପୁଣି ଧାଡ଼ିଏ ଚିଠି, ପୋଷ୍ଟ କାର୍ଡରେ । ସବୁ ଚିଠି ପୋଷ୍ଟକାର୍ଡରେ, ଧାଡ଼ିଏ ଚିଠି ।

ପୁଣି ଦେଖା ହୋଇଚି ନୂଆଗାଁରେ । କିଛି ଗ୍ରାଣ୍ଟ ବନ୍ଦୋବସ୍ତ ହୋଇଛି । ସାଙ୍ଗରେ ସେଦିନ କଲେକ୍ଟର, ରେଭିନ୍ୟୁ ଡିଭିଜନାଲ କମିଶନର, ଏସ୍.ଡି.ଓ. । ବୃଦ୍ଧ ବହୁତ ଖୁସି । ସବୁ ଆପତ୍ତି ଅଭିଯୋଗ ଅଜାଡ଼ି ଦେଉଛନ୍ତି ଯେପରି । ସ୍ୱପ୍ନର ଢେଉ । ନୂଆଗାଁ, ଉଦୟପୁର । ଏଇଠି ଏକ ଇମିତି କେନ୍ଦ୍ର ପ୍ରତିଷ୍ଠା ହେବ, ଯାହା ଆକୃଷ୍ଟ କରି ଆଣିବ ଗବେଷକମାନଙ୍କୁ ସାରା ଭାରତରୁ, ସାରା ବିଶ୍ୱରୁ । ତାଳପତ୍ର, ପୋଥି , ଦୁଷ୍ପ୍ରାପ୍ୟ ତାଳପତ୍ର ପୋଥି, ସଂଗ୍ରହ ହୋଇଛି । ଝଙ୍କାର ଅଫିସରେ ଝଙ୍କାରର ସବୁ ସଂଖ୍ୟା ନାହିଁ, ଅଛି ନୂଆ ଗାଁର ଉଦୟପୁରରେ ।

କିଛି କିଛି ସ୍ୱୀକୃତି ମିଳିଛି । ଅନେକ ଅଫିସର ଅନେକ ପ୍ରତିଷ୍ଠିତ ବ୍ୟକ୍ତି ସାହାଯ୍ୟ କରିଛନ୍ତି । ଗାଁକୁ ଯିବା ପାଇଁ ନାଳରେ ପୋଲଟିଏ ତିଆରି ହୋଇଛି । ସେଇଠି ଡାକିଛନ୍ତି ସମ୍ମିଳନୀ ପରେ ସମ୍ମିଳନୀ । ଲେଖକକୁଳ, ସମାଜସେବୀ, ଏକାଠି ହୋଇଛନ୍ତି । ବିଭିନ୍ନ ଦଳ, ବିଭିନ୍ନ ମତର । ବୃଦ୍ଧଙ୍କର ଦେହ ଶୀର୍ଣ୍ଣ ହୋଇ ଯାଇଛି, କିନ୍ତୁ [illegible] ଛି ସେଇପରି । କିଛି କିଛି ଘର ତିଆରି ହୋଇଛି । ଗବେଷକ ଆସିଛନ୍ତି ଦୂରଦୂରାନ୍ତରୁ, ବିଭିନ୍ନ ବିଶ୍ୱବିଦ୍ୟାଳୟରୁ ।

ବୃଦ୍ଧ କିନ୍ତୁ ନୂଆଗାଁରୁ ଲାଇବ୍ରେରୀ ଉଠାଇବାକୁ ନାରାଜ । ଏଠି ଏହାରହି ପାରିବ କିପରି ? ବୃଦ୍ଧ ମାନିବାକୁ ନାରାଜ । କିନ୍ତୁ ସମୟ ଅତିକ୍ରାନ୍ତ ହୋଇ ଚାଲିଛି । ସେ ହାର ମାନିବାକୁ ନାରାଜ । ଟ୍ରଷ୍ଟ ଗଠନ ପାଇଁ ମଧ ଅନିଚ୍ଛୁକ । କାଳେ ଠିକ୍ ପରିଚାଳିତ ହୋଇପାରିବ ନାହିଁ - ଏଇ ଆଶଙ୍କା ।

ବୃଦ୍ଧ ଅସୁସ୍ଥ ହୋଇ ଭୁବନେଶ୍ୱରରେ । ସରକାର ପଦକ୍ଷେପ ନେବା ଉଚିତ, ଟ୍ରଷ୍ଟ ଗଠନ ହେଉ । ସମସ୍ତେ ହଁ ଭରୁଛନ୍ତି । କିନ୍ତୁ କଥାଟା ଆଗୋଉନାହିଁ । ଚିଠି ଲେଖୁଛନ୍ତି ସମସ୍ତଙ୍କୁ । ବଂଚାଅ, ବଂଚାଅ, ମୋର ପାଠାଗାରକୁ, ମୋର ସଂଗ୍ରାହାଳୟକୁ । ପରିବାରର ଯେଉଁମାନେ କେବେ ସାହାଯ୍ୟ କରି ନ ଥିଲେ, ସେମାନଙ୍କ ହାତରେ ପଡ଼ିଯିବାର ଆଶଙ୍କା ଦେଖା ଦେଇଛି । ବୃଦ୍ଧ ବ୍ୟଥିତ ହୋଇ ପଡୁ ଛନ୍ତି ।

ବୃଦ୍ଧ ଫେରିଯାଆନ୍ତି ପୁଣି ଗାଁକୁ । ଚିଠି ଆଉରି ସଂକ୍ଷିପ୍ତ ହୋଇ ଯାଉଛି । ପଢ଼ି ହେଉନି ଅକ୍ଷର । ତଥାପି ଲେଖିଚାଲିଛନ୍ତି । ଇତିହାସ ସୃଷ୍ଟି ହେଉଛି ।

ସେଇ ବୃଦ୍ଧ ଆଜି ୯୧ ବର୍ଷ ବୟସରେ ବାହୁଡ଼ିଗଲେ ସେଇଠିକୁ ଯେଉଁଠୁ ଆଉ କେହି ଫେରି ନାହାନ୍ତି । କିନ୍ତୁ ତାଙ୍କର ପୁତ୍ର, ତାଙ୍କର ପୁତ୍ର ହେଉଛି ସଂଗ୍ରହାଳୟ, ଲାଇବ୍ରେରୀ । ଟ୍ରଷ୍ଟଟିଏ ଗଠନ ହୋଇଛି । ତାହା କେତେ ସଫଳ ଭାବରେ କାର୍ଯ୍ୟ କରୁଛି ଜାଣି ନାହିଁ ।

କିନ୍ତୁ ବର୍ତ୍ତମାନ ସେ ଯେତେବେଳେ ନାହାନ୍ତି ସେ ଦାୟିତ୍ୱ ହେଉଛି ଏ ଜାତିର, ଏ ଦେଶର ସରକାରଙ୍କର ଏବଂ ଖୋଦ୍ ମୁଖ୍ୟମନ୍ତ୍ରୀଙ୍କର । କାରଣ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସାହିତ୍ୟାନୁରାଗ ଯୋଗୁଁ ତାଙ୍କ ଉପରେ ଅଗାଧ ଭରସା ଥିଲା ତାଙ୍କର ।

ଉଦୟପୁର ଯଦୁମଣି ସାହିତ୍ୟ ସଂସଦ, ଅରବିନ୍ଦ ପାଠାଗାରର ପ୍ରତିଷ୍ଠାତା ଶ୍ରୀ ଦାଶରଥି ପଟ୍ଟନାୟକ ଆଉ ନାହାନ୍ତି । ସାଧନା, ନିଷ୍ଠାର ଯେ ବୟସ ନାହିଁ , ତାର ଜୀବନ୍ତ ଉଦାହରଣ ହେଉଛନ୍ତି ଶ୍ରୀ ଦାଶରଥି ପଟ୍ଟନାୟକ । ଇତିହାସ ଲେଖା ହେଉଛି ।



# ବନ୍ଧୁବତ୍ସଳର ବିଦାୟ

ସ୍ମୃତି ଫେରିଯାଏ ଲମ୍ବା ଅତୀତକୁ । ଘଟଣା ସବୁ ହାବୁକା ମାରେ । ମନରେ ମନ ଗୁନ୍ଧି ହୋଇଯାଏ । ପ୍ରାକ୍ ସ୍ୱାଧୀନତା କାଳର କାହାଣୀ । ତାର ସାକ୍ଷୀମାନଙ୍କ ଭିତରୁ କିଏ ସବୁ ଅଛନ୍ତି ହେରିବା କଠିନ । କିଏ ସବୁ କୁଆଡ଼େ ଗଲେଣି । ଆଗ ମାଟ୍ରିକୁଲେଶନ ପରୀକ୍ଷା ଦେବା ପୂର୍ବରୁ ଏକ ବଛାବଛି ପରୀକ୍ଷା କରାଯାଉଥିଲା । ଏହି ପରୀକ୍ଷାକୁ ଏକ ଅସ୍ତ୍ର ରୂପରେ ବ୍ୟବହାର କରାଯାଉଥିଲା । ବ୍ରିଟିଶ ସାମ୍ରାଜ୍ୟବାଦ ଦ୍ୱାରା ବିଭିନ୍ନ ଆଳରେ ପିଲାମାନଙ୍କୁ ଅଟକ କରି ଦିଆଯାଉଥିଲା, ପିଲା ଯେପରି ମାଟ୍ରିକୁଲେଟ ହୋଇ ପାରିବେ ନାହିଁ । ଏହା ବିରୁଦ୍ଧରେ ସାର ଭାରତରେ ପ୍ରବଳ ଛାତ୍ର ଆନ୍ଦୋଳନ ମୁଣ୍ଡ ଟେକିଥିଲା । ଓଡ଼ିଶା ତହିଁରୁ ବାଦ ପଡ଼ିନଥିଲା । ଗଂଜାମ ଜିଲ୍ଲାରେ ଏହି ଛାତ୍ର ଆନ୍ଦୋଳନ ସବୁଠାରୁ ବ୍ୟାପକ ହୋଇଥିଲା । ଏହି ଛାତ୍ର ଆନ୍ଦୋଳନର ପୁରୋଭାଗରେ ଯେଉଁମାନେ ଥିଲେ ସେମାନଙ୍କ ଭିତରେ ନରସିଂହ ପଣ୍ଡା ଅନ୍ୟତମ । ସେ ସ୍ମୃତି ଭୁଲିବାର ନୁହେଁ ।

ନରସିଂହ ପଣ୍ଡା ପରବର୍ତ୍ତୀ କାଳରେ ପାଠପଢ଼ି ଓକୀଲ ହେଲେ । ପ୍ରତିଷ୍ଠା ବଢ଼ିଲା । ସମାଜର ସବୁଠାରୁ ତଳେଥିବା ମଣିଷ ପାଇଁ ସେ କିନ୍ତୁ ଅନୁରାଗ ଭୁଲି ନ ଥିଲେ । ଯେତେବେଳେ ଆବଶ୍ୟକ ପଡ଼ିଛି ନରସିଂହପରି ଠିଆ ହୋଇଛନ୍ତି କୋର୍ଟ କଚେରୀରେ ସେମାନଙ୍କ ପକ୍ଷରୁ । କେତେ ଫିସ୍ ମିଳିଲା ସେ ସଂପର୍କରେ ଖିଆଲ ନାହିଁ ତାଙ୍କର । ସନ୍ୟାସୀ ରାଓ ନାହାନ୍ତି । ଅନ୍ୟମାନେ କେଉଁଠି ଅଛନ୍ତି ତା କହି ପାରିବି ନାହିଁ । କିନ୍ତୁ ଆଜି ନରସିଂହ ପଣ୍ଡାଙ୍କ ମୃତ୍ୟୁ ସଂବାଦ ଶୁଣିଲା ପରେ ସେଇ ସ୍ମୃତି ଉଖାରି ହୋଇ ଯାଉଛି । ଆଖିରେ ଲୁହ ଜମୁଛି ।

ନରସିଂହ ପଣ୍ଡା ଶାନ୍ତି ଓ ମୈତ୍ରୀ ଆନ୍ଦୋଳନ ସହିତ ଗଭୀର ଭାବରେ ଜଡ଼ିତ ଥିଲେ । ବ୍ରହ୍ମାନନ୍ଦ ପଣ୍ଡା (ପୂର୍ବତନ ଏମ.ପି.) ଶଶି ଭୂଷଣ ପତି ତାଙ୍କର ସହଯୋଦ୍ଧା ଥିଲେ । ଏହି ସମୟରେ, ଭାରତ-ସୋଭିଏତ୍ ମୈତ୍ରୀ ଥିଲା ତାଙ୍କର ବିଶ୍ୱାସ । ବ୍ରହ୍ମପୁର ଠାରେ ଅନୁଷ୍ଠିତ ହୋଇଥିବା ସମ୍ମିଳନୀର ସେ ଥିଲେ ଅନ୍ୟତମ ସଂଗଠକ । ଦେଶ ଦେଶ ମଧ୍ୟରେ ମୈତ୍ରୀ ପାଇଁ ସାରା ବିଶ୍ୱରେ ଯୁଦ୍ଧର ବିଭିଷିକାକୁ ଏଡାଇବା ପାଇଁ ସେ କାର୍ଯ୍ୟ କରିଥିଲେ । ବହୁ ବର୍ଷ ଧରି ବିଭିନ୍ନ ଦଳ, ବିଭିନ୍ନ ମତବାଦ, ବିଭିନ୍ନ ଜୀବିକାର ଜନପ୍ରତିନିଧି ମାନଙ୍କୁ ଏକାଠି କରିବା ପାଇଁ ଯେଉଁ ମାନଙ୍କ ନାମ ଗଂଜାମ ଜିଲ୍ଲାରେ ଅଗ୍ରାଧିକାର ଲାଭ କରିଥିଲା ସେମାନଙ୍କର ଭିତରେ ନରସିଂହ ପଣ୍ଡା ଥିଲେ ଅନ୍ୟତମ । କାରଣ ବହୁମତ ବହୁ ଗୋଷ୍ଠୀର ଲୋକଙ୍କୁ ଏକାଠି

କରିବା ସହଜ ନଥିଲା । ସେଭଳି ମଣିଷ ମିଳିବା କଠିନ ଯେଉଁ ମାନଙ୍କର ଏହିପରି ଯୋଗ୍ୟତା ଅଛି । ନରସିଂହ ପଣ୍ଡା ସେଇ କାର୍ଯ୍ୟ ପାଇଁ ସ୍ମୃତ ହୋଇ ରହିବେ ।

ନରସିଂହ ପଣ୍ଡା ଥିଲେ ବନ୍ଧୁବତ୍ସଳ । ମୋର ନିଜର ଅଭିଜ୍ଞତାରୁ କହୁଛି, ଏକ ରାତ୍ରିରେ ମୁଁ ପଳାୟିତ ହୋଇ ତାଙ୍କ ପାଖରେ ପହଞ୍ଚିଲି । ଆଗରୁ ଖବର ଦେବା ବା ତାଙ୍କର ଅବସ୍ଥା କ'ଣ ବୁଝିବା ସମ୍ଭବ ନ ଥିଲା । ନରସିଂହ ବାବୁ ଆଶ୍ରୟ ଦେଇଥିଲେ କେବଳ ମୋତେ ନୁହେଁ, ଅନ୍ୟମାନଙ୍କୁ ମଧ । ଟିକିଏବି ଦ୍ୱିଧା କରି ନାହାନ୍ତି । ସେଇ କଥା ମନେ ପଡ଼ିଲେ ଆଖି ସଜଳ ହୋଇଯାଏ । ଖୋଜିବାକୁ ହୁଏ ସେଇପରି ମଣିଷଟିଏ ।

କେହି ରହିବେ ନାହିଁ, ସମସ୍ତଙ୍କୁ ଯିବାକୁ ହେବ । ତାହାହିଁ ହେଉଛି ମହାସତ୍ୟ । କିନ୍ତୁ ଯେଉଁମାନଙ୍କର ସ୍ମୃତି ସମୟର ବାଲିରେ ଦୁକୁଦୁକୁ ହୋଇ ଜଳେ, ସେଇମାନଙ୍କ ଜୀବନ ତ ସାର୍ଥକ

ନରସିଂହ ପଣ୍ଡା ଆଉ ନାହାତି ।



# ସାମ୍ବାଦିକମାନଙ୍କର ମଉଡ଼ମଣି

ଚଳିତ ସମୟର ସାମ୍ବାଦିକତା ଜଗତର ମଉଡ଼ମଣି ନିଖିଳ ଚକ୍ରବର୍ତ୍ତୀ ଆଉ ନାହାନ୍ତି । ଗଲା କେତେ ମାସ ଧରି ସେ ଅସୁସ୍ଥ ଥିଲେ । ମସ୍ତିଷ୍କରେ ଟ୍ୟୁମର ହୋଇଥିଲା । ଅସ୍ତ୍ରୋପଚାର ପରେ ଜଣାପଡ଼ିଲା ଯେ ଏହା କ୍ୟାନସର । ସେଇଦିନଠାରୁ ସେ ପ୍ରାୟ ଅଚେତ ଅବସ୍ଥାରେ ବା କୋମାରେ ଥିଲେ ଏବଂ ସେଇ ଅବସ୍ଥାରେ ହିଁ ତାଙ୍କର ପରଲୋକ ହୋଇଗଲା । ୨୭ ଜୁନ୍ ୧୯୯୮ ମସିହାରେ, ଗୋବିନ୍ଦ ବଲ୍ଲଭ ପନ୍ଥ ଡାକ୍ତରଖାନାରେ । କେବଳ ମୃତ୍ୟୁ ଦିନ ହିଁ ସେ କିଛି ସମୟ ପାଇଁ ଆଖି ଖୋଲିଥିଲେ । କାହାକୁ ଖୋଜୁଥିଲେ । କ'ଣ ଚାହିଁଥିଲେ କିଛି ତ ଜାଣିହେଲା ନାହିଁ । ତାପରେ ଚିରଦିନ ପାଇଁ ଆଖି ବନ୍ଦ ହୋଇଗଲା । ଏକ ବିରାଟ ଅଧ୍ୟାୟର ପରିସମାପ୍ତି ଘଟିଲା ।

ନିଖିଳ ଚକ୍ରବର୍ତ୍ତୀଙ୍କ ପାଇଁ ସାମ୍ବାଦିକ ଏକ ପେଶା ନ ଥିଲା । ଥିଲା ଏକ ଅଙ୍ଗୀକାର, ଏକ ହତିଆର, ସାମାଜିକ କଲ୍ୟାଣ, ସାମାଜିକ ମଙ୍ଗଳ ପାଇଁ, ଏକ ସାମ୍ୟର ସମାଜ ଗଠନ ପାଇଁ । ସେ ଅଙ୍ଗୀକାର, ସେ ମିଶନ୍ ଦେଶର ପ୍ରତ୍ୟେକ ସାମ୍ବାଦିକ ପାଇଁ ଏକ ଦିଗ୍‌ଦର୍ଶନ । ଜୀବନରେ କୌଣସି ପୁରସ୍କାର ଗ୍ରହଣ କରିବା ପାଇଁ ପ୍ରସ୍ତୁତ ନ ଥିଲେ ସେ । ତାଙ୍କୁ ପଦ୍ମ ଭୂଷଣ ଉପାଧି ଯଚା ଯାଇଥିଲା । ସେ ବିନୀତ ଭାବରେ ତାକୁ ପ୍ରତ୍ୟାଖ୍ୟାନ କରିଥିଲେ । ସାମ୍ବାଦିକର ନିରପେକ୍ଷତା, ସାଧୁତା ଏବଂ ଅବ୍‌ଜେକ୍‌ଟିଭିଟିକୁ ସେ ପୁରସ୍କାରର ଦୁଷ୍ଟ ବ୍ରଣରେ ଆକ୍ରାନ୍ତ ହେବାକୁ ଦେଇ ନ ଥିଲେ । ସେ ସବୁବେଳେ ଆପଣାକୁ ରିପୋର୍ଟର ଅର୍ଥାତ୍ ସାମ୍ବାଦିକମାନଙ୍କର ସବୁଠାରୁ ତଳ ସ୍ତରର, କିନ୍ତୁ ମଣିଷର ସବୁଠାରୁ ପାଖର ବୋଲି ଘୋଷଣା କରୁଥିଲେ । ଏହା ତାଙ୍କର ଖାଲି ବିନମ୍ରତା ନୁହେଁ । ଦୃଢ଼ତାର ପ୍ରତୀକ ମଧ୍ୟ ଥିଲା ।

ନିଖିଳ ଦା' ଜନ୍ମ ହୋଇଥିଲେ ନଭେମ୍ବର ୩ ତାରିଖ, ୧୯୧୩ ମସିହାରେ ଆସାମର ସିଲଚର ସହରରେ । ବାପା ଥିଲେ କଲିକତା ବିଶ୍ୱବିଦ୍ୟାଳୟର ଇଂରାଜୀ ଅଧ୍ୟାପକ । ନିଖିଳ ବାବୁ କଲିକତାର ପ୍ରସିଦ୍ଧ ପ୍ରେସିଡେନ୍ସି କଲେଜରୁ ଇଂରାଜୀ ଅନର୍ସରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହୁଅନ୍ତି ଏବଂ ଯାଆନ୍ତି ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟର ମେରଟନ କଲେଜରେ ପଢ଼ିବା ପାଇଁ ।

ସେଇଠି ଜୀବନର ମୋଡ଼ ବଦଳି ଯାଏ । ସାର୍ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ସେଇଠି ପାଠ ପଢ଼ଉଥାନ୍ତି । ଉଭୟଙ୍କ ଭିତରେ ସଖ୍ୟ ପ୍ରତିଷ୍ଠା ହୁଏ । ଅନ୍ୟ ଦିଗରେ ପ୍ରସିଦ୍ଧ ମାର୍କ୍ସବାଦୀ

ଦାର୍ଶନିକ ରଜନୀ ପାମି ଦତ୍ତଙ୍କ ସଂପର୍କରେ ସେ ଆସନ୍ତି । ସମସାମୟିକ କାଳରେ ପ୍ରସିଦ୍ଧ ମାର୍କ୍ସବାଦୀ ନେତା ଜ୍ୟୋତିବସୁ, ଇନ୍ଦ୍ରଜିତ ଗୁପ୍ତ, ଭୁପେନ ଗୁପତ, ଏନ.କେ. କ୍ରିଷ୍ଣନ୍, ମୋହନ କୁମାର ମଂଗଳମ, ପାର୍ବତୀ କ୍ରିଷ୍ଣନ୍, ବଙ୍ଗଳାର ପ୍ରସିଦ୍ଧ କଂଗ୍ରେସ ନେତା ଡାକ୍ତର ବିଧାନଚନ୍ଦ୍ର ରାୟଙ୍କ ଝିଆରୀ ରେଣୁ ରାୟ ଇଂଲଣ୍ଡରେ ପାଠ ପଢୁଥାନ୍ତି ଏବଂ ସମସ୍ତେ ମାର୍କ୍ସବାଦ ଲେନିନବାଦରେ ଦୀକ୍ଷିତ ହୁଅନ୍ତି । ସେଇ ସମୟ ହେଉଛି ପ୍ରସିଦ୍ଧ ସ୍ପେନ୍ ଅର୍ନ୍ତଯୁଦ୍ଧର ସମୟ । ପ୍ରସିଦ୍ଧ ଲେଖକ ଅର୍ନଷ୍ଟ ହେମିଂୱେ, ପ୍ରସିଦ୍ଧ ଚିତ୍ରଶିଳ୍ପୀ ପାବଲୋ ପିକାକାଶୋ ପ୍ରସିଦ୍ଧ ଔପନ୍ୟାସିକ ହାୱାର୍ଡ ଫାଷ୍ଟ ପ୍ରଭୃତି ଯୋଗ ଦିଅନ୍ତି ସ୍ପେନ୍ ଅର୍ନ୍ତଯୁଦ୍ଧରେ । ରେଣୁ ରାୟଙ୍କୁ ବିବାହ କରି ନିଖିଳ ଫେରନ୍ତି ଭାରତବର୍ଷକୁ ସାମ୍ୟବାଦୀ ଭାବରେ ଏବଂ ବେଆଇନ ଥିବା କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦିଅନ୍ତି । ମାକର୍ସବାଦ ଥିଲା ତାଙ୍କ କର୍ମ ପାଇଁ ଗାଇଡ଼ ଏକ ଅନ୍ଧବିଶ୍ୱାସ ନୁହେଁ । ସେଇଯୋଗୁଁ ସୋଭିଏତ୍ ୟୁନିୟନ୍‌ରେ ଷ୍ଟାଲିନ୍ ପରବର୍ତ୍ତୀ ଯୁଗ, ତଥା କମ୍ୟୁନିଷ୍ଟ ପାର୍ଟିର ବିଭାଜନ ଯୋଗୁଁ ସେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ପଦ ଛାଡ଼ିଥିଲେ ହେଁ, ମାର୍କ୍ସବାଦ ବୈଜ୍ଞାନିକ ତତ୍ତ୍ୱ ଉପରେ ବିଶ୍ୱାସ ହରାଇନଥିଲେ ।

୧୯୩୯ ମସହାରେ ସେ କଲିକତା ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗରେ ଯୋଗ ଦିଅନ୍ତି । ବଳକା ସମୟତକ କଟିଯାଏ ପାର୍ଟି ସଂଗଠନ ଗଢ଼ି ତୋଳିବାରେ । ୧୯୪୩ ମସିହାରେ ପ୍ରବାଦ ପୁରୁଷ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସଂପାଦକ ପି.ସି. ଯୋଶୀଙ୍କ ଆହ୍ୱାନରେ ସେ ପିପୁଲସ୍ ୱାର ପତ୍ରିକାର ସଂପାଦନା ମଣ୍ଡଳୀରେ ଯୋଗ ଦିଅନ୍ତି । ଏହି ସମୟରେ ତାଙ୍କ ନାମରେ ଗିରଫଦାରୀ ପରୱାନା ଜାରୀ ହୁଏ ଏବଂ ସେ ପଳାତକ ହୁଅନ୍ତି । ତାଙ୍କ ନାମରେ ହୁଲିଆ ଜାରୀ ହୁଏ । କିଛି କାଳ ପରେ ସେ ଗିରଫ ହୋଇ କାରାଗାରରେ ନିକ୍ଷିପ୍ତ ହୁଅନ୍ତି । ଭାରତର ସ୍ୱାଧୀନତା ପରେ ମଧ ସେ ଏ ସ୍ୱାଧୀନତାକୁ ଗ୍ରହଣ କରି ପାରନ୍ତି ନାହିଁ । ଏଇ କ'ଣ ସେଇ ସ୍ୱାଧୀନତା ? ନିଖିଳ ଚକ୍ରବର୍ତ୍ତୀ "ଏ ଆଜାଦୀ ଝୁଟା ହୈ" ସ୍ଲୋଗାନ୍‌କୁ ଗ୍ରହଣ କରନ୍ତି ଏବଂ ପାର୍ଟି କାର୍ଯ୍ୟରେ ଲିପ୍ତ ରହନ୍ତି ।

୧୯୫୨ ମସିହାରେ କମ୍ୟୁନିଷ୍ଟ ପାର୍ଟି ପାର୍ଲାମେଣ୍ଟାରୀ ପ୍ରଥାକୁ ଗ୍ରହଣ କରି ନିର୍ବାଚନରେ ଅଂଶ ଗ୍ରହଣ କରେ । ସ୍ତ୍ରୀ ରେଣୁ ଚକ୍ରବର୍ତ୍ତୀ କମ୍ୟୁନିଷ୍ଟ ପାର୍ଟି ଟିକଟରେ ନିର୍ବାଚିତ ହୁଅନ୍ତି ପାର୍ଲ୍ୟାମେଣ୍ଟକୁ । କମ୍ୟୁନିଷ୍ଟ ପାର୍ଟିର ହେଡ୍ କ୍ୱାଟର୍ସ ଉଠିଯାଏ ବମ୍ବେରୁ ଦିଲ୍ଲୀକୁ । ପାର୍ଟି ଅଫିସରେ କାର୍ଯ୍ୟ କରିବା ପାଇଁ ନିଖିଳ ଦା' ଯାଆନ୍ତି ଦିଲ୍ଲୀ ଏବଂ ୧୯୫୨ ରୁ ୧୯୯୮ ପର୍ଯ୍ୟନ୍ତ ଦିଲ୍ଲୀ ହିଁ ତାଙ୍କର ବାସସ୍ଥାନ ପାଲଟି ଯାଏ । ସେ କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର 'ନ୍ୟୁଏଜ୍' ର ସଂପାଦନା ମଣ୍ଡଳୀରେ ଯୋଗ ଦିଅନ୍ତି । ପରବର୍ତ୍ତୀ କାଳରେ ୧୯୫୭ ରେ ଓ.ପି. ସବରବାଲ, ନିଖିଳ ଚକ୍ରବର୍ତ୍ତୀ ପ୍ରମୁଖ ଇଣ୍ଡିଆ ପ୍ରେସ୍ ଏଜେନ୍ସି ନାମକ ଏକ ସଂବାଦ ସରବରାହ ସଂସ୍ଥା ପ୍ରତିଷ୍ଠା କରନ୍ତି । ଏହି ଏଜେନ୍ସିର ଓଡ଼ିଶା ଶାଖାର ପ୍ରଥମ ପ୍ରତିନିଧି ଭାବରେ କାମ କରିବାର ସୁଯୋଗ ମୋତେ ମିଳିଥିଲା କିଛି ବର୍ଷ ଧରି । ନିଖିଳ ଦା' ଙ୍କ ସହିତ ପୂର୍ବ ପରିଚିତି ନିବିଡ଼ ହୋଇଥିଲା । ପ୍ରତି ସପ୍ତାହରେ ସଂବାଦ ପଠାଇଲା ପରେ ଆର ସପ୍ତାହକୁ ତାର ଏକ

ଗଠନ ମୂଳକ ସମାଲୋଚନା ପହଞ୍ଚେ ତାଙ୍କ ପାଖରୁ । ପ୍ରତି ସପ୍ତାହରେ , ଦିନେ ବି ବ୍ୟତିକ୍ରମ ହୋଇନାହିଁ । ସଂବାଦ ସଂପୂର୍ଣ୍ଣ ନିରପେକ୍ଷ ହେବା ଉଚିତ କିନ୍ତୁ ଏହାର ଏକ ଦିଗଦର୍ଶନ ରହିବା ଉଚିତ ଏଇ ଥିଲା ତାଙ୍କର ସୁସ୍ପଷ୍ଟ ଦୃଷ୍ଟିକୋଣ ।

ସୋଭିଏତ୍ ୟୁନିଅନ ଥିଲା ପ୍ରତ୍ୟେକ ମାର୍କ୍ସବାଦୀ ପାଇଁ ସ୍ୱପ୍ନର ସାକାର ରୂପ । ଏହାର ଭୁଲ୍ ତ୍ରୁଟିକୁ ମଧ୍ୟ ସାମ୍ୟବାଦୀ ମାନେ ଗ୍ରହଣ କରି ନେଇଥିଲେ ଏକ ବିଶାଳ ସୁଦୂରପ୍ରସାରୀ ଲକ୍ଷ୍ୟ ପାଇଁ । ଠିକ୍ ସେଇପରି କମ୍ୟୁନିଷ୍ଟ ପାର୍ଟିର ଚରିତ୍ରକୁ ସେମାନେ ଗଢ଼ିଥିଲେ ଏକ ମନୋଲିଥିକ ସଂଗଠନ ଭାବରେ । ଯାହା ବିବାଦ ହେବ ତାହା ପାର୍ଟି ଭିତରେ ହେବ, ବାହାରକୁ ସମସ୍ତେ ଏକ । ଏଇ ଦୁଇଟି ଯାକ ସ୍ୱପ୍ନ ଭାଙ୍ଗି ଯିବା ପରେ ସେ ବ୍ୟଥିତ ହେଲେ, ମନେ ହେଲା ଯେପରି ସବୁ କିଛି ଭାଙ୍ଗି ଚୂରମାର ହୋଇଯାଇଛି । ସେ ପାର୍ଟି ଛାଡ଼ିଲେ ଏବଂ ପାର୍ଟି ବିଭାଜନ ପାଇଁ ସେ ମାର୍କ୍ସବାଦୀ କମ୍ୟୁନିଷ୍ଟ ପାର୍ଟିକୁ କ୍ଷମତା ଦେଇ ନାହାନ୍ତି ।

ନିଖିଳ ଚକ୍ରବର୍ତ୍ତୀ 'ମେନ୍‌ଷ୍ଟ୍ରିମ' ବା ମୁଖ୍ୟଧାରା ନାମକ ସାପ୍ତାହିକୀ ପ୍ରକାଶ କଲେ । ଏହା ଏକ ନୂତନ ଧରଣର ସାପ୍ତାହିକୀ ହେଲା । ଏ ସାପ୍ତାହିକୀରେ ବିଜ୍ଞାପନର ସ୍ଥାନ ଗୌଣ ଥିଲା । ପତ୍ରିକାର ମୂଳରୁ ଶେଷ ପର୍ଯ୍ୟନ୍ତ ବିଭିନ୍ନ ବିଷୟରେ ଆଲୋଚନା ଏବଂ ବିତର୍କ ଥିଲା । ଦୃଷ୍ଟିକୋଣ ରହିବ ପ୍ରଗତିଶୀଳ କିନ୍ତୁ ଆଲୋଚନା ବିତର୍କ ହେବ ସଂପୂର୍ଣ୍ଣ ସ୍ୱାଧୀନ ଭାବରେ । ୟୁନିୟନ ପବ୍ଲିକ୍ ସର୍ଭିସ କମିଶନ ସର୍ବ ଭାରତୀୟ ପରୀକ୍ଷାରେ ପ୍ରାର୍ଥୀମାନଙ୍କୁ ପଚାରନ୍ତି ଯେ କେଉଁ ମେଗାଜିନ୍ ସେମାନଙ୍କୁ ସବୁଠାରୁ ସାହାଯ୍ୟକାରୀ ହୋଇଛି । ଅଧିକାଂଶ ଉତ୍ତର ଦେଇଛନ୍ତି 'ମେନ୍‌ଷ୍ଟ୍ରିମ' ଏଇଥିରୁ ପତ୍ରିକାର ଗୁରୁତ୍ୱ ଅନୁମେୟ ।

ଏଇ ପତ୍ରିକା ଥିଲା ମୁକ୍ତ ବିଚାରଧାରାର ପତ୍ରିକା । ଏହାର ଏକ ସଂପାଦନା ମଣ୍ଡଳୀ ଥିଲା । ସେଥିରେ ସୁଭଦ୍ରା ଯୋଶୀ ପ୍ରଭୃତି ଅନେକ ପ୍ରଗତିଶୀଳ କଂଗ୍ରେସ ନେତା ମଧ୍ୟ ଥିଲେ । ସମସ୍ତେ ଜାଣନ୍ତି ଯେ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ଯଦିଓ ପଣ୍ଡିତ ନେହେରୁଙ୍କ ଦୟାରୁ ଭାରତର ଉପ-ରାଷ୍ଟ୍ରପତି ଏବଂ ପରେ ରାଷ୍ଟ୍ରପତି ହୋଇପାରିଥିଲେ କିନ୍ତୁ ପରବର୍ତ୍ତୀ କାଳରେ ସେମାନଙ୍କ ମଧ୍ୟରେ ମତଭେଦ ଦେଖାଗଲା । ଏପରିକି ପଣ୍ଡିତ ନେହେରୁଙ୍କୁ ଗାଦିଚ୍ୟୁତ କରି ରାଷ୍ଟ୍ରପତି ପ୍ରାଧାନ୍ୟ ସରକାର ଗଠନ ପାଇଁ ତାଙ୍କର ଉଦ୍ୟମ ରହିଥିଲା । ଏହି ସମୟରେ ରାଷ୍ଟ୍ରପତି ତିନି ସେନାଧ୍ୟକ୍ଷଙ୍କୁ ଡକାନ୍ତି ଏକ ବୈଠକକୁ କିନ୍ତୁ ଘରୋଇ ବିଭାଗ ମନ୍ତ୍ରୀ ଲାଲ ବାହାଦୁର ଶାସ୍ତ୍ରୀ ପ୍ରଧାନମନ୍ତ୍ରୀଙ୍କ ସାହାଯ୍ୟ ଏବଂ ଉପଦେଶ ବିନା ଏହା ହେବାକୁ ଦିଅନ୍ତି ନାହିଁ । ଆଟର୍ଣ୍ଣି ଜେନେରାଲ ଶୀତଳବାଦ ମଧ୍ୟ ଏହି ମତ ଦିଅନ୍ତି । ସେଇ ଯୋଗୁଁ ରାଧାକ୍ରିଷ୍ଣନ୍‌ଙ୍କ ସହ ଲାଲବାହାଦୁରଙ୍କ ମତଭେଦ ଥିଲା ତୀବ୍ର ଏବଂ ଅଭିଯୋଗ ହେଲା ଯେ ସେ ନିଖିଳ ଦା ସହିତ ଅକ୍ସଫୋର୍ଡ଼ ବନ୍ଧୁତାର ସୁଯୋଗ ନେଇ 'ମେନ୍‌ଷ୍ଟ୍ରିମ' କାଗଜରେ ବେନାମୀ ଲେଖା ଲେଖିଲେ ଏବଂ ଏହାର ଶରବ୍ୟ ଥିଲେ ଲାଲବାହାଦୁର । ନିଖିଳ ଚକ୍ରବର୍ତ୍ତୀଙ୍କ ପାଇଁ ଏହା ଥିଲା ମୁକ୍ତ ବିଚାରଧାରା । କିନ୍ତୁ ଅନ୍ୟମାନଙ୍କ ପାଇଁ ଏହା ଥିଲା ଏକ ଷଡ଼ଯନ୍ତ୍ର । ଦିନେ ସଂପାଦକ ମଣ୍ଡଳୀର ଅନ୍ୟସବୁ ସଦସ୍ୟ ଇସ୍ତଫା ଦେଇଦେଲେ ଏବଂ ନିଖିଳ ଏହାକୁ ଏକୁଟିଆ ଚଳାଇ ରଖିଲେ ।

ପ୍ରତି ଲେଖା ପାଇଁ 'ମେନ୍‌ଷ୍ଟ୍ରିମ୍' ଲେଖକଙ୍କୁ ପାରିଶ୍ରମିକ ଦେଉଥିଲା । ପ୍ରକାଶିତ ସଂଖ୍ୟାର ଗୋଟିଏ କପି ସହିତ ଚେକ୍ ଗୁଡ଼ା ହୋଇ ଅସିବ । ନିଖିଳଙ୍କ ମତରେ ସମସ୍ତେ ଯଦି ମୂଲ୍ୟ ପାଇବେ ତାହେଲେ ଲେଖକ ବା ସାମ୍ବାଦିକ କାହିଁକି ସେଥିରୁ ବଂଚିତ ହେବ ।

୧୯୭୫ ମସିହାରେ ଜରୋରୀ ଶାସନକାଳ । ଶ୍ରୀମତୀ ଇନ୍ଦିରା ଗାନ୍ଧି ଭାବିଥିଲେ ଯେ ନିଖିଳ ତାଙ୍କର ପୁରାତନ ବନ୍ଧୁ, ତେଣୁ ସେ ଜରୋରୀ ଶାସନ ବିରୁଦ୍ଧରେ ଲେଖା ଲେଖିବେ ନାହିଁ । ସେଇପରି ଭାବିଥିଲେ ରମେଶ ଥାପର ସଂପର୍କରେ, ଯାହାଙ୍କ ଝିଅ ସହତ ସଂଜୟ ଗାନ୍ଧିଙ୍କର ବିବାହ ଏକ ପ୍ରକାର ସ୍ଥିର ହୋଇ ସାରିଥିଲା । କିନ୍ତୁ ନିଖିଳ ବ୍ୟକ୍ତିଗତ ବନ୍ଧୁତାକୁ ସାମୂହିକ ସ୍ୱାର୍ଥର ନିୟାମକ ହେବାକୁ ଦେଇନାହାନ୍ତି । ତାଙ୍କ ଉପରେ ମଧ୍ୟ ସେନସର୍ ଜାରି ହେଲା । ସେ ତାକୁ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ହେଲେ ନାହିଁ । 'ମେନ୍‌ଷ୍ଟ୍ରିମ୍' କୁ ବନ୍ଦ କରିଦେବା ପାଇଁ ସ୍ଥିର କଲେ ଏବଂ ଲେଖିଲେ ଯେ ମହାସ୍ରୋତ 'ମେନ୍‌ଷ୍ଟ୍ରିମ୍' ଆଜି ହୁଏତ ଶୁଖିଯିବ କିନ୍ତୁ ଇତିହାସର ପୃଷ୍ଠାରେ ତାହା ପୁଣି ଦିନେ ପ୍ରବାହିତ ହେବ । ତାଙ୍କ ଉପରେ ସେନସର୍ ଜାରି ହୋଇ ପାରିଲା ନାହିଁ । ଏଇ ଭୂମିକା ଯୋଗୁଁ ସେ ଇନ୍ଦର ଗୁଜୁରାଲଙ୍କ ସରକାର ସମୟରେ ପ୍ରସାର ଭାରତୀର ମୁଖ୍ୟ ହୋଇଥିଲେ ହେଁ ଅଟଳ ବିହାରୀଙ୍କ ସରକାର ତାଙ୍କୁ ସେ ପଦରୁ ବାହାର କରିନଥିଲା ।

କମ୍ୟୁନିଷ୍ଟ ପାର୍ଟିର ଅଣ୍ଡର ଗ୍ରାଉଣ୍ଡ ମେସିନାରୀର ସେ ଥିଲେ ମୁଖ୍ୟ ପରିଚାଳକ । ଷ୍ଟାଲିନଙ୍କୁ ଗୁପ୍ତରେ ସାକ୍ଷାତ କରି କମ୍ୟୁନିଷ୍ଟ ପାର୍ଟିର ନେତାମାନେ ଫେରି ଆସିଲା ପରେ ଭାରତର କମ୍ୟୁନିଷ୍ଟ ପାର୍ଟିର ସବୁ ପଳାତକ ନେତାମାନଙ୍କର ଗୁପ୍ତ ସମ୍ମିଳନୀର ଦାୟିତ୍ୱ ଥିଲା ତାଙ୍କରି ଉପରେ । ଏହି ସମୟରେ ଖାଇବା ପିଇବା ପାଇଁ ସେ ବନ୍ଦୋବସ୍ତ କରିଥିଲେ ସବୁ ପୂଝାରୀ, ଓଡ଼ିଆମାନଙ୍କ ଭିତରୁ ।

ନିଖିଳ ଚକ୍ରବର୍ତ୍ତୀ ଥିଲେ ବିନମ୍ର, ଭଦ୍ର, ଅମାୟିକ ଏବଂ ବନ୍ଧୁବତ୍ସଳ । କିନ୍ତୁ ମତ ପ୍ରକାଶରେ ସେ ଥିଲେ ତୀକ୍ଷ୍ଣ, ଅନମନୀୟ ଏବଂ ନିର୍ଭୀକ ।

ତାଙ୍କର ପରଲୋକରେ ନିର୍ମଳ ଏବଂ ନିର୍ଭୀକ ସାମ୍ବାଦିକତାର ଏକ ଯୁଗର ଅବସାନ ହୋଇଛି ।



# ନିରୁଦା

ଯିବାବେଳ ପାଖେଇଲାଣି ବୋଲି ସମସ୍ତେ ଜାଣିଥିଲେ । ସେ ନିଜେ ବି ସଚେତନ ଥିଲେ ସେ ବିଷୟରେ । ମରିବାର ଗୋଟାଏ ସପ୍ତାହ ପୂର୍ବରୁ ଦେଖିବାକୁ ଯାଇଥିଲି । ଯନ୍ତ୍ରଣାରେ ଅସ୍ଥିର ହୋଇ  ଉଠୁଥିଲେ । ଆଉ ସହ୍ୟ କରି ହେଉ ନାହିଁ, ଏଇଥିଲା ଦାଦାର ବକ୍ତବ୍ୟ । ଜାଣିପାରିଲି ଯେ ସମୟ ଆଉ ବେଶୀ ନାହିଁ । କିନ୍ତୁ ଦାଦା ଆଉ ରହିବ ନାହିଁ ଇମିତି ଗୋଟାଏ ଖବରକୁ ଗ୍ରହଣ୍ କରିବା ମୋ ପକ୍ଷରେ ସମ୍ଭବ ହୋଇନଥିଲା । କହିଲି, ଦାଦା, ତୁ ବଂଚିବୁ ଆଉରି ୧୨।୧୪ ବର୍ଷ । ଉଚ୍ଛୁଳା ହସରେ କଂପି ଉଠିଲା ଘରଟା । ଠିକ୍ ହସୁଥିଲା ତାହାରି ଭଳି । ଦାଦା ଇମିତି ହସେ, ପ୍ରାଣ ଖୋଲା ଉଚ୍ଛୁଳା ହସ । ସେ ହସରେ ଥାଏ ମାଦକତା, ଆତ୍ମୀୟତା, ନଥାଏ କୌଣସି ଆବିଳତା । କ'ଣ କହିଲୁ, ବାର ବର୍ଷ ନା ବାରଦିନ ! ଦେହ ଆଉ ସମ୍ଭାଳୁ ନାହିଁ, ୟୁନିଭର୍ସ କିମିତି ଚାଲିଛି ? ମରିବା ଆଗରୁ ମୁଁ ୟୁନିଭର୍ସର ଆଜୀବନ ସଭ୍ୟ ହେବାକୁ ଚାହେଁ । ପୁଅକୁ ନିର୍ଦ୍ଦେଶ ଦେଲା, ଟଙ୍କା ଦେଇଦେ ବର୍ତ୍ତମାନ । ନା ପୁଅ ଉଠି ପାରୁଛି ବାପାଙ୍କର ଶଯ୍ୟା ପାଖରୁ ନା ମୁଁ ସେ ଅର୍ଥ ଗ୍ରହଣ କରି ପାରୁଚି ? ମୃତ୍ୟୁ ଆସନ୍ନ... ପଦଧ୍ୱନି ଶୁଭୁଛି ତାହାର । ସେଇ ବାସ୍ତବତା ସମ୍ମୁଖରେ ମୁଁ ନୀରବ, ନିଷ୍ପନ୍ଦ । ଉଠିଥିଲି ସେଦିନ ବିଦାୟ ନେବା ପାଇଁ । ସେଇ ଯେ ଶେଷ ସାକ୍ଷାତ ହେବ ଏକଥା ଭାବିବା ମଧ ମୋ ପାଇଁ କଷ୍ଟକର ହୋଇଥିଲା । ଦାଦା ଅନେକ ଦିନ ହେଲା ବେମାର । ସଂକଟ ଆସିଛି, ପୁଣି ସୁଧୁରି ଯାଇଛି । ଦାଦା ଅଛି ଆମ ପାଖରେ । ସେଇତ ଯଥେଷ୍ଟ ।

ଦାଦା ଅଛି । ଦାଦା ପଚାରିବ ମଝିରେ ମଝିରେ ଦେହ ପା କଥା । ପଚାରିବ ପିଲା ପିଲିଙ୍କ କଥା । ମୋ ସ୍ତ୍ରୀକୁ ତାଗିଦା କରିବ ମୋର ଯତ୍ନ ନେବା ପାଇଁ । ସେ ପିଲାଦିନୁ ବିଦ୍ରୋହୀ ପାଲଟିଛି । କିଛି ମାନେ ନାଇଁ । ଭଉଣୀ, ତମେ ତାର ଯତ୍ନ ନେଉଥିବ । ତାପରେ ଯେଉଁ ପ୍ରଶଂସା ଶୁଣିଲି, ଆଖିକାନ ବନ୍ଦ ହୋଇଯିବ ।  ସ୍ନେହଭରା, ଦରଦ ଭରା କଥା । ଅସୁସ୍ଥତା ସତ୍ତ୍ୱେ ମଝିରେ ମଝିରେ ପହଞ୍ଚିଯିବ ଘରେ ବା ୟୁନିଭର୍ସରେ । କିମିତି ଅଛୁ ସେତିକି ବୁଝିବାକୁ ଆସିଥିଲି । ହଠାତ୍ ପଠାଇଦେବ ମଝିରେ ମଝିରେ ଦଶ ବାରଟା ଲେଖାଏ ଗ୍ଲାସ । ଏଇଟା ତୋ ପାଇଁ, ଘର ପାଇଁ ଏଇ ସେଟ୍‌ଟା ୟୁନିଭର୍ସ ପାଇଁ । ଛୋଟିଆ, ଛୋଟିଆ କଥା । କିନ୍ତୁ କି ଦରଦ । କି ସ୍ନେହ ମିଶା ଭାଷା । ଇମିତି ମଣିଷ ମିଳିବା କଠିନ, ଇମିତି ଦରଦ ଭାଷା ମିଳିବ କେଉଁଠୁ ?

ଦାଦା ହେରିକା ତିନି ଭାଇ । ସବା ସାନ ଭାଇ ବାଦଲ  ମୋର ସହପାଠୀ । ସେ ଆଗ ବାହୁଡ଼ିଗଲା । ମଦ, ବିଡ଼ି, ସିଗାରେଟ୍, ପାନ, ଗୁଡ଼ାଖୁ  କିଛି ଖାଏନା । ତଥାପି ତାକୁ ହେଲା

କ୍ୟାନସର । ମଝିଆ ଭାଇ ନିରୁଦା, ବର୍ତ୍ତମାନ ତାର ଯିବାର ପାଳି ଆସିଗଲା । ନିରୁଦା ଜନ୍ମ ହୋଇଥିଲା ନଭେମ୍ବର ୧୬, ୧୯୨୯ ମସିହାରେ । ମୋ ଠାରୁ ୨।୩ ବର୍ଷ ବଡ଼ । ୧୯୯୭ ମସିହା ସେପ୍ଟେମ୍ବର ୬ ତାରିଖ । ନିରୁଦାର ଜୀବନର ଶେଷ ଯବନିକା ।

କଟକର ଏକ ସମ୍ଭ୍ରାନ୍ତ ପରିବାରରେ ସେ ଜନ୍ମ ହୋଇଥିଲା । କଟକ ଷ୍ଟୁଆର୍ଟ ସ୍କୁଲରେ ଶିକ୍ଷା ପରିସମାପ୍ତି କରି ସେ ରେଭେନ୍ସା କଲେଜରେ ପଢ଼ିବାକୁ ଯାଏ ଏବଂ ସେତିକିବେଳରୁ ହିଁ ତା ସହିତ ଆତ୍ମୀୟତା ଜନ୍ମେ । ସମୟର ଘାତ ପ୍ରତିଘାତରେ ତାହା ହ୍ରାସ ପାଇନାହିଁ । ଜୀବନର ଉତ୍ଥାନ ପତନ ତାକୁ ମଳିନ କରିପାରିନାହିଁ । ଦାଦା ଆମର ସେଇପରି ରହିଛି, ଅଫୁରନ୍ତ ଆଶା, ଉଚ୍ଛ୍ୱାସର ଦାଦା ଏବଂ ଆମକୁ ବି ଠିକ୍ ସେଇପରି ଦେଖି ଆସିଛି । ରେଭେନ୍ସା କଲେଜରୁ ବି.ଏ. ପାସ୍ କରି ସେ ଯୋଗଦିଏ ବ୍ୟବସାୟରେ । ଟ୍ରାଡିସନାଲ ପଥ ଛାଡ଼ି ସେ ମନ ଦିଏ ନୂତନ ନୂତନ ପ୍ରକାର ବ୍ୟବସାୟରେ । କଟକରେ ସେତେବେଳେ ଭଲ ହୋଟେଲଟିଏ ନ ଥିଲା, ନ ଥିଲା ଡ୍ରାଇ ଓ୍ୟାସିଙ୍ଗ । ଦାଦା ଆରମ୍ଭ କଲା ଏପରି ନୂତନ ପରିକଳ୍ପନା । ମୁଁ ଓ ମୋ ସ୍ତ୍ରୀ ଦୁହେଁ ଯାଇଥିଲୁ ଦିନେ ତାର ସ୍ନୋ ହ୍ୱାଇଟ୍ ଲଣ୍ଡ୍ରିକୁ । ସେ ଦିନ ଦୈବାତ୍ ହାବୁଡ଼ରେ ପଡ଼ିଗଲୁ ଦାଦାର । ଦାଦା ହୁକୁମ ଦେଲା ମୋର ଭାଇ ଭଉଣୀର ଲୁଗା ଏଣିକି ଅଧାମୂଲ୍ୟରେ ସଫା ହେବ । ଲଣ୍ଡ୍ରିର ସେ ଲୋକକୁ ହୁକୁମ ଦେଲା, ସଫେଇ ନିଜେ ତଦାରଖ କରିବା ପାଇଁ । କେତେ ଲୁଗା ଆମର ଲଣ୍ଡ୍ରିକୁ ଯାଏ ଅବା ? କିନ୍ତୁ କି ଦରଦ, କି ସ୍ନେହ... ମନେ ପଡ଼ିଲେ ଆଖି ଜକେଇ ଆସେ । ଦାଦା ଆଉ ନାହିଁ ନା ସତରେ ? ଏଇ ଶତାବ୍ଦୀର ପଞ୍ଚମ ଓ ଷଷ୍ଠ ଦଶକରେ ଦାଦା ବିଭିନ୍ନ ପ୍ରକାରର କନ୍‌ଷ୍ଟ୍ରକ୍‌ସନ୍ କାର୍ଯ୍ୟରେ ହାତ ଦିଏ । ବହୁ ପ୍ରତିକୂଳ ପରିସ୍ଥିତି ତା ପାଇଁ ଥିଲା ଏକ ଚାଲେଞ୍ଜ, ଏକ ଆହ୍ୱାନ । କାମ ନେଇଛି, କଥା ଦେଇଛି ସାରିବାକୁ ହେବ । ଫେରିବା ହେବ ନାହିଁ । ଖାଲି ନିଜ କାମ ନିଏ ନୁହଁ, ଅନ୍ୟ କେହି କାମ ନେଇଥିଲେ ତାକୁ ସାହାଯ୍ୟ କରେ, ଉପଦେଶ ଦିଏ । ବନ୍ଧୁତାର ଦିଗ୍‌ବଳୟ ସମ୍ପ୍ରସାରିତ ହୋଇଯାଏ ।

ତାରି ଭିତରେ ଦାଦା ସମୟକରେ ବନ୍ଧୁ ମାନଙ୍କ ପାଇଁ , ସାମାଜିକ କାର୍ଯ୍ୟ ପାଇଁ । ୟୁନିଭର୍ସ ଯେମିତି ଝୁରିବ ଦାଦା ପାଇଁ, ରୋଟାରୀ କ୍ଲବ ମଧ୍ୟ ଝୁରିବ ସେଇପରି । କଟକର ଅନ୍ୟାନ୍ୟ ବହୁ ଅନୁଷ୍ଠାନ ମଧ୍ୟ ଝୁରିବେ ସେଇପରି ।

ଦାଦାଟାର ତ ବୟସ ହେଉନାହିଁ ଆଦୌ । ବୁଢ଼ା ହେବା ପାଇଁ ସେ ନାରାଜ । ବୟସ ହାର ମାନିଛି । ପିଲାଙ୍କ ସାଙ୍ଗରେ ପିଲା, ଯୁବକଙ୍କ ସହିତ ଯୁବକ, ପ୍ରୌଢ଼ମାନଙ୍କ ସହିତ ପ୍ରୌଢ଼ । ଦାଦା ସେ ସମଷ୍ଟିଙ୍କର । ଦାଦାର ବଡ଼ ସାନ ଭେଦ ଯେପରି ନାହିଁ, ସେଇପରି ନାହିଁ, ଜାତି ଧର୍ମ, ବର୍ଣ୍ଣ ଭାଷା ଭେଦ ।

ଭିଡ଼ ଜମିଚି ଶୋକାର୍ତ୍ତ ମଣିଷର । ସବୁ ପ୍ରକାର ମଣିଷ । ତଳଠାରୁ ଉପର ପର୍ଯ୍ୟନ୍ତ ଦାଦା ସମସ୍ତଙ୍କୁ ଜାଣିଛି । ଦାଦା କେବେ ଭାରତୀୟ ଜନତା ପାର୍ଟିର ସଭ୍ୟ ହୋଇ ଯାଇଚି ବୋଲି ମୁଁ ଜାଣେ ନାହିଁ । ମୋର ଜଣେ ଆତ୍ମୀୟା ଶ୍ରୀମତୀ ଶାନ୍ତି ଦାସ ଏବଂ ଦୁଇଜଣ ଘନିଷ୍ଠ

ବନ୍ଧୁ ଶ୍ରୀ ଜିଷ୍ଣୁରାୟ ଓ ଶ୍ରୀ ବିପିନ ବିହାରୀ ରଥ ଭାରତୀୟ ଜନତା ପାର୍ଟିର ସଭ୍ୟ । ବିପିନଟା ଏଆଡୁ ଯାଇ, ସେ ପଟରେ ପଶି ଯାଇଚି । ଶାନ୍ତି ଏବଂ ଜିଷ୍ଣୁଙ୍କୁ ଦେଖିଲେ ମୁଁ ସ୍ୱାଗତ ଜଣାଏ ଜୟ ରାବଣ କହି । ସେମାନେ କହନ୍ତି 'ଜୟ ଶ୍ରୀରାମ' । ହସ ବୃଷ୍ଟି ହୁଏ । ଭୁଲ୍ ବୁଝା ହୋଇନାହିଁ । ମୋ ପାଇଁ ରାମଚନ୍ଦ୍ର ଭଲ ମଣିଷ, କିନ୍ତୁ ଉତ୍ତମ ପୁରୁଷ ନୁହଁନ୍ତି । ସୀତାକୁ ସେ କାହିଁକି ବନବାସ ପଠାଇଲେ, ସେଥିପାଇଁ ନୁହେଁ । କାରଣ ମୂଳ ରାମାୟଣରେ ଅଭିଷେକରେ ହିଁ ରାମାୟଣର ପରିସମାପ୍ତି । ଉତ୍ତର ରାମଚରିତ ବହୁ ପରେ ଯୋଡ଼ା ହୋଇଛି । ଦାଦା କେବେ ବି.ଜେ.ପି.ରେ ଯୋଗଦେଲା ମୁଁ ଜାଣିନାହିଁ । ସେଥିପାଇଁ ଅନ୍ୟମାନଙ୍କ ପରି ତାର ଘଟ ପରିବର୍ତ୍ତନ ଘଟିନାହିଁ ।

ଦାଦା, ତୁ ଆହୁରି ୧୨ ବର୍ଷ ବଂଚିବୁ । କହିଲାବେଳେ ବୌଦି ହସିଥିଲେ । ଆଜି ତ ସେ କାନ୍ଦୁ ନାହାନ୍ତି । ଥିର ହୋଇ ଯାଇଛନ୍ତି । ଯେଉଁ ଘଟଣା ପାଇଁ ସେ ଭୟ କରୁଥିଲେ, ଯାହାର ପଦଧ୍ୱନି ଶୁଣି ପାରୁଥିଲେ, ଯାହାର ଛାଇକୁ ସେ ଆପଣାର ପଣତ କାନିରେ ଉହାଡ କରି ରଖିଥିଲେ ଦାଦାକୁ । ଆଜି ତାରି ପାଖରେ ହାରି ଯାଇ ସେ କ୍ଲାନ୍ତ । ସେ ପାଷାଣ ପାଲଟି ଯାଇଚନ୍ତି, ଦାଦା ଶୋଇଛି, ସେଇପରି ନିର୍ଲିପ୍ତ ଚେହେରା । ବେଦନାର ଗାର ବି ନାହିଁ । ପାଖରେ ପୁଅ ସୁମୀତ ଆଉ ବୋହୂ ଅପର୍ଣ୍ଣା ଲୁହ ଢାଳୁଛନ୍ତି । ଝିଅ ମଧୁମିତା ଆଉ ଜ୍ୱାଇଁ ତପନକୁ ଅପେକ୍ଷା କରୁଛନ୍ତି । ସେମାନେ ପହଞ୍ଚିଲେ ଯାତ୍ରା ଆରମ୍ଭ ହେବ ମହାଯାତ୍ରାର । ମେଘନା ଓ ବର୍ଷା ବୁଝି ପାରୁନାହାନ୍ତି ବୋଧହୁଏ ଘଟଣା । ସହରର ବିଭିନ୍ନ ଅଞ୍ଚଳରୁ ବନ୍ଧୁମାନେ ଆସି ପହଞ୍ଚିବାରେ ଲାଗିଛନ୍ତି । କିଏ ସୁସ୍ଥ, କିଏ ନିଜେ ଅସୁସ୍ଥ । ତଥାପି ସେମାନେ ଆସିଛନ୍ତି ଶ୍ରଦ୍ଧାଞ୍ଜଳି ଦେବା ପାଇଁ ଏଇ ମଣିଷଟିକୁ । ସେ ମୃତ୍ୟୁକୁ ମଧ୍ୟ ସାମନା କରିଛି ହସ ହସ ମୁହଁରେ । ଆସ ମୃତ୍ୟୁ, ମୋତେ ଆଲିଙ୍ଗନ କର । କିନ୍ତୁ ମୁଁ ହସି ହସି ଯିବି, ମୋ ଆଖିରୁ ଲୁହ ଗଡ଼ିବ ନାହିଁ । ମୁଁ ମୃତ୍ୟୁଞ୍ଜୟୀ ।

ଦାଦା ପ୍ରକୃତରେ ମୃତ୍ୟୁଞ୍ଜୟୀ । ଦାଦା ତୋତେ ପ୍ରଣାମ ।



# କୁଶଳୀ ଜାତୀୟତାବାଦୀ ରାଜନୀତିଜ୍ଞ

ସମୟ ଅତିକ୍ରାନ୍ତ ହେଉଛି । ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରିଥିବା ରାଜନୈତିକ ନେତା ମାନଙ୍କର ବିଦାୟ ପର୍ବ ଚାଲିଛି । ମହାକାଳର ସଦ୍ୟ ଆଘାତର ଶିକାର ହେଉଛନ୍ତି ଭାରତବର୍ଷର ପୂର୍ବତନ ରାଷ୍ଟ୍ରପତି ନୀଲାମ ସଂଜୀବ ରେଡି । ୮୩ ବର୍ଷ ବୟସରେ କୁନ୍ ପହିଲା, ୧୯୯୬ରେ ତାଙ୍କର ପରଲୋକ ହୋଇଗଲା ବାଙ୍ଗାଲୋରରେ । ଘର ଅନନ୍ତପୁର ଛାଡ଼ି ସେ ଗଲା କେତେ ବର୍ଷ ହେଲା ବାଙ୍ଗାଲୋରରେ ହିଁ ରହୁଥିଲେ । ରାଷ୍ଟ୍ରପତି ଭବନରୁ ଯାଇ ଏକ ସରଳ ଜୀବନ ଯାପନ କରିବା ପାଇଁ ଇଚ୍ଛା ପ୍ରକାଶ କରିଥିବା ସଂଜୀବ ରେଡି ଆପଣାର ଅନନ୍ତପୁର ଫାର୍ମ ହାଉସରୁ ଯାଇ ବାଙ୍ଗାଲୋରରେ ରାଜ୍ୟ ଅତିଥି ଭବନରେ ରହିଥିଲେ । ୧୯୮୮ ମସିହା ପରେ କର୍ଣ୍ଣାଟକ ସରକାର ସେ ସୁବିଧା ପ୍ରତ୍ୟାହାର କରିନିଅନ୍ତି । ହାଇକୋର୍ଟର ନିର୍ଦ୍ଦେଶନାମା ବଳରେ ଗୃହ ପାଇବାର ସୁବିଧା ମଧ୍ୟ ପ୍ରତ୍ୟାହାର କରି ନିଆଯାଏ ଏବଂ ନୀଲମ ସଂଜୀବ ରେଡିଙ୍କୁ ଅଦାଲତର ସାହାଯ୍ୟ ନେବାକୁ ପଡ଼େ । ଭାରତର ଷଷ୍ଠ ରାଷ୍ଟ୍ରପତି ସଂଜୀବ ରେଡି ହେଉଛନ୍ତି ପ୍ରଥମ ରାଷ୍ଟ୍ରପତି ଯେ ସବୁ ଦଳର ସମର୍ଥନରେ ବିନା ପ୍ରତିଦ୍ୱନ୍ଦ୍ୱିତାରେ ନିର୍ବାଚିତ ହୁଅନ୍ତି । ସେ ହିଁ ପ୍ରଥମ ରାଷ୍ଟ୍ରପତି ଯାହାଙ୍କ ପ୍ରାର୍ଥୀତ୍ୱ ଏକ ଅଣ କଂଗ୍ରେସ ସରକାର ଦ୍ୱାରା ପ୍ରସ୍ତାବିତ ହୁଏ ଏବଂ କଂଗ୍ରେସ ଦଳ ଦ୍ୱାରା ସମର୍ଥନ ଲାଭ କରେ । ସବୁଠାରୁ କମ ବର୍ଷରେ, ମାତ୍ର ୬୪ ବର୍ଷ ବୟସରେ ସେ ରାଷ୍ଟ୍ରପତି ହୁଅନ୍ତି ୧୯୭୭ ରୁ ୧୯୮୨ ପର୍ଯ୍ୟନ୍ତ । ସବୁ ରାଷ୍ଟ୍ରପତିଙ୍କ ପରି ତାଙ୍କର ମଧ୍ୟ ଦ୍ୱିତୀୟ ଥର ପାଇଁ ରାଷ୍ଟ୍ରପତି ହେବାର ଇଚ୍ଛା ଥିଲା । କିନ୍ତୁ ଇନ୍ଦିରା ଗାନ୍ଧି ତାଙ୍କୁ ସେଥିପାଇଁ ପ୍ରସ୍ତାବନା ନ କରିବାରୁ ସେ ଦ୍ୱିତୀୟ ଥର ରାଷ୍ଟ୍ରପତି ହେବା ପାଇଁ 'ନାସ୍ତି' କରିଦେଇ ସମସ୍ତଙ୍କୁ ଅସୁବିଧାରୁ ରକ୍ଷା କରି ଦେଇଥିଲେ । ମୋରାରଜୀ ଦେଶାଇଙ୍କ ସରକାର ପତନ ପରେ ପରେ ସେ ଚରଣ ସିଂହଙ୍କୁ ସରକାର ଗଢ଼ିବା ପାଇଁ ଆହ୍ୱାନ କରିଥିଲେ । ଏହି ନିଷ୍ପତ୍ତି ବିବାଦମୂଳକ ଥିଲା ଏବଂ ଅନେକ ମନେ କରନ୍ତି ଯେ ଏହି ନିଷ୍ପତ୍ତି ହିଁ ଇନ୍ଦିରା ଗାନ୍ଧିଙ୍କୁ ପୁଣି ଥରେ ସରକାର ଗଠନ କରିବାର ପଥକୁ ସୁଗମ କରିଦେଲା । ତେଣୁ ସ୍ୱାଭାବିକ ଭାବରେ ରେଡି ଆଶା କରିଥିଲେ ଯେ, ଇନ୍ଦିରା ଗାନ୍ଧି ତାଙ୍କୁ ଏଥିପାଇଁ ପୁରସ୍କୃତ କରିବେ, ଯଦିଓ ତାଙ୍କର କାର୍ଯ୍ୟକୁ 'ବିଶ୍ୱାସଘାତକ' କାର୍ଯ୍ୟ ବୋଲି ତାଙ୍କର ଏକଦା ବନ୍ଧୁମାନେ ବିଚାର କରୁଥିଲେ । ଏଠାରେ ସ୍ମରଣ କରାଯାଇପାରେ ଏହି 'ବିଶ୍ୱାସଘାତକ' କାର୍ଯ୍ୟର ମାତ୍ର ଦଶବର୍ଷ ପୂର୍ବରୁ ରେଡିଙ୍କ ପ୍ରାର୍ଥୀତ୍ୱ ନେଇ ଭାରତର ଇତିହାସରେ ଅଭୂତପୂର୍ବ ଝଡ଼ ଉଠିଥିଲା ଏବଂ କଂଗ୍ରେସ ଦୁଇ ଭାଗରେ ବିଭକ୍ତ ହୋଇ ଯାଇଥିଲା । ଇନ୍ଦିରା ଗାନ୍ଧୀ ସିଣ୍ଡିକେଟର

ଚାପାରେ ରେଡିଙ୍କ ପ୍ରାର୍ଥୀତ୍ୱର ପ୍ରସ୍ତାବନା କଲେ କିନ୍ତୁ ବିଦ୍ରୋହୀ ପ୍ରାର୍ଥୀ ଭି.ଭି. ଗିରିଙ୍କୁ ଠିଆ କରାଇ ରେଡିଙ୍କୁ ପରାସ୍ତ କଲେ, ' ବିବେକାନୁମୋଦିତ ଭୋଟ ' ପାଇଁ ଆହ୍ୱାନ ଦେଇ, 'ସିଣ୍ଡିକେଟ୍' ସେତେବେଳେ ପ୍ରବଳ ଶକ୍ତିଶାଳୀ । ସଂଗଠନ ସେମାନଙ୍କ ହାତରେ । ଇନ୍ଦିରା ଗାନ୍ଧିଙ୍କ ଦ୍ୱାରା କଂଗ୍ରେସ ବିଭାଜିତ ହେଲା - କଂଗ୍ରେସ(ଇ) ଏବଂ କଂଗ୍ରେସ (ବି)ରେ । ବୈପ୍ଳବିକ ସ୍ଲୋଗାନ ଦେଇ ଇନ୍ଦିରା ଗାନ୍ଧି କିଛି ବାମପନ୍ଥୀଙ୍କ ସମର୍ଥନ ଲାଭ କଲେ । କିନ୍ତୁ ତାହା ଥିଲା ଜରୋରୀ ପରିସ୍ଥିତି ଘୋଷଣାର ଆଦ୍ୟପର୍ବ ଏକଥା କିଏ ଜାଣିଥିଲା ? ସଂଜୀବ ରେଡି ଫେରିଥିଲେ ଗ୍ରାମକୁ, ରାଜନୀତିର ଲୁତାଜାଲରେ ଆଉ ଆବଦ୍ଧ ନ ହେବା ପାଇଁ କାମନା କରି । କିନ୍ତୁ ସବୁ କାମନା କ'ଣ ପୂରଣ ହୁଏ ? ବାଡ଼ ଯଦି କ୍ଷେତ ଖାଇଯାଏ, ତା ହେଲେ ମୁଁ ନିରୁପାୟ । ମୁଁ ଜଣେ ଗରିବ କିଷାନ୍ ମୁଁ କଣ କରି ପାରିବି ? ଏଇଥିଲା ସଂଜୀବ ରେଡିଙ୍କ ବକ୍ତବ୍ୟ । କିନ୍ତୁ ସେ ଆସିଥିଲେ ଏକ ରାଜନୈତିକ ପରିବାରରୁ । ଭାଇ ରାଜଶେଖର ରେଡି ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ନେତା । ଆଉ ଜଣେ ହେଲେ ଭଗ୍ନୀପତି ନାଗି ରେଡି । ଆନ୍ଧ୍ର ତେଲେଙ୍ଗାନା ଆନ୍ଦୋଳନର ମହାରଥୀ । ଆନ୍ଧ୍ର ବିଧାନସଭାର ସଭ୍ୟ ପଦରୁ ଇସ୍ତଫା ଦେଇ ସେ ଚାଲିଥିଲେ ଜଙ୍ଗଲକୁ, ଗ୍ରାମକୁ । ବିଧାନସଭା ସମସ୍ୟାର ସମାଧାନ କରି ପାରିବ ନାହିଁ । ସମାଧାନ କରିବ ଚାଷୀ ଆନ୍ଦୋଳନ ଏବଂ ସଶସ୍ତ୍ର ଅଭ୍ୟୁତ୍ଥାନ । ଏଇ ଥିଲା ନାଗି ରେଡିଙ୍କର ଉଦାରବାଣୀ, ଯାହା ସହଯୋଦ୍ଧା ଏବଂ ବିରୋଧୀ ଉଭୟଙ୍କୁ ବିସ୍ମିତ କରିଥିଲା । ୧୯୧୩ ମସିହା ମଇ ୧୯ ତାରିଖରେ ଆନ୍ଧ୍ର ପ୍ରଦେଶର ଦୁର୍ଭିକ୍ଷ ପ୍ରପୀଡ଼ିତ ଅନନ୍ତପୁର ଜିଲ୍ଲାର ଏଲୁରୁ ଗ୍ରାମରେ ସଂଜୀବ ରେଡ଼ି ଜନ୍ମ ଗ୍ରହଣ କରନ୍ତି । ମାନ୍ଦ୍ରାଜର ଥିଓସଫିକାଲ ସ୍କୁଲରେ ମାଟ୍ରିକ ପାଶ କଲା ପରେ ୧୯୩୧ ମସିହାରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦିଅନ୍ତି । ତେଲୁଗୁ ଭାଷାରେ ଓଜସ୍ୱିନୀ ଭାଷଣ ପାଇଁ ତାଙ୍କୁ ସଭାସମିତି ପାଇଁ ଡ଼ାକରା ବେଶୀ ପଡ଼େ । ତେଲୁଗୁ ଓ ତାମିଲ ଭାଷୀ ନେତାମାନଙ୍କର ସଂସ୍ପର୍ଶରୁ ଏବଂ ସଂଘର୍ଷରୁ ସେ ଶିକ୍ଷା ଲାଭ କରନ୍ତି, ଉଭୟଙ୍କ ଠାରୁ । ରାଜାଜୀ, ଟି.ପ୍ରକାଶମ୍ । ପଟ୍ଟାଭି, ଗୋପାଲ ରେଡି ଏବଂ ଅଧ୍ୟାପକ ରଂଗାଙ୍କୁ ସେ ଗୁରୁ ବୋଲି ମାନନ୍ତି । ବୁଦ୍ଧି ଶାଣିତ ହୁଏ, ପାକଳ ହୁଏ । ୧୯୬୯ ମସିହାରେ କଂଗ୍ରେସ ଭିତରେ ଥିବା ସିଣ୍ଡିକେଟ୍ ସହିତ ମନ ମିଳିଯାଏ ତାଙ୍କର ରାଜନୈତିକ ଦର୍ଶନରୁ । ନିଜ ଅଞ୍ଚଳ ରୟାଲସୀମା ଦିନେ କମ୍ୟୁନିଷ୍ଟମାନଙ୍କର ଘାଟି ଭାବରେ ପରିଚିତ ଥିଲା । ନିଜ ପରିବାରରୁ ଅନେକ ବାମପନ୍ଥୀ ଦଳରେ ଯୋଗଦେଇଛନ୍ତି । କିନ୍ତୁ ସଂଜୀବ ରେଡ଼ି ଗାନ୍ଧିବାଦର ଦିହୁଡ଼ି ଜଳାଇ ରଖିଛନ୍ତି । ସମୟ ସମୟରେ ଏକାକୀ । ୧୯୬୦ ମସିହାରେ ସେ ଇନ୍ଦିରା ଗାନ୍ଧିଙ୍କ ସ୍ଥାନରେ କଂଗ୍ରେସର ସଭାପତି ହୁଅନ୍ତି ଏବଂ ତାହା ହିଁ ତାଙ୍କୁ ଜାତୀୟ ସ୍ତରକୁ ନେଇଆସେ ।

୧୯୭୬ ମସିହାରେ ନିର୍ବାଚନ ହୁଏ । ଆଠ ବର୍ଷ ରାଜନୈତିକ ସନ୍ନ୍ୟାସ ପରେ ସଂଜୀବ ରେଡି ଉକ୍ତ ନିର୍ବାଚନରେ ବିଜୟ ଲାଭ କରନ୍ତି ।

ସେଥରକ ନିର୍ବାଚନରେ ଦକ୍ଷିଣାଞ୍ଚଳରୁ ଖୁବ୍ କମ ସଂଖ୍ୟକ ଜନତା ଦଳ ପ୍ରାର୍ଥୀ ନିର୍ବାଚିତ ହୋଇଥିଲେ । ସେମାନଙ୍କ ମଧ୍ୟରେ ସଂଜୀବ ରେଡି ଅନ୍ୟତମ । ରାଜନୈତିକ ଦୃଷ୍ଟିରୁ ତାଙ୍କୁ

ଜାତୀୟ ସ୍ତରରେ ପ୍ରତିପାଦିତ କରିବାର ଆବଶ୍ୟକତା ଥିଲା ପ୍ରଭୂତ । କାରଣ ଦେଖାଗଲା ଯେ ଇନ୍ଦିରା ଗାନ୍ଧିଙ୍କ ଜରୋରୀ ପରିସ୍ଥିତି ସତ୍ତ୍ୱେ ଦକ୍ଷିଣାଞ୍ଚଳରେ ତାଙ୍କର ପ୍ରଭାବ ଅକ୍ଷୁର୍ଣ୍ଣ ରହଛି । ସଂଜୀବ ରେଡି ହେଉଛନ୍ତି ଏକମାତ୍ର ଜନତା ଦଳ ସଭ୍ୟ ଆନ୍ଧ୍ରପ୍ରଦେଶରୁ । ଦ୍ୱିତୀୟତଃ ଜୟ ପ୍ରକାଶ ଜଣାଇଦେବାକୁ ଚାହୁଁଥିଲେ ସମସ୍ତଙ୍କୁ ଯେ ତାଙ୍କର ଆନ୍ଦୋଳନ କେବଳ ଉତ୍ତର ଭାରତରେ ସୀମିତ ନୁହେଁ । ସଂଜୀବ ରେଡି ବାଚସ୍ପତି ନିର୍ବାଚିତ ହୁଅନ୍ତି ୧୯୭୭ ମସିହାରେ ।ସେ ଇଂରାଜୀ ଭାଷାରେ ଶପଥ ପାଠ କରନ୍ତି ରାଷ୍ଟ୍ରପତି ଭାବରେ । ତାହା ହିନ୍ଦୀବାଲାଙ୍କୁ ଭଲ ଲାଗେନା । କିନ୍ତୁ ସଂଜୀବ ରେଡି କହନ୍ତି ଯେ ସେ ଏଭଳି ଏକ ରାଷ୍ଟ୍ରପତି ହେବା ପାଇଁ ନିଶ୍ଚିତ ଭାବରେ ଚାହାନ୍ତି ଯେ ନିଷ୍ପତ୍ତି କଲାବେଳେ ରାଷ୍ଟ୍ରପତି, ଭାବରେ ପରିଚିତ ହେବେ । ତାହାହିଁ ଘଟିଲା ୧୯୮୦ ମସିହାରେ । ଅନେକଙ୍କର ମତ ଯେ ଯେଉଁ ଇନ୍ଦିରା ଗାନ୍ଧି ତାଙ୍କୁ ପ୍ରାର୍ଥୀ କରି ନିର୍ବାଚନରେ ହରାଇ ଦେଇଥିଲେ ତାଙ୍କୁ ହିଁ ଡାକି ଆଣି ପ୍ରଧାନମନ୍ତ୍ରୀ କରିବା " ରହସ୍ୟ ଜନକ" ନିଷ୍ପତ୍ତି । କିନ୍ତୁ ମନେହୁଏ ଯେ ଅତୀତର ଭୁଲ୍ ବୁଝାମଣା ସଂଜୀବ ରେଡିଙ୍କ ନିଷ୍ପତ୍ତିକୁ ମେଘାଛନ୍ନ ବା ବିଭ୍ରାନ୍ତ କରି ନ ଥିଲା । ଅତୀତ ହଉଛି ଅତୀତ । ତାହା ବର୍ତ୍ତମାନକୁ ପ୍ରଭାବିତ କରିପାରେ କିନ୍ତୁ ନିୟନ୍ତ୍ରିତ କରି ପାରିବ ନାହିଁ । ତଥାପି ରେଡିଙ୍କର ସେ ନିଷ୍ପତ୍ତି ବର୍ତ୍ତମାନ ପର୍ଯ୍ୟନ୍ତ ବିବାଦମୂଳକ । ତାଙ୍କର ପୂର୍ବସୂରୀମାନେ ରାଷ୍ଟ୍ରପତି ପଦବୀକୁ ଇନ୍ଦିରା ଗାନ୍ଧିଙ୍କ ଉପହାର ଭାବି ତାଙ୍କ ପ୍ରତି କୃତଜ୍ଞ ରହିଥିଲେ କିନ୍ତୁ ସଂଜୀବ ରେଡି ଏହି ପଦବୀକୁ ଆପଣାର ନ୍ୟାର୍ଯ୍ୟ ଆଧାର ବୋଲି ଭାବୁଥିଲେ ଏବଂ କାହାରି ଦୟାରୁ ରାଷ୍ଟ୍ରପତି ହୋଇଛନ୍ତି ବୋଲି ବିଚାର କରି ନାହାନ୍ତି । ମୋରାରଜୀ ଦେଶାଇ ତ ନିଶ୍ଚିତ ଭାବରେ ସେ ତାଲିକାରେ ନ ଥିଲେ ।

ମୋରାରଜୀ ଦେଶାଇଙ୍କ ସହିତ ତାଙ୍କର ସଂପର୍କ କେବେ ଖୁବ୍ ଗୁଡ଼ାଏ ବନ୍ଧୁତ୍ୱପୂର୍ଣ୍ଣ ନ ଥିଲା । ମୋରାରଜୀ ଏହି ଅଭିଯୋଗ ତାଙ୍କର ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ଯେ ସଂଜୀବ ରେଡି ତାଙ୍କ ପ୍ରତି ନ୍ୟାୟ ଦେଖାଇ ନାହାନ୍ତି । ମୋରାରଜୀଙ୍କର ଏକ୍‌ବୁଝା ନୀତି, ପ୍ୟୁରିଟାନିଜମ୍ ଏବଂ ବିଶେଷତଃ ମଦ ବିରୁଦ୍ଧରେ ବିଷୋଦ୍‌ଗାରକୁ ସଂଜୀବ ରେଡି ଭଲ ପାଉ ନ ଥିଲେ । ସଂଜୀବରେଡିଙ୍କ ରାଷ୍ଟ୍ରପତି ଭାବରେ ମାନ୍ଦ୍ରାଜ ଗସ୍ତ କାଳ । ସେତେବେଳେ ନିଶା ନିବାରଣର ଅନ୍ୟତମ ନେତା ପ୍ରଭୁଦାସ ପଟ୍ଟୱାରି ମାନ୍ଦ୍ରାଜରେ ରାଜ୍ୟପାଳ । ରାଷ୍ଟ୍ରପତି ରାଜଭବନରେ ନ ରହି ମହାବଳୀପୁରମ୍‌ର ପଞ୍ଚତାରକା ନିବାସରେ ରହିବାକୁ ସ୍ଥିର କରନ୍ତି । ସେତେବେଳେ ଏହା ଚମକ ସୃଷ୍ଟି କରେ । ଚରଣସିଂହଙ୍କୁ ପ୍ରଧାନମନ୍ତ୍ରୀ ହେବା ପାଇଁ ଆହ୍ୱାନ କରିବା ବିବାଦମୂଳକ ଏବଂ କେତେକଙ୍କ ଆଖିରେ ସନ୍ଦେହଜନକ । କିନ୍ତୁ ସଂଜୀବ ରେଡିଙ୍କ ମତ ଯେ ସେଇ ପରିସ୍ଥିତି ଏବଂ ଅସ୍ଥିର ପରିସ୍ଥିତିରେ ମୋର ଆଉ କୌଣସି ଉପାୟ ନ ଥିଲା ।

୧୯୮୨ ମସିହା ସଂଜୀବ ରେଡି ଫେରିଲେ ପୁଣି ଗାଁକୁ । ସେ ସିନା ଇନ୍ଦିରା ଗାନ୍ଧିଙ୍କୁ ଭୁଲିଥିଲେ କିନ୍ତୁ ଇନ୍ଦିରା ଗାନ୍ଧି ତାଙ୍କୁ ଭୁଲି ନ ଥିଲେ । ଦ୍ୱିତୀୟ ଥର ରାଷ୍ଟ୍ରପତି ହେବା ପାଇଁ ତାଙ୍କର ଇଚ୍ଛାକୁ ଇନ୍ଦିରା ଗାନ୍ଧି ପୂରଣ କଲେ ନାହିଁ ।

ରାଷ୍ଟ୍ରପତି ଥିଲାବେଳେ ସଂଜୀବ ରେଡି ଆସିଥିଲେ ଓଡ଼ିଶା । ଚାହିଁଲେ ଭେଟିବା ପାଇଁ

ନବକୃଷ୍ଣ ଚୌଧୁରୀଙ୍କୁ । ତାଙ୍କ ପାଖକୁ ନବ ବାବୁଙ୍କୁ ନେଇ ଆସିବା ପାଇଁ ଶାସନକଳର ଇଚ୍ଛାକୁ ପ୍ରତ୍ୟାଖ୍ୟାନ କରି ସେ ଗଲେ ଅନୁଗୋଳ । ସେଠାରେ ମଧ ସର୍କିଟ ହାଉସକୁ ନବବାବୁଙ୍କୁ ଡକାଇ ଆଣିବାର ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ସେ ଗଲେ ବାଜି ରାଉତ ଛାତ୍ରବାସକୁ । ମୁଖ୍ୟ ରାସ୍ତା ଉପରେ ଗାଡ଼ି ରହିଲା । ସମସ୍ତେ ରହିଲେ  ଗାଡ଼ି ପାଖରେ । ସେ ଏକାକୀ ଗଲେ ନବ ବାବୁଙ୍କୁ ଭେଟିବା ପାଇଁ । ପ୍ରୋଟୋକୋଲରେ ନିର୍ଦ୍ଧାରିତ ହୋଇଥିବା ସମୟ ଅତିକ୍ରାନ୍ତ ହୋଇ ଯାଇଥିଲା ନବବାବୁ ଏବଂ ମାଳତୀ ଦେବୀଙ୍କୁ ଭେଟିବାରେ ଜଣେ ସହକର୍ମୀଙ୍କୁ କହିଲେ ନବବାବୁ  ଭଳି ଲୋକଙ୍କୁ ମୁଁ ଡକାଇ ଆଣି ପାରିବି ସର୍କିଟ ହାଉସକୁ ?  ସେ ଯେତେବେଳେ ନେତା, ଆମେ ସବୁ ସେତେବେଳକୁ ସାଧାରଣ କର୍ମୀ । ସମୟ ଓ ଭାଗ୍ୟଚକ୍ରର ଆବର୍ତ୍ତନରେ ମୁଁ ରାଷ୍ଟ୍ରପତି ହୋଇ ଯାଇଛି ବୋଲି ମୋର ଏତେ ଆସ୍ପର୍ଦ୍ଧା ହୋଇ ପାରିବ ? ପ୍ରଜ୍ଞା ଓ ତ୍ୟାଗ ଆଗରେ ସମସ୍ତେ ମଥା ଅବନତ କରିବାକୁ ବାଧ ।

ସଂଜୀବ ରେଡି ଆଉ ନାହାନ୍ତି   ।



# ହେ ମହାଗଣକ !
# ଗଡ଼ିଗଲା ତୁମ ଖଡ଼ି ଗୋଟାଳି

ଆଜି ଡିସେମ୍ବର ୨୧, ୧୯୮୩ ମସିହା । ମହାଗଣକଙ୍କର ଖଡ଼ି ଆଜି ଗଡ଼ିଗଲା । ଯେ ଗଡ଼ିଗଲା, ସେ ଆଉ ଫେରିବ ନାହିଁ । ଜୀବନର ସବୁ ଅଙ୍କର ମିଶାଣ ଆଜି ଶେଷ । ଆଉ ସେ ଗଣିତରେ ନୂଆ ମିଶାଣ ହେବ ନାହିଁ ।

ଯାହା ରହିଗଲା ତାହା ଇତିହାସ । କେବଳ ପଖଳା ସ୍ମୃତି ।

ବହୁ ଛାତ୍ରଙ୍କୁ ସେ ଗଣିତ ପଢ଼ାଇଛନ୍ତି । ପାଟିରେ ବାଟୁଳି ବାଜି ନାହିଁ । ପ୍ରଚଣ୍ଡ କ୍ରୋଧୀ ଏବଂ ସ୍ୱାଭିମାନୀ ନାରାୟଣ ପତି ଶିକ୍ଷକ ଯେମିତି, ପ୍ରଶାସକ ବି ସେମିତି । ତାଙ୍କ ପାଟି ଶୁଣିଲେ ସମଗ୍ର ବିଦ୍ୟାଳୟ ଥରି ଉଠୁଥିଲା । ସେ ପାଟିର ପ୍ରତିଧ୍ୱନି ଆଜି ମଧ ଶୁଭେ । ଏଇ ଲେଖା ଲେଖିଲା ବେଳେ ଦେହ ଥରି ଉଠେ । ସେ କିନ୍ତୁ ଆଜି ନିଷ୍ପନ୍ଦ । ମୁଖମଣ୍ଡଳରେ ଏକ ପ୍ରଶାନ୍ତି । କ୍ଲାନ୍ତିର ନା ତୃପ୍ତିର ? ହୁଏତ ଉଭୟର ।

ତୃପ୍ତି କାରଣ ବହୁ ଛାତ୍ର ତାଙ୍କ ଠାରୁ ମଣିଷ ହୋଇଛନ୍ତି, ପ୍ରତିଷ୍ଠିତ ହୋଇଛନ୍ତି । ସେମାନେ ଆଜି ବି ତାଙ୍କୁ ସ୍ମରଣ କରନ୍ତି, ଲୋତକାପ୍ଲୁତ ଆଖିରେ । ସେ କ୍ରୋଧ ଯିଏ ଦେଖିଚି, ଯିଏ ଶୁଣିଚି, ତାହା ମନେ ରହିଛି ଚିରଦିନ ପାଇଁ । ସେ କ୍ରୋଧରେ କିନ୍ତୁ କୌଣସି ଶ୍ଳାଘା ନ ଥିଲା । ବାଛବିଚାର ମଧ ନ ଥିଲା । ସେ ଅମୁକ ଲୋକର ପୁଅ, ସେ ପ୍ରତିଷ୍ଠିତ ବ୍ୟକ୍ତିର ଝିଅ । ଏହା ତାଙ୍କୁ କଦାପି ଘାରି ନ ଥିଲା । ସେ ଶିକ୍ଷକ, ସମସ୍ତଙ୍କର ଶିକ୍ଷକ । ଧନୀ, ଦରିଦ୍ର, ସବୁ ଛାତ୍ରଙ୍କର ସେ ହେଉଛନ୍ତି ଶିକ୍ଷକ । ଶିକ୍ଷକତା ଖାଲି ତାଙ୍କର ପେଷା ନୁହେଁ, ଏହା ତାଙ୍କର ନିଶା । ଜୀବନର ଧର୍ମ, ବେଉସା କରିବା ପାଇଁ ସେ ଶିକ୍ଷକ ହୋଇ ନାହାନ୍ତି । ଶିକ୍ଷକ ହୋଇଛନ୍ତି ଆଗାମୀ ପୀଢ଼ିକୁ ପଢ଼ାଇବା ପାଇଁ । ସେଥିରେ ପୁଣି ଭେଦ ଭାବ ବାଛ ବିଚାର କ'ଣ ? ସେ ପ୍ରଶ୍ନ କେବେ ଉଠି ନାହିଁ, କି ଘାରି ନାହିଁ । ସେ ପ୍ରଧାନ ଶିକ୍ଷକ, ଶିକ୍ଷାନୁଷ୍ଠାନର ମୁଖ୍ୟ । ସେ କାମ ସମ୍ପନ୍ନ କଲାବେଳେ ତାଙ୍କ ଆଗରେ ଆଉ କେହି ବଡ଼ ନୁହଁନ୍ତି । ଏଇପରି ଏକ ସ୍ୱାଭିମାନ ତାଙ୍କର ଥିଲା । ସେଥିଯୋଗୁଁ ପରବର୍ତ୍ତୀ କାଳରେ, ତାଙ୍କୁ ଦେଖିଲେ ସେଇ ପୁରୁଣା ଭୟ, ପୁରୁଣା ଭକ୍ତି ତାଙ୍କର ଶିଷ୍ୟ ମାନଙ୍କୁ ଘାରେ ।

ଯେତେ ବଡ଼ ହେଲେ ବି ତାଙ୍କୁ ଭେଟିଲେ ମନେହୁଏ ସେ ତଥାପି ସେଇ ଶିକ୍ଷକ ଆଉ ଆମେ ସବୁ ଛାତ୍ର । ତଥାପି ତାଙ୍କର ଚାହାଳୀର ଛାତ୍ର, ଯେଉଁ ଚାହାଳୀ ବିଦ୍ୟାଳୟ ଠାରୁ ପରିବ୍ୟାପ୍ତ ଜୀବନର ରାଜପଥକୁ । ସେଇତ ତାଙ୍କର ତୃପ୍ତି, ସେଇ ତାଙ୍କର ସାର୍ଥକତା ।

ଏ ପ୍ରଶାନ୍ତି ମଧ୍ଯ କ୍ଲାନ୍ତିର । କ୍ଲାସର ଗଣିତ ସିନା କେବେ ଭୁଲ୍ ହୋଇନାହିଁ କିନ୍ତୁ ଜୀବନର ଅଙ୍କ ଭୁଲ୍ ହୋଇ ଯାଇଛି । ପ୍ରଥିତଯଶୀ  ପୁତ୍ର ପ୍ରମୋଦ ତାଙ୍କୁ ଛାଡ଼ି ଚାଲିଗଲା ଅକାଳରେ । ପ୍ରମୋଦ ମୋର ସହପାଠୀ । ପ୍ରତିଭାବାନ୍ ଛାତ୍ର ପ୍ରମୋଦ ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିଥିଲା ଫଟୋଗ୍ରାଫିରେ, ଚଳଚ୍ଚିତ୍ର ନିର୍ଦ୍ଦେଶନାରେ । ସେ ଚେକୋସ୍ଲୋଭାକିଆରୁ ଫେରିଲା ପରେ ତାକୁ ସମ୍ବର୍ଦ୍ଧନା ଦେଲାବେଳେ ସେ କହିଥିଲା ଯାହା ଶିଖିଛି ସବୁଥି ପାଇଁ ମୋର ଶିକ୍ଷକକୁଳ, ମୋର  ବନ୍ଧୁ ସହପାଠୀ ମାନେ ଦାୟୀ । ନାରାୟଣ ପତି ଖାଲି ଅନ୍ୟ ଛାତ୍ର ମାନଙ୍କର ଶିକ୍ଷକ ନ ଥିଲେ ପୁଅର ବି ଠିକ୍ ସେଇପରି ଶିକ୍ଷକ ଥିଲେ ।

କିନ୍ତୁ ହେଲା କ'ଣ ? ସବୁ ତ ଶିଖାଇଥିଲି । ତଥାପି ସେ ଛାଡ଼ି ଚାଲିଗଲା କାହିଁକି ? ତାକୁ କାହିଁକି ଦୁରାରୋଧ କ୍ୟାନସର ରୋଗ ଆକ୍ରମଣ କଲା ? ପିତା ଆଗରେ ପୁତ୍ରର ମୃତ୍ୟୁ ହେଲା କାହିଁକି ? କିଏ ଏହାର ଉତ୍ତର ଦେବ ? ଏତ ଅନନ୍ତ ପ୍ରଶ୍ନ । ଏ ପ୍ରଶ୍ନର ଉତ୍ତର ତ ମିଳିନାହିଁ ।

ନାରାୟଣ ପତି, ପିତା, ଶିକ୍ଷକ ନାରାୟଣ ପତି ତାକୁ ସହି  ଥିଲେ । ବହୁ ଶିଶୁ, ବହୁ ଛାତ୍ର ପୁତ୍ର କନ୍ୟାଙ୍କର ସୁଖଦୁଃଖର ଢେଉ  ତାଙ୍କ  ଦିହରେ ବାଜି ବାଜି ପଥର ହୋଇ ଯାଇଥିଲେ କି କ'ଣ ? ପୋଥିର ଅଙ୍କ ସବୁ ଠିକ୍ ଥିଲା । ସେଥିରେ ସେ କେବେ ଭୁଲ୍ କରି ନାହାନ୍ତି କି କାହାକୁ ଭୁଲ କରିବାକୁ ଦେଇ ନାହାନ୍ତି  । ସେ ଯିଏ ହେଉନା କାହିଁକି, ଯାହାର ପୁଅ ଝିଅ ହେଉନା କାହିଁକି, ପୋଥିର ଅଙ୍କରେ ଭୁଲ୍‌କଲେ, ନରାୟଣ ପତିଙ୍କର ତୃତୀୟ ନେତ୍ର ଖୋଲିଯାଏ, ଆଉ ସେଥିରୁ ନିର୍ଗତ ହୁଏ ଅଗ୍ନି ସ୍ଫୁଲିଙ୍ଗ । ସେଇ ଦାବାନଳରେ ବହୁ ପ୍ରତିଭା ଉପରେ ଲାଗିଥିବା କଳଙ୍କ, ବହୁ ସୁନା ଉପରେ ଲାଗିଥିବା ମଳିନା, ବହୁ ମନୁଷ୍ୟତ୍ୱ ଉପରେ ଲାଗିଥିବା ଶିଉଳି ପୋଡ଼ି ପାଉଁଶ ହୋଇଯାଇଛି । ସେମାନେ ଜୀବନର ରାଜପଥରେ ଠିଆ ହୋଇଛନ୍ତି ପ୍ରତିଷ୍ଠିତ ହୋଇ । ଅବଧାନର ସେଇ ବେତକୁ, ସେଇ କ୍ରୋଧକୁ ସେମାନେ ଝୁରିବେ ସ୍ମୃତିର ଲୁହରେ ପଖାଳି ପଖାଳି ।

କାରଣ ସେ ଭଳି ଜଣେ କ୍ଲାସିକାଲ ମଣିଷ, କ୍ଲାସିକାଲ ଶିକ୍ଷକ ମିଳିବା କଷ୍ଟକର । ସେମାନେ ହଜି ଯାଉଛନ୍ତି ସମାଜରୁ ଧୀରେ ଧୀରେ । ଶିକ୍ଷକ ଆସିବେ, ଯିବେ, ଛାତ୍ର ଆସିବେ, ଯିବେ । କିନ୍ତୁ ସେ ଭଳି ଶିକ୍ଷକ ମିଳିବେ କେଉଁଠୁ ?

ତାଙ୍କର ଶବାଧାର ପାଖରେ ସେଇଯୋଗୁଁ  ଭିଡ଼ ଜମିଛି । ବିଚାରପତି, ଓକିଲ, ବୁଦ୍ଧିଜୀବି, ଲେଖକ, ଶିକ୍ଷକ କଳାକାର, ସମାଜସେବୀ ଏବଂ ସର୍ବୋପରି  ସାଧାରଣ ମଣିଷ । ସେମାନେ ତାଙ୍କର ଛାତ୍ର ବା ଗୁଣଗ୍ରାହୀ । ପୁତ୍ରର ମୃତ୍ୟୁରେ ଆପଣାକୁ ପଥର କରି ଦେଇଥିବା ମଣିଷ, ଆଜି  ନିଜେ ମଧ ପଥର ହୋଇଯାଇଛି । ଆଉ କ୍ଷଣକକୁ ତାହା ପୋଡ଼ି ପାଉଁଶ ହୋଇଯିବ । ସେ ପାଲଟିଯିବେ ଇତିହାସ ।

ଶେଷ ଦେଖା ପୁଲିସ ହାଇସ୍କୁଲର ପ୍ରଧାନଶିକ୍ଷକ ଭାବରେ । ମୋର ସେଇ ପୁରୁଣା ଡର ଯାଇନାହିଁ । ସେ ହସି ହସି କହିଲେ, ଆରେ ସେ ପୁରୁଣା ଦିନ ଆଉ ଅଛି ? ତୁ ପରା

ବଡ଼ ହେଲୁଣି । ମୁଁ ଆଉ ବଡ଼ ? ସେ ସେଇପରି ମୋର ସାର୍ । ସବୁଦିନେ ସାର୍ । ସତରେ ସମୟ ବଦଳି ଯାଉଛି । ସେ ରହି ପାରିଲେ ନାହିଁ ପୁଲିସ ସ୍କୁଲରେ, ଛାତ୍ରଙ୍କ ପାଇଁ ଯେତିକି ନୁହେଁ ସହକର୍ମୀ ମାନଙ୍କ ଯୋଗୁଁ ତା ଠାରୁ ବେଶୀ । କର୍ତ୍ତବ୍ୟ, ନିଷ୍ଠାରେ ଅବହେଳା ସହିବା ପାଇଁ ସେ ପ୍ରସ୍ତୁତ ହୋଇ ନାହାନ୍ତି ଜୀବନ ସାରା, ଆଉ ଆଜି ।

କାଠଯୋଡ଼ୀ ଯେଉଁଠାରୁ ଦି'ଭାଗ ହୋଇ ଯାଇଛି ସେଇଠି ବୟାଳିଶ ମୌଜା । ତାରି ଭିତରେ ତାଙ୍କର ଜନ୍ମ ସେପ୍ଟେମ୍ବର ୨୫, ୧୮୯୯ ମସିହାରେ । ବିଂଶ ଶତାବ୍ଦୀର ଜନ୍ମ ଆଉ ବେଶୀ ଡେରି ନାହିଁ । ବିଂଶ ଶତାବ୍ଦୀର ମଣିଷକୁ ତାଲିମ ଦେବା ପାଇଁ ସେ ପଣ କରିଥିଲେ । ସେ କାମ ସରି ଯାଇଛି । ସମୟ ବଦଳି ଯାଇଛି । ତାଙ୍କୁ ଯିବାକୁ ହେବ । ଜନ୍ମିଲେ ମରଣ ସତ୍ୟ ନୁହେଁ ଖଣ୍ଡିବାର । ତାହାକୁ କେହି ଅନ୍ୟଥା କରିପାରିବେ ନାହିଁ ।

ଶିକ୍ଷକ ନାରାୟଣ ପତି ଆଉ ନାହାନ୍ତି । କିନ୍ତୁ ଆଜି ବି ଗୋଟାଏ କେଉଁଠି ଲେଖାରେ ଭୁଲ୍ ହୋଇଗଲେ, ମନେହୁଏ ସାର୍ ଡାକୁଛନ୍ତି କାହିଁକି ହେଲା ଏ ଭୁଲ ? ସାର୍ ସେ ଭୁଲ୍ ଆପଣଙ୍କର ପଢ଼ାଇବାର ଭୁଲ୍ ନୁହେଁ, ଆମର ଶିଖିବାର ଭୁଲ୍ ।



# ପୋଥି ଉପରେ ଝୁଙ୍କି ପଡ଼ିଥିବା ସେଇ ହସ ହସ ମୁହଁ

**ଚେ**ହେରା ଧଳା, ଲୁଗା ଧଳା, ପଂଜାବୀ ଧଳା, ଆଉ ହସିଲେ ଦେଖାଯାଏ ଧଳା ଧଳା ଦନ୍ତ ପଂକ୍ତି । ତାଙ୍କୁ କେବେ ବିରସ ହୋଇ ବସିବା ଦେଖିନାହିଁ । ଶୁଭ୍ର ପୋଷାକ ଏବଂ ମନଟା ମଧ୍ୟ ସେଇଭଳି ଶୁଭ୍ର । ଓଡ଼ିଶା ସଂଗ୍ରହାଳୟର କ୍ୟୁରେଟର ପଣ୍ଡିତ ନୀଳମଣି ମିଶ୍ର । ସଳଖ, ଟୀଖ୍ ମଣିଷଟିଏ । ହାବୁଡ଼େ ପଡ଼ିଲେ ସେଇ ହସିଲା ମୁହଁର ଅଭିବାଦନ । କିମତି ଅଛନ୍ତି ? କ'ଣ ସବୁ କାର୍ଯ୍ୟକ୍ରମ, ଚଳିତ ବର୍ଷର ? କାହାରି ବିରୁଦ୍ଧରେ ପଦେ କଥା ନାହିଁ, କାହାରି ପ୍ରତି ଦ୍ୱେଷ ନାହିଁ । କେବଳ ଜିଜ୍ଞାସା । ସେ ଓଡ଼ିଶା ସଂଗ୍ରହାଳୟ ବା ମିଉଜିଅମର କ୍ୟୁରେଟର ପଣ୍ଡିତ ନୀଳମଣି ମିଶ୍ର । ଚାଲିବାକୁ ସେ ଭଲ ପାଆନ୍ତି । ତାଙ୍କୁ ଦେଖିଚି ଭୀମଟାଙ୍ଗୀରୁ ଚାଲି ଚାଲି ଆସିବା ସଂଗ୍ରହାଳୟ ପର୍ଯ୍ୟନ୍ତ । ଚାଲିବାକୁ ଭଲ ଲାଗେ, ବାଟରେ ବି ଦେଖା ହୁଏ ଅନେକ ଲୋକଙ୍କ ସହିତ । କେତେ ଖବର ମିଳେ । ଆଉ ତା ଛଡ଼ା ମଣିଷଟଣା ରିକ୍ସାରେ ବସିବାକୁ ଭଲ ଲାଗେନା । ହସି ହସି କହନ୍ତି ପଣ୍ଡିତ ନଳମଣି ମିଶ୍ର ।

ଓଡ଼ିଶାର ପ୍ରସିଦ୍ଧ ତାଳପତ୍ର ପୋଥି ପାଠକ ଓ ଗବେଷକ କେଦାର ନାଥ ମହାପାତ୍ର ଥିଲେ ତାଙ୍କର ଗୁରୁ । ଖାଲି ଶିକ୍ଷା ଗୁରୁ ନୁହେଁ, ଦୀକ୍ଷାଗୁରୁ ମଧ୍ୟ । ତାଙ୍କରି ତତ୍ତ୍ୱାବଧାନରେ ପଣ୍ଡିତ ନୀଳମଣି ପାଇଥିଲେ ପ୍ରେରଣା ପୋଥି ଅଧ୍ୟୟନ ପାଇଁ, ଓଡ଼ିଶା ପ୍ରାଚୀନ ସାହିତ୍ୟ ଓ ଇତିହାସ ଉପରେ ଗବେଷଣା ପାଇଁ । ଏଇ ପ୍ରେରଣା ତାଙ୍କୁ ଏମିତି ନିଶାରେ ଆଚ୍ଛନ୍ନ କରି ରଖିଲା ଯେ ନିଜର ସ୍ୱାସ୍ଥ୍ୟକୁ ମଧ୍ୟ ଭୁଲିଗଲେ । ତାଳପତ୍ର ପୋଥିରେ ଜମା ହୋଇଥିବା ଧୂଳି ଭୁଲିଗଲେ । ତାଳପତ୍ର ପୋଥିରେ ଜମା ହୋଇଥିବା ଧୂଳି ଶ୍ୱାସ ରୋଗ ବୃଦ୍ଧିକରେ । ଶ୍ୱାସରୋଗର ଏହି ଧୂଳି ହେଉଛି ଅନ୍ୟତମ କାରଣ । ତଥାପି ନୀଳମଣି ମିଶ୍ର ତାଳପତ୍ର ପୋଥି ଅଧ୍ୟୟନ ଛାଡ଼ିଲେ ନାହିଁ । କେମିତି ଛାଡ଼ିବି କହିଲେ ? ସେଇଟା ତ ମୋର ଜୀବନର ଅଙ୍ଗ ହୋଇ ଯାଇଛି ? ତା ଛଡ଼ା ବଂଚିବା ପାଇଁ ତ ଏକ ଆଧାର ଆବଶ୍ୟକ । ନୁହେଁ ? ନୀଳମଣି ଦାର୍ଶନିକ ହୋଇ ଉଠୁଛନ୍ତି ।

୧୯୨୯ ମସିହାରେ ଅଧୁନା ଭଦ୍ରଖ ଜିଲ୍ଲାର ଚରମ୍ପା ଗ୍ରାମରେ ଜନ୍ମ ତାଙ୍କର, କିନ୍ତୁ କର୍ମସ୍ଥଳୀ ହେଉଛି ଭୁବନେଶ୍ୱର । କେଦାରନାଥ ଏହିଭଳି ଏକ ଶିଷ୍ୟ ଦେଇ ସମାଜର ବିକାଶ ପାଇଁ, ଆପଣାର ବିରାଟ ଐତିହ୍ୟର ଗବେଷଣା ପାଇଁ ପ୍ରଭୂତ ଅବଦାନ ଦେଇ ଯାଇଛନ୍ତି । ଠିକ୍ ସେଇପରି ଶିଷ୍ୟ ମଧ୍ୟ ଗୁରୁ ଦକ୍ଷିଣା ଭୁଲି ନାହାନ୍ତି । ଅବସର ନେଇଛନ୍ତି ସରକାରୀ କାର୍ଯ୍ୟରୁ, କିନ୍ତୁ ଅବସର ନେଇ ନାହାନ୍ତି ଗବେଷଣାରୁ । ଗଠନ କରିଛନ୍ତି କେଦାର ନାଥ

ଗବେଷଣା ପରିଷଦ । ନୀଳମଣି ବାବୁ ଆପଣାର ସମୟକାଳ ଭିତରେ ପାଞ୍ଚଶହରୁ ଉର୍ଦ୍ଧ୍ୱ ପୁସ୍ତକ ରଚନା କରି ଯାଇଛନ୍ତି । ଅନୁବାଦ କରିଛନ୍ତି ଅନେକ ପୁସ୍ତକ । ବହି ପ୍ରକଶିତ ହୋଇଛି ହିନ୍ଦୀ, ଇଂରାଜୀ, ଓଡ଼ିଆରେ । ନିଜସ୍ୱ ଲେଖା ପାଞ୍ଚ ଶହରୁ ବେଶୀ । ଅନୁବାଦ ସଂଖ୍ୟା ଶହେରୁ ବେଶୀ ।

ସେ ଗୁଡ଼ିକର ମୂଲ୍ୟାୟନ କରିବା ସମ୍ଭବ ନୁହେଁ । କେତେକ କହନ୍ତି ଯେ ତାଙ୍କର ଲେଖା ଖୁବ୍ ମୌଳିକ ନୁହେଁ । ସେମାନେ କିନ୍ତୁ ସ୍ୱୀକାର କରନ୍ତି ଯେ ନୀଳମଣିବାବୁ ପାଇଓନିଅର କାମ କରିଛନ୍ତି ଅନେକ କ୍ଷେତ୍ରରେ । ତାହାହିଁ ଉନ୍ମୁକ୍ତ କରିବ ନୂତନ ଦିଗନ୍ତ ଗବେଷଣାରେ । ପରିମାଣ ବି ଗୁଣ ବୃଦ୍ଧିର ଅନ୍ୟତମ ମାନଦଣ୍ଡ । ବିନ୍ଦୁ ବିନ୍ଦୁ ମିଶି ସିନ୍ଧୁ ହୋଇଥାଏ । ନୀଳମଣି ମିଶ୍ର ବହୁ ବିଭାବକୁ ସ୍ପର୍ଶ କରି ଯାଇଛନ୍ତି ଏବଂ ଆଲେଖ୍ୟ ରଖି ଯାଇଛନ୍ତି ସବୁଥିରେ । ତାହାହିଁ ତାଙ୍କୁ ଜୀବିତ ରଖିବ ବହୁ ବହୁ କାଳ ଧରି । ଦେହ ସିନା ପୋଡ଼ି ପାଉଁଶ ହୋଇଗଲା କିନ୍ତୁ କୃତିକୁ ପାଉଁଶ କରିପାରିବ କେଉଁ ମହାକାଳ ?

ଅନେକ ଦିନର ପରିଚୟ । ଅନେକ ଭାବନାର, ଚିନ୍ତାର ଆଦାନ ପ୍ରଦାନ । ସବୁ ମନେ ପଡୁଛି, ତାଙ୍କର ମୃତ୍ୟୁ ସଂବାଦ ଶୁଣି । କିନ୍ତୁ ଖବର ପାଇଲାବେଳକୁ ସମୟ ଅତିକ୍ରାନ୍ତ ହୋଇ ଯାଇଛି । ସେଇ ଲମ୍ବା, ଶୁଭ୍ର ଦେହ ପୋଡ଼ି ପାଉଁଶ ହୋଇ ସାରିଚି ।

୪ ତାରିଖ ଅକ୍ଟୋବର, ୧୯୯୭ ମସିହା । ଦିନଟା କେବଳ ନୀଳମଣିଙ୍କ ପରିବାର ପାଇଁ ନୁହେଁ, ଏ ଜାତିର ସଂସ୍କୃତି ପାଇଁ, ଇତିହାସ ପାଇଁ ଏକ ଅଶୁଭ ଦିବସ । ନୀଳମଣି ମିଶ୍ର ଆଉ ନାହାନ୍ତି ।

ଯିବା ଆସିବା ତ ଲାଗିଛି ସଂସାରରେ । ପୁରୁଣାମାନେ ଯିବେ, ନୂଆଲୋକ ଆସିବେ । ଯାହାର ଯିବା ଏକ ଶୂନ୍ୟ ସ୍ଥାନ ସୃଷ୍ଟିକରେ, ଯାହାର ଅନୁପସ୍ଥିତି ତାର ପରିବାର ଛଡ଼ା ଦେଶବାସୀ ଅନୁଭବ କରନ୍ତି ସେଇମାନଙ୍କର ଜୀବନ ତ ସାର୍ଥକ ।

ନୀଳମଣି ବାବୁ ଗଲେ ଶ୍ୱାସରୋଗରେ । ପୁରୁଣା ପୋଥି, ପୁରୁଣା ବହିର ଧୂଳି ତାଙ୍କର ରୋଗକୁ ବୃଦ୍ଧି କଲା । ସେ ମାନିଲେ ନାହିଁ । କାହିଁକି ମାନନ୍ତେ ଅବା ? ଯିବାତ ହେବ, ଯିବା ପୂର୍ବରୁ ଜୀବନକୁ ସାର୍ଥକ ତ କରିଯିବା ଉଚିତ । ସେ ଜୀବନ ସାର୍ଥକ ହୋଇଛି । ତାଙ୍କର ମୃତ୍ୟୁରେ ଇତିହାସର ଗୋଟାଏ ପୃଷ୍ଠା ଓଲଟି ପଡ଼ିଛି ହଠାତ୍ ।



# ସଜଳ ସ୍ମୃତିରେ

ପୂର୍ଣ୍ଣଚନ୍ଦ୍ର ବଡ଼ଜେନାଙ୍କ ବାହୁଡ଼ିବାର ବାର୍ଷିକୀ ପାଳିତ ହେବ । ସଂବାଦ ପାଇ ହଠାତ୍ ମନଟା ପହଁରିଗଲା । ଦୀର୍ଘ ଅତୀତକୁ । ଆଖି ଲୁହରେ ଭରିଗଲା । ଅନେକ ସ୍ମୃତି-ଲୁହ ଓ ଲହର । କଠୋର ସଂଗ୍ରାମ । ଏ କାଳ ଗାଡ଼ି ଘୋଡ଼ାର ସମୟ । ସେତେବେଳେ କିନ୍ତୁ ସମୟ ନିଆରା, ପାଦରେ ପ୍ରାୟ କେବେ କେବେ ସାଇକେଲରେ । ପୂର୍ଣ୍ଣଚନ୍ଦ୍ର ବଡ଼ଜେନା ତା'ର ଜଣେ ଶକ୍ତିଶାଳୀ ନାୟକ । ଖେଦି ଚାଲ ଗାଁକୁ ଗାଁ, କୁଡ଼ିଆରୁ କୁଡ଼ିଆ, ଇଲାକାରୁ ଇଲାକା । ଗୋକୁଳ ମୋହନ ରାୟ ଚୂଡ଼ାମଣି, ଗଂଗାଧର ପାଇକରାୟ ଅଛନ୍ତି । ସେମାନେ କହିବେ । ଅନ୍ୟମାନେ ବାହୁଡ଼ିଲେଣି । ସାଧୁଚରଣ ମହାନ୍ତି, ପ୍ରାଣନାଥ ପଟ୍ଟନାୟକ, ରାମଚନ୍ଦ୍ର ମିଶ୍ର, ଗଂଗାଧର ମିଶ୍ର । ଖୋର୍ଦ୍ଧା ମୂଳକରେ ଚାଷୀ ଆନ୍ଦୋଳନ । ପୂର୍ଣ୍ଣଚନ୍ଦ୍ର ବଡ଼ଜେନା ଜଣେ ଶକ୍ତିଶାଳୀ ବକ୍ତା, ଅଭିନେତା । ଅଭିନେତା ବା କଳାକାରର ରୋମାଞ୍ଚ ଯେମିତି, ବିପ୍ଳବୀର ରୋମାଞ୍ଚ ମଧ ସେମିତି । ଶତ୍ରୁମାନେ ମଧ କହନ୍ତି ପୂର୍ଣ୍ଣ ବକ୍ତୃତାରୁ ଉଠିବାକୁ ମନ ହେବନି । ସ୍କୁଲ ପାଠ ମାଟ୍ରିକ । କିନ୍ତୁ ଜୀବନର ପାଠରେ ସେ ବହୁତ ଉଚ୍ଚରେ । ସାମ୍ୟବାଦୀ ଦର୍ଶନକୁ ସେ ପଢ଼ି କଣ୍ଠସ୍ଥ କରିଥିଲା । ଏମିତି ଉପରଠାଉରିଆ ନୁହେଁ । ପାଠର ନିର୍ଯ୍ୟାସ ମଧ ସେ ପାଇଥିଲା । ପୂର୍ଣ୍ଣଚନ୍ଦ୍ର ବଡ଼ଜେନା ବଢ଼ିଆ ଗୀତ ଗାଆନ୍ତି । ଗୀତ ଆସେ ମେଘ ଗର୍ଜନ ପରି, ଆସେ ଗିରିକନ୍ଦରରୁ ଝରୁଥିବା ଜଳପ୍ରପାତ ପରି, ଆସେ ନୂତନ ଯୁଗର ବଜ୍ର ନିର୍ଘୋଷ ବହନ କରି ।

ପ୍ରତିଭାଶାଳୀ ପୂର୍ଣ୍ଣଚନ୍ଦ୍ର ମନମତାଣିଆ ମଣିଷ । ଅଭିନେତା, ଗାୟକ, ବକ୍ତା ଓ ବିପ୍ଳବୀ । ତାଙ୍କ ସାଙ୍ଗରେ ଦିନ କଟି ଯାଏ ଜଣା । ପଡ଼େନା କ୍ଳାନ୍ତି ଅବସାଦ । ସେ ସବୁ କାମ ସରିଲା ପରେ କ୍ଳାନ୍ତି ବିନୋଦନ ଲାଗି ଗୀତ ଗାଆନ୍ତି । ହୁଅ ଆଗୁସାର... ଠାରୁ ଆରମ୍ଭ କରି ଚେତି ଚତୁରୀ ଚାହିଁଲା ନାହିଁ ପାଶେ ଦିବ୍ୟ ତରୁଣ.... ପର୍ଯ୍ୟନ୍ତ । କ୍ଳାନ୍ତି ସମସ୍ତଙ୍କର କଟିଯାଏ ।

ସାମ୍ୟବାଦୀ ଆନ୍ଦୋଳନ ଦ୍ୱିଧା ବିଭକ୍ତ ହୋଇଛି । ସମସ୍ତଙ୍କ ପରି ତାଙ୍କୁ ମଧ ବାଧିଥିଲା । ସେ ବ୍ୟଥିତ ହୋଇଥିଲେ । କିନ୍ତୁ ଅଧିକ ସଂଗ୍ରାମର ପଥ ପାଇଁ ସେ ମାର୍କ୍ସବାଦୀ କମ୍ୟୁନିଷ୍ଟ ପାର୍ଟିରେ ରହିଯାଇଥିଲେ । କିନ୍ତୁ ସୌହାର୍ଦ୍ଦ୍ୟ ଥିଲା ସମସ୍ତଙ୍କ ସହିତ ।

ନିର୍ବାଚନରେ ପ୍ରତିଯୋଗିତା କରିଛନ୍ତି । ପରାସ୍ତ ହୋଇଛନ୍ତି ଅଳ୍ପ ଭୋଟରେ । ନିର୍ବାଚନ ହେଉଛି ସଂଗ୍ରାମର ଅଂଶ ବିଶେଷ । ସେ ପୁଣି ଫେରିଛନ୍ତି ସଂଗ୍ରାମର ମଇଦାନକୁ । କ୍ଳାନ୍ତି ଛୁଇଁ ନାହିଁ ।



ରାଜନୀତି ସହିତ ସେ ବ୍ୟକ୍ତିଗତ ସମ୍ପର୍କକୁ ଯୋଡ଼ି ନାହାନ୍ତି । ତାଙ୍କର ବଡ଼ ଭାଇ, ପୁତୁରା ମିଟୁ ବଡ଼ଜେନା କଂଗ୍ରେସ ଦଳର । ଭାଇକୁ ଭକ୍ତିରେ ବା ପୁତୁରାକୁ ସ୍ନେହରେ କେବେହେଲେ ଲଘା କରି ନାହାନ୍ତି । କିନ୍ତୁ ନିଜର ମତରେ ଅଟୁଟ ରହିଛନ୍ତି ।

ହଠାତ୍ ମୃତ୍ୟୁ ଆସିଲା ଅଚାନକ । ଯିବାବେଳେ କଣ ହୋଇଥିଲା । କାହିଁକି ଗଲେ ? କିଏ କହିବ ? ସେ ପ୍ରଶ୍ନର ଉତ୍ତର ମିଳି ନାହିଁ , ସେ ପ୍ରଶ୍ନ ତ ଅନନ୍ତ ।

ପୂର୍ଣ୍ଣଚନ୍ଦ୍ର ବଡ଼ଜେନା ଆଉ ନାହାନ୍ତି । କେହିଁ ତ ରହିବେ ନାହିଁ । କିନ୍ତୁ ବୀର ମାଟି ଖୋର୍ଦ୍ଧାର ପଡ଼ିଆରେ , ଗ୍ରାମରେ ତାଙ୍କର ଧ୍ୱନିର ପ୍ରତିଧ୍ୱନି ଶୁଭିବ ବହୁକାଳ ଧରି ।

ପଞ୍ଚାୟତ ସମିତି ଚେୟାରମ୍ୟାନ୍ ଭାବରେ ପୂର୍ଣ୍ଣଚନ୍ଦ୍ର ବଡ଼ଜେନା ଖୋର୍ଦ୍ଧା ପାଇଁ ଅନେକ କାମ କରି ଯାଇଛନ୍ତି । ବର୍ତ୍ତମାନ ଦେଶରେ ଭୋଗର ସମୟ । ନିଜର ଡିଣ୍ଡିମ ପିଟିବାରେ ଏବଂ ପିଟାଇବାରେ ଏକୁ ଆରେକ ବଳୀୟାର । ତାର ଭିତରେ ପୂର୍ଣ୍ଣଚନ୍ଦ୍ର ବଡ଼ଜେନାଙ୍କର ସ୍ୱର ସାନ୍ଧ୍ୟ କୋଳାହଳ ଭିତରେ ବଇଁଶୀର ସୁର ପରି । ଏଇ ବଇଁଶୀର ସୁର ଭାସି ଆସୁଛି ସମୟ ମହାକାଳ ସବୁ ଭେଦ କରି ।



# ସଂସ୍କୃତିର ବାର୍ତ୍ତାବହର ଅନ୍ତିମ ସନ୍ତକ

ପୁପୁଲ ଜୟକାର ଆଉ ନାହାନ୍ତି । ୮୧ ବର୍ଷ ବୟସରେ ମାର୍ଚ୍ଚ ୨୮, ୧୯୯୭ ମଧ୍ୟ ରାତ୍ରିର ଅଳ୍ପ ସମୟ ପୂର୍ବରୁ ଏହି ବିରାଟ ମହୀୟସୀ ନାରୀ ଶେଷ ନିଃଶ୍ୱାସ ତ୍ୟାଗ କରିଛନ୍ତି ଆପଣାର ବାସଭବନ ବମ୍ବେ (ବର୍ତ୍ତମାନ ମୁମ୍ବାଇ)ସହରରେ । ଦୀର୍ଘ କର୍ମମୟ ଜୀବନର ଅବସାନ ଘଟିଛି ଏବଂ ତାହା ସହିତ ସଂସ୍କୃତିର ଏକ ବିରାଟ ଅଧ୍ୟାୟର ସମାପ୍ତି ହୋଇଛି ।

ପୁପୁଲ୍, ଇନ୍ଦିରା ଗାନ୍ଧିଙ୍କର ବ୍ୟକ୍ତିଗତ ଓ ପାରିବାରିକ ବନ୍ଧୁ ଥିଲେ । ଦୁହିଁଙ୍କ ଭିତରେ ପ୍ରଗାଢ଼ ବନ୍ଧୁତା ଥିଲା । ୧୯୩୦ ମସିହାରେ ଆଲାହାବାଦ ସହରରେ ସେମାନଙ୍କର ଭେଟ ହୋଇଥିଲା ଏବଂ ଏଇ ବନ୍ଧୁତା ଅତୁଟ ରହିଥିଲା ଇନ୍ଦିରାଗାନ୍ଧିଙ୍କ ମୃତ୍ୟୁ ପର୍ଯ୍ୟନ୍ତ ।

ପୁପୁଲ ୧୯୧୫ ମସିହା ସେପ୍ଟେମ୍ବର ୧୧ ତାରିଖରେ ଉତ୍ତରପ୍ରଦେଶର ଇଟାଓ୍ୱା ସହରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ଶିକ୍ଷା ହୋଇଥିଲା ଲଣ୍ଡନରେ ଏବଂ ଲଣ୍ଡନ ସ୍କୁଲ୍ ଅଫ ଇକନମିକ୍ସରୁ ସେ ସ୍ନାତକ ହୋଇଥିଲେ । ଯୌବନରୁ ହିଁ ତାଙ୍କର ଦୃଷ୍ଟିକୋଣ ଦେଶଦେଶର ସୀମାନ୍ତ ଟପି ଆନ୍ତର୍ଜାତିକ ସ୍ତରକୁ ସମ୍ପ୍ରସାରିତ ହୋଇଥିଲା । ଭାରତ କଳା ସାହିତ୍ୟ ସଂସ୍କୃତି ଐତିହ୍ୟର ବାବଦୂକ ସେ ପାଲଟି ଥିଲେ ସେଇଦିନରୁ ।

୧୯୪୦ ମସିହାରେ ପୁପୁଲ ସାଧାରଣ ଜୀବନରେ ପ୍ରବେଶ କରନ୍ତି । ଭାରତବର୍ଷ ସ୍ୱାଧୀନ ହେବ । କିନ୍ତୁ ତା ପରେ ? ତାପରେ ଭାରତ ବର୍ଷର ରୂପରେଖ କ'ଣ ହେବ ତା'ର ସ୍ୱପ୍ନ ଦେଖୁଥିଲେ ଖୁବ୍ କମ ଲୋକ । ସେମାନଙ୍କ ଭିତରେ ଅଗ୍ରଗଣ୍ୟ ଥିଲେ ଜବାହାରଲାଲ । ଓଡ଼ିଶାରୁ ବିଜୁ ପଟ୍ଟନାୟକ ମଧ୍ୟ ଦିଲ୍ଲୀ ଜେଲ୍‌ରେ ସେଇପରି ପରିକଳ୍ପନା କରୁଥିଲେ । ଜବାହାରଲାଲ ସେତିକିବେଳେ ପ୍ରସିଦ୍ଧ ଇଂଜିନିଅର ସାର୍ ବିଶ୍ୱେଶ୍ୱରିଆଙ୍କ ନେତୃତ୍ୱରେ ଏକ ଜାତୀୟ ଯୋଜନା କମିଟି ଗଠନ କରିଥିଲେ । ଏହାର ମହିଳା ବିଭାଗର ଅନ୍ତର୍ଭୁକ୍ତ ହୋଇଥିଲେ ପୁପୁଲ । ଏହାର ଆସିଷ୍ଟାଣ୍ଟ ସେକ୍ରେଟେରୀ ପଦବୀରେ ରହି ସେ ଭାରତ କଳା ସଂସ୍କୃତିକୁ ବିଶ୍ୱ ଦରବାରରେ ପରିଚୟ କରିବାର ଯେଉଁ ପରିକଳ୍ପନା କରିଥିଲେ ତାହା ରୂପାୟିତ ହେଲା ବହୁ ବର୍ଷ ପରେ, ଭାରତ ସ୍ୱାଧୀନ ହେଲା ପରେ ।

ଭାରତବର୍ଷର କଳାସଂସ୍କୃତି ଐତିହ୍ୟକୁ ଭାରତ ବାହାରେ ପରିଚିତ କରାଇବା ପାଇଁ ତାଙ୍କର ପ୍ରଚେଷ୍ଟା ଯେମିତି ଥିଲା, ସେଇପରି ଉଦ୍ୟମ ଥିଲା ଐତିହ୍ୟ ଓ ପରମ୍ପରାକୁ ସଂରକ୍ଷିତ କରି ରଖିବାର ପରିକଳ୍ପନା । ଏଇ ପ୍ରଚେଷ୍ଟାରୁ ଜନ୍ମ ଲାଭ କରେ *ଇନଟାକ୍* (The Indian National Trust for Art & Cultural Heritage INTACH) ସେ ଏହାର ପ୍ରତିଷ୍ଠାତ୍ରୀ ସଭାନେତ୍ରୀ ଥିଲେ ମୃତ୍ୟୁ ପର୍ଯ୍ୟନ୍ତ ।

୧୯୭୭ ମସହିାରେ ତାଙ୍କର ବିବାହ ହୁଏ ବାରିଷ୍ଟର ମନମୋହନ ଏମ୍. ଜୟକାରଙ୍କ ସହିତ ଏବଂ ସେଇଦିନଠାରୁ ବମ୍ବେ ସହର ତାଙ୍କର କର୍ମକ୍ଷେତ୍ର ରୂପେ ପରିଣିତ ହୁଏ । ଆପଣାର ଏକମାତ୍ର କନ୍ୟା ହେଉଛି ତାଙ୍କର ଉତ୍ତରାଧିକାରୀ ।

ପୁପୁଲ ବେଶ୍ ଶକ୍ତି ପ୍ରୟୋଗ କରି ପାରନ୍ତି ଆପଣାର କର୍ମରେ । ଆପଣାର ମତ ଓ କାର୍ଯ୍ୟକୁ ସେ ଦୃଢ଼ତାର ସହିତ ପ୍ରୟୋଗ କରନ୍ତି । ଦୃଢ଼ମନା ଏଇ ନାରୀ ତେଣୁ " ସାଂସ୍କୃତିକ ଜାରିନା" ନାମରେ ପରିଚିତ । ରୁଷିଆର ଜାର୍‌ଙ୍କ ସହଧର୍ମିଣୀ ଯେପରି ଆପଣାର ସ୍ୱାମୀଙ୍କଠାରୁ ଅଧିକ ଶକ୍ତିର ସହିତ କ୍ଷମତା ପ୍ରୟୋଗ କରୁଥିଲେ, ପୁପୁଲ ଥିଲେ ସେହିପରି । ତାଙ୍କୁ ମମତାର ସହିତ ଭାରତର "ସାଂସ୍କୃତିକ ରାଷ୍ଟ୍ରଦୂତ" ବୋଲି ମଧ୍ୟ କୁହାଯାଉ ଥିଲା ।

ପୁପୁଲ ଥିଲେ ବିବାଦୀୟ ବ୍ୟକ୍ତି । ପ୍ରତ୍ୟେକ କର୍ମଠ ବ୍ୟକ୍ତି ବିବାଦୀୟ ହେବାକୁ ବାଧ୍ୟ । କାମ କଲେ ବିବାଦ ଉଠେ । ପୁପୁଲ ଜଣେ ବେଶ୍ ଭଲ ସୁଲେଖିକା । ଅନେକ ବହିରେ ସେ ଲେଖିଛନ୍ତି କିନ୍ତୁ ସବୁଠାରୁ ବେଶୀ ଉତ୍ତାପ ଏବଂ ବିବାଦ ସୃଷ୍ଟି କରିଛି ଦୁଇଟି ବହି । ଗୋଟିଏ ହେଉଛି "ଇନ୍ଦିରା ଗାନ୍ଧୀଙ୍କ ଜୀବନୀ" ଆରଟି ହେଉଛି "ଦ କୃଷ୍ଣମୂର୍ତ୍ତିଙ୍କ ଜୀବନୀ" । ସାଂସ୍କୃତିକ ଜାମିନୀଙ୍କ ଲେଖନୀରେ ରାଜନୈତିକ ଜାରିନା ଇନ୍ଦିରା ଗାନ୍ଧିଙ୍କ ଜୀବନୀ ବେଶ୍ ଆଲୋଡ଼ନ ସୃଷ୍ଟି କରିଥିଲା । ବହିଟି ପ୍ରକାଶିତ ହୋଇଥିଲା ଜରୋରୀ କାଳୀନ ପରିସ୍ଥିତିରେ ଏବଂ ପରବର୍ତ୍ତୀ କାଳରେ ସେଥିପାଇଁ ପୁପୁଲଙ୍କୁ ବହୁ କୈଫିୟତ୍ ଦେବାକୁ ପଡ଼ିଥିଲା । ୧୯୪୮ ମସିହାରେ ତାଙ୍କର ଜେ.କୃଷ୍ଣମୂର୍ତ୍ତିଙ୍କ ସହତ ସାକ୍ଷାତ ହୁଏ ଏବଂ ପୁପୁଲ ତାଙ୍କର ଭକ୍ତ ପାଲଟନ୍ତି । କୃଷ୍ଣମୂର୍ତ୍ତି ଏକ ଅସାଧାରଣ ଦାର୍ଶନିକ, ସଂପୂର୍ଣ୍ଣ ଅଣପାରମ୍ପରିକ । ସେଇଯୋଗୁଁ ଅନେକ ବିବାଦ ଯୁକ୍ତିତର୍କର କେନ୍ଦ୍ର ବିନ୍ଦୁ । ଜେ. କୃଷ୍ଣମୂର୍ତ୍ତିଙ୍କର ଦର୍ଶନର ବାବଦୂକ ପୁପୁଲ ଏହି ବହି ଲେଖି ତାଙ୍କ ଉପରେ ଏବଂ କୃଷ୍ଣମୂର୍ତ୍ତିଙ୍କ ଉପରେ ବିତର୍କକୁ ବେଶ୍ ବୃଦ୍ଧି କରିଥିଲେ ।

ତାଙ୍କ ସାଙ୍ଗରେ ଦେଖା ହୋଇଛି । ବହୁବାର, ବିଭିନ୍ନ ବୈଠକ, ସମ୍ମିଳନୀ, ସେମିନାରରେ । ସବୁବେଳେ ପଚାରିବେ ଓଡ଼ିଶାର ହସ୍ତଶିଳ୍ପ ଏବଂ ହସ୍ତତନ୍ତ କଥା । ଓଡ଼ିଶୀ ଶାଢ଼ୀର ସେ ଥିଲେ ବିରାଟ ସ୍ତାବକ ଓ ପ୍ରଚାରକ । ଓଡ଼ିଶା ସରକାରଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ଇନଟାକ୍ ଓଡ଼ିଶାର ହସ୍ତତନ୍ତର ବିକାଶ ପାଇଁ ପ୍ରୋଜେକ୍ଟ କଳିଙ୍ଗ ନାମରେ ଏକ ପ୍ରକଳ୍ପ ପ୍ରସ୍ତୁତ କରିଥିଲା । ଓଡ଼ିଶୀ ଶାଢ଼ୀକୁ ସେ ନାଁ ଦେଇଥିଲେ କଳିଙ୍ଗ ବସ୍ତ୍ର । ଜାତୀୟ ଆନ୍ତର୍ଜାତିକ ସ୍ତରରେ ଓଡ଼ିଶୀ ଶାଢ଼ୀ, ହସ୍ତତନ୍ତର ବିକାଶ ପାଇଁ ସେ ଏହାର ଡିଜାଇନ୍, ରଙ୍ଗ, କାରିଗରୀ କୌଶଳ ଏବଂ ପ୍ରସ୍ତୁତ ପ୍ରଣାଳୀର ବ୍ୟାପକ ପରିବର୍ତ୍ତନର ଯୋଜନା ଦେଇଥିଲେ । ଫେବୃଆରୀ , ୧୯୯୭ ରେ ଇନ୍‌ଟାକ୍‌ର ନୂତନ ଗୃହରେ ଏହି କଳିଙ୍ଗ ବସ୍ତ୍ରର ବିରାଟ ପ୍ରଦର୍ଶନୀ ଅନୁଷ୍ଠିତ ହୋଇଥିଲା । କିନ୍ତୁ ସେତେବେଳକୁ ଏହାର ବିନ୍ଧାଣୀ ପୁପୁଲ ଗୁରୁତର ଅସୁସ୍ଥ ହୋଇ ସାରିଥିଲେ । ଆଉ କିଛି ବର୍ଷ ବଞ୍ଚିଥିଲେ ତାଙ୍କର ସେ ସ୍ୱପ୍ନର ସାକାରତା ହୁଏତ ଦେଖି ଯାଇ ପାରିଥାନ୍ତେ । କିନ୍ତୁ ମହାକାଳ ତାହା କରାଇଦେଲା ନାହିଁ ।

ପୁପୁଲ ପ୍ରସିଦ୍ଧ ଲେଖକ ମୁଲ୍କ ରାଜ ଆନନ୍ଦଙ୍କ ସହିତ ଏକ ଶିଶୁ ପତ୍ରିକା ସଂପାଦନା କରିଥିଲେ କିଛି ବର୍ଷ ଧରି ।

ହସ୍ତଶିଳ୍ପ, ହସ୍ତତନ୍ତ କର୍ପୋରେଶନର ସେ ଥିଲେ ଚେୟାରମାନ୍ ୧୯୭୪ ରୁ ୧୯୭୭ ପର୍ଯ୍ୟନ୍ତ । ନିଖିଳ ଭାରତ ହସ୍ତଶିଳ୍ପ ବୋର୍ଡର ଚେୟାରମାନ୍, ନିଖିଳ ଭାରତ ହସ୍ତଶିଳ୍ପ ବୋର୍ଡର ସଭ୍ୟ ଭାବରେ ବହୁ ନୂତନ ଡିଜାଇନ୍ ସେଣ୍ଟର ଗଢ଼ି ଯାଇଛନ୍ତି । ଉତ୍ପାଦିତ ସାମଗ୍ରୀ ବିକ୍ରୀ ପାଇଁ ନୂତନ ନୂତନ ପଦ୍ଧତି ଏବଂ କୌଶଳ ସର୍ଜନା କରି ଯାଇଛନ୍ତି । ନୂଆ ଦିଲ୍ଲୀରେ ଥିବା କ୍ରାଫ୍ଟ ମ୍ୟୁଜିୟମରେ ସେ ଥିଲେ ଡାଇରେକ୍ଟର । ଭାରତ ସରକାରଙ୍କର ଆନୁକୂଲ୍ୟରେ ଗଠିତ ଇଣ୍ଡିଆନ୍ କାଉନ୍‌ସିଲ୍ ଅଫ କଲଚରାଲ ରିଲେସନ୍ସର ସେ ଉପସଭାପତି ହେଲେ ୧୯୮୨ ମସିହାରେ । ଏଇ ସମୟରେ ତାଙ୍କ ସହିତ ଏକ ସାକ୍ଷାତ ମୋର ଅଦ୍ୟାପି ସ୍ମରଣ ଅଛି । ରଜତ ଶୁଭ୍ର କେଶ, ବିଶାଳ ମାଜେଷ୍ଟିକ୍ ଚେହେରା । ମୋତେ ପ୍ରଶ୍ନ କଲେ, ଓଡ଼ିଶାରୁ ଆସିଛ । ଆଗ ଓଡ଼ିଶାର ହସ୍ତତନ୍ତ ଏବଂ ହସ୍ତଶିଳ୍ପ ସମ୍ବନ୍ଧରେ ଆଲୋଚନା କରିବା । ପରେ ଯେଉଁକାମ ପାଇଁ ତମେ ଆସିଛ ତାହା ଆଲୋଚନା କଲେ ତମର କିଛି ଆପତ୍ତି ଅଛି ? କହିବାର ଦୃପ୍ତଠାଣୀ, ନିଜର ମତକୁ ଜାହିର କରିବାର ସ୍ୱତନ୍ତ୍ର ଢଙ୍ଗ ତାଙ୍କ କଥାରୁ ସ୍ପଷ୍ଟ ହୋଇ ଉଠୁଥିଲା । ଓଡ଼ିଶୀ ଶାଢ଼ୀର ବାନ୍ଧଠାରୁ ଆରମ୍ଭ କରି କୃତାର୍ଥ ଆଚାର୍ଯ୍ୟଙ୍କ ପର୍ଯ୍ୟନ୍ତ କୌଣସି ବସ୍ତୁ ବାଦ ଯାଇନଥିଲା । ସେତେବେଳକୁ ତିନୋଟି ଆନ୍ତର୍ଜାତିକ ସେମିନାର ସରିଥାଏ ଆମର । ଚତୁର୍ଥ ପାଇଁ ଆମେ ଯାଇଥାଉଁ ସାହାଯ୍ୟ ସକାଶେ ।

ମୁଁ ପ୍ରାୟ ଛଅଶହ ଗବେଷକଙ୍କ ନାମ ଓ ଠିକଣା ତାଙ୍କ ପାଖରେ ଉପସ୍ଥାପନା କଲି । କେଉଁଠୁ ଆଣିଲ ଏତେ ଲୋକଙ୍କର ନାମ ଓ ଠିକଣା ? କିପରି ସଂଗ୍ରହ କଲ ? ତା'ପରେ ତାଙ୍କର ସେକ୍ରେଟେରୀଙ୍କୁ ଡାକି ପଚାରିଲେ ଯେ କେତେ କାମ ଓ ଠିକଣା ସଂଗ୍ରହ କରାଗଲାଣି ତାଙ୍କ ସଂଗଠନ ଦ୍ୱାରା ଆୟୋଜିତ ସେମିନାର ପାଇଁ ? ମାତ୍ର ପଚାଶଟି ନାମ ଛଅମାସ ମଧ୍ୟରେ ସଂଗୃହୀତ ହୋଇଛି ଶୁଣି ସେ କହିଲେ ଯେ ସୁଦୂର ଓଡ଼ିଶାର ଗୋଟିଏ ସ୍ୱେଚ୍ଛାସେବୀ ସଂସ୍ଥା ଛଅମାସରେ ଛଅଶହ ଠିକଣା ସଂଗ୍ରହ କରି ପାରିଥିବା ବେଳେ ଆମେ ଦିଲ୍ଲୀରେ ଏକ ବିଶାଳ ସେକ୍ରେଟେରିଏଟ୍ ସଂଗ୍ରହ ପାଇଁ ସବୁ ପ୍ରକାର ସୁବିଧା ଥାଇ କରି ପାରି ନାହୁଁ, ଏହା ଲଜ୍ଜାର କଥା । ମନ ଆନନ୍ଦରେ ଭରି ଯାଇଥିଲା ଏଇ ଜାରିନାଙ୍କର ପ୍ରଶଂସା ଶୁଣି ।

ବିଦେଶରେ ଭାରତୀୟ ଉତ୍ସବମାନଙ୍କର ସେ ଥିଲେ ମୁଖ୍ୟ । ତାଙ୍କର ନେତୃତ୍ୱରେ ଫ୍ରାନ୍ସ, ମିଳିତ ଯୁକ୍ତରାଷ୍ଟ୍ର ଏବଂ ଜାପାନରେ ଭାରତୀୟ ଉତ୍ସବ ସଂଗଠିତ ହୋଇଥିଲା । ଭାରତର ପ୍ରଧାନମନ୍ତ୍ରୀଙ୍କର ସେ ବହୁକାଳ ଧରି ସାଂସ୍କୃତିକ ଉପଦେଷ୍ଟା ଥିଲେ ।

" ବର୍ତ୍ତମାନ ସେଇ ସମୟ ଆସିଛି ଆମ ଚାରିପଟରେ ଜମି ଉଠୁଥିବା ସମସ୍ୟାର ସମ୍ମୁଖୀନ ହେବାର ସମୟ । ଆମର ମନ ଭିତରେ ଏକ ନୂତନ ସଚେତନତା ଉଦିତ୍ ହେବା ଉଚିତ । ଯାହା ଫଳରେ ଆମେ ମୁକ୍ତିର ସମ୍ପଦକୁ ସୁରକ୍ଷିତ କରି ରଖି ପାରିବା ଏବଂ ଏହାର ମହାର୍ଘତାରେ ଅଂଶ ଗ୍ରହଣ କରି ପାରିବ ।"

ଏଇ ଥିଲା ଇନ୍‌ଟାକ୍‌କୁ ତାଙ୍କର ବାଣୀ । ଏହାହିଁ ତାଙ୍କୁ ଜୀବିତ କରି ରଖିବ ବହୁକାଳ ଧରି -ମହାକାଳ ବକ୍ଷରେ ଗୋଟିଏ ଟୋପା ଅଶ୍ରୁଜଳ ପରି ।



# ଲୁହବୋଳା ସ୍ମୃତି

**ପ**ଞ୍ଚାନନ ତ୍ରିପାଠୀଙ୍କର ପରଲୋକ ହୋଇ ଯାଇଛି ତାଙ୍କର ସହିଦନଗର ବାସଭବନରେ । ସରକାରୀ ଚାକିରିରୁ ଅବସର ଗ୍ରହଣ ପରେ ଜୀବନର ଅବଶିଷ୍ଟାଂଶ ଦିନଗୁଡ଼ିକ ସେ ସହିଦ ନଗରରେ କଟାଇ ଦେଇଛନ୍ତି । ତାଙ୍କର ଜନ୍ମ ସ୍ଥାନ (?) ଭଂଜନଗରରେ । ପ୍ରବୀଣ ଶିକ୍ଷକ ହରିହର ତ୍ରିପାଠୀଙ୍କର ପୁତ୍ର । ସେ ମୋର ସ୍କୁଲପାଠୀ । ମୋଠାରୁ ଚାରିବର୍ଷ ଉପର ଶ୍ରେଣୀରେ ପାଠ ପଢୁଥିଲେ ସେ । ଜଣେ ପ୍ରବୀଣ ଛାତ୍ର ଭାବରେ ସେ ସ୍କୁଲରେ ସମସ୍ତଙ୍କ ସହିତ ପରିଚିତ ଥିଲେ । ଠିକ୍ ଯେପରି ପରିଚିତ ଥିଲେ ଆପଣାର ସୁନ୍ଦର ଇଂରାଜୀ ପାଇଁ ଚାର୍ଲସ ମହୀମୋହନ, ବିଜ୍ଞାନରେ ପରାକାଷ୍ଠା ପାଇଁ ହିମାଂଶୁ ଶେଖର ସାର୍ବତ ବା ବଂଶୀଧର ତ୍ରିପାଠୀ, ପାଇଲଟ୍ ହେବାର ଦୁର୍ବାର କାମନା ବହନ କରିଥିବା ପ୍ରଫୁଲ୍ଲ ତ୍ରିପାଠୀ ପ୍ରଭୃତି । ସେତେବେଳେ ଶୁଣିଥିଲି ପଞ୍ଚାନନ ତ୍ରିପାଠୀ, ହରିହର ତ୍ରିପାଠୀଙ୍କର ଜନ୍ମିତ ପୁତ୍ର ନୁହନ୍ତି, ପାଳିତ ପୁତ୍ର । ବାଟରେ ତାଙ୍କୁ ପାଇଥିଲେ ହରିହର ତ୍ରିପାଠୀ । ଶୁଣିବା କଥା, ପଚାରିବ କିଏ, କାହାକୁ ? ବୟସ ବି ହୋଇ ନ ଥିଲା ପଚାରିବା ପାଇଁ । ଅନ୍ୟତମ କାରଣ ଥିଲା ହରିହର ତ୍ରିପାଠୀଙ୍କର ସବୁ ପୁତ୍ରଙ୍କ ପ୍ରତି ସମାନ ଦୃଷ୍ଟିଭଂଗୀ ଯୋଗୁଁ । ସମୟ ଅତିକ୍ରାନ୍ତ ହେବା ସହିତ ଗଳ୍ପ ବା ଗୁଜବର ମଧ୍ୟ ଭଟ୍ଟା ପଡ଼ି ଯାଇଥିଲା । ସାଫଲ୍ୟ ସବୁ କାହାଣୀକୁ ପୋତି ପକାଏ କିମ୍ବା ଅଧିକ ଜାଜ୍ୱଲ୍ୟମାନ କରେ । ଯେପରି ଆମେ କର୍ଣ୍ଣ, ସୀତା, ଯୀଶୁଖ୍ରୀଷ୍ଟଙ୍କୁ ଭକ୍ତି କରୁ ତାଙ୍କର ଜନ୍ମ କାହାରି ସହିତ ମାନବଜାତିର କଲ୍ୟାଣ ପାଇଁ ସେମାନଙ୍କର ଅବଦାନ ଯୋଗୁଁ ।

ପଞ୍ଚାନନ ତ୍ରିପାଠୀ ରେଭେନ୍ସା କଲେଜ ପାଠସାରି ଯୋଗ ଦିଅନ୍ତି ସରକାରୀ ଚାକିରିରେ ଡେପୁଟି ମାଜିଷ୍ଟ୍ରେଟ୍ ଭାବରେ । ଚାକିରି କରିଛନ୍ତି ବିଭିନ୍ନ ପଦବୀରେ । ଡକ୍ଟର ହରେକୃଷ୍ଣ ମହତାବ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସମେତ ଓଡ଼ିଶାର ଚାରିଜଣ ସେକ୍ରେଟେରୀ ହୋଇଚନ୍ତି । ସେତେବେଳକୁ ବହୁ ଦରାବଳ ଆଇ.ଏ.ଏସ୍. ଥିଲେ ହେଁ ମହତାବ ବାବୁ ତାଙ୍କୁ ହିଁ ବାଛିଥିଲେ । ସେତେବେଳେ ମୁଖ୍ୟମନ୍ତ୍ରୀଙ୍କର ଏଇ ମାତ୍ର ଜଣେ ହିଁ ସେକ୍ରେଟେରୀ ଥିଲେ । ଦପ୍ତର ନ ଥିଲା । ତଥାପି ଏକୁଟିଆ ସେ କାମ ତୁଲାଇ ପାରିଥିଲେ ଦକ୍ଷତାର ସହିତ । କାହାରି ସହିତ ଉଚ୍ଚ ବାଚ ହୋଇନାହିଁ, ଗୋଟାଏ କଥା କହି ଠିକ୍ ତାର ଓଲଟା କାର୍ଯ୍ୟ କରି ନାହାନ୍ତି କଦାପି । ତାଙ୍କ ଉପରେ ବହୁ ସିନିଅର ଅଫିସର ଯାହାଙ୍କ ଫାଇଲ ତାଙ୍କ ବାଟ ଦେଇ ଯାଏ ମୁଖ୍ୟମନ୍ତ୍ରୀଙ୍କ ପାଖକୁ । ତଥାପି କାହାକୁ ସେ ଅପମାନିତ ବୋଧ କରିବାକୁ ଦେଇନାହାନ୍ତି । ଅନେକ ସହକର୍ମୀ, ସେମାନଙ୍କର ସାମୂହିକ କାମ, ବ୍ୟକ୍ତିଗତ କାମ ମୁଖ୍ୟମନ୍ତ୍ରୀଙ୍କ ପାଖରେ । ପଞ୍ଚାନନ ତ୍ରିପାଠୀ ସମସ୍ତଙ୍କ ପ୍ରତି ବନ୍ଧୁତାର ହସ୍ତ, ସହଯୋଗର ହସ୍ତ ପ୍ରସାରିତ କରିଛନ୍ତି । କାହାରି ପ୍ରତି ଅସୂୟା, ବିରକ୍ତି ବା ହେଳା ପ୍ରଦର୍ଶନ କରି ନାହାନ୍ତି । ସେତେବେଳର ରାଜନୀତିର ଯୁଗ ହେଉଛି ଖଣି, କାଗଜକଳ, କେନ୍ଦୁପତ୍ର ରାଜନୀତିର ଯୁଗ । ସେତିକିବେଳେ କେଉଁଝରରେ ଜଣେ ଖଣି ମାଲିକ ଥାଆନ୍ତି । ତାଙ୍କର ନାମ ସିରାଜୁଦ୍ଦିନ । ସେ

ଓଡ଼ିଶାର ରାଜନୀତିର ଗ୍ରହ, ନକ୍ଷତ୍ର ମାନଙ୍କୁ ଚଳାଇପାରୁ ଥିଲେ । ତାଙ୍କର ଅନୁଗ୍ରହ, କୃପା, ଶୁଭେଚ୍ଛା ପାଇଁ ଧାଡ଼ି ବାନ୍ଧୁଥିଲେ ବହୁ ପ୍ରତିଷ୍ଠିତ ବ୍ୟକ୍ତି । ସେ କାହାକୁ ଖାଲି ହାତରେ ଫେରାଇ ନାହାନ୍ତି । ଓଡ଼ିଶାର ରାଜନୀତିର ସୀମା ଟପି ତାଙ୍କର ପ୍ରଭାବ ବିସ୍ତାର ହୋଇଥିଲା ଦିଲ୍ଲୀ ପର୍ଯ୍ୟନ୍ତ । ଗଧ ପିଠିରେ ଲୁଗାଇଦି ହାଟରେ ଖଦୀ ବିକିବା ଲୋକ ଯେ ରାଜନୀତି ଏବଂ ଅର୍ଥନୀତିକୁ ଏପରି ପ୍ରଭାବିତ କରି ପାରିବ, ଏକଥା କିଏ ଜାଣିଥିଲା ?

କିନ୍ତୁ ସବୁଦିନ ସମାନ ଯାଏ ନାହିଁ । ଗଲା ନାହିଁ ମଧ । ସେ ହେଲେ ଶରବ୍ୟ - ପୁଲିସ, ସି.ବି.ଆଇ ପ୍ରଭୃତିଙ୍କ ଦ୍ୱାରା । କୌଣସି ପ୍ରାର୍ଥୀ ପାଇଁ ସାମାନ୍ୟ ଅନୁଦାନ ପାଇଁ ତାଙ୍କୁ ଚିଠି ଲେଖି କେ.ଡି.ମାଲବ୍ୟ ମନ୍ତ୍ରୀପଦରୁ ଯାଆନ୍ତି । ଯେଉଁମାନେ ତାଙ୍କର କୃପା ପାଇଁ ଭିକ୍ଷାଥାଳ ଧରି ଠିଆ ହେଉଥିଲେ, ସେମାନେ ତାଙ୍କୁ ଦେଖିଲେ ପଳେଇଲେ । ସେ ମଧରେ ମନ୍ତ୍ରୀ ଯେପରି ଅନ୍ତର୍ଭୁକ୍ତ ଅଫିସର ମଧ ସେଇପରି ଅନ୍ତର୍ଭୁକ୍ତ ।

ଏଇପରି ସମୟରେ ଗୋଟିଏ ଘଟଣା ଘଟିଲା, କଲିକତା ଉତ୍କଳ ଭବନରେ । ସେଦିନ ବହୁ ଅଫିସର କେତେକ ମନ୍ତ୍ରୀ ଡେରା ପକାଇଥାନ୍ତି ଉତ୍କଳ ଭବନରେ । ହଠାତ୍ ସେଠାରେ ଆସି ପହଞ୍ଚିଲେ ସିରାଜୁଦ୍ଦିନ । ଖବର ନାହିଁ କିଛି ନାହିଁ ହାଜର୍ । ତାଙ୍କୁ ଦେଖି ମନ୍ତ୍ରୀ, ଅଫିସର ସବୁ ଫେରାର୍ । ଯିଏ ଯୁଆଡ଼େ ପାରିଲେ ପଳେଇଲେ ଛାନିଆଁରେ । କିଏ ବାଥ୍ ରୁମ୍ ବାଟ ଦେଇ ତ କିଏ ଆଉ କେଉଁ ବାଟରେ ! କାହାକୁ ଝାଡ଼ା ଲାଗିଲାଣି ତ କାହାକୁ ଡାକରା ଆସିଲାଣି । କେବଳ ପଞ୍ଚାନନ ବାବୁ ବସିଥାନ୍ତି ନିର୍ବିକାର ଚିତ୍ତରେ । ଉଦ୍‌ବେଗ ନାହିଁ, ଉତ୍କଣ୍ଠା ନାହିଁ । ସେଦିନ ମୁଁ ଦୈବାତ୍ ଥିଲି ଉତ୍କଳ ଭବନରେ । ଉତ୍କଳ ଭବନ ଖାଲି । ପଞ୍ଚାନନ ବାବୁ ବି ବସିଥିବାର ଦେଖି ପଚାରିଲି ଆପଣ ବସିଛନ୍ତି ? ତାଙ୍କୁ ଭେଟିବେ ଆପଣ ? ସେ ତାଙ୍କର ସ୍ମିତ ହାସ୍ୟର ଏକ ରେଖା । ସେ ଜଣେ ନାଗରିକ, ଟିକସଦାତା ସେ ମୋର ପେ-ମାଷ୍ଟର । ମୁଁ ତାଙ୍କ କଥା ଶୁଣିବାକୁ ବାଧ । କିନ୍ତୁ ନିଷ୍ପତ୍ତି ମୋର । ତାଙ୍କୁ କେହି ପ୍ରଭାବିତ କରିପାରିବ ନାହିଁ । ସେ ଆସିଲେ, ଦେଖାକଲେ ଏବଂ ଗଲେ ।

ଆପଣ କ'ଣ ଏହି ସାକ୍ଷାତକୁ ଲିପିବଦ୍ଧ କରିବେ ଏବଂ ଉପରିସ୍ଥ କର୍ମକର୍ତ୍ତାଙ୍କୁ ଜଣାଇବେ ? ଉତ୍ତର ଆସିଲା ନିଶ୍ଚୟ ।

କିଛିଦିନ ବିତିଗଲା । ହଠାତ୍ ଦିନେ ଦେଖା ହେଲା ପଞ୍ଚାନନ ବାବୁଙ୍କ ସଙ୍ଗରେ, ତାଙ୍କ ଅଫିସରେ । ସିରାଜୁଦ୍ଦିନ ତାଙ୍କ ସାଙ୍ଗରେ ଆଲୋଚନା କରିଥିବା ସବୁ ଲିପିବଦ୍ଧ କରିଥିଲେ ଏବଂ ଆପଣାର ନିଷ୍ପତ୍ତି ମଧ ଲେଖିଥିଲେ । ସେଥିରୁ କେତେକ ଥିଲା ସିରାଜୁଦ୍ଦିନଙ୍କ ସପକ୍ଷରେ ଏବଂ ଆଉ କେତେକ ଥିଲା ତାଙ୍କ ବିରୁଦ୍ଧରେ । ନିର୍ଭୀକ ମତ ପ୍ରଦାନର ଏହା ଏକ ଅନୁକରଣୀୟ ଉଦାହରଣ । ସେତେବେଳେ ସେ ଖଣି ବିଭାଗର ଡେପୁଟି ସେକ୍ରେଟେରୀ ।

ତାଙ୍କର ମୃତ୍ୟୁ ସଂବାଦ ପାଇ ତାଙ୍କର ସହକର୍ମୀ ପୀତବାସ ପଟ୍ଟନାୟକ କହୁଥିଲେ ଯେ ସେ ଜଣେ ଏପରି ଅଫିସର ଯାହାଙ୍କ ଉପରେ ସହକର୍ମୀ ମାନେ ଭରସା କରି ପାରନ୍ତି । ସେ ନିଜ ଉପରକୁ ଦାୟିତ୍ୱ ନେଇ ଯାଆନ୍ତି, ସହକର୍ମୀ ବିଶେଷତଃ ଅଧସ୍ତନ ଅଫିସରମାନଙ୍କର ଦାୟିତ୍ୱ ।

ଆଉ ପଞ୍ଚାନନ ବାବୁ ନାହାନ୍ତି । ଜୀବନର ଅନେକ ଅଫିସରଙ୍କୁ ଭେଟିଛି । କିନ୍ତୁ ଯେଉଁ କେତେକଙ୍କ ନାମ ମନେ ରହିବ ଚିରଦିନ ପାଇଁ ସେମାନଙ୍କ ଭିତରେ ପଞ୍ଚାନନ ବାବୁ ଅନନ୍ୟ ।



# ଫୁଲଟିଏ ପାଇଁ ଟୋପାଏ ଅଶ୍ରୁ

**ପ**ଦ୍ମାଳୟା ଦାସ ଆଉ ନାହାନ୍ତି ।

ଆମେ ଦୁହେଁ ପ୍ରାୟ ଏକା ବୟସର । କଲେଜରେ ବି ଆମର ସେ ସମସାମୟିକ । ସେ ଆସନ୍ତି ରେଭେନ୍ସା କଲେଜକୁ ମାନ୍ଦ୍ରାଜରେ ଶିକ୍ଷା ସମାପ୍ତି ପରେ । ସୁନ୍ଦର, ଲୋଭନୀୟ ଚେହେରା କିନ୍ତୁ କମନୀୟ ନୁହେଁ, ମାଜେଷ୍ଟିକ୍ । ପାଠ ପଢୁଥିଲେ ଖୁବ୍ ଭଲ, ଇଂରାଜୀ ସାହିତ୍ୟରେ ବ୍ୟୁତ୍ପତ୍ତି ଥିଲା । ମାନ୍ଦ୍ରାଜରେ ପାଠପଢ଼ିଥିବା ଯୋଗୁଁ ତାଙ୍କର ଇଂରାଜୀ ଭାଷା ଉଚ୍ଚାରଣ ବେଶ୍ ବାରି ହୋଇପଡୁଥିଲା । କୁହନ୍ତି କୁଇନସ୍ ଇଂଲିଶ୍ । କହନ୍ତି ଭଲ । ସେତେବେଳେ ରେଭେନ୍ସା କଲେଜରେ ଡିବେଟିଂର ଯୁଗ । ତାଙ୍କୁ କହିବାର ଦେଖାଯାଏ ପ୍ରାୟ ସବୁ ସଭା ସମିତିରେ । ଓଡ଼ିଆରେ ବି କହି ପାରନ୍ତି । କିନ୍ତୁ ଇଂରାଜୀ ଭାଷାରେ କହିଲାବେଳେ ସେ ବେଶ୍ ସାବଲୀଳ । ମନେହୁଏ ଯେପରି ସେ ଭାବୁଛନ୍ତି ଇଂରାଜୀରେ । ଓଡ଼ିଆରେ କହିଲାବେଳେ ମନେହୁଏ ଯେପରି ସେ ଅନୁବାଦ କରୁଛନ୍ତି ।

ସ୍ୱାଭାବିକ ଭାବରେ ସେ ଯୁବ ସମାଜର ଆକର୍ଷଣର ବିନ୍ଦୁ ଥିଲେ । କିନ୍ତୁ ଯୁବ ସୁଲଭ ଚାପଲ୍ୟ ତାଙ୍କର ନ ଥିଲା । ଗମ୍ଭୀର, ଦାନ୍ତ ଚିପା ଇଂରାଜୀ, ଆତ୍ମସନ ବା ଅଭିଳାଷ ଭରା ଚରିତ୍ର ତାଙ୍କୁ ଏକ ସ୍ୱତନ୍ତ୍ର ଚରିତ୍ରରେ ପରିଣତ କରିଥିଲା ।

ସବୁ ବା ଅନେକ କିଛି ହେବା ପାଇଁ ତାଙ୍କର ପ୍ରତିଭା ଥିଲା । କିନ୍ତୁ ବହୁ ପ୍ରତିଭାଶାଳୀମାନଙ୍କ ପରି ସେ କେଉଁ ଗୋଟିଏ ଲକ୍ଷ୍ୟରେ ଧାବିତ ହେବେ ତା ସ୍ଥିର କରି ପାରୁ ନ ଥିଲେ ବୋଲି ମନେ ହେଉଥିଲା । ଅଭିଳାଷ ସହିତ ଅଭିଳାଷ ଚରିତାର୍ଥ ବା ରୂପାୟନ ପାଇଁ ଯେତିକି ସ୍କୋପ ବା ସୁଯୋଗ ଦରକାର ତା'ସେ ପାଇ ପାରୁ ନଥିଲେ । ଜୀବନର ପରବର୍ତ୍ତୀ କାହାଣୀ ପ୍ରମାଣିତ କରେ ସେ ତା ପାଇ ପାରି ନାହାନ୍ତି । ସାହିତ୍ୟ, କଳା, ସଂସ୍କୃତି, ସମାଜ ସେବା, ରାଜନୀତି କାହାକୁ ସେ ଗ୍ରହଣ କରି ପ୍ରଧାବିତ ହେବେ ତାହା ସ୍ଥିର କରୁ କରୁ ସମୟ ଅତିକ୍ରାନ୍ତ ହୋଇଯିବାକୁ ଲାଗିଲା । ଏଭଳି ଉଦ୍‌ବେଳିତ ପ୍ରତିଭା ପାଇଁ ଉପଯୁକ୍ତ ଧାରା ବା ଷ୍ଟ୍ରିମ୍ ପ୍ରସ୍ତୁତ କରିବା ପାଇଁ ଯେଉଁ ସଂଗଠକ ବା ସଂଗଠନ ଆବଶ୍ୟକ ତାହା ସେ ବୋଧହୁଏ ପାଇ ପାରିଲେ ନାହିଁ । ନିଜ ଉପରେ ଅସମ୍ଭବ ବିଶ୍ୱାସ ଥିବା ଏହି ନାରୀ ଜାଣି ପାରିଲେ ନାହିଁ ଯେ ସାଫଲ୍ୟ ପ୍ରତିଭା ପାଇଁ ଆସେ ନାହିଁ । ଆସେ ମେଡିଓକର୍ ବା ସାଧାରଣ ମଣିଷ ପାଇଁ ଯେଉଁ ମଣିଷ ଆପଣାର ଲହୁ ଓ ଲୁହ ଦେଇ ଲାଗିଥାଏ କ୍ରମାଗତ ଓ ଧାରାବାହିକ ଭାବରେ । ସ୍ୱାମୀ ଗୋପୀନାଥ ନିଜେ ଜଣେ ସ୍କଲାର । ସାଫଲ୍ୟର ଖତିଆନରେ ଲୁଣତେଲ ହଳଦୀର ହିସାବ କରିବା ବା ରଖିବା ନା ସମ୍ଭବ ହେଲା ପଦ୍ମାଳୟା ଦେବୀଙ୍କ ପାଇଁ ନା ତାଙ୍କର ସ୍ୱାମୀଙ୍କ

ପାଇଁ ? ସ୍ୱାମୀ ଦିଗ୍‌ଦର୍ଶନ ଦେଲେ, କିନ୍ତୁ ବ୍ରାସ୍ ଟାକ୍ସ, କଠୋର ଟକିନିଖି କାର୍ଯ୍ୟ କରିବ କିଏ ?

ପଦ୍ମାଳୟା ଦେବୀ ସାମ୍ବାଦିକ ହେଲେ । ସେ ଲେଖିଲେ ଇଂରାଜୀରେ । ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡର 'କଟକ ନୋଟ୍‌ବୁକ୍' ବା ଅମୃତ ବଜାର ପତ୍ରିକା 'କଟକ ଡାଏରୀ' ତାଙ୍କର ଆଲେଖ୍ୟ ବହନ କରି ବର୍ତ୍ତମାନ ମଧ୍ୟ ଜନ ମାନସରେ ଜୀବିତ । ସେ ଲେଖୁଥିଲେ ବିଭିନ୍ନ ଇଂରାଜୀ ପତ୍ର ପତ୍ରିକାରେ । ବହୁ ଲବ୍ଧପ୍ରତିଷ୍ଠିତ ସମ୍ବାଦପତ୍ରର ପୃଷ୍ଠା ସେ ମଣ୍ଡନ କରିଛନ୍ତି । ଓଡ଼ିଶାର କଳା, ସଂସ୍କୃତି, କୁଟୀର ଶିଳ୍ପ, ଇତିହାସ, ପରମ୍ପରା ରୂପାୟିତ ହୋଇଛି ତାଙ୍କର କଲମରେ । ଜାତୀୟ ତଥା ଆନ୍ତର୍ଜାତୀୟ ସ୍ତରକୁ ସେ ନେଇ ଯାଇଛନ୍ତି ତାଙ୍କର କଲମ ଦ୍ୱାରା ଓଡ଼ିଶାର କଳା ସଂସ୍କୃତିକୁ । ସେ ଯଦି କେବଳ ସାମ୍ବାଦିକତା କରିଥାନ୍ତେ ତା'ହେଲେ ସେ ଆପଣାକୁ ପ୍ରତିଷ୍ଠିତ କରି ପାରିଥାନ୍ତେ ଏକ ପ୍ରଥମ ଶ୍ରେଣୀର ସାମ୍ବାଦିକ ହୋଇ । କେବଳ ଇଂରାଜୀରେ ଲେଖିବା ହେତୁ ସେ କେବଳ ଓଡ଼ିଆ ଜାଣିଥିବା ପାଠକକୁଳ ପାଖରେ ପରିଚିତ ହୋଇ ପାରିଲେ ନାହିଁ । ଏହା ତାଙ୍କର ଦୁର୍ଭାଗ୍ୟ ନା ଦେଶର ଦୁର୍ଭାଗ୍ୟ ?

ରାଜନୀତି କରିବାର ଇଚ୍ଛା ତାଙ୍କର ଥିଲା କଲେଜ ଜୀବନରୁ । କିନ୍ତୁ ରାଜନୀତି କରିବା ପାଇଁ ଯେ ଫ୍ଲେକ୍ସିବିଲିଟି ଆବଶ୍ୟକ ତାହା ତାଙ୍କର ନ ଥିଲା । କଲେଜ ନିର୍ବାଚନରେ ଲଢ଼ିବା ଠାରୁ ଆରମ୍ଭ କରି ରାଜ୍ୟସଭାକୁ ଯିବା ପାଇଁ ପ୍ରସ୍ତାବନା ଥିଲା ତାଙ୍କ ପାଇଁ । କିନ୍ତୁ ଗୋଟାଏ ପଟରେ ଗିଜିଡିଟି ଆଉ ଆର ପଟରେ ତିନିପାଦ ଆଗକୁ ଚାଲିବାର ସାଂଗଠନିକ ଧୈର୍ଯ୍ୟ ତାଙ୍କର ନ ଥିବା ଯୋଗୁଁ ସେ ସାଫଲ୍ୟ ଲାଭ କରି ପାରିଲେ ନାହିଁ । ଅଥଚ ପାର୍ଲାମେଣ୍ଟକୁ ଯାଇଥିଲେ ସେ ଜଣେ ସଫଳ ପାର୍ଲାମେଣ୍ଟାରିଆନ୍ ହୋଇଥାନ୍ତେ ଏଥିରେ କୌଣସି ସନ୍ଦେହ ନ ଥିଲା । କିନ୍ତୁ ସେ କେବଳ ଚକ୍ରାନ୍ତର ହିଁ ଶିକାର ହେଲେ । ପ୍ରତିଭାର ବିନିଯୋଗ ହେଲା ନାହିଁ । ତାଙ୍କର ଆହତ ଅଭିମାନ ବଢ଼ି ଚାଲିଲା ।

ରାଜ୍ୟ ହସ୍ତକଳା ବିକାଶ ନିଗମ, ଚଳଚ୍ଚିତ୍ର ଉନ୍ନୟନ ନିଗମ, ଭାରତୀୟ ଜ୍ଞାନପୀଠ, ସାହିତ୍ୟ ଏକାଡ଼େମୀ, ଓଡ଼ିଶା ରିଭ୍ୟୁ , ଉତ୍କଳ ପ୍ରସଙ୍ଗର ସଂପାଦନା, ରେଭେନ୍ସା କଲେଜ ପୁରାତନ ଛାତ୍ର ସଂଘ, ଶୈଳବାଳା ମହିଳା କଲେଜର ପରିଚାଳନା କମିଟି, ନାରୀ ସେବାସଂଘ ସଦନ ପ୍ରଭୃତି ବହୁ ଅନୁଷ୍ଠାନ ସହିତ ସେ ସଂପୃକ୍ତ ଥିଲେ । ଏହି ସବୁ ଅନୁଷ୍ଠାନ ତାଙ୍କର କର୍ମନିଷ୍ଠା, ସୃଜନଶୀଳ ପ୍ରତିଭାର ଆଲେଖ୍ୟ ବହନ କରିଛନ୍ତି । ନାରୀ ସେବା ସଂଘ ତାଙ୍କର ଥିଲା ସବୁଠାରୁ ପ୍ରିୟ ଏବଂ ଶେଷ ପର୍ଯ୍ୟନ୍ତ ସେ ଏହାର ସଭାନେତ୍ରୀ ଭାବରେ ଆପଣାର ଦକ୍ଷତା ପ୍ରମାଣିତ କରି ଯାଇଛନ୍ତି । କିନ୍ତୁ ଏଇ ପ୍ରତିଭା ଯେଉଁ ତୁଙ୍ଗ ଶିଖରୀ ଚୂଳକୁ ଯିବାର କଥା ସେ ତାହା ପାଇ ପାରି ନାହାନ୍ତି । ଫିଲ୍ଡ ଅଫ ସର୍ଭିସ ତାଙ୍କର ଶକ୍ତି ଏବଂ ସାମର୍ଥ୍ୟର ଅନ୍ୟତମ ରୂପାୟନ । ଅନେକ ଗରିବ ଅସହାୟ, ମେଧାବୀ ଛାତ୍ର ଏହି ଅନୁଷ୍ଠାନରୁ ସାହାଯ୍ୟ ପାଇଁ ଜୀବନର ଗାଢ଼ ତିକ୍ତ ଅନ୍ଧକାର ଭିତରୁ ଆଲୋକର ସନ୍ଧାନ ପାଇ ପାରିଛନ୍ତି ।

କୁହାଯାଏ ଯେ ସୌନ୍ଦର୍ଯ୍ୟ ଏବଂ ପ୍ରତିଭା ଅନେକ ରୋଗର ଆକର୍ଷଣର ବିନ୍ଦୁ । କ୍ୟାନସର କ'ଣ ତା' ଭିତରେ ଅନ୍ୟତମ ? କହି ହେବ ନାହିଁ, କିନ୍ତୁ ପଦ୍ମାଳୟା ଦେବୀ କ୍ୟାନସର

ରୋଗରେ ପୀଡିତ ହେଲେ । ଜୀବନ ଦୀପ ଧୀରେ ଧୀରେ ନିର୍ବାପିତ ହେବାକୁ ଲାଗିଲା । କିନ୍ତୁ ଅନମନୀୟା ପଦ୍ମାଳୟା ସହଜରେ ହାର ମାନିବାକୁ ପ୍ରସ୍ତୁତ ନୁହନ୍ତି । ସେ ବଞ୍ଚି ରହିଲେ ଦୁଇ ବର୍ଷ କାଳ । ସ୍ୱାମୀ ଏବଂ ଭାଇ ମାନଙ୍କର ଆପ୍ରାଣ ପ୍ରଚେଷ୍ଟା ଯୋଗୁଁ । ମୁହଁରେ ସେଇ ହସ ଲାଗି ରହିଥିଲା ମୃତ୍ୟୁ ପର୍ଯ୍ୟନ୍ତ । ସଚେତ ବି ଥିଲେ ସେ ଶେଷ ରାତି ପର୍ଯ୍ୟନ୍ତ ।

ସେଇ ରାତି । ରାତ୍ରିରେ ସ୍ୱାମୀ ଗୋପୀନାଥ ତାଙ୍କୁ ଛାଡ଼ି ଫେରିଗଲେ ଆପଣା ଘରକୁ । ପଦ୍ମାଳୟା ଚିକିତ୍ସିତ ହେଉଥିଲେ ଭାଇ ମାନଙ୍କ ଘରେ । ସେଇ ରାତି ଥିଲା କାଳ ରାତ୍ରି । ରୋଗ ବଢ଼ିବାକୁ ଲାଗିଲା । ମଇ ମାସ ୪ ତାରିଖ ସକାଳ ୧୦ଟା ବେଳେ ଏଇ ଫୁଲଟି ଝରି ପଡ଼ିଲା ତା'ର ଶେଷ ମହକ ଦେଇ ।

ପଦ୍ମାଳୟା ଦାସ ଶୋଇ ଯାଇଛନ୍ତି । ପଦ୍ମଟିଏ ପରି ମୁହଁଟି ଦେଖାଯାଉଛି ଆବୃତ ଶ୍ୱେତ ଚଦର ଭିତରୁ । ସ୍ୱାମୀ, ଭାଇ, ଭାଉଜ, ବନ୍ଧୁ ଘେରି ରହିଛନ୍ତି । ଖବର ପାଇଁ ସହକର୍ମୀ, ସାମ୍ବାଦିକ ମାନେ ଆସୁଛନ୍ତି ଶେଷ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ପାଇଁ । ଝିଅଟିଏ ବାହୁନି ବାହୁନି କାନ୍ଦୁଚି । ସମସ୍ତେ ଠିଆ ହୋଇଛନ୍ତି ନତ ମସ୍ତକରେ । ଫୁଲ ହାରଟିଏ ଥୋଇଲି । ଅମାନିଆ ଆଖିରୁ ଦୁଇଚାରି ଟୋପା ଲୁହ ଖସି ପଡ଼ିଲା । ତାଙ୍କର ମର ଦେହ ଉପରେ । ସେଇଥିଲା ମୋର ଶେଷ ଶ୍ରଦ୍ଧାଞ୍ଜଳି ଏଇ ଫୁଲଟି ପାଇଁ ।



# ଗବେଷଣାର ମହାନ୍ ସ୍ତମ୍ଭ

"ଆପଣଙ୍କର ପରା ଜାତିଭାଇ ପବିତ୍ର ମୋହନ ପ୍ରଧାନ । ସେ ଓଡ଼ିଶାର ଶିକ୍ଷାମନ୍ତ୍ରୀ । ଆପଣ ତାଙ୍କୁ ଟିକିଏ ଧରୁ ନାହାନ୍ତି । ଆପଣଙ୍କର ସମସ୍ୟା ଦୂର ହୋଇଯାଆନ୍ତା । ତା'ଛଡ଼ା ଆପଣଙ୍କ ସମସ୍ୟା ତ ଯଥାର୍ଥ...." ଅଧ୍ୟାପକ ଡକ୍ଟର ରାଧାନାଥ ରଥ ଆପଣାର ବନ୍ଧୁ, ସହକର୍ମୀଙ୍କୁ କହିଲେ ଏଇ କଥା ତାଙ୍କର ଚାକିରି ଜନିତ ସମସ୍ୟା ଶୁଣି ।

ତାଙ୍କୁ ଅଟକାଇ କହିଲେ ସେ ବନ୍ଧୁ । "ମୋତେ ଏଇ ଧରାଧରି କଥା କହିବେ ନାହିଁ ଡକ୍ଟର ରଥ । ଏଇ ଧରାଧରି କଥା କହିଲା କ୍ଷଣି ମୋର ମନେହୁଏ ଯେପରି ଅଶୀକୋଟି ଚୀନା ଜନସାଧାରଣ ମୋ ଆଡ଼କୁ ଆଙ୍ଗୁଠି ନିର୍ଦ୍ଦେଶ କରି କହୁଛନ୍ତି - ଦେଖ , ଦେଖ ଏଇ ଲୋକଟା ଶେଷକୁ ଧରାଧରି କାର୍ଯ୍ୟରେ ଲିପ୍ତ । ଚୀନ ଦେଶରେ ଏଇ ଧରାଧରି କଥାଟାକୁ ଘୃଣା କରନ୍ତି ତୀବ୍ର ଭାବରେ ।" ଉତ୍ତର ଦେଲେ ଅଧ୍ୟାପକ ଡକ୍ଟର ପ୍ରହ୍ଲାଦ ପ୍ରଧାନ ।

ସେ ସଦ୍ୟ ଫେରି ଥାନ୍ତି ଚୀନରୁ । ୧୯୪୯ ମସିହା ମଇ ମାସ ୧୦ ତାରିଖ । ଚୀନ ମୁକ୍ତି ବାହିନୀ ମାଡ଼ି ଆସୁଛନ୍ତି ଦ୍ରୁତ ଗତିରେ । ନାନକିଙ୍ଗ ସହରକୁ ସେମାନେ ମୁକ୍ତ କରିବେ । ୟାଂସି ନଦୀର ଦୁର୍ବାର ସ୍ରୋତକୁ ସେମାନେ ଟପି ଆସିଚନ୍ତି ମଣିଷର କାନ୍ଧରେ ଥୁଆ ହୋଇଥିବା କାଠ ଉପରେ । ମଣିଷ କାନ୍ଧରେ ଥୁଆ ହୋଇଛି କାଠ । ମଣିଷ ପାଲଟିଛି ଖୁଣ୍ଟ । ତାରି ଉପରେ ଚାଲି ଆସୁଛନ୍ତି ସୈନ୍ୟବାହିନୀ, ଟ୍ୟାଙ୍କ, ସରଞ୍ଜାମ ଗାଡ଼ି । ତଳର ମଣିଷ ପାଲଟିଛି ସହିଦ, ମୁକ୍ତିର ପୂଜା ବେଦୀରେ । ସଂଘ ପାଇଁ ବ୍ୟକ୍ତିର ତ୍ୟାଗ । ସଂଘ ପଦରେ ଶରଣ ଯାଇଚି ବ୍ୟକ୍ତି ।

ପଳାଅ, ପଳାଅ । ସବୁ ବିଦେଶୀ ନାଗରିକ ପଳାଅ, ତମ ପାଇଁ ଥୁଆ ହୋଇଛି ବ୍ୟୋମଯାନ । ଏହା ନେଇ ଯିବ ତୁମ ମାନଙ୍କୁ ନିରାପଦ ସ୍ଥାନକୁ । ହୁଏତ ଫର୍ମୋଦାକୁ ନାନକିଙ୍ଗ ସହର । ଜଣେ ଅଧ୍ୟାପକ କିନ୍ତୁ ସ୍ଥାନ ଛାଡ଼ିବାକୁ ନାରାଜ । ତାଙ୍କର ନିଷ୍ପତ୍ତି, ସେ ରହିବେ । ଦେଖିବେ ନୂତନ ପରୀକ୍ଷା । ଚୀନା ମାଟିରେ ବହୁଦିନ ଧରି ବ୍ୟକ୍ତିର ବିଜୟ ଦୁନ୍ଦୁଭି ବାଜିଛି । ସମୂହ ସ୍ୱାର୍ଥକୁ ବଳି ପକାଯାଇଛି ବ୍ୟକ୍ତିର ସ୍ୱାର୍ଥବେଦୀରେ । ସମୟ ବଦଳୁଛି । ବର୍ତ୍ତମାନ ଚୀନା ମାଟିରେ ନୂତନ ଜୀବନର ସ୍ୱାଦ । ସଂଘ, ସମୂହର ବେଦୀରେ ନିବେଦିତ ହେବା ପାଇଁ ଲକ୍ଷ ଲକ୍ଷ ଯୁବତୀ ପ୍ରସ୍ତୁତ । ସେମାନଙ୍କର ତୂର୍ଯ୍ୟନାଦ ଶୁଭୁଛି । ବୁଦ୍ଧଙ୍କର ମହିମ୍ନ ବାଣୀ "ସଂଘମ୍ ଶରଣଂ ଗଚ୍ଛାମି"ର ଯଥାର୍ଥ ପ୍ରୟୋଗ ।

ଅଧ୍ୟାପକ ରହିଗଲେ ସେଇଠି ।

୧୯୧୦ ମସିହାରେ ଭଟଲି ନିକଟରେ ଥିବା ଅନ୍ଦେପାଲି ଗ୍ରାମରେ (ସମ୍ବଲପୁର ଜିଲ୍ଲାରେ) ସେ ଜନ୍ମ ଗ୍ରହଣ କରିଥିଲେ । ସଂସ୍କୃତ ଶିକ୍ଷା ପ୍ରତି ପିଲାଦିନରୁ ତାଙ୍କର ଅସୀମ

ଆଗ୍ରହ ଥିଲା । ସଂସ୍କୃତ ଶିକ୍ଷା ନିମନ୍ତେ ତାଙ୍କୁ ବହୁ ଘାତ ପ୍ରତିଘାତ ସହ୍ୟ କରିବାକୁ ପଡ଼ିଥିଲା । ପାଣିନୀ ବ୍ୟାକରଣରେ ସେ ଆଚାର୍ଯ୍ୟ ଉପାଧି, ବେଦରେ ଶାସ୍ତ୍ରୀ ଉପାଧି ଲାଭ କରିଥିଲେ । କିଛିଦିନ ବାରିପଦା ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଶିକ୍ଷକ ଥିଲେ । ଓଡ଼ିଶାର ବିଭିନ୍ନ କଲେଜରେ ସେ ଅଧ୍ୟାପକ ଓ ଅଧକ୍ଷ ଥିଲେ । ବିଶ୍ୱଭାରତୀର ଓଡ଼ିଆ ବିଭାଗର ଅଧକ୍ଷ ଭାବରେ ତାଙ୍କର କାର୍ଯ୍ୟ ଅଦ୍ୟାପି ତାଙ୍କର ପ୍ରାକ୍ତନ ଛାତ୍ରମାନେ ସ୍ମରଣ କରନ୍ତି । ଉତ୍କଳ ବିଶ୍ୱ ବିଦ୍ୟାଳୟରେ ସଂସ୍କୃତ ବିଭାଗରେ ଅଧ୍ୟାପକ ଓଡ଼ିଆ ଅଭିଲେଖାଗାରର ପାଣ୍ଡୁଲିପି ସଂପାଦକ ଓ ଶେଷରେ ପୁରୀରେ ସଦାଶିବ ସଂସ୍କୃତ ବିଶ୍ୱ ବିଦ୍ୟାଳୟରେ କୁଳପତି ଭାବରେ ସେ କାର୍ଯ୍ୟକରି ଯାଇଛନ୍ତି ।

୧୯୪୫ ମସିହାରେ ଚୀନା ସରକାରଙ୍କଠାରୁ ଫେଲୋସିପ୍ ପାଇଁ ସେ ଗଲେ ଚୀନ । ସେଠାରେ ଚୀନ ଭାଷା ଅଧ୍ୟୟନ କରିଥିଲେ ଏବଂ ସେଥିରେ ବ୍ୟୁତ୍ପତ୍ତି ଲାଭ କରିଥିଲେ । ପେକିଂ ଓ ନାନକିଙ୍ଗ ବିଶ୍ୱବିଦ୍ୟାଳୟରେ ସଂସ୍କୃତି ଓ ହିନ୍ଦୀ ଭାଷାରେ ଅଧ୍ୟାପନା କାର୍ଯ୍ୟ କରିଥିଲେ । ଫେରିଲେ ୧୯୫୨ ମସିହାରେ । ବହୁ ବହି ରଚନା କରି ଯାଇଛନ୍ତି ସେ । ସେଥିରୁ ଅଭିଧର୍ମ ସମୁଚୟଂଙ୍କ ଅଭିଧର୍ମ କୋଷଭାସ୍ୟ ପାଲିଧର୍ମ ଓ ପାଲିଭାଷା କେତୋଟି ସମସ୍ୟା'' ପ୍ରଭୃତି ବିରଳ ସାହିତ୍ୟକୃତି । ସଂସ୍କୃତ ବ୍ୟତୀତ ପାଲି ଓ ପ୍ରକୃତ ଭାଷାରେ ତାଙ୍କର ପାଣ୍ଡିତ୍ୟ ଥିଲା ।

ଭୁବନେଶ୍ୱର ରଥଦାଣ୍ଡ ସାହିରେ ସେ ରହୁଥିଲେ ଏକ ଭଡ଼ା ଘରେ । ତାଙ୍କୁ ଭେଟିବାକୁ ଯାଇଥିଲି ଆନ୍ତର୍ଜାତିକ ବୌଦ୍ଧ ଓ ଜୈନ ଦର୍ଶନ ସେମିନାର ସଂକ୍ରାନ୍ତରେ ତାଙ୍କର ଉପଦେଶ ଜାଣିବା ପାଇଁ । ସେ ଅସୁସ୍ଥ ହୋଇ ଯାଇଥିଲେ ଏବଂ ଅଚଳ ମଧ୍ୟ ହୋଇ ଯାଇଥିଲେ । ମାନସିକ ଭାରସାମ୍ୟ ମଧ ରହୁନଥିଲା । ସେ ସମ୍ବଲପୁରରେ ମୋର ଶିକ୍ଷକ ଥିଲେ । ସେତେବେଳେ ନୂଆ କରି ସମ୍ବଲପୁରରେ କଲେଜ ଖୋଲିଥାଏ ସମ୍ବଲପୁର ଜିଲ୍ଲା ସ୍କୁଲ ଗୃହରେ । କଲେଜର ଅଧ୍ୟାପକମାନେ ସ୍କୁଲରେ ମଧ କ୍ଲାସ ନେଉଥିଲେ ।

ଅଧ୍ୟାପକଙ୍କୁ ପ୍ରଣାମ କରି ଠିଆ ହେଲି । ଜୀବନର ସନ୍ଧ୍ୟା ନଇଁ ଆସୁଥିଲା । ମୁଁ ଆଉ କ'ଣ କରି ପାରିବି ? ତୁମକୁ ଆଶୀର୍ବାଦ କରୁଛି । ଆଖି ଲୁହରେ ଭରି ଯାଉଥିଲା । ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନ ଆଉ ନାହାନ୍ତି । ଏକ ବିରାଟ ଅଧ୍ୟାୟର ଯବନିକା ପଡ଼ି ଯାଇଛି ।



# ସନ୍ନ୍ୟାସୀ ଶିଳ୍ପୀର ଶେଷଯାତ୍ରା

ଗୁରୁଚରଣ ବାବୁ ଫୋନ୍ କଲେ ସକାଳୁ । ପ୍ରସନ୍ନ କୁମାର ପଣ୍ଡା ଆଉ ନାହାନ୍ତି । କ'ଣ ହୋଇଥିଲା ତାଙ୍କର । ରୋଗ ତାଙ୍କୁ ଆକ୍ରମଣ କରିଥିଲା । ପ୍ରଥମେ ବହୁମୂତ୍ର । ତା'ପରେ ଆଖି ଏବଂ ପରିଶେଷର ହୃଦୟ । ଆଖି ପରୀକ୍ଷା ଏବଂ କ୍ୟାଟାରାକ୍ଟ ଅପରେଶନ କରି ଫେରିଥିଲେ ଚେନ୍ନାଇରୁ । ଦେଖା ହୋଇଥିଲା । ଡାକ୍ତର ରମେଶଚନ୍ଦ୍ର ରାୟ ଚୌଧୁରୀ ତାଙ୍କୁ ପରୀକ୍ଷା କରିଥିଲେ । ସବୁ ଠିକ୍ ଥିଲା । କିନ୍ତୁ ସବୁ ନିୟମ କ'ଣ ଡାକ୍ତରୀ ଶାସ୍ତ୍ର ଅନୁଯାୟୀ ଚାଲେ ? ସେ ଅସୁସ୍ଥ ହୋଇ ପଡ଼ିଲେ ପୁଣି । ଡାକ୍ତରଖାନାରୁ ଫେରିଥିଲେ । ସବୁଦିନ ପରି ଯାଇଥିଲେ ପ୍ରାତଃ ଭ୍ରମଣରେ । ଫେରି ପଢୁଥିଲେ ଖବରକାଗଜ ଖଟ ଉପରେ ବସି । ହଠାତ୍ ସବୁ ବନ୍ଦ ହୋଇଗଲା । ସେ ଟଳି ପଡିଲେ ଖଟ ଉପରୁ ।

ସେଦିନ ସମ୍ବଲପୁର କାନ୍ଦୁଥିଲା । ହୀରାକୁଦର ପାଣି ଭିତରେ ଶିହରଣ । ପାଣି ତଳେ ଥିବା ପ୍ରସନ୍ନ ପଣ୍ଡାଙ୍କ ଜନ୍ମମାଟି ରମ୍ଭେଲା ଯେପରି କାନ୍ଦୁଛି । ଗୋଟିଏ ସପ୍ତାହ ଭିତରେ ଓଡ଼ିଶାର ଶିଳ୍ପ ଓ ଶିଳ୍ପୀ ଦରିଦ୍ର ହୋଇ ଯାଇଛନ୍ତି । ଶିଳ୍ପୀ ମୁରଲୀଧର ଟାଲି ଓ ଶିଳ୍ପୀ ପ୍ରସନ୍ନ ପଣ୍ଡା ଚାଲିଯାଇଛନ୍ତି ସେଇଠିକୁ ଯେଉଁଠାରୁ ଆଉ କେହି କେବେ ଫେରି ନାହିଁ । ତୂଳି ଖସି ପଡ଼ିଛି, ଚିତ୍ର ଅଧାରେ ରହି ଯାଇଛି । ପୁଣି ସେ ଦୁଇ ଜଣ ଯାକ ସମ୍ବଲପୁରର ।

ପ୍ରସନ୍ନ ପଣ୍ଡା ସମ୍ବଲପୁରରେ ବାବୁ ନାମରେ ପରିଚିତ । ତାଙ୍କୁ ସାଧାରଣ ମଣିଷ ଡାକନ୍ତି ବାବୁ ବୋଲି । ଯେପରି ତାଳଚେରରେ ବାବୁ କହିଲେ ପବିତ୍ରବାବୁ । ବାଣପୁରରେ ବାବୁ କହିଲେ ଗୋଦାବରୀଶ ବାବୁ । ସେଇ ବାବୁଙ୍କୁ ଦେଖିବାକୁ ଶେଷଥର ପାଇଁ, ଶ୍ରଦ୍ଧାଞ୍ଜଳି ଜଣାଇବା ପାଇଁ ଏ କି ଅସୁମାରି ଭିଡ଼ ! ସମସ୍ତେ ଆସିଛନ୍ତି । ଥାଟ ପଟାଳି ଭିଡ଼ । ଦଳମତ ଗୋଷ୍ଠୀର ଭେଦ ଟଳି ପଡ଼ିଛି । ସମସ୍ତଙ୍କ ଆଖିରେ ଲୁହ । ସେମାନେ ଆସିଛନ୍ତି ଅସରନ୍ତି ମଣିଷର ଧାଡ଼ି । ଚାଷୀ, ଶ୍ରମିକ, ଛାତ୍ର, ମଧ୍ୟବିତ୍ତ, ଦୋକାନୀ, ବୁଦ୍ଧିଜୀବି, ସମାଜସେବୀ ସମସ୍ତେ । ବ୍ରଜରାଜନଗରରୁ ଛୁଟିଛନ୍ତି ଶ୍ରମିକ, କାରଖାନାର କୁହୁଳା ଶ୍ରମିକ ଆପଣାର ପ୍ରତିନିଧିଙ୍କୁ ଶ୍ରଦ୍ଧାଞ୍ଜଳି ଜଣାଇବା ପାଇଁ  ଛୁଟି ଆସିଛନ୍ତି ବୁଡ଼ି ଅଞ୍ଚଳର ହଜାର ହଜାର ସ୍ତ୍ରୀ ପୁରୁଷ, ଯେଉଁମାନଙ୍କର ଥଇଥାନ୍ ପାଇଁ ସେମାନଙ୍କ ପାଇଁ କ୍ଷତିପୂରଣ ପାଇଁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସଂଗ୍ରାମ କରିଥିବା ମହାରଥୀ ପାଇଁ । ହଜାର ହଜାର ସ୍ତ୍ରୀ ଛାତିରେ ହାତ ପିଟି ପିଟି ବାହୁନୁଛନ୍ତି । ବାବୁ କେ ଦେଖିବାର ଲାଗି ଆସିଥିଲୁ, ବାବୁ ଆସୁଚେ ବୋଲି ଶୁନି । କିନ୍ତୁ ଏ ଅବସ୍ଥାରେ ଦେଖିବାର୍ ଲାଗି ଆମର ଭାଗ୍ୟରେ ଥିଲା କାଏଁ ? ଆମର ଲୋକ ଆର୍ କିଏ ଅଛେ ? କିଏ ଶୁନ୍‌ବ ଆମର କଥା ? ପ୍ରସଂନ୍ନ ବାବୁ ବିବାହ କରିନାହାନ୍ତି । ଅବିବାହିତ ଏଇ

ବାବାଜୀ ପାଇଁ ଏକି କାନ୍ଦଣା ? କେଡ଼େ ବଡ଼ ପରିବାର ଏଇ ଅବିବାହିତର ? ପ୍ରସନ୍ନ କୁମାର ପଣ୍ଡା ବାବାଜୀ, ବମ୍ବେ ଲଜ୍‌ର ୧୦୨ ନମ୍ବର ଘର ସମ୍ବଲପୁରରେ ତାଙ୍କର ଆଶ୍ରୟ ସ୍ଥଳ । ହୋଟେଲ୍‌ର ମାଲିକ ପ୍ରସନ୍ନ ବାବୁଙ୍କ ଭକ୍ତ । ସେଇ କୋଠରୀ କେବଳ ପ୍ରସନ୍ନ ବାବୁଙ୍କ ପାଇଁ ଉଦ୍ଦିଷ୍ଟ । ଆଉ କେହି ସେଠାରେ ରହନ୍ତି ନାହିଁ । ଅନେକ ନ ଜାଣିଥିବା ଲୋକ ଆଶ୍ଚର୍ଯ୍ୟ ହୁଅନ୍ତି । ମୁଁ ଜଣେ ଦୁଇ ଜଣ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ଠାରୁ ଶୁଣିଚି । ସର୍ବହରାର ଏଇ ନେତା ହୋଟେଲ ବା ଲଜ୍‌ରେ ସ୍ଥାୟୀ ଭାବରେ ରହେ କେମିତି ?

ରହେ କିମିତି ? ଯାହାର କେହି ନାହିଁ, ଯେ ସବୁ ଢାଳି ଦେଇଛି ଅନ୍ୟ ପାଇଁ ତାର ଇମିତି ଲୋକ ଥାଆନ୍ତି । ଯେପରି ସମ୍ବଲପୁରରେ ବର୍ତ୍ତମାନ ରହନ୍ତି ଅବିବାହିତ ସ୍କୁଲ ଶିକ୍ଷକ ମନ ମୋହନ ପଟ୍ଟନାୟକ । ସେ ଅବିବାହିତ କିନ୍ତୁ କି ବିରାଟ ପରିବାର ତାଙ୍କର । ଅଧ୍ୟାପକ ପ୍ରଫୁଲ୍ଲ କୁମାର ପତି କହନ୍ତି ଆମ ଭଳି ଶିକ୍ଷକଙ୍କୁ ଛାତ୍ରମାନେ ସମ୍ମାନ କରନ୍ତି କିନ୍ତୁ ମନମୋହନ ବାବୁଙ୍କୁ ପୂଜା କରନ୍ତି । ଠିକ୍ ସେଇଭଳି ଅବସ୍ଥା ପ୍ରସନ୍ନ ବାବୁଙ୍କର । ଲୋକେ ତାଙ୍କୁ ପୂଜା କରନ୍ତି । କାଲି ସେ କୋଠରୀ ଖାଲା ହୋଇଯିବ, ଲୁହଭରା ଆଖିରେ ହୋଟେଲ ମାଲିକ କୋଠରୀକୁ ଖାଲି କରିବେ । କିନ୍ତୁ ରହିବ କିଏ ସେଇଠି ?

ପ୍ରସନ୍ନ ବାବୁଙ୍କ ଘର ରମ୍ଭେଲା ଗ୍ରାମରେ । ଇବ ନଦୀ କୂଳରେ ଏକ ସମୃଦ୍ଧିଶାଳୀ ଗ୍ରାମ ହେଉଛି ରମ୍ଭେଲା । ଏଇ ଇବ ନଦୀରେ ବୋହି ଆସେ ବ୍ରଜରାଜନଗରର କାଗଜକଳର ଦୂଷିତ ପାଣି । ଆଜି ଠିକ୍ ସେଇପରି ଦୃଶ୍ୟ ଦେଖିବାକୁ ମିଳେ ତାଳଚେରର ନନ୍ଦିରା ନଦୀରେ । ପାଣି ବିଷାକ୍ତ ହୋଇଯାଏ । ଏହା ବିରୁଦ୍ଧରେ ଜନ ଆନ୍ଦୋଳନ ଗଢ଼ିଉଠେ । ସେତେବେଳେ ପ୍ରସନ୍ନ ବାବୁ କଲିକତାରେ ପ୍ରସିଦ୍ଧ ଆର୍ଟସ୍ କଲେଜର ଛାତ୍ର । ବଂଗ ଦେଶରେ ସାମ୍ରାଜ୍ୟବାଦ ବିରୋଧୀ ଏବଂ ଫାସିବାଦ ବିରୋଧୀ ଉଦ୍‌ବେଳନର ସମୟ । ପୁଣି ପ୍ରସିଦ୍ଧ ବଂଗ ମନ୍ୱନ୍ତରର ସମୟ । ରିଲିଫ୍ ପାଇଁ କାର୍ଯ୍ୟ । ବାମପନ୍ଥୀ, ବିଶେଷତଃ କମ୍ୟୁନିଷ୍ଟମାନେ ଆଗରେ । ବଂଗଳାର ଗଳିରେ ଗଳିରେ ବିପ୍ଳବର ଦାମାମା ଧ୍ୱନି । ପ୍ରସନ୍ନ ପଣ୍ଡା, ଶିଳ୍ପୀ ପ୍ରସନ୍ନ ପଣ୍ଡା ଛିଟିକି ଆସନ୍ତି ସେଇ ଉଦ୍‌ବେଳନ ଭିତରକୁ । ସେ ସାଜନ୍ତି ଏ ଦେଶର ପାବ୍‌ଲୋ ପିକାଶୋ ।

ପ୍ରସନ୍ନ ବାବୁ ଶିଳ୍ପୀ । କେତେ ରମଣୀର ଲାସ୍ୟ, କେତେ ଯୁବକର ଲୁହ, କେତେ ଶିଶୁର ହସ, କେତେ ପ୍ରୋଷିତଭର୍ତ୍ତୃକାର ଚାହାଣୀ ତାଙ୍କ ଚରିତ୍ରରେ ରୂପ ପାଇଛି । କେତେ ଶ୍ରମିକର ଝାଳବୁନ୍ଦା, କେତେ ଚାଷୀର ପରିଶ୍ରମ ବି ରୂପ ପାଇଛି ତାଙ୍କର ଚିତ୍ରରେ । ଏଇ ଶିଳ୍ପୀର ଜୀବନରେ ବି ଏକ ରୋମାଞ୍ଚ ଆସିଥିଲା । ଜୀବନ ସାଥୀଟିଏ କରିବା ପାଇଁ ସେ ଆଙ୍କିଥିଲେ ଚିତ୍ର ଆପଣାର ବୁକୁରେ । କିନ୍ତୁ କାଳଚକ୍ର ଆବର୍ତ୍ତନରେ ତାହା ହୋଇ ପାରିଲା ନାହିଁ । ମୋହରି ଏ ପ୍ରେମଠାରୁ ମୁହିଁ ବଡ଼ ଅଛି ଏହା ଜାଣି — କବିର ଏଇ ଆପ୍ତ ବାଣୀ ସେ ମନେ ରଖିଛନ୍ତି । ସେ ପଛକୁ ଫେରି ଆଉ ଅନେଇ ନାହାନ୍ତି । ବିବାହର ପ୍ରଶ୍ନ ଆଉ ଉଠିବ ନାହିଁ । ସେ ତୂଳୀ, ରେଡିଓ ଏବଂ ସିଗାରେଟ୍ ଭିତରେ ଭୁଲିଗଲେ ଆପଣାକୁ ।

ପ୍ରସନ୍ନ କୁମାର ପଣ୍ଡାଙ୍କ ତୂଳୀ ଆଙ୍କିଲା ଜୀବନର ଛବି । ସେଇ ହାତ ବି ଧରିଲା ଶ୍ରମଜୀବି ମଣିଷର ସ୍ୱାର୍ଥ ପାଇଁ ହତିଆର । ଚରୈବେତି, ଚରୈବେତି, ଚରୈବେତି । ଚାଲ, ଆଗେଇ ଚାଲ,

ପ୍ରସନ୍ନ ବାବୁଙ୍କ ପାରିବାର ସମ୍ପ୍ରସାରିତ ହୋଇଗଲା ସାରା ଦେଶକୁ । ସେଇ ଯୋଗୁଁ ଆଜି ଏଇ ସନ୍ନ୍ୟାସୀ, ଶିଳ୍ପୀ ପାଇଁ କାନ୍ଦଣା ଶୁଭୁଚି ବହୁ ମଣିଷଙ୍କର । ସେମାନେ ସମସ୍ତେ ଯେମିତି ପୁତ୍ର ହରା, ଭାଇ ହରା ହୋଇ ଯାଇଛନ୍ତି । ପ୍ରସନ୍ନ କୁମାର ପଣ୍ଡା ଶିଳ୍ପୀ । କୋମଳ ହେବାର କଥା । କିନ୍ତୁ ସେଇ ଶିଳ୍ପୀ ଫୁଲ ଠାରୁ କୋମଳ, ଲୁହା ଠାରୁ କଠୋର ହୋଇ ପାରନ୍ତି । ସାମୂହିକ ସ୍ୱାର୍ଥ ରକ୍ଷା ପାଇଁ ସେ ବଜ୍ର ଠାରୁ ବି କଠିନ । ସହଜରେ କାହାକୁ ଅନୁରୋଧ ନିବେଦନ କରନ୍ତି ନାହିଁ । ବ୍ୟକ୍ତିଗତ ସ୍ୱାର୍ଥ ରକ୍ଷାର ପ୍ରଶ୍ନ ଉଠୁ ନାହିଁ । କାରଣ ସେ ଆଉ ବ୍ୟକ୍ତି ନ ଥିଲେ, ସମୂହ ଭିତରେ ଲୀନ ହୋଇଯାଇଥିଲେ । ସାଲିସ ସେ କରି ନାହାନ୍ତି କଦାପି । ନିଜର ଡିଣ୍ଡିମ ପିଟି ନାହାନ୍ତି । ବିଧାନସଭାକୁ ସେ ଛଅ ଛଅ ଥର ନିର୍ବାଚିତ ହୋଇଛନ୍ତି । କିନ୍ତୁ ଟିକଟ ପାଇଁ କାକୁତି ମିନତି ହୋଇ ନାହାନ୍ତି । ସେଥିପାଇଁ ନୀତିକୁ ଜଳାଞ୍ଜଳି ଦେଇ ନାହାନ୍ତି । ଅସାଧୁ ମେଣ୍ଟ ପାଇଁ ଉଦ୍ୟମ କରି ନାହାନ୍ତି । ମୂଲ୍ୟବୋଧରେ ହେଉଛନ୍ତି ଉଜ୍ଜ୍ୱଳ ପ୍ରତୀକ । ମୂଲ୍ୟବୋଧ ଭିତ୍ତିକ ରାଜନୀତି, ସମାଜସେବା କ୍ରମେ ଲୋପ ପାଇ ଯାଉଛି । ଟିକଟ ପାଇଁ, ପ୍ରାର୍ଥୀ ହେବା ପାଇଁ, ପେନସନ୍ ପାଇଁ, ପୁଅ ଶଳା ନାମରେ କୋଟା ପରମିଟ୍ ଠିକାଦାରୀ ପେଟ୍ରୋଲ ପମ୍ପ ପାଇଁ ବର୍ତ୍ତମାନର ରାଜନୀତିଜ୍ଞମାନଙ୍କ ଭିତରେ ପ୍ରତିଯୋଗିତା । ପ୍ରସନ୍ନ ବାବୁ ସେ ସବୁରୁ ବହୁ ଊର୍ଦ୍ଧ୍ୱରେ । ତାହା ତାଙ୍କୁ ସ୍ପର୍ଶ କରି ନାହିଁ । ସେ ବ୍ରଜରାଜନଗରର କାଗଜକଳ ଶ୍ରମିକମାନଙ୍କର ଅବିସମ୍ବାଦିତ ନେତା । ଏହାର ମାଲିକ ବିରଳାଙ୍କୁ ଥରେ ପଚରାଗଲା ଯେ ସେ କିଭଳି ଶ୍ରମିକ ନେତାଙ୍କ ସହିତ ନେଗୋସିଏସନ୍ କରିବାକୁ ଚାହିଁବେ ? ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରି ସେ କହିଲେ ପ୍ରସନ୍ନ କୁମାର ପଣ୍ଡାଙ୍କ ଭଳି । ସେ ପରା ଜଣେ କଟ୍ଟର କମ୍ୟୁନିଷ୍ଟ ! ହଁ ତାହା ସତ୍ୟ କିନ୍ତୁ ତାଙ୍କ ସାଙ୍ଗରେ ନେଗୋସିଏସନ୍ କଲେ ସବୁ ରଫା ହେବ ଟେବୁଲ ଉପରେ । ଅଣ୍ଡର ହାଣ୍ଡ ଡିଲ୍ ନାହିଁ । କି ନେଗୋସିଏସନ୍ ପରେ ଗୃହୀତ ସର୍ତ୍ତର ଖିଲାପ ମଧ ନାହିଁ । ଅନ୍ୟମାନଙ୍କୁ ବିଶ୍ୱାସ କରିବା କଠିନ ଏବଂ ଟେବୁଲ ଉପର କଥାବାର୍ତ୍ତା ଯେପରି ବିଶ୍ୱାସବିହୀନ । ଟେବୁଲ୍ ତଳ ଡିଲ୍ ମଧ ସେଇପରି ।

ପ୍ରସନ୍ନ ବାବୁ ନିର୍ବାଚନରେ ପ୍ରାର୍ଥୀ । ଦଳେ କୁଳିନେତା ଯାଇ ବିଜୁ ପଟ୍ଟନାୟକଙ୍କୁ କହିଲେ ଯେ ପ୍ରସନ୍ନ ବାବୁ ଆମର ବିରୋଧୀ, ତାଙ୍କୁ ପାରିବା ସହଜ ନୁହେଁ । ତାଙ୍କୁ ହରାଇବାକୁ ପଡ଼ିବ ଏବଂ ଯେତେ ପରିମାଣ ଅର୍ଥ ଦରକାର ଖର୍ଚ୍ଚ କରିବାକୁ ପଡ଼ିବ । ଆପଣ .... । ସେମାନଙ୍କ ପାଟିରୁ କଥା ସରିନାହିଁ ବିଜୁ ପଟ୍ଟନାୟକ କହିଲେ, ହଇରେ ସେଇଟା ତ ବାବାଜୀ, ସନ୍ନ୍ୟାସୀ । ଘର ନାହିଁ, ଦୁଆର ନାହିଁ । ତାରି ବିରୁଦ୍ଧରେ ମୁଁ ଅଧିକା ପଇସା ଖର୍ଚ୍ଚ କରି ନର୍କକୁ ଯାଇ ପାରିବି ନାହିଁ ।

ପ୍ରସନ୍ନ ବାବୁଙ୍କ ମୃତ୍ୟୁ ସଂବାଦ ଶୁଣି ପୁଲିସ ବିଭାଗର ମହାନିର୍ଦ୍ଦେଶକ ଶ୍ରୀ ଅମୀୟ ଭୂଷଣ ତ୍ରିପାଠୀ କହିଲେ ଯେ ସେ ଭଳି ମଣିଷ ଆଉ ମିଳିବେ ନାହିଁ । କିନ୍ତୁ ଏ ଜାତି ତାଙ୍କୁ ଚିହ୍ନି ପାରିଲା ନାହିଁ । ତାଙ୍କର ସ୍ମୃତି ରକ୍ଷୀ କଣ ହୋଇ ପାରିବ ଜାତୀୟ ସ୍ତରରେ ?

ପ୍ରସନ୍ନ ପଣ୍ଡା ବିଧାୟକ । ତାଙ୍କୁ କେହି ସେତେବେଳେ ଶିଳ୍ପୀ ବୋଲି ଜାଣି ନାହାନ୍ତି । ବିଧାନସଭାରେ କେତେଗୁଡ଼ିଏ ଉତ୍କୃଷ୍ଟ ତୈଳଚିତ୍ର ରଖିବା ପାଇଁ ସ୍ଥିର ହେଲା ଏବଂ ଖୋଜା

ପଡ଼ିଲା ଯେ କେଉଁ ପ୍ରତିଷ୍ଠିତ ଶିଳ୍ପୀଙ୍କୁ ଏଥିପାଇଁ ବରାଦ ଦିଆଯିବ । ଏବଂ କେତେ ଟଙ୍କା ଖର୍ଚ୍ଚ ହେବ ସେଥିରେ । ମହତାବ ବାବୁ କହିଲେ ଯେ ଆମ ଭିତରେ ପ୍ରତିଷ୍ଠିତ ଶିଳ୍ପୀ ଥାଉଁ ଥାଉଁ ଆମେ ଅନ୍ୟ ଆଡ଼କୁ ଯିବା କାହିଁକି ? ଆମ ଭିତରେ ପୁଣି ଶିଳ୍ପୀ, କିଏ ସେ ? ମହତାବ ବାବୁ ଚିହ୍ନାରା ଲୋକ । କହିଲେ ଆମ ବିଧାନ ସଭା ଭିତରେ ପରା ପ୍ରଖ୍ୟାତ ଶିଳ୍ପୀ ଅଛନ୍ତି । ଆମେ ତାଙ୍କୁଇ କହିବା । ସମସ୍ତେ ବିସ୍ମିତ ଭାବରେ ଅନେଇଲେ, କିଏ ସେଇ ପ୍ରଖ୍ୟାତ ଶିଳ୍ପୀ ଯେ ତୁଳୀ ଛାଡ଼ି ଆସିଛନ୍ତି ଏଇ ଜୀବନକୁ ? ଦୂରରେ ଜଣେ ଯୁବକ ସିଗାରେଟ୍ ଟାଣୁଥିଲେ । ମୁହଁରେ ଶ୍ମଶ୍ରୁ ।

ଆଖିରେ ଏକ ନିର୍ଲିପ୍ତ ଉଦାର ଚାହାଣୀ । ସେ ଚାହାଣୀ ଲମ୍ବି ଯାଉଛି ଦିଗନ୍ତକୁ । ସେ ଯେପରି ସ୍ୱପ୍ନାବିଷ୍ଟ । ମହତାବ ବାବୁ ତାଙ୍କୁ ନିର୍ଦ୍ଦେଶ କରି ଆଙ୍ଗୁଠି ଦେଖାଇ କହିଲେ ଯେ ତାଙ୍କୁ ଚିହ୍ନିଛ ? ସମସ୍ତେ ଏକ ସ୍ୱରରେ କହିଲେ ଯେ ହଁ, ସେ ପ୍ରସନ୍ ପଣ୍ଡା, ବ୍ରଜରାଜନଗରର ସଭ୍ୟ । ସେ ହେଉଛନ୍ତି ଶିଳ୍ପୀ । ସେ ହିଁ କରିବେ ଚିତ୍ର । ବୀରେନ୍ ମିତ୍ର ଆଗଭର ଯାଇ କହିଲେ ଯେ ମୁଁ ଯାଉଛି ତାଙ୍କୁ କହିବି । ମହତାବ ବାବୁ କହିଲେ, ସାବଧାନ, ତାଙ୍କୁ ଟଙ୍କା ପଇସା କଥା କହିବ ନାହିଁଟି । ତମେ ସବୁ ପାରିବ ନାହିଁ, ମୁଁ ତାଙ୍କୁ କହିବି । ଚିତ୍ର ଅଙ୍କା ହେଲା ।

ବନ୍ଧୁ ଶ୍ରୀ ଭାଗବତ ପ୍ରସାଦ ମହାନ୍ତିଙ୍କୁ ମୁଁ ଫୋନ୍‌ରେ ଜଣାଇଲି ତାଙ୍କର ମୃତ୍ୟୁ ସଂବାଦ । ସେ ବାଷ୍ପରୁଦ୍ଧ ହୋଇ କହିଲେ ମୂଲ୍ୟବୋଧ ଭିତ୍ତିକ ମଣିଷର ଏକ ଶିଖାଟିଏ ଲିଭିଗଲା । ଅଧ୍ୟାପକ ବୈଦ୍ୟନାଥ ମିଶ୍ର କହିଲେ ଯେ ସେଇଭଳି ମାର୍ଜିତ ସଚ୍ଚୋଟ ଲୋକ ମୁଁ ଖୁବ୍ କମ ଦେଖିଛି ।

ସମାଜର କ୍ରସ ସେକ୍ସନ ଲୋକ ମାନଙ୍କର ସମ୍ମାନ, ଶ୍ରଦ୍ଧା ରହିଥିଲା ତାଙ୍କ ପାଇଁ । ଶିଳ୍ପୀ ସମଧର୍ମା ଶ୍ରୀ ବିନୋଦ ରାଉତ୍‌ରାୟ ମୋତେ କହିଲେ ସେ ରାଜନୀତିରେ ସିନା ହଜି ଗଲେ କିନ୍ତୁ ଚିତ୍ର ଆଙ୍କିବାରେ ନିମଗ୍ନ ରହିବା ବ୍ୟକ୍ତି କେତେ ଜଣ ଅଛନ୍ତି ତାଙ୍କରି ପରି । ପୁଣି ଲଘୁ ଛଳରେ କହିଲେ ବିଡ଼ି ବା ସିଗାରେଟ୍ ଟାଣିବାରେ ମଧ ସେଇପରି ନିମଗ୍ନ ରହୁଥିଲେ ସେ ।

ପ୍ରସନ୍ନ ବାବୁ ଛଅ ଥର ନିର୍ବାଚିତ ହୋଇଛନ୍ତି ବିଧାନସଭାକୁ । କିନ୍ତୁ ସଭ୍ୟପଦ ତାଙ୍କୁ ଦିନେ ହେଲେ ଘାରି ନାହିଁ । ଗୋଟାଏ ଦିଗରୁ ଦେଖିଲେ ସେ ବୋହେମିଆନ୍ କିନ୍ତୁ ସାମଗ୍ରିକ ଦୃଷ୍ଟିରୁ ଦେଖିଲେ ସେ ହେଉଛନ୍ତି ଏକନିଷ୍ଠ । ଭେଜାଲ ତାଙ୍କ ପାଖ ମାଡ଼ି ନାହିଁ । ସେ ଶ୍ରମିକ ନେତା ତେଣୁ ସେ ଶିଳ୍ପପତିମାନଙ୍କର ଦ୍ୱାରସ୍ଥ ହୋଇନାହାନ୍ତି ।

ଗୋଟାଏ ବର୍ଷ ଭିତରେ ଟ୍ରେଡ୍ ୟୁନିୟନ ଆନ୍ଦୋଳନ ତିନି ମହାରଥୀଙ୍କୁ ହରାଇଛି । ଦୁର୍ଗା ଚରଣ ମହାନ୍ତି, ପ୍ରବୀର ପାଲିତ ଓ ପ୍ରସନ୍ନ ପଣ୍ଡା । ପ୍ରସନ୍ନ ପଣ୍ଡାଙ୍କୁ ହରାଇ ଶ୍ରମଜୀବି ଆନ୍ଦୋଳନ ତାର ସବୁଠାରୁ ସଚ୍ଚୋଟ ଏବଂ ଏକନିଷ୍ଠ ସାରଥିକୁ ହରାଇଛି ।

ପ୍ରସନ୍ନ କୁମାର ପଣ୍ଡାଙ୍କର ଚିତା ଜଳୁଛି । ଆପଣାର ଦ୍ୱିତୀୟ ଗ୍ରାମର ଝିଲ୍ଲୀ ପାଖରେ । ମନୋରମ ଦୃଶ୍ୟ ଠିକ୍ ପ୍ରସନ୍ନ ପଣ୍ଡାଙ୍କ ଚିତ୍ର ଭଳି । ତାରି ଛାଇ ନାଚୁଛି ସମ୍ବଲପୁର ଠାରୁ କୋରାପୁଟ, ବେଲପାହାଡ଼ ଠାରୁ ବଡ଼ବିଲ୍, ବ୍ରଜରାଜନଗର ଠାରୁ ସୁନାବେଡ଼ା ।

ପ୍ରସନ୍ନ ବାବୁ - ଲାଲ ସଲାମ ।



# ଅଜାତଶତ୍ରୁ

ଆଜି ସକାଳେ ଖବର ମିଳିଲା ଯେ ପ୍ରାଣନାଥ ପଟ୍ଟନାୟକଙ୍କର କଲିକତା ସହରରେ ପୁଅ ପାଖରେ ପରଲୋକ ହୋଇ ଯାଇଛି ଏବଂ ତାଙ୍କର ସହଧର୍ମିଣୀଙ୍କ ନିର୍ଦ୍ଦେଶାନୁଯାୟୀ ତାଙ୍କର ଅନ୍ତିମକ୍ରିୟା ମଧ୍ୟ ସେଇଠାରେ ଶେଷ ହୋଇ ଯାଇଛି । ବେଶ୍ କିଛି ଦିନ ହେବ ପ୍ରାଣନାଥ ବାବୁ ଅସୁସ୍ଥ ରହୁଥିଲେ ଏବଂ ସକ୍ରିୟ କାର୍ଯ୍ୟରୁ ଅପଣାକୁ ନିଷ୍କ୍ରାନ୍ତ କରିନେଇଥିଲେ । ଆମ ଦେଶରେ ଘୋଡ଼ା ଦୌଡ଼ୁଥିବା ପର୍ଯ୍ୟନ୍ତ ସମସ୍ତେ ସମ୍ମାନ ଦେଖାନ୍ତି କିନ୍ତୁ ଘୋଡ଼ା ଯଦି ଅଚଳ ହୋଇଗଲା ଠାଁ ହେଲେ ମରିବା ପୂର୍ବରୁ ମଧ୍ୟ ତାର ଟାଙ୍କ କେହି ଗଣନ୍ତି ନାହିଁ । ସିଏ କୁଆଡ଼େ ଗଲା କେହି ଖବର ନିଅନ୍ତି ନାହିଁ । ଭାଗ୍ୟ ଭଲ ପ୍ରାଣନାଥ ବାବୁଙ୍କ ସବୁ ପିଲାମାନେ ପ୍ରତିଭାଶାଳୀ ଏବଂ ଭଲ ଭଲ ନିଯୁକ୍ତିରେ ଅବସ୍ଥାପିତ । ପ୍ରାଣନାଥ ବାବୁଙ୍କ ଦୀର୍ଘ ରାଜନୈତିକ ଜୀବନର ଉତ୍ଥାନ ପତନ ଭିତରେ ସହଧର୍ମିଣୀ ମଂଜରୀ ପଟ୍ଟନାୟକ ଘର ସମ୍ଭାଳିଛନ୍ତି ଏବଂ ପିଲାମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବାରେ ହେଳା କରିନାହାନ୍ତି । ସେଇଯୋଗୁଁ ପ୍ରାଣନାଥ ବାବୁ ଟିକିଏ ଆରାମରେ ମରି ପାରିଛନ୍ତି । ଖୋର୍ଦ୍ଧାର ଜନସାଧାରଣ, କମ୍ୟୁନିଷ୍ଟ ପାର୍ଟିର କିଛି କର୍ମୀ ଓ ନେତା ତାଙ୍କର ମରଦେହକୁ ଖୋର୍ଦ୍ଧାକୁ ପଠାଇଦେବା ପାଇଁ ଅନୁରୋଧ କରିଥିଲେ । ସକାଳୁ ଖବର ମଧ୍ୟ ମିଳିଲା ଯେ ଖୋର୍ଦ୍ଧା କଲେଜର ଛାତ୍ରମାନେ ଅଡ଼ି ବସିଛନ୍ତି ଯେ ପ୍ରାଣନାଥ ପଟ୍ଟନାୟକଙ୍କର ଉଦ୍ୟମରେ ଗଠିତ କଲେଜକୁ ଆଜି ହିଁ ପ୍ରାଣନାଥ ମହାବିଦ୍ୟାଳୟ ନାମରେ ନାମିତ ହେବ । ଉତ୍ତର ପୀଢ଼ିର ଏଇ ଦାବୀ ଶୁଣି ମୁଗ୍ଧ ହେଲି । ସେମାନେ ଦାବୀ ନ କଲେ ରାଜନୈତିକ ଲୁତା ଜାଲରେ ହୁଏ ଏଇ ନାମକରଣ ହେବ କି ନାଇଁ ସନ୍ଦେହ । ଛାତ୍ରମାନେ ହିଁ ଏହି ଯଥାର୍ଥ ନାମ କରଣକୁ ନିଶ୍ଚିତ କରି ପାରିବେ ।

ଓଡ଼ିଶାର ଯେଉଁ କେତେକ ମୁଷ୍ଟିମେୟ ଯୁବକ ଇତିହାସ ପ୍ରସିଦ୍ଧ କାଶୀ ବିଦ୍ୟାପୀଠରେ ପାଠ ପଢ଼ିବାର ସୁଯୋଗ ପାଇଥିଲେ ସେମାନଙ୍କ ମଧ୍ୟରେ ପାଣନାଥ ପଟ୍ଟନାୟକ ଅନ୍ୟତମ । କାଶୀ ବିଦ୍ୟାପୀଠ ପ୍ରତିଷ୍ଠା କରିଥିଲେ ପଣ୍ଡିତ ମଦନ ମୋହନ ମାଲବ୍ୟ । ସ୍ୱାଧୀନତା ଆନ୍ଦୋଳନ ସମୟରେ ଆନ୍ଦୋଳନରେ ଯୋଗଦେଇଥିବା ଯୁବକ ଯବୁତୀମାନେ ଏଇଠି ପାଠ ପଢ଼ୁଥିଲେ — ଦୁଇ ଆନ୍ଦୋଳକ ଭିତରେ ମିଳୁଥିବା ସମୟ ଭିତରେ । କାଶୀ ବିଦ୍ୟାପୀଠ ପରବର୍ତ୍ତୀ କାଳରେ ବଢ଼ି ବଢ଼ି ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ପରିଣତ ହେଲା । ସ୍ୱାଧୀନତା ସଂଗ୍ରାମର ପ୍ରବୁଦ୍ଧ ସେନାପତି ମାନେ ଏଇଠି ପାଠ ପଢ଼ାଉଥିଲେ । ସେମାନଙ୍କ ମଧ୍ୟରେ ଆଚାର୍ଯ୍ୟ କ୍ରିପଲାନୀ. ବି.ଭି. ବେଶକାର , ଶ୍ରୀ ପ୍ରକାଶ ପ୍ରଭୃତି ତାଙ୍କର ଶିକ୍ଷକ ଥିଲେ । ସେତିକିବେଳେ ସେଠାରେ ଓଡ଼ିଶାରୁ ଶ୍ରୀ ଗୁରୁଚରଣ ପହଞ୍ଚନ୍ତି । ପ୍ରାଣନାଥ, ଗୁରୁଚରଣ ସାମ୍ୟବାଦୀ

ଦର୍ଶନରେ ଦୀକ୍ଷିତ ହୁଅନ୍ତି ଏବଂ ଓଡ଼ିଶା ଆସି ଭଗବତୀ ଚରଣ ପାଣିଗ୍ରାହୀଙ୍କ ସହିତ ମିଶି କମ୍ୟୁନିଷ୍ଟ ପାର୍ଟି ଗଠନ କରନ୍ତି । ଏହି ତ୍ରୟ ହେଉଛନ୍ତି ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟିର ପ୍ରତିଷ୍ଠାତା ସଭ୍ୟ ।

କମ୍ୟୁନିଷ୍ଟ ମାନେ ପ୍ରଥମେ କଂଗ୍ରେସ ଭିତରେ ଏବଂ ପରେ କଂଗ୍ରେସ ସୋସାଲିଷ୍ଟ ପାର୍ଟି ଭିତରେ କାର୍ଯ୍ୟ କରୁଥିଲେ । କଂଗ୍ରେସ ସୋସାଲିଷ୍ଟ ପାର୍ଟି ଓଡ଼ିଶାରେ ଗଠିତ ହୁଏ ଏବଂ ଏହାର ପ୍ରଥମ ସମ୍ମିଳନୀର ସଭାପତି ହେଉଛନ୍ତି ପ୍ରାଣନାଥ ପଟ୍ଟନାୟକ । ୧୯୩୭ ମସିହା ନିର୍ବାଚନରେ ପ୍ରାଣନାଥ ବାବୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୁଅନ୍ତି ।

ଜାତୀୟ ଆନ୍ଦୋଳନ ସହିତ କୃଷକ ଆନ୍ଦୋଳନ ଗଢ଼ି ତୋଳନ୍ତି ପ୍ରଥମେ ପୁରୀ ଜିଲ୍ଲାରେ । ପରେ ଗଂଜାମ ଜିଲ୍ଲା ପ୍ରଭୃତିକୁ ଏହା ସମ୍ପ୍ରସାରିତ ହୁଏ । ଏଇ ଉଭୟ ଜିଲ୍ଲାରେ ଏହା ବ୍ୟାପକ ଜନ ଆନ୍ଦୋଳନରେ ପରିଣତ ହୁଏ । ସେଇଯୋଗୁଁ ଏହି ଦୁଇ ଜିଲ୍ଲା ପ୍ରଥମେ କଂଗ୍ରେସ ସୋସାଲିଷ୍ଟ ପାର୍ଟି ଏବଂ ପରେ କମ୍ୟୁନିଷ୍ଟ ପାର୍ଟିର ଦୁର୍ଗ ପାଲଟେ ।

୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନରେ ପ୍ରାଣନାଥ ପଟ୍ଟନାୟକଙ୍କୁ କାରାବରଣ କରନ୍ତି ଏବଂ ବ୍ରହ୍ମପୁର ସ୍ୱତନ୍ତ୍ର ଜେଲ୍‌ରେ ୧୯୪୫ ମସିହା ପର୍ଯ୍ୟନ୍ତ ରହନ୍ତି । ସେଇଠି କମ୍ୟୁନିଷ୍ଟ ପାର୍ଟିର ବିଶାଳ ଭିତ୍ତି ଗଢ଼ିଉଠେ । ସାଧୁଚରଣ ମହାନ୍ତି, ଗୋବିନ୍ଦ ପ୍ରଧାନ, ହରିହର ଦାସ ପ୍ରଭୃତି ଗଂଜାମ ଜିଲ୍ଲା, ପୁରୀ ଜିଲ୍ଲାରେ ବିଶାଳ କୃଷକ ସଭା ଗଠନ କରନ୍ତି ।

ଭାରତବର୍ଷ ସ୍ୱାଧୀନ ହୁଏ । କିନ୍ତୁ ଏଇ କ'ଣ କଳ୍ପିତ ସ୍ୱାଧୀନତା ? ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ଗଢ଼ି ତୋଳିବାକୁ ହେବ - ଚାଷୀ, ମଜଦୁର, ବୁଦ୍ଧିଜୀବିମାନଙ୍କ ପାଇଁ । ପ୍ରାଣନାଥ ପଟ୍ଟନାୟକ ପୁଣି ଗିରଫ ହୁଅନ୍ତି ଏବଂ ବ୍ରହ୍ମପୁର ଜେଲ୍‌ରେ ଐତିହାସିକ ୫୬ ଦିନ ବ୍ୟାପୀ ଉପବାସ ବା ଅନଶନ କରନ୍ତି । ସ୍ୱାସ୍ଥ୍ୟ ଭାଙ୍ଗିଯାଏ ।

ଜେଲ୍‌ରୁ ଖଲାସ ହୋଇ ସେ କମ୍ୟୁନିଷ୍ଟ ପାର୍ଟିର ପୁନର୍ଗଠନରେ ଲାଗି ପଡ଼ନ୍ତି ଏବଂ ପ୍ରସିଦ୍ଧ କଂଗ୍ରେସ ନେତା ବନମାଳୀ ପଟ୍ଟନାୟକଙ୍କୁ ହରାଇ ବିଧାନସଭାକୁ ନିର୍ବାଚିତ ହୁଅନ୍ତି ।

ପ୍ରାଣନାଥବାବୁ ଅଜାତଶତ୍ରୁ । କମ୍ୟୁନିଷ୍ଟ ପାର୍ଟି ବିଭାଜିତ ହୋଇଛି । ତାଙ୍କର ବହୁ କର୍ମୀ, ସହକର୍ମୀ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଛାଡ଼ି ମାର୍କ୍ସବାଦୀ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଛନ୍ତି । ମୋ ପାଇଁ ମଧ ଏଇଠି ଖଟିଆଟିଏ ପକାଇବ । ସେ କହନ୍ତି ମାର୍କ୍ସବାଦୀ କମ୍ୟୁନିଷ୍ଟ ପାର୍ଟିର ଅଫିସ ପରିଚାଳକ କୁଞ୍ଜନ ରାମକୁ ।

ପ୍ରାଣନାଥ ବାବୁ ଗଢ଼ିବାକୁ ବସନ୍ତି ଖୋର୍ଦ୍ଧାରେ ଏକ କଲେଜ । ସେଥିପାଇଁ ସେ ଯେଉଁ ପରିଶ୍ରମ କରିଛନ୍ତି ତାହା ଯେ କୌଣସି ଲୋକକୁ ଅଭିଭୂତ କରିବ । କଟକ ଠାରୁ କଲିକତା ପର୍ଯ୍ୟନ୍ତ ସେ ସବୁଠି ଥାଳ ଧରି ବୁଲିଛନ୍ତି କଲେଜ ପାଇଁ, ଅର୍ଥ ସଂଗ୍ରହ ପାଇଁ । ମାଛ ବ୍ୟବସାୟଠାରୁ ଆରମ୍ଭ କରି ସାଂସ୍କୃତିକ କାର୍ଯ୍ୟକ୍ରମ ପର୍ଯ୍ୟନ୍ତ ବିଭିନ୍ନ ପନ୍ଥାରେ ସେ ଅର୍ଥ ଆଦାୟ କରିଛନ୍ତି କଲେଜ ପାଇଁ ।

ପ୍ରାଣନାଥ ବାବୁଙ୍କ ମତାନ୍ତର ଅନେକ ଲୋକଙ୍କ ସହିତ କିନ୍ତୁ ମନାନ୍ତର କାହାରି ସହିତ ନାହିଁ । ବିନୟୀ, ମିଷ୍ଟଭାଷୀ, ହସହସ ମୁହଁର ପ୍ରାଣନାଥ ପଟ୍ଟନାୟକ ଶତ୍ରୁକୁ ବି କିଣିନେଇ

ପାରନ୍ତି । କାହାକୁ ନ୍ୟୁନ କରି ଦେଖିବା ବା କୌଣସି ବ୍ୟକ୍ତିର ମତକୁ  କରିବା ତାଙ୍କର ଧର୍ମ ନ ଥିଲା ।

ଜଣେ ପ୍ରଗତିଶୀଳ ଆଇ.ଏ.ଏସ୍ ଅଫିସର ଥିଲେ ଜମିଜମା ବିଭାଗର ପ୍ରମୁଖ ଅଫିସର । ତାଙ୍କ ପାଖକୁ ପ୍ରାଣନାଥ ବାବୁଙ୍କ ନେତୃତ୍ୱରେ ଏକ ପ୍ରତିନିଧି ଦଳ ଯାଉଥିଲେ ଏଖରାକାତ ମାହାଲ ଜମି ସଂକ୍ରାନ୍ତରେ । ଅଫିସର ଜଣକ ସବୁ ଆଇନର ତର୍ଜମା କରି କହିଲେ ଯେ ଆଇନର ପରିସର ଭିତରେ କିଛି ଆଖିଦୃଶିଆ କଥା ହୋଇ ପାରିବ ନାହିଁ । ପ୍ରାଣନାଥ ବାବୁ ନଛୋଡ଼ ବନ୍ଧା, ଯୁକ୍ତି ଚାଲିଲା । ଏକ କ୍ଳାନ୍ତ ପ୍ରାଣନାଥ ପଟନାୟକ  ପରିଶେଷରେ ପଚାରିଲେ ଉକ୍ତ ଅଫିସରଙ୍କୁ । କ'ଣ କିଛି ହୋଇ ପାରିବ ନାହିଁ ? ଉକ୍ତ ଅଫିସର କହିଲେ, ଆଜ୍ଞା ସବୁ ହୋଇ ପାରିବ, ଚାହିଁଲେ ହେଲା । ଉଦଗ୍ରୀବ ପ୍ରାଣନାଥ ବାବୁ ପଚାରିଲେ କ'ଣ କରିବାକୁ ହେବ ?  ଉକ୍ତ ଅଫିସର ଧୀର ଶାନ୍ତ ଭାବରେ କହିଲେ ଯେ  ପ୍ରଚଳିତ ଆଇନର ପରିବର୍ତ୍ତନ ପାଇଁ ଏକ ବିପ୍ଳବ । ପ୍ରାଣନାଥ ବାବୁ ଚଉକୀରେ ଆଉଜି ପଡ଼ି କହିଲେ, ତମେ ଠିକ୍ କହିଛ । ବିନା ବିପ୍ଳବରେ ଏହାର ପରିବର୍ତ୍ତନ ସମ୍ଭବ ନୁହେଁ ।

ସେ ଅଫିସର ଜଣକ ହେଉଛନ୍ତି ଅବସର ପ୍ରାପ୍ତ ମୁଖ୍ୟ ସଚିବ ରମାକାନ୍ତ ମିଶ୍ର ।

ପ୍ରାଣନାଥ ବାବୁଙ୍କର ଖଇନି ଖାଇବା ଏକ ଅଭ୍ୟାସ । ଓଠ ତଳେ ଖଇନି ଚାପି ସେ କହନ୍ତି ବେଶ୍ ସ୍ପଷ୍ଟ ଭାବରେ, ସବୁକଥା । ସେ ବିନୟୀ କିନ୍ତୁ ନିଜ ମତରେ କଦାପି ସାଲିସ କରନ୍ତି ନାହିଁ ।

ପ୍ରାଣନାଥ ହେଉଛନ୍ତି ଓଡ଼ିଶାର ଚାଷୀ ଆନ୍ଦୋଳନ, ସମାଜବାଦୀ ଆନ୍ଦୋଳନର ଏକ ଅଧ୍ୟାୟ ।

ପ୍ରାଣନାଥ ଥରେ ଅସୁସ୍ଥ ହୋଇ କଲିକତାରେ ରହନ୍ତି । ସେତିକିବେଳେ ସେ ଧାରାବାହିକ ଭାବରେ ଲେଖନ୍ତି ଏକ ପତ୍ରିକାରେ ଓଡ଼ିଶା ପ୍ରଗତିଶୀଳ ସାହିତ୍ୟର ଇତିହାସ । ଏଇ ଲେଖା ପରେ ବହି ଆକାରରେ ପ୍ରକାଶିତ ହୁଏ । ଏବଂ ଜଣେ ଲେଖକ, ସାହିତ୍ୟିକ ଭାବରେ ସେ ପ୍ରତିଷ୍ଠିତ ହୁଅନ୍ତି । ତାଙ୍କ ରଚିତ ପୁସ୍ତକାବଳୀରେ  ସାହିତ୍ୟ, ସମାଜର ସମୀକ୍ଷା ତାଙ୍କୁ ତ ଆଣିଦେଲା ପ୍ରତିଷ୍ଠା, ଏହା ସାହିତ୍ୟର ଏକ ନୂତନ ଦିଗନ୍ତ  ଉନ୍ମୋଚିତ କଲା । ଓଡ଼ିଶାର ପ୍ରଗତିଶୀଳ ସାହିତ୍ୟର ରେକର୍ଡ  ରହି ପାରି ନ ଥାନ୍ତା, ପ୍ରାଣନାଥ ବାବୁଙ୍କର ଉଦ୍ୟମ ବିନା ।

ପ୍ରାଣନାଥ ବାବୁ ନାହାନ୍ତି । ଖୋର୍ଦ୍ଧାର କଲେଜ ନିଶ୍ଚୟ ପ୍ରାଣନାଥ ମହାବିଦ୍ୟାଳୟରେ ପରିଣତ ହେବ ଏଥିରେ ସଂଦେହ ନାହିଁ । ସେଇ କଲେଜ ତାଙ୍କର ଜୀବନକୁ ଜୀବିତ କରି ରଖିବ ମହାକାଳ ବକ୍ଷରେ ।



# ମହାକାଳର ସୁଅ ମୁହଁରେ ଭାସି ଯାଇଥିବା ପତର

ଗଲା କେତେ ବର୍ଷ ହେବ କଲମ ଥିର ହୋଇଯାଇଥିଲା । କିନ୍ତୁ ମୁହଁର ହସ ଥିଲା ସେଇପରି ଅନାବିଳ, ମାର୍ମିକ । ଦେଖାହୁଏ ମଝିରେ ମଝିରେ । ବିବାହ ଉତ୍ସବ, ବ୍ରତ, ବନ୍ଧୁ ମିଳନରେ । ପଚାରନ୍ତି ସମସ୍ତଙ୍କ କଥା, ହେରନ୍ତି ଗଲା ଦିନର ସ୍ମୃତ ।

୧୯୧୪ ମସିହା ଡିସେମ୍ବର ୧ ତାରିଖରେ ତାଙ୍କର ଜନ୍ମ । ଘର ବାଙ୍କି ଡମପଡ଼ାରେ । ଜନ୍ମ ହୋଇଥିଲେ କିନ୍ତୁ ପୁରୀରେ । ଏମ.ଏ.ଡି.ଇଡି. ପାସ୍ କରି ସେ ଅଧ୍ୟାପନାକୁ ହିଁ ଆପଣାର ଜୀବିକା ଭାବରେ ଗ୍ରହଣ କରିଥିଲେ । ରେଭେନ୍ସା କଲେଜରେ ସେ ଆମ ସମୟରେ ଅଧ୍ୟାପକ ଥିଲେ । କେତେକ ଅଧ୍ୟାପକଙ୍କୁ ଦେଖିଲେ ଡର ମାଡ଼େ । ପ୍ରାଣବନ୍ଧୁ କର କିନ୍ତୁ ଥିଲେ ସ୍ୱତନ୍ତ୍ର । ସେ ମେଳାପି ମଣିଷ, ଛାତ୍ରମାନଙ୍କ ସହିତ ଯେମିତି, ସହକର୍ମୀ ମାନଙ୍କ ପ୍ରତି ସେମିତି । ଛାତ୍ର ଓ ଶିକ୍ଷକ ଭିତରେ ଭେଦର ପାଚେରୀ ନ ଥିଲା । ପିଲାଙ୍କ ସଙ୍ଗରେ ହସ ଖୁସି ଗଳ୍ପ ବେଶ୍ ଜମାନ୍ତି ସେ ।

ଗଳ୍ପ ଲେଖନ୍ତି । ଲେଖନ୍ତି କ୍ଷୁଦ୍ର ନାଟକ । ତାଙ୍କର ନାଟକ ଯେପରି ଜନପ୍ରିୟ, ତା'ଠାରୁ ବେଶୀ ଜନପ୍ରିୟ ଗଳ୍ପମାଳା । କଲେଜରେ ତାଙ୍କର ଗଳ୍ପ ଓ ନାଟକ ପଢ଼ିନଥିବା ଲୋକଟିଏ ମିଳିବା କଠିନ । କଳାର ଛାତ୍ରମାନେ ସେଗୁଡ଼ିକୁ ଯେପରି ଗ୍ରହଣ କରନ୍ତି, ବିଜ୍ଞାନର ଛାତ୍ରମାନେ ମଧ୍ୟ ସେଇପରି । ବଡ଼ ବଡ଼ ସମସ୍ୟାକୁ ସରଳ କଥାରେ ଉପସ୍ଥାପନ କରିବା ଥିଲା ତାଙ୍କର ବିଶେଷତ୍ୱ । ତାଙ୍କର ନାଟକ ଉପସ୍ଥାପନା ପାଇଁ ଅନୁମତି ଦରକାର ପଡୁ ନ ଥିଲା । ଅନୁମତି ମାଗିଲେ ସେ ହସି ହସି କହନ୍ତି, ତମେ ଏକ ବ୍ୟତିକ୍ରମ, ନିୟମ ନୁହଁ । ନାଟକ ଅଭିନୀତ ହେଲେ ସେ ଦର୍ଶକ ମାନଙ୍କ ମଧ୍ୟରେ ସେମାନଙ୍କର ପ୍ରତିକ୍ରିୟା ଲକ୍ଷ୍ୟ କରନ୍ତି । ନାଟକର ଲେଖକ ବୋଲି କୌଣସି ସ୍ୱତନ୍ତ୍ର ମର୍ଯ୍ୟାଦା ମାଗନ୍ତି ନାହିଁ ବରଂ ଦର୍ଶକ ଗ୍ରହଣରେ ବସି ଆନନ୍ଦ ପାଆନ୍ତି । ୧୯୩୩ ମସିହାରୁ ତାଙ୍କର ଲେଖା ଆରମ୍ଭ ହୁଏ । ତାଙ୍କର ପ୍ରଥମ କ୍ଷୁଦ୍ର ଗଳ୍ପ ହେଉଛି 'କ୍ରାନ୍ତି' । ଏହା ପଣ୍ଡିତ ନୀଳକଣ୍ଠ ଦାସଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ଏବଂ ତାଙ୍କର ପତ୍ରିକା 'ନବଭାରତ'ରେ ଏହା ପ୍ରକାଶିତ ହେବାର ଗୌରବ ଲାଭ କରିଥିଲା ।

ଅନେକ ନାଟକ, ଗଳ୍ପ ତାଙ୍କର କଲମରୁ ସୃଷ୍ଟି ହୋଇଛି । ଛାତ୍ର ଜୀବନରେ ପ୍ରଗତିଶୀଳ ଚିନ୍ତାଧାରା ସହିତ ସେ ସଂପୃକ୍ତ ଥିଲେ । ଜୀବନର ଝଡ଼ ଭିତରେ ତାହା ଅବଶ୍ୟ ଦାନା ବାନ୍ଧି ପାରି ନ ଥିଲା । କିନ୍ତୁ ରକ୍ଷଣଶୀଳତା ତାଙ୍କୁ ଆଦୌ ଛୁଇଁ ପାରି ନ ଥିଲା । ସେ 'ମାଟିର

ମଣିଷ' ଉପନ୍ୟାସର ନାଟ୍ୟରୂପ ଦେଇଥିଲେ ଏବଂ ସେଥିପାଇଁ ସମ୍ମାନ ଲାଭ କରିଥିଲେ । ସେ ଖାଲି ନାଟକ ଲେଖନ୍ତି ନାହିଁ , ନିର୍ଦ୍ଦେଶ ଏବଂ ମଞ୍ଚରୂପ ମଧ୍ୟ ଦିଅନ୍ତି । 'ଶ୍ୱେତପଦ୍ମା' ନାଟକ ତାଙ୍କ ଜୀବନରେ ଏକ ମାଇଲଖୁଣ୍ଟ । ଓଡ଼ିଶା ସାହିତ୍ୟ ଏକାଡେମୀ, କେନ୍ଦ୍ର ସଂଗୀତ ନାଟକ ଏକାଡେମୀ ଉତ୍କଳ ପାଠକ ସଂସଦ ପ୍ରଭୃତି ବହୁ ଅନୁଷ୍ଠାନଦ୍ୱାରା ସେ ସମ୍ମାନିତ ହୋଇଛନ୍ତି । ନାସନାଲ ବୁକ୍ ଟ୍ରଷ୍ଟ ତାଙ୍କର ନାଟକ 'ଅଶାନ୍ତ' ଏବଂ 'ପାଗଳ ଜନତାର ବାହାରେ' କୁ ଭାରତର ୧୪ଟି ଭାଷାରେ ଅନୁଦିତ କରିଛି ।

ପ୍ରାଣବନ୍ଧୁ କରଙ୍କର ଫୁଲବ୍ରାଇଟ ବୃତ୍ତି ପାଇଁ ପୃଥିବୀର ବିଭିନ୍ନ ଦେଶ ପରିଭ୍ରମଣ କରିଥିଲେ ।

ରହିଯାଇଥିଲେ କିନ୍ତୁ ସେଇପରି ବୀନିତ, ନମ୍ର ଏବଂ ଭଦ୍ର । ବନ୍ଧୁ ଗହଣରେ ସେ ହଜିଯାଆନ୍ତି । ଚା ଏବଂ ଗଳ୍ପ ତାଙ୍କୁ ଦିଏ ନୂତନ ଜୀବନ୍ୟାସ ।

ମାର୍ଚ୍ଚ ୩୦, ୧୯୯୮ । ସେ ଦିନର ସଂଧ୍ୟା ହେବା ପୂର୍ବରୁ ପ୍ରାଣବନ୍ଧୁ କରଙ୍କର ଜୀବନର ସନ୍ଧ୍ୟା ଆସି ଯାଇଥିଲା । ସୂର୍ଯ୍ୟ ବୁଡ଼ିଗଲ ପରେ ମଧ୍ୟ ବହୁ ସମୟଧରି ତାର ଲୋହିତ ଆଭା ପୃଥିବୀକୁ ବିମୋହିତ କରି ରଖେ । ଠିକ୍ ସେଇପରି ପାଣବନ୍ଧୁ କର ଆଉ ନାହାନ୍ତି ସତ୍ୟ କିନ୍ତୁ ଆଜିଠାରୁ ବହୁ ବର୍ଷ ପର୍ଯ୍ୟନ୍ତ ତାଙ୍କୁ ପାଠକକୁଳ ମନେ ରଖିବେ ତାଙ୍କର ନାଟକ ପାଇଁ, ଗଳ୍ପ ପାଇଁ । ମାଟି ଉପରେ ଓଡ଼ିଆ ସାହିତ୍ୟ ରହିଥିବା ପର୍ଯ୍ୟନ୍ତ ସ୍ମୃତିର ଆକାଶରେ 'ଅନେକ ଆକାଶ' ସ୍ମୃତ ହୋଇ ରହିଥିବ ।



# ଫକୀର ବିପ୍ଳବୀ

ଫନିଦାର ପରଲୋକ ସଂବାଦ ପାଇଲା ବେଳକୁ ତାର ମରଦେହ ପୋଡ଼ି ପାଉଁଶ ହୋଇସାରିଛି । ସମବେଦନା ଜଣାଇବା ପାଇଁ କୌଣସି ବ୍ୟକ୍ତି ନାହିଁ । କାରଣ ଫନିଦାର ପରିବାର ନାହିଁ । ସମସ୍ତଙ୍କର ପରିବାର ତା'ର ପରିବାର, କେଶବ ଚନ୍ଦ୍ର ଦାସଙ୍କ ରାଣୀହାଟ ଘରଠାରୁ ନନ୍ଦିନୀ ଶତପଥୀଙ୍କ ଘର ପର୍ଯ୍ୟନ୍ତ, କମ୍ୟୁନିଷ୍ଟ ପାର୍ଟି ଅଫିସରୁ ଆରମ୍ଭ କରି ଡକ୍ଟର ହରେକୃଷ୍ଣ ମହତାବଙ୍କ ଘର ପର୍ଯ୍ୟନ୍ତ ସବୁଠି ତାର ଅବାଧ ଗତି । ତାର ଗତିକୁ ରୋକିବ କିଏ ? ଏକ ଧଳା ପେଣ୍ଟଲୁନ, ସେ ପୁଣି ବେସାଇଜିଆ । ଅଣ୍ଡର ଉଏର, ଗେଞ୍ଜି, ରୁମାଲ ଏ ସବୁ ଫଂନିଦା କେବେ ଦେଖିଥିଲା କି ନାହିଁ କହିହେବ ନାହିଁ । ଦେହରେ ଗୋଟାଏ ହାଓ୍ୱାଇ ସାର୍ଟ (ସେଥିରେ ବୋତାମ ନାହିଁ) , କାନ୍ଧରେ ଗୋଟାଏ ନାଲି ଗାମୁଛା, ହାତରେ ଗୋଟାଏ ହୋମିଓପାଥିକ୍ ବାକ୍ସ ଏଇତକ ହେଉଛି ଫନିଦାର ସର୍ବମୋଟ ସମ୍ପତ୍ତି । ଘର ନାହିଁ, ଦୁଆର ନାହିଁ, ପରିବାର ନାହିଁ । ସତେ ଯେପରି ଏକ ବୁଲା ଫକୀର । କେବେ ସେ କୌଣସି ଏକ ଝିଅକୁ ବିଭା ହେବା ପାଇଁ ଇଚ୍ଛା କରିଥିଲା ବୋଲି ବନ୍ଧୁମାନେ ତାକୁ ଥଟ୍ଟା କରନ୍ତି । ସମସ୍ତେ ତାକୁ ଫନିଦା ବୋଲି ଡାକନ୍ତି । ବୁଢ଼ା ଠାରୁ ଛୁଆ ପର୍ଯ୍ୟନ୍ତ । ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ଗୁରୁଚରଣ ପଟ୍ଟନାୟକ, ରାମକୃଷ୍ଣ ପତି, ନନ୍ଦିନୀ ଶତପଥୀ, ଲୋକନାଥ ଚୌଧୁରୀ, ବିଶ୍ୱନାଥ ପଣ୍ଡିତ, ଡାକ୍ତର ରବି ଘୋଷ ସବୁ ଦଳ ସବୁ ମତର ଲୋକଙ୍କ ପାଖରେ ସେ ଫନିଦା । ସେ ଔଷଧ ଦିଏ, ବେମାର ଖବର ଶୁଣିଲା କ୍ଷଣି ପହଞ୍ଚିଯାଏ । ଏକ ଡିସ୍ ଆରମିଙ୍କ୍ ପ୍ରାଣଖୋଲା ହସ । ହୋମିଓପ୍ୟାଥି ହିସାବରେ ତାର ନାଁ ଥିଲା । ଭଲ ଔଷଧ ଦିଏ । ପଇସା ଔଷଧ ପାଇଁ କାହାଠାରୁ ନିଏନା । କିନ୍ତୁ ବନ୍ଧୁମାନେ ତାର ଔଷଧ ବାକ୍ସ ଆବଶ୍ୟକତା ଜାଣି କେବେ କେବେ ସାହାଯ୍ୟ କରନ୍ତି । ଦେଲେ ଭଲ ନ ଦେଲେ ଭଲ । ତାର କୌଣସି କଥାକୁ ଖାତିର ନ ଥାଏ । ଫନିଦା ଘର ବଙ୍ଗଳାରେ । କିନ୍ତୁ ରାଜନୈତିକ କାର୍ଯ୍ୟ ପାଇଁ ଦୁଇ ଭାଇ ବ୍ରଜେନ ପାଲ ଏବଂ ଫନି ପାଲ ଆସିଥିଲେ ଓଡ଼ିଶା ଏବଂ ରହି ଯାଇଥିଲେ ଏଇଠି । ମଧୁପୁର ରାଜା, ଆଳି ରାଜାଙ୍କ ବିରୁଦ୍ଧରେ ସଂଗ୍ରାମର ନେତୃତ୍ୱ ନିଅନ୍ତି ଫନି ପାଲ । ଅକଥନୀୟ କଷଣ ସହିବାକୁ ପଡ଼େ ତାକୁ । ରାଜ ଦରବାରର ଗୁଣ୍ଡାମାନଙ୍କ ଆକ୍ରମଣରେ କେତେ ଥର ରକ୍ତାକ୍ତ ନ ହୋଇଛନ୍ତି ଫନି ପାଲ । କିନ୍ତୁ ସେ ରହି ଯାଇଛନ୍ତି ସେଇପରି ଦୁର୍ବୀନୀତ, ଅନବଦମିତ । ଫନି ପାଲ ଦିନେ ଥିଲେ ସୁକିନ୍ଦା ଆଳି ଅଞ୍ଚଳରେ ଏକ ପ୍ରବାଦ ପୁରୁଷ । ରାଜ ଅତ୍ୟାଚାର ବିରୁଦ୍ଧରେ ତାଙ୍କର ସଂଗ୍ରାମ ଥିଲା ସାଲିସହୀନ । ଅତ୍ୟାଚାରିତ ହୋଇ, ମାଡ଼ ଖାଇ କଟକ ଜେଲରେ ବନ୍ଦୀ ଫନିପାଲ । ଐତିହାସିକ କଟକ ମେଡିକାଲ ସ୍କୁଲ ଧର୍ମଘଟରେ ଶହ ଶହ ଛାତ୍ର ବନ୍ଦୀ ହୁଅନ୍ତି କଟକ ଜେଲ୍‌ଖାନାରେ । ଫନିପାଲ ଧର୍ମଘଟକାରୀମାନଙ୍କର ନେତାମାନଙ୍କୁ ଉପଦେଶ ଦିଅନ୍ତି ପଲିଟିକାଲ କ୍ଲାସ କର । ନଚେତ୍ ପିଲାମାନଙ୍କର ମନବଳ ଭାଙ୍ଗିଯିବ ।

ମନମୋହନ ମିଶ୍ର ସେଇକଥା ସ୍ମରଣ କରନ୍ତି । ସାଶ୍ରୁଳ ନୟନରେ । ଫନିପାଲଙ୍କର ବଡ଼ଭାଇ ବ୍ରଜେନ ପାଲ ରାଜନୈତିକ ଜୀବନକୁ ବିଦାୟ ନେଇ ବାରିପଦାରେ କାଠ କଣ୍ଟ୍ରାକ୍ଟର ହୁଅନ୍ତି ବିଚିତ୍ର ପରିସ୍ଥିତିରେ । ତାଙ୍କ ସହିତ ସେଇଠି ମିଳିତ ହୁଅନ୍ତି ତାଙ୍କର ସାଥୀ ଅବଦୁଲ୍ ମୋମିନ୍ । ବଙ୍ଗଳାର ବାମପନ୍ଥୀ ଆନ୍ଦୋଳନର ଅନ୍ୟତମ ମହାରଥୀ ଅବଦୁଲ୍ ମୋମିନ ମଧ୍ୟ ଏକ ବିଚିତ୍ର ପରିସ୍ଥିତିରେ ଆସି ପହଞ୍ଚନ୍ତି ବାରିପଦାରେ ଏବଂ ସେଇଠି ହିଁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ରହିଯାଆନ୍ତି । ବାରିପଦା ହିଁ ତାଙ୍କର କର୍ମଭୂମି ହୁଏ । ବ୍ରଜେନ ପାଲ ତାଙ୍କର ପ୍ରତିଦିନର ଆୟକୁ ବାଣ୍ଟନ୍ତି - ଗୋଟିଏ ଭାଗ ରାଜନୈତିକ କାର୍ଯ୍ୟ ପାଇଁ, ଗୋଟିଏ ଭାଗ ପରିବାର ପାଇଁ, ଗୋଟିଏ ଭାଗ ଦାନ ପାଇଁ । ସେ ଏହି ବଣ୍ଟୁଆରାରୁ ବିଚ୍ୟୁତ ହୋଇନାହାନ୍ତି । ମୃତ୍ୟୁ ପରେ ସବୁ ସମ୍ପତ୍ତିକୁ ସେ ଦାନ କରି ଯାଇଥିଲେ ଆପଣାର ଦାୟାଦ ଅବଦୁଲ୍ ମୋମିନଙ୍କୁ । ଏହାକୁ ପଶ୍ଚିମବଙ୍ଗରେ ରହୁଥିବା ବ୍ରଜେନ ପାଲଙ୍କର ଅନ୍ୟ ଭାଇମାନେ ଗ୍ରହଣ କରି ପାରନ୍ତି ନାହିଁ । ସେମାନେ ଦାବି କରନ୍ତି ଯେ ଏହା ହେଉଛି ବ୍ରଜେନ ପାଲଙ୍କର ପୈତୃକ ସମ୍ପତ୍ତି । ତେଣୁ ଏଥିରେ ସେମାନେ ହିଁ ଅଂଶୀଦାର । ଭାଇମାନଙ୍କୁ ଚକିତ କରି ଅନ୍ୟତମ ଭାଇ ଫନିପାଲ କୋର୍ଟରେ ସାକ୍ଷୀ ଦିଅନ୍ତି ଯେ ଏହା ସତ୍ୟ ନୁହେଁ । ବାରିପଦାର ସମସ୍ତ ସଂପତ୍ତି ହେଉଛି ବ୍ରଜେନ ପାଲଙ୍କର ସ୍ୱ-ଅର୍ଜିତ ଏବଂ ଏହାର ପ୍ରକୃତ ଉତ୍ତରାଧିକାରୀ ହେଉଛନ୍ତି ଅବଦୁଲ ମୋମିନ୍, ଭାଇମାନେ ନୁହନ୍ତି । ବ୍ରଜେନ ପାଳଙ୍କର ଉଇଲର ବିଜୟ ହେଲା ଆପଣାର ଭାଇମାନଙ୍କ ସହିତ ଫନି ପାଲ ସମ୍ପର୍କ ତୁଟିଗଲା । କିନ୍ତୁ ଫନିପାଲ ମିଥ୍ୟା ଆଗରେ ମୁଣ୍ଡ ନୁଆଁଇବାକୁ ପ୍ରସ୍ତୁତ ନୁହଁନ୍ତି । ଫନିପାଲ ଭଲ ହୋମିଓପ୍ୟାଥ୍ । ରୋଗ କଥା କହିଲାକ୍ଷଣି ଗୋଟାଏ ଚାରି ଛଅ ପୃଷ୍ଠା ବିଶିଷ୍ଟ ଫର୍ମ ବାହାର କରି କହିବେ, ଏଇଟାକୁ ଭର୍ତ୍ତି କରିବେ । ସେ ଫର୍ମ ପୂରଣ କରିବା ଏକ ଦୁଃସାଧ୍ୟ ବ୍ୟାପାର । ଫର୍ମ ଛାପିଲା କିମିତି , ପଇସା କିଏ ଦେଲା ସେ କଥା ତ ଫନିଦାଙ୍କୁ ପଚାରିହେବ ନାହିଁ । ପଚାରିଲେ ସେ ସଙ୍ଗେ ସଙ୍ଗେ କହିବ ଯେ ତୁ କେବେଠାରୁ ମାର୍କିନ ଗୁଇନ୍ଦା ହେଲୁଣି । ଫନିଦାର ଘର ନାହିଁ । ସମସ୍ତଙ୍କର ଘର ତାର ଘର । କାଲି ଯେଉଁଠି ଥିଲା ଆଜି ସେଠାରେ ନାହିଁ । ଭବଘୁରା ମଣିଷଟିଏ ସତରେ ।

ଫନିଦା ବିବାହ କରି ନ ଥିଲା । କେବେ କୌଣସି ଏକ ଝିଅ(ସେ ବି ଆଉ ନାହାନ୍ତି ସଂସାରରେ)କୁ ବିବାହ କରିବା ପାଇଁ ତାର ଇଚ୍ଛା ଥିଲା । କିନ୍ତୁ ଖାଲି ଇଚ୍ଛା ମାତ୍ର । କେବେ ସେ ଏକଥା ତାକୁ କହିନାହିଁ, କି ପତ୍ରାଳାପ ତ ଦୂରର କଥା ଆଳାପ ବି କରିନାହିଁ । ବନ୍ଧୁମାନେ ଥଟ୍ଟା କରି କହନ୍ତି ଯେ ଫନିଦା, ତୁ ଗୋଟିଏ ସୋଭିଏତ୍ ବାନ୍ଧବୀ ବିବାହ କଲେ ଭଲ ହେବ । ଥଟ୍ଟା ପ୍ରସାର ଲାଭ କରି କରି ଇମିତି ଏକ ସ୍ତରରେ ପହଞ୍ଚିଲା ଯେ ସମସ୍ତେ ତାକୁ ପଚାରିଲେ ସେଇ ଅଜଣା ସୋଭିଏତ୍ ବାନ୍ଧବୀ କଥା । ଆଉ ହୁଏତ ଫନିପାଲ ବି କେତେବେଳେ ଭାବୁଥିଲେ ଯେ ସତରେ ସୋଭିଏତ୍ ବାନ୍ଧବୀ ଟିଏ ତାର ଜୀବନରେ ଆସିବ ! କିନ୍ତୁ ଏହା ଏକ ନିର୍ଦ୍ଦୋଷ ସ୍ୱପ୍ନ, କଳ୍ପନା । ଫନିଦା ଏ ଭଳି ପ୍ରସ୍ତାବ ଶୁଣିଲେ ହସିଦିଏ । କହେ, ତୁ ଏଥର ସୋଭିଏତ୍ ୟୁନିୟନ ଯାଇ ଠିକ୍ କରି ଦେଇ ଆସିବୁ ।

ସବୁ ସମ୍ମିଳନୀ, ଶାନ୍ତି, କୃଷକ, ଯୁବକ, ଶିକ୍ଷୀ, ସମସ୍ତଙ୍କର ସମ୍ମିଳନୀରେ ସେ ହାଜର । ତାକୁ କେହି ବାଧା ଦିଅନ୍ତି ନାହିଁ । ତାର ଅବାଧ ଗତି । ସବୁ ଦଳର ନେତାଙ୍କ ପାଖରେ ସେ ପହଞ୍ଚିଯାଏ ନିର୍ବିକାର ଚିତ୍ତରେ । କେହି ତାକୁ ମନା କରନ୍ତି ନାହିଁ । ସମସ୍ତଙ୍କର ସେ ଫନିଦା । କିନ୍ତୁ ଏହା ସତ୍ତ୍ୱେ ଫନିଦା ହେଉଛି ଶ୍ରମଜୀବି ମେହନତକାରୀର ଫନିଦା, ଶାନ୍ତି ଆନ୍ଦୋଳନର ଫନିଦା ।

ଆଗେ ସାଇକେଲରେ ଯାଉଥିଲା । ସେ ସାଇକେଲରେ ଟାଙ୍ଗା ଥିଲା ପରି ମୋର ମନେ ପଡୁନାହିଁ । ବୟସ ବଢ଼ିଲା ବୋଧହୁଏ ନିଜ ଆଡୁ ଅନୁକମ୍ପା ଦେଖାଇବା ଲୋକ କମିଗଲେ । ଫନିଦା ଚାଲିଲା ପାଦରେ, ହାତରେ ସେଇ ବ୍ୟାଗ ଆଉ ନାଲି ଗାମୁଛା ।

ସମାଜବାଦ କେବେ ଆସିବ ସେଇ ଚିନ୍ତା ଫନିଦାର ସବୁବେଳେ । ସମାଜବାଦ ଆସିନାହିଁ । ଫନିଦା ଚାଲି ଯାଇଛି । ଫନିଦା କିନ୍ତୁ ତାର ସହକର୍ମୀ, ସହଯୋଦ୍ଧା ମାନଙ୍କ ସ୍ମୃତିରେ ଉଜ୍ଜ୍ୱଳି ରହିବ ।



# ଗାନ୍ଧୀବାଦୀ ମାର୍କସିଷ୍ଟ

ଫକୀର ବେହେରା ଏକ ବିସ୍ମୃତ ଚରିତ୍ର । ଯେପରି ନିରଳସ କର୍ମୀ, ସେଇପରି ଜୀବନ ଏବଂ ସେଇପରି ମୃତ୍ୟୁ । ପବ୍ଲିସିଟି ଖୋଜି ନାହିଁ । ଉପାଧି, ଲୋଡ଼ିନାଇଁ ଭତ୍ତା ବା ପଦବୀ ।

ଲକ୍ଷ୍ୟ ସ୍ଥିର ରହିଛି । ଅବିଚଳ ସେ ଚଲାପଥରେ । ମୁକ୍ତ ହେବ ଆମର ଜନ୍ମମାଟି । ବିଦେଶୀ ଶାସନରୁ ମୁକ୍ତ ହୋଇ ଗଢ଼ା ହେବ ସାମ୍ୟ ଓ ମୈତ୍ରୀର ଦେଶ । ବରଗଡ଼ ଜିଲ୍ଲା ବାଲିଟିକିରା ଗାଁରେ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଜନ୍ମ ଫକୀର ବେହେରାଙ୍କର । ଆଦ୍ୟ ଯୌବନରେ ଝାସ ଦେଇଥିଲେ ମୁକ୍ତି ସଂଗ୍ରାମରେ । ଖାଲି ପାଦ । ମୋଟା ଖଦଡ଼ ଧୋତି, ଦେହରେ ଖଣ୍ଡେ ଚାଦର, ବେଳେବେଳେ ଗାନ୍ଧୀ ଟୋପି ମୁଣ୍ଡରେ । ଏଇ ପରିଚିତ ମଣିଷଟି ବୁଲୁଥିଲା ଗ୍ରାମେ ଗ୍ରାମେ ବିପ୍ଳବର ବାର୍ତ୍ତା ପ୍ରଚାର କରି କରି ଏବଂ ସ୍ୱାଧୀନତା ପରେ ସାମ୍ୟବାଦର ବାର୍ତ୍ତା ପ୍ରଚାର କରି କରି ବରଗଡ଼ ଅଞ୍ଚଳରେ ସବୁ ଘରେ ସେ ପରିଚିତ ଥିଲେ । ଏଇ ନିରଳସ ବେଶ ଏବଂ ସ୍ୱଭାବ ତାଙ୍କୁ ପ୍ରତ୍ୟେକ ଗୃହରେ ଆପଣାର କରି ଦେଇଥିଲା ।

ତାଙ୍କ ଗାଁ ଅଞ୍ଚଳ କଂଗ୍ରେସର ଅଭେଦ୍ୟ ଦୁର୍ଗଭାବରେ ପରିଚିତ ଥିଲା । ସଂଗ୍ରାମୀମାନେ ତାଙ୍କ ଘରେ ଆଶ୍ରୟ ନେଉଥିଲେ ଆଗାମୀ ଯୁଦ୍ଧର ପ୍ରସ୍ତୁତି ପାଇଁ । ତାଙ୍କ ଘର ଚିହ୍ନିବାକୁ ସମୟ ଲାଗୁ ନ ଥିଲା । ବ୍ରିଟିଶ ସରକାରଙ୍କର ପ୍ରବଳ ଆକ୍ରମଣ ସତ୍ତ୍ୱେ ତାଙ୍କ ଘର ଉପରେ ସବୁବେଳେ ତ୍ରିରଙ୍ଗା ପତାକା ଉଡ଼ି ଆସିଛି ବିପ୍ଳବର ଧ୍ୱଜା ଭାବରେ । କେତେଥର ସେ ଘର ସିଲ୍ ହୋଇଛି । କେତେଥର ତ୍ରିରଙ୍ଗା ପତାକାକୁ କାଢ଼ି ନିଆ ଯାଇଛି, ପୋଲିସର ବଳ ପ୍ରୟୋଗ ଦ୍ୱାରା । ପୁଣି କିନ୍ତୁ ପତାକା ଉଡିଛି । ଦୁର୍ବୀନରେ ପତାକା, ଦୁର୍ବୀନୀତ ଫକୀର ବେହେରା ।

୧୯୨୧,୧୯୩୦,୧୯୪୧,୧୯୪୨ ଫକୀର ବେହେରା ଗିରଫ ହେଇଛନ୍ତି, କାଗଗାରରେ ଜୀବନ କାଟିଛନ୍ତି । ଫେରିଛନ୍ତି ପୁଣି ସଂଗ୍ରାମକୁ ଏବଂ ପୁଣି ବରଣ କରିଛନ୍ତି କାରାଗାର । ସେ କାହାଣୀ ଅସରନ୍ତି । ସେ ସଂଗ୍ରାମ ମଧ ଅସରନ୍ତି ।

୧୯୩୭ ମସିହା ନିର୍ବାଚନରେ ସେ କଂଗ୍ରେସ ଦଳର ସଭ୍ୟ ଭାବରେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୁଅନ୍ତି ।

୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନରେ ଅଂଶ ଗ୍ରହଣ କରି ସେ କାରାବାସ ଭୋଗ କରନ୍ତି । ସେଇଠି ସେ ଅଧ୍ୟୟନ କରନ୍ତି ସମାଜତତ୍ତ୍ୱ, ବିଶ୍ଳେଷଣ କରନ୍ତି ସଂଗ୍ରାମର ଚରିତ୍ରକୁ । ମୁକ୍ତି ଆସିବ କିନ୍ତୁ ସେ ମୁକ୍ତି ହେବ ତ ମେହନତୀ ମଣିଷ ପାଇଁ ମୁକ୍ତି ? ନା ଖାଲି ସାଇନବୋର୍ଡ ବଦଳିଯିବ, ଶୋଷଣ ଅତ୍ୟାଚାର, ବିଭେଦ ରହିଯିବ ସେଇପରି ? ଫକୀର ବେହେରା ପଢ଼ିଲେ ମାର୍କ୍ସବାଦୀ ଦର୍ଶନ । ଏକ ନୂତନ ଦିଗନ୍ତ ଉନ୍ମୋଚିତ ହେଲା ତାଙ୍କ ପାଖରେ ।

ପ୍ରକୃତ ସ୍ୱାଧୀନତା ପାଇବାକୁ ହେଲେ ଆଉ ଏକ ସ୍ୱାଧୀନତା ସଂଗ୍ରାମର ଆବଶ୍ୟକତା ରହିଛି । ଫକୀର ବେହେରା ହୋଇଗଲେ ମାର୍କ୍ସିଷ୍ଟ, ସାମ୍ୟବାଦୀ । କିନ୍ତୁ ତାଙ୍କର ବେଶ ବଦଳିଲା ନାହିଁ । ସେଇ ଖଦଡ଼, ସେଇ ଖାଲିପାଦ , ଲୋକେ ତାଙ୍କୁ ଆଦରରେ ଡାକିଲେ ଗାନ୍ଧିବାଦୀ କମ୍ୟୁନିଷ୍ଟ । ଗାନ୍ଧୀଙ୍କର ଲକ୍ଷ୍ୟ ଯାହା, ମାର୍କ୍ସଙ୍କ ଲକ୍ଷ୍ୟ ମଧ ସେଇଆ । ଯେଉଁମାନେ ଗାନ୍ଧୀ ନାଁ ଧରି ନିର୍ବାଚନ ବୈତରଣୀ ପାର ହୋଇ ଯାଇ ଶାସନ କ୍ଷମତାକୁ ଯାଉଛନ୍ତି ସେମାନେ ଗାନ୍ଧିବାଦୀ ନୁହନ୍ତି । ଗାନ୍ଧୀଙ୍କର ମୌଳିକ ତତ୍ତ୍ୱକୁ ସେମାନେ ଭୁଲି ଯାଇଛନ୍ତି ।

ଫକୀର ବେହେରାଙ୍କ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହେଲା ଏବଂ ସେଇ ସଂଗ୍ରାମ ଭିତରେ ହିଁ ସେ ଆଖି ବୁଜି ଦେଲେ ଚିରଦିନ ପାଇଁ । କିନ୍ତୁ ଜୀବନ ତ ଏକ ପ୍ରବାହ । ତାକୁ ରୋକିବ ବା କିଏ ?

ଫକୀର ବେହେରାଙ୍କ ପାଇଁ ହୁଏତ ସ୍ମୃତିସ୍ତମ୍ଭ ନିର୍ମାଣ ହେବ ନାହିଁ, ହିସାବର ଗଣିତ ଖାତାରେ ସେ ହଜିଯିବେ, କିନ୍ତୁ ଯେଉଁମାନେ ତାଙ୍କୁ ଜାଣନ୍ତି, ସେମାନଙ୍କ ସ୍ମୃତିରେ ସେ ଜାଗରୂକ ରହିବେ ଚିରକାଳ । ତାଙ୍କର ମୃତ୍ୟୁ ନାହିଁ ।



# ଜୀବନର ଶେଷ କିକ୍

**ଫେ**ଲୁଦା ଆଉ ନାହିଁ । ଖବର ପାଇଲି ଦିଲ୍ଲୀରେ । ଏଇ କିଛି ଦିନ ହେବ । ଦିନେ ପ୍ରାୟ ମଧ୍ୟରାତ୍ରି, ମୁଁ ତୁଳସୀପୁର ହରିଣ ପାର୍କ ପାଖରେ ଜଣେ ବନ୍ଧୁଙ୍କୁ ଛାଡି ଫେରୁଚି ମହାନଦୀ କୂଳ ରାସ୍ତାରେ । ସଂପୂର୍ଣ୍ଣ ନିକାଞ୍ଚନ ରାସ୍ତା । ହଠାତ୍ ଦେଖିଲି ଜଣେ କିଏ ଟର୍ଚ୍ଚ ପକାଇ ପକାଇ ଚାଲିଛନ୍ତି ରାସ୍ତାରେ । ଚମକି ପଡ଼ିଲି । ଏତେ ରାତିରେ ଏକୁଟିଆ ଭଦ୍ରଲୋକ କିଏ ? ଦେଖିଲି ଫେଲୁଦା ଚାଲିଛି ଏକାକୀ । ଫେଲୁଦା ପଚାରିଲା କିରେ ତୁ ଏତେ ରାତିରେ ? ଆରେ ତୁ ? ଫେଲୁଦା ହସି ଦେଇ କହିଲା ମୋର ଏଇଟା ନୈମିତ୍ତିକ !

ସତରେ ଫେଲୁଦା ଜୀବନଟା ଯାକ କଟାଇଦେଲା ଏକାକୀ ! ବିବାହ କରିବାକୁ ବେଳ ପାଇନାହିଁ, କି ସଂସାର ପାତିବାକୁ ଇଚ୍ଛା କରିନାହିଁ ।

ରେଭେନ୍ସା କଲେଜରେ ପାଠ ପଢୁଥିଲା । ଫୁଟବଲ ଖେଳରେ ପାରଦର୍ଶିତା ତାକୁ ପ୍ରବାଦ ପୁରୁଷରେ ପରିଣତ କରିଥିଲା । ବ୍ୟାକରେ ସେ ଖେଳୁଥିଲେ ମନେ ହେଉଥିଲା ଯେପରି ଏକ ପ୍ରାଚୀର ଠିଆ ହୋଇଚି । ରକ୍ଷଣଭାଗରେ ସେ ପ୍ରାଚୀର ଟପି ପ୍ରତିପକ୍ଷର ବଲ ଯିବା ଅସମ୍ଭବ । ସାଙ୍ଗମାନେ ନୀଳମଣି ମହାନ୍ତି, ଜର୍ଜ ପଟ୍ଟନାୟକ, ଭୈରବଚନ୍ଦ୍ର ମହାନ୍ତି, ସୁବୋଧ ବିଶ୍ୱାସ ସବୁ ଗଲେଣି । ଜୀବନରେ ଏକୁଟିଆ ରହିବା ପାଇଁ ସ୍ଥିର କରିଥିବା ଫେଲୁଦା ନିଃସଙ୍ଗ ହୋଇ ଯାଇଛି ।

ଯାହା ମନେ ପଡୁଛି ଫେଲୁଦା କୌଣସି ଏକ ଇନସୁରାନ୍ସ ବା ସେଇଭଳି ଅନୁଷ୍ଠାନରେ କ'ଣ ଗୋଟାଏ ଚାକିରି ବି କିଛିକାଳ କରିଥିଲା । କିନ୍ତୁ ଜୀବନର କୌଣସି ବନ୍ଧନ ଯାହାକୁ ବାନ୍ଧି ରଖି ପାରିନାହିଁ ତାକୁ ଚାକିରି କେତେଦିନ ବାନ୍ଧି ରଖି ପାରିବ ? ସେ ମୁକ୍ତ ହୋଇ ଆସିଥିଲା ସେଥିରୁ ।

ଜଗତସିଂହପୁର ଏକ ଜମିଦାର ବଂଶରେ ଫେଲୁଦା ଜନ୍ମ ଗ୍ରହଣ କରିଥିଲା । ଆଭିଜାତ୍ୟ ଥିଲା ରକ୍ତରେ । ସେଇଯୋଗୁଁ ବୋଧହୁଏ ସେ ଜୀବନ ଯାକ ଦୁର୍ବୀନିତ ହୋଇ ରହିଗଲା । ଫୁଟବଲ ଖେଳ, ଓଡ଼ିଶା ଅଲିମ୍ପିକ ଆସୋସିଏସନ୍, ଓଡ଼ିଶା ଫୁଟବଲ ଆସୋସିଏସନ୍ , ବାରବାଟୀ ଷ୍ଟାଡିୟମ ସମେତ ଓଡ଼ିଶାର କ୍ରୀଡ଼ା ଜଗତରେ ତାର ଅବଦାନ ଥିଲା ପ୍ରଭୂତ । କିନ୍ତୁ ପଦବୀ ଗ୍ରହଣ କରିବା ପାଇଁ ନା ଥିଲା ସେ ଲାଳାୟିତ ନା ଇଚ୍ଛୁକ । ସେଇଯୋଗୁଁ ଯେଉଁ ପଦବୀ ମିଳିଛି ସେତେବେଳେ ତାହା ତାକୁ ତୃପ୍ତ କରିଛି । କୌଣସି ଅନୁଷ୍ଠାନରେ ସେ ଉଚ୍ଚତମ ପଦବୀ ମଣ୍ଡନ କରିନାହିଁ । ସେଥିପାଇଁ ତାକୁ କେବେ ବିବ୍ରତ ହେବା ଦେଖିନାହିଁ । ଯଦିଓ ଅନ୍ୟ ବହୁ ବ୍ୟକ୍ତିଙ୍କୁ ବିବ୍ରତ ହେବା ଦେଖିଛି ।

ଫୁଟବଲ ଆସୋସିଏସନ ଅଫିସ୍, ଖେଳ ଏବଂ ତା ପରେ ସନ୍ଧ୍ୟାରେ ତାସ ଖେଳ । ଏଇ ଥିଲା ତାର ଜୀବନ ।

କିଛି ଦଶନ୍ଧି ତଳେ ତତ୍‌କାଳୀନ ସ୍ୱାସ୍ଥ୍ୟ ମନ୍ତ୍ରୀ ବସନ୍ତ ମଂଜରୀ ଦେବୀଙ୍କ ଘରୁ ରାତିରେ ଫେରିଲା ବେଳେ ଏକ ମୋଟର ଦୁର୍ଘଟଣାରେ ପଡ଼ି ସେ ଗୁରୁତର ଆହତ ହୋଇଥିଲା । ସେ ଦୁର୍ଘଟଣାର କ୍ଷତ ଜୀବନ ସାରା ସେ ଭୋଗିଛି । ମସ୍ତିଷ୍କର ଭାରସାମ୍ୟ ହଜି ଯାଇଥିଲା ।

ଜୀବନର ଅପରାହ୍ନରେ ସେ ବାସଚ୍ୟୁତ ହୋଇଥିଲା ଆପଣା ଗୃହରୁ । ପୁତୁରା ଓ ପୁତୁରାବୋହୂ ତାକୁ ଆଦରି ନେଇଥିଲେ । ଯତ୍ନ ନେଇଥିଲେ ପ୍ରଚୁର । ଇମିତି ସେବା କେବେ ପାଇନାହିଁ ସେ । ଜୀବନ ସେଇଠି କଟାଇଲା ତାର ।

ଫେଲୁଦାର ଭଲ ନାମ ଥିଲା । ନନ୍ଦନନ୍ଦନ ମହାପାତ୍ର । କିନ୍ତୁ ସେ ନାଁ ହଜି ଯାଇଥିଲା ଅନେକ ଦିନରୁ । ସେ 'ଫେଲୁ' ନାମରେ ହିଁ ପରିଚିତ ଥିଲା । ସେ ଫୁଟବଲ ଖେଳରେ ବ୍ୟାକ୍‌ରେ ଖେଳୁଥିଲା । ସେତେବେଳେ ଥିଲା କିକ୍ ବା ସଟ୍‌ର ଯୁଗ । ସଟ୍ ମାରିବାରେ ସେ ଥିଲା ପ୍ରବାଦ ପୁରୁଷ ।

ରେଭେନ୍ସା କଲେଜ । ସ୍ୱାଧୀନତା ଆନ୍ଦୋଳନର ଝଲକ । କଲେଜ ଅଫିସ ପୋଡ଼ିଗଲା ସେଦିନ । ପ୍ରିନ୍ସିପାଲଙ୍କ ଜାରସାହୀ ଶାସନ ବିରୁଦ୍ଧରେ ଉତ୍‌କ୍ଷିପ୍ତ ହୋଇ ଛାତ୍ରମାନେ ନିଆଁ ଲଗାଇ ଦେଇଥିଲେ ଅଫିସରେ । ସେଥିରେ ତାର ହାତ ଥିଲା । କିନ୍ତୁ ଦଣ୍ଡ ଭୋଗ କରିବାକୁ ପଡ଼ିନାହିଁ । କଲେଜ ଅଫିସର ନିଆଁ ଲଗେଇ ଦେଇ ସେ ଓ ତାର ଜଣେ ବନ୍ଧୁ ଆସି ବସି ଯାଇଥିଲେ କ୍ୟାରମ ଖେଳାରେ ଅଧ୍ୟାପକ ନାରାୟଣ ମିଶ୍ରଙ୍କ ସହିତ । ପ୍ରମାଣ ମିଳିଲା ନାହିଁ ।

ଫେଲୁଦା ନାହିଁ । ଏଠି ଆଉ ରହି ସେ କ'ଣ କରନ୍ତା ? ସାଙ୍ଗ ସାଥୀ ମାନେ ଗଲେଣି ଚାଲି । ନୂଆ ପୀଢ଼ି ସହିତ ତାର ସଂପର୍କ କ୍ଷୀଣ ହୋଇ ଆସିଲାଣି । ସେ ଆଉ ରହିବ କାହିଁକି ?

କିନ୍ତୁ ସେ ସ୍ମୃତ ହୋଇ ରହିବ ବହୁକାଳ ବନ୍ଧୁମାନଙ୍କ ମାନସ ପଟରେ ।



# ପ୍ରୀତିମାନ, ତୁମେ ମହୀୟାନ

ଭୁବନେଶ୍ୱରରେ ବୈଜ୍ଞାନିକମାନଙ୍କର ଏକ ଅଧିବେଶନରେ ଯୋଗ ଦେଲାବେଳେ ହଠାତ୍ ଏକ ସଂବାଦ ଚମକ ସୃଷ୍ଟି କଲା । ପ୍ରୀତିମାନ ସରକାର ଆଉ ନାହାନ୍ତି । ପ୍ରୀତିମାନ ଏବେ ଆସିଥିଲେ ଦିଲ୍ଲୀରୁ । ଇଚ୍ଛା ନ ଥିଲା । ଅବସର ଥିଲା ଆଉ ଅଳ୍ପ ଦିନ । ଦିଲ୍ଲୀରେ ସ୍ତ୍ରୀ ଏକ ଚାକିରି ଗ୍ରହଣ କରିନେଇଥିଲେ । କାରଣ ପ୍ରୀତିମାନ ଅସୁସ୍ଥ ହେଇ ପଡ଼ିଥିଲେ ଅନେକ ଦିନରୁ । ମନର ସରସତା ଭାଙ୍ଗି ଯାଇଥିଲା । ଦେଖା ହୋଇଥିଲା ଏଇ କେତେଟା ଦିନ ତଳେ । ସେ ଏକୁଟିଆ ରହୁଥିଲେ ସର୍କିଟ ହାଉସରେ । ଫେରିଯିବେ ଦିଲ୍ଲୀ । କିନ୍ତୁ ସେ ଯେ ଫେରିଯିବେ ଅନ୍ୟତ୍ର ଏ କଥା କିଏ ଜାଣିଥିଲା ?

ପ୍ରୀତିମାନଙ୍କୁ ଜାଣିଥିଲି ଅନେକ ଦିନରୁ । ତାଙ୍କର ସ୍ତ୍ରୀ ଥାଆନ୍ତି ଅନ୍ତଃସତ୍ତ୍ୱା । ଭର୍ତ୍ତି ହେବେ କଟକ ବଡ଼ ଡାକ୍ତରଖାନାରେ । କିନ୍ତୁ ବୁଝିବ କିଏ ? ପ୍ରୀତିମାନ ଏବଂ ମୋର ଉଭୟଙ୍କର ବନ୍ଧୁ ସତ୍ୟ ରଂଜନ ପାଲ । ସେ ଦୁହେଁ ମୋତେ ସେ ଦାୟିତ୍ୱ ଦେଇଥିଲେ । ଡାକ୍ତରଖାନାରେ ଥିବା ରୋଗୀ ମାନଙ୍କ ପାଇଁ ସବୁବେଳେ ମୋର ଗୋଟିଏ କାମନା । ହୋଲି, ଦିପାବଳୀ ଏବଂ ଭସାଣୀ ଏଇ ତିନୋଟି ଦିନ କୌଣସି ସଂକଟରେ ସେମାନେ ନ ପଡ଼ନ୍ତୁ । କିନ୍ତୁ ଦୁର୍ଭାଗ୍ୟ ଯେ ଶ୍ରୀମତୀ ସରକାର ହୋଲି ଦିନ ହିଁ ପୁତ୍ରଟିଏ ଜନ୍ମ କଲେ । ପ୍ରୀତିମାନଙ୍କ ସହିତ ଆତ୍ମୀୟତା ବଢ଼ିଥିଲା । କିନ୍ତୁ ପ୍ରୀତିମାନ ସ୍ୱଳ୍ପଭାଷୀ । କଥା ଖୁବ୍ କମ କହନ୍ତି ।

ପ୍ରୀତିମାନ ଆସିଥାନ୍ତି ଭୁବନେଶ୍ୱର ବୋଧହୁଏ ବଲାଙ୍ଗୀର ଜିଲ୍ଲାପାଳ ପଦବୀରୁ ଅବ୍ୟାହତି ପାଇ । ସ୍ୱାମୀ ସ୍ତ୍ରୀ ଦୁହିଁଙ୍କ ପାଖରେ ବଲାଙ୍ଗୀରର ଦୁର୍ଦ୍ଧର୍ଷ ଶିଖମାନଙ୍କର ବିନମ୍ର ପ୍ରଣତି ଏବଂ ଆଳାପ ମୁଗ୍ଧ କରିଥିଲା ଆମ ସମସ୍ତଙ୍କୁ ।

ପ୍ରୀତିମାନ ଜଣେ ସଚ୍ଚୋଟ ଅଫିସର ଭାବରେ ଖ୍ୟାତି ଲାଭ କରିଥିଲେ । ଆମ ସମୟର ନିୟମ ହେଲା ଯେ ଖାଲି କାମ କଲେ ଯଥେଷ୍ଟ ନୁହେଁ, ତମର କାମ ସଂପର୍କରେ ଅନ୍ୟମାନେ ଜାଣିବା ମଧ୍ୟ ଉଚିତ । ସେଇ ପ୍ରକାର ଅଭ୍ୟାସର ଲୋକ ସିଏ ନ ଥିଲେ । ଅସୁସ୍ଥତା ପରେ ମଧ୍ୟ ଆଉରି ଆଗ୍ରହ ତାଙ୍କର କମିଯାଇଥିଲା ।

ସେ ବେଶୀ ମନୋନିବେଶ କରୁଥିଲେ ଆପଣାର ପେଷାନୁହେଁ , ନିଶାରେ । ସେ ନିଶା ହେଉଚି ସମାଲୋଚନା ଲେଖିବା - ବିଶେଷତଃ ଚଳଚ୍ଚିତ୍ର ଉପରେ ସମାଲୋଚନା । ବୌଦ୍ଧିକ ନିଷ୍ଠା ଓ ପରାକାଷ୍ଠା ତାଙ୍କର ଆୟୁଧ । ବିନମ୍ର ବ୍ୟବହାର । କିନ୍ତୁ ସେଇ ନମ୍ର ଭାଷାରେ ସେ ବେଶ୍ କଠୋର କଥା କହିପାରନ୍ତି । ଅନେକ ସମୟରେ ମୋର ମନେ ହୋଇଛି ଯେ ସେ ଫ୍ଲେକ୍ସିବଲ ନୁହନ୍ତି । ବନ୍ଧୁତା ଥିବ କିନ୍ତୁ ନିୟମରେ ନ ପଡ଼ିଲେ ସେ ଜମା ଶୁଣିବେ ନାହିଁ ଅନେକ

ନୈଷ୍ଠିକ  ଅଫିସରଙ୍କ କ୍ଷେତ୍ରରେ ସେଇ ବିପଦ ଦେଖାଦେଇଛି । ଆଇନର ନମନୀୟତାକୁ ସେମାନେ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ନୁହନ୍ତି । ଏହା ଖାଲି ପ୍ରୀତିମାନଙ୍କ ପ୍ରତି ପ୍ରଯୁଜ୍ୟ ନୁହେଁ, ପ୍ରଯୁଜ୍ୟ ସେଇ ଗୋଷ୍ଠୀର ଅନ୍ୟମାନଙ୍କ ପ୍ରତି ।

ସମାଲୋଚକ ଭାବରେ ତାଙ୍କର ଲେଖା ଉଚ୍ଚ କୋଟୀର । ସେଇଥିପାଇଁ ତାଙ୍କୁ ବରାଦ ଆସେ, ଡାକରା ଆସେ ଜାତୀୟ କ୍ଷେତ୍ରରେ ।  ସେ ଲେଖନ୍ତି । ଲେଖା ଲେଖି ସେ ଯେପରି ତୃପ୍ତ ହୁଅନ୍ତି, ପାଠକ ସେଇପରି ତୃପ୍ତ ହୁଏ ।

ପ୍ରୀତିମାନ ସେଦିନ ଆସିଥିଲେ ମୋତେ ଦେଖିବା ପାଇଁ ଓଡ଼ିଶା ଭବନକୁ । ସେ ଓଡ଼ିଶା ସରକାରଙ୍କର ରେସିଡେଣ୍ଟ କମିଶନର । ମୁଁ ଯାଇଛି ଚିକିତ୍ସା ପାଇଁ  । ସଂଖୋଳିବାକୁ ଆସିଥିଲେ ସେ ଆସନ୍ତି ନାହିଁ କାହା ପାଖକୁ । ହଠାତ୍ ଆସିବା ଦେଖି ସମସ୍ତେ ଆଚମ୍ବିତ ହୋଇଥିଲେ । ଭିଡ଼ ଜମିଥିଲା । ସେ କହିଲେ ଯେ ମୁଁ ଆସିଚି  ଆପଣଙ୍କୁ ଦେଖିବାକୁ  ।  କୁଆଡ଼େ ଯାଏ ନାହିଁ କିନ୍ତୁ ଆସିଲି ତାର କାରଣ ସ୍ୱତନ୍ତ୍ର ।

ଆଜି ପ୍ରୀତିମାନ ଶୋଇ ଯାଇଛନ୍ତି । ଚିର ନିଦ୍ରାରେ । ସହକର୍ମୀ, ବନ୍ଧୁ ପ୍ରତାପ (ମୁଖୋପାଧ୍ୟାୟ) ବସି ରହିଛନ୍ତି । ଭିଡ଼ ଜମୁଛି । ମୁଁ କିନ୍ତୁ ଆସିଛି ତୁମ ପାଇଁ ପ୍ରୀତିମାନ, କାରଣ ତୁମେ ମହୀୟାନ । ତୁମେ କିନ୍ତୁ ଯେପରି ନୀରବ (Withdrawn) ତୁମ ପାଇଁ ମୁଁ ଢ଼ାଳିବି ଟୋପାଏ ଲୁହ ଏକାନ୍ତରେ ।



# ଉଦ୍ୟାନ ଓ ବିରଳ ପୁସ୍ତକର ମାଳି

ତାଙ୍କ ସରକାରୀ ବାସଗୃହରେ ଆମେ ସବୁ ବସିଥାଉଁ । ଚାରିପଟେ ସୁରମ୍ୟ ଉଦ୍ୟାନ । ଜଣେ ବିଶିଷ୍ଟ ବ୍ୟକ୍ତି ପ୍ରାତଃ ଭ୍ରମଣରେ ଆସି ପହଞ୍ଚିଲେ । ଉଦ୍ୟାନ ଦେଖି କହିଲେ 'ମୋତେ କିଛି ଗଛ ଦିଅନ୍ତେ ନାହିଁ ? ମୁଁ ଲଗାନ୍ତି ।' ନିଶ୍ଚୟ, ବର୍ତ୍ତମାନ ଦେବି କହି ସେ ଗଛ ଆଣିବାକୁ ବାହାରିଲେ । ଆଗନ୍ତୁକ କହିଲେ ଯେ ମୁଁ ତା'ହେଲେ ଘରୁ ଯାଇଁ । ଗାଡ଼ି ନେଇ ଆସେ କିମ୍ବା ରିକ୍ସାଟିଏ ଡାକେ । ତାଙ୍କ ମୁହଁ ବେଶ୍ ପଥୁରିଆ । ହସ ଆଦୌ ଫୁଟେ ନାହିଁ । ହସର ଏକ ମ୍ଳାନ ରେଖା ଉକୁଟି ଲିଭିଗଲା । ସେ କହିଲେ ଗଛ ନେବାକୁ ହେଲେ କାନ୍ଧରେ ନଚେତ୍ ମୁଣ୍ଡରେ ନେବେ । ଗାଁଡ଼ି ବା ରିକ୍ସା ଆଣିବାକୁ ଗଲେ ଗଛ ପ୍ରତି ଆପଣଙ୍କର ମମତା ଉଦ୍‌ବେଳିତ ନୁହେଁ ବୋଲି ବୁଝିବାକୁ ହେବ ।

ଉଦ୍ୟାନର ସେଇ ମିତ୍ର ବନମାଳୀ ବାବୁ ଆଉ ନାହାନ୍ତି । ଅଗଷ୍ଟ ୫ , ୧୯୯୮ର ସୂର୍ଯ୍ୟୋଦୟ ସହିତ ତାଙ୍କର ଜୀବନର ସୂର୍ଯ୍ୟ ଅସ୍ତମିତ ହୋଇ ଯାଇଛି ଚିରଦିନ ପାଇଁ ।

ତାଙ୍କୁ ମୁଁ ଜାଣିଥିଲି ପିଲାଦିନୁ । ସମ୍ବଲପୁରର ଏକ ପ୍ରତିଷ୍ଠିତ ପରିବାରରେ ୧୯୧୮ ମସିହା ମାର୍ଚ୍ଚ ୯ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ବାପା ଗୋକୁଳଚନ୍ଦ୍ର ବାବୁ ଦୀର୍ଘଦିନ ଧରି ସମ୍ବଲପୁର ଜିଲ୍ଲା ବୋର୍ଡ଼ର ସଭାପତି ଥିଲେ । ତାଙ୍କର ଅଜା ରାମନାରାୟଣ ଜଣେ ପ୍ରସିଦ୍ଧ ଆଇନଜ୍ଞ ଥିଲେ ଏବଂ ବିହାର ଓଡ଼ିଶା ବିଧାନସଭାର ସଦସ୍ୟ ଥିଲେ । ସମାଜସେବା ତାଙ୍କର ରକ୍ତରେ ଆସିଥିଲା ପିତୃପିତାମହଙ୍କ ଠାରୁ । ତତ୍‌କାଳୀନ ସମ୍ବଲପୁର ଜିଲ୍ଲା ସ୍କୁଲରୁ ମାଟ୍ରିକ ପାଶ କରି ରେଭେନ୍ସା କଲେଜରେ ବିଏ. ବି.ଏଲ୍ ପାଶ୍ କରି ସେ ଓକିଲାତି ଆରମ୍ଭ କରିଥିଲେ ସମ୍ବଲପୁରରେ । ୧୯୪୫ ମସିହାର କଥା । ସମ୍ବଲପୁର ଅଞ୍ଚଳରେ ଜୋରଦାର ହୀରାକୁଦ ବନ୍ଧ ବିରୋଧୀ ଆନ୍ଦୋଳନ ତାଙ୍କୁ ଦେଖିଥିଲା ଅନ୍ୟତମ ନେତା ଭାବରେ । କିନ୍ତୁ ପରବର୍ତ୍ତୀ କାଳରେ ସେ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗଦେଇ ବିଧାନସଭାକୁ ନିର୍ବାଚିତ ହୋଇଥିଲେ ଏବଂ ବୀରେନ ମିତ୍ର ଓ ସଦାଶିବ ତ୍ରିପାଠୀଙ୍କ ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇଥିଲେ । ତା' ପୂର୍ବରୁ ସେ ସମ୍ବଲପୁର ପୌରସଭାକୁ କାଉନ୍‌ସିଲର ଭାବରେ ନିର୍ବାଚିତ ହୋଇଥିଲେ । ୧୯୭୦ ମସିହାରେ କଂଗ୍ରେସର ବିଭାଜନ ସମୟରେ ସେ ଇନ୍ଦିରାଗାନ୍ଧିଙ୍କ ପକ୍ଷରେ ରହିଥିଲେ ଏବଂ ୧୯୭୧ ମସିହାରେ ଲୋକସଭାକୁ, ୧୯୬୨ ରୁ ୧୯୮୮ ମସିହା ପର୍ଯ୍ୟନ୍ତ ରାଜ୍ୟସଭାର ସଦସ୍ୟ ହୋଇଥିଲେ ।

ଦିଲ୍ଲୀରେ ଅବସ୍ଥାନ କାଳରେ ତାଙ୍କ ସହିତ ଘନିଷ୍ଠତା ବଢ଼ିଥିଲା । ଆନ୍ତର୍ଜାତିକ ସେମିନାର ମାନଙ୍କ ପାଇଁ ତଥା ୟୁନିଭର୍ସର ବିକାଶ ପାଇଁ ତାଙ୍କର ସାହାଯ୍ୟ ସ୍ମରଣ କଲେ ଆଖି ଲୁହରେ ଭରିଯାଏ । ସେଇଟା ହେଉଛି ୟୁନିଭର୍ସ ପ୍ରତିଷ୍ଠାର ପ୍ରାଥମିକ ସମୟ ।

ବନମାଳୀ ବାବୁ ଖାଲି ଜଣେ ରାଜନୀତିଜ୍ଞ ନଥିଲେ । ଜଣେ ସଂସ୍କୃତି ପ୍ରେମୀ ସମାଜସେବୀ ଭାବରେ ବହୁ ଅନୁଷ୍ଠାନ ସହିତ ତାଙ୍କର ନିବିଡ଼ ସଂପର୍କ ଥିଲା ଏବଂ ବହୁ ଅନୁଷ୍ଠାନ ଗଠନରେ ତାଙ୍କର ଆଲେଖ୍ୟ ରହିଯାଇଚି । ବିରଳ ପୁସ୍ତକ କ୍ରୟ କରିବା ତାଙ୍କର ଏକ ପିପାସା । ଅନେକ ଥର ଦିଲ୍ଲୀର ପୁରୁଣା ବହି ବିକ୍ରୀ କରୁଥିବା ଦୋକାନମାନଙ୍କୁ ସାଙ୍ଗ ହୋଇ ଯାଇଛୁ । ବହୁତ ଅସୁବିଧାରେ ପଡ଼ିଛୁ ଏକାଧିକବାର । ବହି ବାଛୁବାଛୁ ପକେଟରେ ଥିବା ଟଙ୍କା ନିଅଣ୍ଟ ହୋଇଛି । କାଳେ ବହି ବିକ୍ରୀ ହୋଇଯିବ ଏଇ ଆଶଙ୍କାରେ ଥରେ ଦୁଇଥର ସେ ମୋତେ ବହି ଦୋକାନରେ ବହିକୁ ଜଗିବାକୁ ଛାଡ଼ିଦେଇ ଟାକ୍ସିରେ ଆସିଛନ୍ତି  ଘରୁ ଟଙ୍କା ନେବା ପାଇଁ । ପରେ ଦେଖିଛି ନୀଳକଣ୍ଠ ଦାସଙ୍କର ମାଛମାର୍କେଟରେ ଖ୍ୟାତି ଭଳି ପୁରୁଣା ବହି ଦୋକାନମାନଙ୍କରେ ତାଙ୍କର ଖ୍ୟାତି । ବହି ନେଇ ଯଥାନ୍ତୁ । ପରେ ଟଙ୍କା ପଠାଇଦେବେ । ଏଇଭଳି ଉକ୍ତି ମୁଁ ତାଙ୍କ ସାଙ୍ଗରେ ପରେ ଯାଇ ଅନେକ ବହି ଦୋକାନୀଙ୍କ ଠାରୁ ଶୁଣିଛି ।

ଇଂଜିନିଅରିଂ  କଲେଜ ମେଡିକାଲ କଲେଜ, ସରକାରୀ ମହିଳା କଲେଜ, ଲଜପତ୍ ରାୟ ଆଇନ୍ କଲେଜ, କେନ୍ଦ୍ରୀୟ ବିଦ୍ୟାଳୟ, କନ୍‌ଭେଣ୍ଟ ହୋମିଓପ୍ୟାଥିକ କଲେଜ ସମ୍ବଲପୁର ବିଶ୍ୱବିଦ୍ୟାଳୟ ପ୍ରଭୃତି ବହୁ ଅନୁଷ୍ଠାନ ତାଙ୍କର ଆଲେଖ୍ୟ ବହନ କରିଛି ।

ତାଙ୍କର କଦଳୀ ବଗିଚା, ଫୁଲ ବଗିଚା ଯେମିତି ଲୋଭନୀୟ । ଦୁଷ୍ପ୍ରାପ୍ୟ ବହିରେ ଭରା ତାଙ୍କର ଲାଇବ୍ରେରୀ ସେଇପରି ଆକର୍ଷଣୀୟ । ତାଙ୍କ ଲାଇବ୍ରେରୀରେ ବହି ପଢ଼ି ପାରିବ କିନ୍ତୁ ବହି ସେଠାରୁ ଘରକୁ ଆଣିବା ଭାରି କଠିନ । ଯେଉଁ କେତେଜଣ ମୁଷ୍ଟିମେୟ ଲୋକ ସେ ସୁଯୋଗ ପାଇଛନ୍ତି, ସେମାନେ ବହି ଆଣିଲା ବେଳେ ନିଶ୍ଚୟ ଶୁଣିଛନ୍ତି, ବହି ଫେରିବଟି, କେବେ ଫେରିବ ? ଆଉ ନବକୃଷ୍ଣ ଚୌଧୁରୀଙ୍କ ପରି ଫେରାଇଲା ବେଳେ ସେ ନିଶ୍ଚୟ ପଚାରିବେ ବହି  ଉପରେ ଅନେକ ପ୍ରଶ୍ନ, ଆଲୋଚନା କରିବେ ।  ପଶ୍ଚିମ ଓଡ଼ିଶାର ଅନେକ ବିଶିଷ୍ଟ ବ୍ୟକ୍ତିଙ୍କ ଭିତରେ କଟକ ପୁରୀ ବାଲେଶ୍ୱର ଲୋକଙ୍କ ପ୍ରତି ଏକ ପ୍ରକାର ଅସୂୟା ଭାବ ରହିଥାଏ ବୋଲି ଅଭିଯୋଗ କଥା ସମସ୍ତେ ଜାଣନ୍ତି । ଏହାର ଐତିହାସିକ କାରଣ ସଂପର୍କରେ ମଧ ସମସ୍ତେ ସଚେତନ । କିନ୍ତୁ ବନମାଳୀ ବାବୁଙ୍କର ସେ ପ୍ରକାର ଭାବନା କେହି ପ୍ରାୟ ଦେଖି ନାହାନ୍ତି ।

ତାଙ୍କ ମୁହଁଟା ପ୍ରାୟ ହସଶୂନ୍ୟ । କିନ୍ତୁ ବେଶ୍ ଦରଦୀ ମଣିଷ । ରାସ୍ତାରେ ସାଇକେଲ୍‌ରେ ବା ଚାଲିଚାଲି ହୁଏତ ମୁଁ ଯାଉଛି  । ହଠାତ୍ ମନ୍ତ୍ରୀଙ୍କର ଗାଡ଼ି ଅଟକିଯିବା ଦେଖି ଆଶ୍ଚର୍ଯ୍ୟ ହୋଇଛି । ଗାଡ଼ିରୁ ଓହ୍ଲାଇ ଆସି ବନମାଳୀବାବୁ ରାସ୍ତାକଡ଼ରେ ଠିଆ ହୋଇ ଆଲୋଚନା ଆରମ୍ଭ କରିଛନ୍ତି । ପଚାରିଛନ୍ତି ଦେହ ପାଆ କଥା । ମନେ ପଡୁଛି । ଥରେ କଟକ କନ୍‌ଭେଣ୍ଟ ସ୍କୁଲ ଆଗରେ ଥିବା ଜଣେ ପଦସ୍ଥ ପୋଲିସ ଅଫିସରଙ୍କ କାନ୍ଥକୁ ଆଉଜି ସେ କଥାବାର୍ତ୍ତା  କରି ଚାଲିଛନ୍ତି । ପାଖରେ ତାଙ୍କର ମନ୍ତ୍ରୀ ଗାଡ଼ି । ହଠାତ୍ ସେଇ ଘରେ ରହୁଥିବା ପୋଲିସ୍ ଅଫିସର ଆସି ପହଞ୍ଚନ୍ତି ଲଞ୍ଚ ପାଇଁ । ଏଭଳି ଅବସ୍ଥା ଦେଖି ସେ ବିସ୍ମିତ । ଡାକନ୍ତି  ଆପଣାର ବୈଠକଖାନାକୁ । ବନମାଳୀ ବାବୁ ନମ୍ର ବୀନିତ ଭାବରେ କହନ୍ତି, ରାସ୍ତା କଡ଼ରେ ଠିଆହୋଇ ଗପିଲେ ଯେପରି ଫ୍ରି  ଲାଗେ ବୈଠକଖାନାରେ କ'ଣ ତାହା ମିଳିବ ?

ମୃତ୍ୟୁ ସଂବାଦ ଶୁଣିଲା କ୍ଷଣି ଅନେକ ଛୋଟ ଛୋଟ ଘଟଣା ଆସି ହାବୁକା ମାରେ ମନରେ । ମନ ଆଖି ସବୁ ରୁନ୍ଧି ହୋଇଯାଏ । ମନେ ପଡୁଚି । ରାତି ଦଶଟା ବାଜି ସାରିଲାଣି । ଓଡ଼ିଶା ସେକ୍ରେଟେରିଏଟର ଲିଫ୍ଟରେ ଆମେ ଓହ୍ଲାଉଛୁ । ବୋଧହୁଏ ସାଙ୍ଗରେ ଅଧ୍ୟାପକ ପ୍ରଫୁଲ୍ଲ ରଥ ଥିଲା ଭଳି ମନେ ପଡୁଛି । ସବୁଆଡ଼ ଶୁନ୍ ଶାନ୍ । ହଠାତ୍ ଅଧବାଟରେ ଲିଫ୍ଟ ଅଚଳ ହୋଇଗଲା । ବିଜୁଳି ସଂଯୋଗ କଟିଗଲା । ମହା ମୁଷ୍କିଲ୍, ତଳକୁ ଖସିବୁ କେମିତି ? ଧୀରେ ଧୀରେ ଅଣ ନିଃଶ୍ୱାସୀ ହେବା ଲାଗିଲାଣି । ବନମାଳୀ ବାବୁ କହିଲେ ଆମେ ବୋଧହୁଏ ଇତିହାସ ସୃଷ୍ଟି କରିବା । ଲିଫ୍ଟରେ ମରିବା କଥା କେବେ କେହି ଶୁଣିଥିବେ ? ସେତେବେଳେ ବି ହସ ମାଡ଼ିଥିଲା, ଏଇ ଉକ୍ତି ଶୁଣି । ବହୁ ସମୟ ପରେ ଲିଫ୍ଟରୁ ଝାଳନାଳ ହୋଇ ବାହାରିଲା ବେଳକୁ ବନମାଳି ବାବୁ କହିଲେ, ନା, ସେ ଯୋଗ ବି ନାହିଁ । ଇତିହାସ ସୃଷ୍ଟି କରି ମରିବା କ'ଣ ସହଜରେ ଭାଗ୍ୟରେ ଜୁଟେ ?

ବନମାଳି ବାବୁ ନାହାନ୍ତି । ବୟସ ହୋଇଗଲା, ପୁତ୍ରର ଅକାଳ ମୃତ୍ୟୁରେ ଭାଙ୍ଗି ପଡ଼ିଥିଲେ ସେଁ । ରାଜନୀତିରେ ମଧ ସେ ଅଣନିଃଶ୍ୱାସୀ ହୋଇ ଉଠିଥିଲେ । ରହିବାର ଆଉ କୌଣସି ଆବଶ୍ୟକତା ନ ଥିଲା । କିନ୍ତୁ ସେ ସ୍ମୃତ ହୋଇ ରହିବେ ବହୁକାଳ ଧରି ଅଗଣିତ ଅନୁଷ୍ଠାନ, ଅଗଣିତ ବ୍ୟକ୍ତିମାନଙ୍କ ହୃଦୟରେ ତାଙ୍କର ମଣିଷପଣିଆ ଯୋଗୁଁ ।

ବହି କାନ୍ଦୁଥିବ, କାନ୍ଦୁଥିବ ତାଙ୍କର ବୃକ୍ଷଲତା, ତାଙ୍କୁ ଯତ୍ନରେ ରଖି 'ବନମାଳୀ ବାବୁ ସ୍ମାରକୀ' ଗପ ହୋଇ ପାରିଲେ କେତେ ଭଲ କଥା ହୁଅନ୍ତା ?



# ବାବାଜୀର ବିଦାୟ

"ସାରା ପୃଥିବୀ ଦୁଇ ଶିବିରରେ ବିଭକ୍ତ । ଗୋଟିଏ ଯୁଦ୍ଧର ଶିବିର, ଆଉଟି ଶାନ୍ତିର ଶିବିର... । ଏଇ ସେଇ ଯେଉଁ ଦୂର ପର୍ବତମାଳା ତାର ଆର ପଟରେ ବହୁଦୂରରେ ଏଇ ଦେଶ..." ୧୯୫୭ ମସିହା ଶୀତଦିନ । ଓଡ଼ିଶାରେ ସାଧାରଣ ନିର୍ବାଚନ । ବିଧାନ ସଭା ପାଇଁ ପ୍ରାର୍ଥୀ ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଏବଂ ପାର୍ଲାମେଣ୍ଟ ପାଇଁ ପ୍ରାର୍ଥୀ ଶ୍ରୀ ବ୍ରହ୍ମାନନ୍ଦ ପଣ୍ଡା । ସୋଭିଏତ୍ ଦେଶ କାଗଜରୁ ସଦ୍ୟ ଇସ୍ତଫା ଦେଇ ସେ ନିର୍ବାଚନ ମହାସମରରେ ଅବତୀର୍ଣ୍ଣ । କୋରାପୁଟିଆ ଆଦିବାସୀ ଅନେଇଚି ବିସ୍ଫାରିତ ନେତ୍ରରେ । ସେଇ ପର୍ବତମାଳା ଆର ପଟରେ ଆହୁରି ଦେଶ ଅଛି ? କିମିତି ସେ ଦେଶ ! ବ୍ରହ୍ମାନନ୍ଦ ସେଥିପାଇଁ ବିବ୍ରତ ନୁହନ୍ତି । ସେ କିନ୍ତୁ କହିବେ ସେଇ ସୁଦୂରର କଥା । ଅନେକ ଦୂରର କଥା ।

କିଛି ବର୍ଷ ପରେ । ବ୍ରହ୍ମାନନ୍ଦ ପଣ୍ଡା ରାଜ୍ୟ ସଭାର ସଦସ୍ୟ । 'କଣ୍ଡୋମ' ଗୁଡ଼ିକୁ ବେଲୁନ କରି ସେ ହାଜର ରାଜ୍ୟ ସଭାରେ । ବିଚିତ୍ର ଦୃଶ୍ୟ । ଏଇଭଳି ବ୍ୟବହାର ହେଉଛି ରାଷ୍ଟ୍ରାୟତ୍ତ କାରଖାନାରୁ ପ୍ରସ୍ତୁତ ହେଉଥିବା କଣ୍ଡୋମ, ଯା ପରିବାର ନିୟନ୍ତ୍ରଣ ଭଳି ବିରାଟ ଲକ୍ଷ୍ୟକୁ ପୂରଣ କରିବା ଉଦ୍ଦେଶ୍ୟରେ ପ୍ରସ୍ତୁତ ହେଉଛି । "ମୋର ପରିବାର ନିୟନ୍ତ୍ରଣ ଭଗବାନ କରି ଦେଇଛନ୍ତି" ବ୍ରହ୍ମାନନ୍ଦ ପଣ୍ଡାଙ୍କ ଉକ୍ତି ପାର୍ଲାମେଣ୍ଟରେ । ତାଙ୍କର ପତ୍ନୀ ଏକମାତ୍ର ପୁତ୍ରକୁ ଛାଡ଼ି ଚାଲି ଯାଇଛନ୍ତି ଅକାଳରେ । ବ୍ରହ୍ମାନନ୍ଦ ସତେ ଯେପରି ମୁକ୍ତ ହୋଇଯାଇଛନ୍ତି ସବୁ ବନ୍ଧନରୁ । ଏକମାତ୍ର ବନ୍ଧନ ଅରୁଣ ।

ଦିଲ୍ଲୀ, ବର୍ଷା ହେଉଛି ସେ ଦିନ । ଶୀତ ସମୟ । ଆମେ ସବୁ ବସି ଗପ କରୁଚୁ । ବାହାରକୁ ବାହାରି ହେଉ ନାହିଁ । ବ୍ରହ୍ମାନନ୍ଦ ପଣ୍ଡା ଆମକୁ ଭାଷଣ ଦେଉଛନ୍ତି ଶ୍ରୋତା ନନ୍ଦକିଶୋର ପଟ୍ଟନାୟକ ଏବଂ ମୁଁ । କାହାକୁ ହେଲେ ଗୁରୁ ବାଛିନିଅ । ବିନା ଗୁରୁରେ ମୁକ୍ତି ମିଳିବ ନାହିଁ । ତମର ଗୁରୁ କିଏ ? "ମୋର ପ୍ରଥମ ଗୁରୁ ଅଭିରାମ ପରମହଂସ ଏବଂ ବର୍ତ୍ତମାନ ସତ୍ୟସାଇବାବା" ସେ ବଖାଣିଲେ ସତ୍ୟସାଇ ବାବାଙ୍କ ମାହାତ୍ମ୍ୟ । ଆମେ ଶୁଣୁଥିଲୁ । ମହାକ୍ରୋଧୀ, କ୍ଷଣକୋପୀ ବ୍ରହ୍ମାନନ୍ଦ । ମୁଁ ଭରସି କରି ପଚାରିଲି । ପଚାରିବା ପୂର୍ବରୁ ଆଗ ପାଖଆଖକୁ ପରୀକ୍ଷା କରିନେଲି । ରାଗି ସେ ଯଦି ତାଙ୍କ ଘରୁ ବାହାର କରିଦିଅନ୍ତି ତା ହେଲେ ମହା ମୁସ୍କିଲ । ରାଗିଲେ ବ୍ରହ୍ମାନନ୍ଦ ସବୁ କରି ଦେଇ ପାରନ୍ତି । ଥରେ ତାଙ୍କ ଦଳର ସଭାରେ ଜଣେ ବୟସ୍କ ନେତା ବ୍ରହ୍ମାନନ୍ଦ ପଣ୍ଡା ସଭାକୁ ପଶିଲା ବେଳେ ଅଧା ଥଟ୍ଟା ଅଧା ବିଦ୍ରୂପ ଭାଷାରେ କହିଲେ ଯେ ଏଇ ବ୍ରହ୍ମାନନ୍ଦ ବାବୁ ଆସିଲେଣି । ତାଙ୍କ ପାଇଁ ପରା ସବୁ ଗଣ୍ଡଗୋଳ । କ'ଣ

ଗଣ୍ଡଗୋଳ, କେଉଁଠୁ ଶୁଣିଲେ ? ବ୍ରହ୍ମାନନ୍ଦ ବାବୁ ପଚାରିଲେ । ଏଇ ଲୋକେ ଯାହା କହୁଥିଲେ, ନେତା ଉତ୍ତର ଦେଲେ, ଓ ଲୋକେ ଆପଣଙ୍କ ସଂପର୍କରେ ଯାହା କହୁଛନ୍ତି, ସେଥିରେ ତ ଆପଣଙ୍କ ସାଙ୍ଗରେ ବସିବା ଉଚିତ ନୁହେଁ । ସେ ନେତା ରାଗିଗଲେ, କ'ଣ ଆମେ ଅସ୍ପୃଶ୍ୟ ଆଉ ତମେ ? ବ୍ରହ୍ମାନନ୍ଦ ବସିଥିଲେ ତଳେ । ଡେଇଁପଡ଼ି କଛାକୁ ମାରି କହିଲେ ଯେ ତମ ସଂପର୍କରେ ଲୋକେ ଯାହା କହୁଚନ୍ତି ଶୁଣିଲେ ମଣିଷ କାନରେ ହାତ ଦେବ । ତଥାପି ତମେ ଆମର ନେତା ସେଇତ ଦୁର୍ଭାଗ୍ୟ ଆମର । ତଥାପି ଠିକ୍ କଲି ପଚାରିବି । ବ୍ରହ୍ମାନନ୍ଦ ତମେ ଏସବୁ ଦେଖିଚ ସତରେ, ଏଇ ସମୟ ଓ କାଳକୁ ଅତିକ୍ରମି ଯିବାର ଅଲୌକିକ ଶକ୍ତି ? ହଁ, ଦେଖିଚି । ମିଛ, ତମେ ଦେଖି ନାହିଁ । ବ୍ରହ୍ମାନନ୍ଦ ଚିହିଁକି ଉଠିଲେ । ମିଛ, ନଚେତ୍ ତମେ ବୋକା । ତମେ ଏହା ଦେଖି ସାରିଲା ପରେ, ମହାକାଳର ବିଜୟ ଦେଖି ସାରିଲା ପରେ ବି ପାର୍ଲାମେଣ୍ଟ ସଭ୍ୟ ହୋଇଛ ? କାହିଁକି ? ବ୍ରହ୍ମାନନ୍ଦ ସ୍ଥିର ହୋଇ ବସି ଯାଇଛନ୍ତି ଆଖିକୁ ବୁଜି । ଗୁଣୁଗୁଣୁ ହେଉଛନ୍ତି, ସତରେ ? ଠିକ୍ କଥା । ବ୍ରହ୍ମାନନ୍ଦ ଜୀବନର ନାନା ପରାଜୟ, ବିଫଳତା ଭିତରେ ପାଇଟି ଯାଇଛନ୍ତି ଆସ୍ତିକ, ଧାର୍ମିକ । ଆଉ ମୁଁ ଏବଂ ନନ୍ଦ କିଶୋର ପଟ୍ଟନାୟକ ଆଗ୍ନୋଷ୍ଟିକ । ତଥାପି ସେ ଆମର ବନ୍ଧୁ, ଆମେ ତାଙ୍କର ବନ୍ଧୁ । ଦିଲ୍ଲୀ ଗଲେ ସେଇଠି ରହଣୀ ଆମର ।

ବ୍ରହ୍ମାନନ୍ଦ ଦୁଇଥର ରାଜ୍ୟ ସଭାର ସଦସ୍ୟ ହେଇଥିଲେ । ପ୍ରଥମ ଥର ରାଜ୍ୟ ସଭା ସଦସ୍ୟ ଥିଲାବେଳେ କଂଗ୍ରେସର ବିଭାଜନ । ଇନ୍ଦିରାଗାନ୍ଧି କଂଗ୍ରେସ ଦଳର ଅଫିସିଆଲ ପ୍ରାର୍ଥୀ ସଂଜୀବ ରେଡିଙ୍କ ବିରୁଦ୍ଧରେ ଭି.ଭି.ଗିରିଙ୍କୁ ପ୍ରାର୍ଥୀ କରନ୍ତି । ଉପସଭାପତି ପଦରୁ ଇସ୍ତଫା ଦେଇ ଗିରି ଚାଲି ଯାଆନ୍ତି ଜୋଇଁର ଲୋଧୀ କଲୋନୀ ଘରକୁ । ଇନ୍ଦିରା ଗାନ୍ଧିଙ୍କ ସହିତ ତାଙ୍କର ସବୁ ଯୋଗାଯୋଗ ବିଛିନ୍ନ ହୋଇଯାଏ । ଚାରିପଟରେ ଗୁଇନ୍ଦା, ଟେଲିଫୋନ ସଂପୂର୍ଣ୍ଣ ଟ୍ୟାପଡ୍ । ତାଙ୍କ ସହିତ ଯୋଗାଯୋଗ କରିବା ଇନ୍ଦିରାଙ୍କ ପାଇଁ ଚିନ୍ତାର ବିଷୟ ହେଲା । ବ୍ରହ୍ମାନନ୍ଦ ଜଣେ ଇନୋକୁଅସ ବା ଖୁବ୍ ବେଶୀ ଜଣାଶୁଣା ସଭ୍ୟ ନୁହନ୍ତି । ତାଙ୍କର ଘର ଏବଂ ଭି.ଭି.ଗିରିଙ୍କ ଘର ବ୍ରହ୍ମପୁର ବୋଲି ଅନେକ ଜାଣନ୍ତି ନାହିଁ । ଦୁହେଁ ତେଲୁଗୁ ଭଲ ଭାବରେ ଜାଣନ୍ତି ଏହା ମଧ୍ୟ ଅନେକଙ୍କୁ ଜଣା ନ ଥିଲା । ଭି.ଭି.ଗିରି ଏବଂ ଇନ୍ଦିରାଙ୍କ ଭିତରେ ସଫଳ ଯୋଗସୂତ୍ର ହୋଇପାରିଥିଲେ ସେ । ତାହା ତାଙ୍କୁ କଂଗ୍ରେସ (ଆଇ) ଏବଂ ଇନ୍ଦିରା ଗାନ୍ଧିଙ୍କ ନିକଟତର କରିଥିଲା । ଦ୍ୱିତୀୟ ଥର ରାଜ୍ୟ ସଭା ପଦବୀ ମଧ୍ୟ ମିଳିଥିଲା ସେଇ ସୂତ୍ରରେ । ମ୍ୟାଡ଼ାମ ଆପଣ ଚାହିଁଲେ ରହିବି, ନଚେତ୍ ଫେରିଯିବ ଓଡ଼ିଶା । ଆପଣଙ୍କୁ ଫେରିବା ପାଇଁ କହୁଚି କିଏ ? ଇନ୍ଦିରା ଗାନ୍ଧିଙ୍କ ଉତ୍ତର । ବ୍ରହ୍ମାନନ୍ଦ ଦ୍ୱିତୀୟ ଥର ରାଜ୍ୟସଭାକୁ ନିର୍ବାଚିତ ହେଲେ । ସତ୍ୟସାଇ ବାବାଙ୍କୁ ସେ କୁଆଡ଼େ ପଚାରିଲେ, ବାବା, ମୁଁ ଠିଆ ହେଉଛି ନିର୍ବାଚନରେ, ଆପଣଙ୍କର ଆଶୀର୍ବାଦ କାମନା କରୁଚି । ବାବା କୁଆଡ଼େ ୩ ସଂଖ୍ୟାଟିକୁ ଲେଖି, ତା ଉପରେ ମୁଣ୍ଡଳାଟିଏ ଘୁରାଇ ଦେଲେ । ସେ ତୃତୀୟ ପ୍ରାର୍ଥୀ ଭାବରେ ନିର୍ବାଚିତ ହେଲେ । ଏବଂ ତିରିଶଟି ଫାଷ୍ଟ ପ୍ରିଫରେନ୍ସ ଭୋଟ ପାଇଥିଲେ । କ'ଣ ଦରକାର ଥିଲା ଆପଣଙ୍କର ଏ ଦୁଇଟି ଆଶୀର୍ବାଦ ? ଗୋଟିଏ କ'ଣ ଯଥେଷ୍ଟ ନୁହେଁ । ସେ ହସି କହିଲେ, ତମେ ବୁଝି ପାରିବ ନାହିଁ । ଏଇ ଦୁଇଟିର ମହତ୍ତ୍ୱ ।

"ଆଉ ଦିଲ୍ଲୀ ନୁହେଁ । ରାଜନୀତି ନୁହେଁ । ବର୍ତ୍ତମାନ ଭୁବନେଶ୍ୱର ନୀଡ଼ମ୍" ଏଇ ଥିଲା ତାଙ୍କର ବିବୃତ୍ତି । ସେ ଚାଲି ଯାଇଛନ୍ତି ଏକ ସୁଦୂରର ସନ୍ଧାନରେ । ସେଦିନ ସେ କୋରାପୁଟ ଆଦିବାସୀଙ୍କୁ କହିଥିଲେ ପୃଥିବୀ ଭିତରେ ଏକ ସହରର ବାର୍ତ୍ତା । ଆଜି ସେ କହିଲେ ପୃଥିବୀର ଉର୍ଦ୍ଧ୍ୱରେ । ମହାକାଳର ଉର୍ଦ୍ଧ୍ୱରେ ଏକ ସୁଦୂରର ବାର୍ତ୍ତା । ସତ୍ୟସାଇ ସେ ବାମଣ୍ଡଳ ଓଡ଼ିଶା ଶାଖାର ସଭାପତି ଭାବରେ ସେ ସତ୍ୟସାଇ କଲେଜ ସହିତ ବହୁଜନ କଲ୍ୟାଣ କାର୍ଯ୍ୟରେ ହାତ ଦେଇ ଥିଲେ ଏବଂ ଆପଣାର ଆଲେଖ୍ୟ ରଖି ଯାଇଛନ୍ତି ସେ ସବୁଥିରେ ।

୧୯୦୨ ମସିହା ଜାନୁଆରୀ ୧୯ ରେ ଗଞ୍ଜାମ ଜିଲ୍ଲାର ଚକିଟିରେ ଜନ୍ମ ହୋଇଥିଲେ ବ୍ରହ୍ମାନନ୍ଦ । ଆସ୍କାରେ ସ୍କୁଲ ଶିକ୍ଷା ସମାପ୍ତ । ତା ପରେ ସେ ରେଭେନ୍ସା କଲେଜ । ସେତିକିବେଳକୁ ସେ ସାମ୍ୟବାଦୀ ଚିନ୍ତାଧାରା ପ୍ରତି ଆକୃଷ୍ଟ ତାଙ୍କର ଦୀକ୍ଷାଗୁରୁ ବିଜୟ ଚନ୍ଦ୍ର ଦାସ । ଶ୍ରୀ ବିନାୟକ ଆଚାର୍ଯ୍ୟ, ସମୁଦି ଶ୍ରୀ ଶିଶିଭୂଷଣ ପତି, ଶ୍ରୀ ନରସିଂହ ପଣ୍ଡା ସମସ୍ତେ ଆସନ୍ତି ବିଜୟ ବାବୁଙ୍କ ପ୍ରଭାବରେ ସାମ୍ୟବାଦୀ ଆନ୍ଦୋଳନକୁ । ନିଖିଳଭାରତ ଗଣତାନ୍ତ୍ରିକ ଯୁବ ସଂଗଠନ, କମ୍ୟୁନିଷ୍ଟ ପାର୍ଟି ସହିତ ସଂପର୍କ ନିବିଡ଼ ହୁଏ । କଲମ ମଧ ଚାଲେ ଅବାରିତ । ନିଜେ ପ୍ରେସ କରିବି, ସ୍ୱାଧୀନ ଜୀବିକା ରହିବ, ଲେଖିବି ଗଳ୍ପ, ଉପନ୍ୟାସ, ପ୍ରବନ୍ଧ ଏଇ ଥିଲା ତାଙ୍କର ଅଭିପ୍ସା । କିନ୍ତୁ ସମୟର ବାତଚକ୍ରରେ ତାହା ସଫଳ ହୋଇ ପାରିଲା ନାହିଁ ପୂର୍ଣ୍ଣ ଭାବରେ । ବିଜୟ ବାବୁ କମ୍ୟୁନିଷ୍ଟ ପାର୍ଟିରୁ ରାଜନୈତିକ ମତଭେଦ ଯୋଗୁଁ ବିଦାୟ ନେଲାପରେ ଏବଂ କଂଗ୍ରେସରେ ଯୋଗଦେଲା ପରେ ଶ୍ରୀ ବିନାୟକ ଆଚାର୍ଯ୍ୟ, ଶ୍ରୀ ବହ୍ମାନନ୍ଦ ପଣ୍ଡା ମଧ ସେଇ ପନ୍ଥା ଗ୍ରହଣ କଲେ । ସୋଭିଏତ୍ ରୁଷରେ ଷ୍ଟାଲିନବାଦୀ ବିରୋଧୀ ପ୍ରଚାର ଏବଂ ସାମ୍ୟବାଦୀ ଆନ୍ଦୋଳନର ଦୁର୍ବଳତା ସେମାନଙ୍କୁ ସାହାଯ୍ୟ କଲା । ହଉଏ, ମୁଁ ଟିକିଏ ଯାଇ ପାରନ୍ତି ନାହିଁ ସାମ୍ୟବାଦୀ ଜର୍ମାନୀ ଓ ସୋଭିଏତ ରୁଷ ? ବ୍ରହ୍ମାନନ୍ଦ ପଣ୍ଡା କହିଲେ ମୋତେ ଓ ନନ୍ଦବାବୁଙ୍କୁ । ଚାରିଦିନ ପରେ ତାଙ୍କୁ ବ୍ରହ୍ମପୁର ଟେଲିଗ୍ରାମ କରାଇ ଡକାଇ ଉଡ଼ାଜାହାଜ ଟିକଟ ଧରାଇଦେଲା ପରେ ସେ ଆନନ୍ଦରେ ବିଭୋର ହୋଇଉଠିଥିଲେ । ସାମ୍ୟବାଦ ପ୍ରତି ଥିଲା ତାଙ୍କର ଅହେତୁକ ଦୁର୍ବଳତା ।

ବ୍ରହ୍ମାନନ୍ଦ ଲେଖକ । ସୃଜନଶୀଳ ଲେଖକ । ସତ୍ୟ, ମହକ, କେଳିବାବା, ଆତ୍ମ ପରିଚୟ, କଳା ଓ କଳ୍ପନା, ଫଲଗୁର ତରଙ୍ଗ, ପ୍ରାନ୍ତ ଜନକ କେନ୍ଦ୍ର ଓ ପରିଧି, ସ୍ୱପ୍ନ ସିନ୍ଦୁରା ତାଙ୍କୁ ଲେଖକ ଭାବରେ ସ୍ମୃତ, ରଖିବ ଜନମାନସ ପଟରେ ।

ମଇ ମାସ ୧୬ ତାରିଖ ୧୯୯୬ ମସିହା ତାଙ୍କର ଏଇ କ୍ରନ୍ଦସୀରେ ଅନ୍ତିମ ଦିନ । ସେ କେବେ ବେମାର ହେଲେ ସେ ଖବର ମଧ ମୁଁ ଜାଣି ନଥିଲି । ସଂସ୍କାର ସରିବା ପରେ ପରେ ଖବର ପାଇ 'ନୀଡ଼ମ୍'ରେ ଯାଇ ପହଞ୍ଚିଲା ବେଳକୁ ଏକମାତ୍ର ଅରୁଣ ମଧ ଉପସ୍ଥିତ ନାହିଁ । ଫେରିଲି ଶ୍ରଦ୍ଧାଞ୍ଜଳି ଜଣାଇ ।

ବହୁଦିନର ବନ୍ଧୁ, ବନ୍ଧୁ ସୁଖଦୁଃଖର ସାଥୀ । ପୃଥିବୀରେ ସାମ୍ୟବାଦର ଜୟଯାତ୍ରା ଧିମେଇ ଯିବା ହେତୁ ସେ ଆଉ ଏକ ସାମ୍ୟର ସନ୍ଧାନରେ ବ୍ରତୀ, ଏହା ସତ୍ତ୍ୱେ ତାଙ୍କ ସହିତ

ଆତ୍ମୀୟତା ସେମିତି ଅତୁଟ । "ମୁଁ ଦିନେ ଦେଖୁଚି ଅସୁସ୍ଥ ସମୟ । ମୋତେ ବାବା କହିଲେ, ମୁଁ ଚାଲିଲି ତାଙ୍କ ସାଙ୍ଗରେ ଉର୍ଦ୍ଧ୍ୱକୁ । ବାବା, ମୋ ଦେହକୁ ଯେ ଛାଡ଼ି ଆସିଚି ସେଠାରେ । ବାବା କହିଲେ, ଭୟ କରନା । ତୁ ଫେରିବୁ ସୁସ୍ଥ ହୋଇ । ମୁଁ ଫେରିଲି ପୁଣି ଦେହକୁ । ମୁଁ ସଂପୂର୍ଣ୍ଣ ସୁସ୍ଥ, ଏଇ ହେଉଛି ବ୍ରହ୍ମାନନ୍ଦ ପଣ୍ଡାଙ୍କର ମୋ ସହିତ କଥାବାର୍ତ୍ତା । ସେ ମଲକଣ୍ଢକ ରୋଗରୁ ମୁକ୍ତି ପାଇଲା ପରେ " ।

ତା ହେଲେ ଆଜି ସେ ଗଲେ କୁଆଡ଼େ ଏବଂ କାହିଁକି ? ଅସୁସ୍ଥ ହେଲେ କାହିଁକି ? ଏ ପ୍ରଶ୍ନର ଉତ୍ତର ତ ମୋତେ ଆଉ ବ୍ରହ୍ମାନନ୍ଦ ବାବୁ ଦେବାକୁ ନାହାନ୍ତି । ଏକ ଉଷ୍ମ ବନ୍ଧୁତ୍ୱର ଅବସାନ କିନ୍ତୁ ତାହା ତ ଅମଳିନ ରହିବ ।

'ନୀଡ଼ମ' ର ନୀଡ଼ ଛାଡ଼ି ପକ୍ଷୀଟି ଉଡ଼ିଯାଇଛି ବହୁ ଦୂରକୁ, ଯେଉଁଠୁ ଆଉ କେହି କେବେ ଫେରି ନାହାନ୍ତି ।



# ଉଭିଦ ବିଜ୍ଞାନର କଳ୍ପବଟ

ଡକ୍ଟର ବଂଶୀଧର ସାମନ୍ତରାୟ ଆଉ ନାହାନ୍ତି । ୧୯୧୨ ମସିହାରେ ଜନ୍ମ ତାଙ୍କର । ପିତୃବ୍ୟ କ୍ଷେତ୍ରମୋହନ ସାମନ୍ତରାୟ । ରେଭେନ୍ସା କଲେଜରେ ଅଧ୍ୟାପକ । ତାଙ୍କରି ପ୍ରଭାବକୁ ଡକ୍ଟର ସାମନ୍ତରାୟ ସବୁ ଦିନେ ସାଶ୍ରୁଳ ନୟନରେ ସ୍ମରଣ କରନ୍ତି । ଶିକ୍ଷା, ଛାତ୍ର ପ୍ରତି ଦରଦ ଜନ୍ମିଥିଲା ପିଲାଦିନରୁ । ଡକ୍ଟର ସାମନ୍ତରାୟ ଅନ୍ୟ ଚାକିରି ପ୍ରତି କେବେ ମନ ବଳାଇ ନାହାନ୍ତି । ଶିକ୍ଷକତାକୁ ହିଁ ସେ ଗ୍ରହଣ କରି ନେଲେ ଜୀବନର ବ୍ରତ ଭାବରେ । ସେଇ ହେଲା ତାଙ୍କର ପ୍ରେରଣା ନିଶା ଉଭୟ । ଆହ୍ଲାବାଦରୁ ଏମ୍.ଏସ୍‌ସି. ପାଶ୍ କରି ରେଭେନ୍ସା କଲେଜରେ ଅଧ୍ୟାପକ ଭାବରେ ଯୋଗ ଦିଅନ୍ତି । ଉଦ୍‌ଭିଦ ବିଜ୍ଞାନ ବିକାଶର ନୂତନ ଦିଗ୍‌ବଳୟ ଉନ୍ମୋଚିତ ହୁଏ ।

ହରିହର, ବସ୍ତିଆ ସାହେବ, (୵ ଚନ୍ଦ୍ରମଣି ବସ୍ତିଆ) କ'ଣ ପିଲାମାନଙ୍କୁ ତମେ ଉଦ୍‌ଭିଦ ବିଜ୍ଞାନ ପଢ଼ାଇବାକୁ ଆରମ୍ଭ କରିଦେଲେ କି ? ପ୍ରଥମ ବାର୍ଷିକ ଶ୍ରେଣୀରେ ଚତୁର୍ଥ ବିଷୟ ଭାବରେ ଉଦ୍‌ଭିଦ ବିଜ୍ଞାନ ନେଇଥିବା ଛାତ୍ରମାନଙ୍କୁ କ୍ଲାସ ଛାଡ଼ି ଚାଲିଯିବାର ଦେଖି ଡକ୍ଟର ସାମନ୍ତରାୟ ଏଇ ପ୍ରଶ୍ନ କରନ୍ତି ଡକ୍ଟର ହରିହର ପଟ୍ଟନାୟକ ଏବଂ ଅଧ୍ୟାପକ ଚନ୍ଦ୍ରମଣି ବସ୍ତିଆଙ୍କୁ । ସେମାନଙ୍କର ଚାହାଣୀ ଦେଖି ସେ କହନ୍ତି ଯେ ପ୍ରଥମରୁ ଉଦ୍‌ଭିଦ ବିଜ୍ଞାନ ପଢ଼ାଇଲେ ପିଲାମାନେ ବଟାନିକାଲ ଶବ୍ଦ ଶୁଣି ଡରିଯିବେ ନାହିଁ ? ତାଙ୍କୁ ପ୍ରଥମେ ପଢ଼ାଅ ପ୍ରକୃତି, ତା'ପରେ ପରିବେଶ । ସେମାନେ ତାର ପ୍ରେମରେ ପଡ଼ିଗଲା ପରେ ପଢ଼ାଅ ଉଦ୍‌ଭିଦ ବିଜ୍ଞାନ । ତା ହେଲେ ଯିନା ପିଲା ପଢ଼ିବେ । ଗଛଲତାକୁ ଭଲ ନ ପାଇଲେ, ଅରଣ୍ୟକୁ ଭଲ ନ ପାଇଲେ ପିଲା କ'ଣ ଉଦ୍‌ଭିଦ ବିଜ୍ଞାନୀ ହେବେ ?

ଡକ୍ଟର ସାମନ୍ତରାୟ ସେଇପରି ପଢ଼ାନ୍ତି । ତାଙ୍କର କ୍ଲାସ ରସାଳ ହୁଏ । ସେ ଗଳ୍ପ କହନ୍ତି । କହନ୍ତି ପୁରାଣ, ଇତିହାସରୁ ଗଳ୍ପ । ସେଇ ଭିତରୁ ଗଢ଼ିଆସେ ପାଠ ଉଦ୍‌ଭିଦ ବିଜ୍ଞାନକୁ । ବୈଜ୍ଞାନିକ ମାନେ ଭଲ ସାହିତ୍ୟ ଜାଣନ୍ତି ନାହିଁ । ଡକ୍ଟର ସାମନ୍ତରାୟ ଆପଣାର ଗୁରୁ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ଭଳି ଶୁଦ୍ଧ ଓଡ଼ିଆ କହନ୍ତି । ଏପରିକି ତାଙ୍କର ନାଁକୁ ସାମନ୍ତରାୟ ଯାଗାରେ ସାମନ୍ତରା ଲେଖିଦେଲେ ସେ କ୍ଷୁବ୍ଧ ହୁଅନ୍ତି । ତାଙ୍କର ସେଇ ଗୁଣ ରହିଛି ତାଙ୍କର ଉତ୍ତର ପୀଢ଼ିରେ । ଗୋକୁଳାନନ୍ଦ ମହାପାତ୍ର, କୁଳମଣି ସାମଲ, ଦୀନବନ୍ଧୁ ମିଶ୍ର, ବିଦ୍ୟାଧର ପାଢ଼ୀ ବୈଜ୍ଞାନିକ ଯେମିତି ସାହିତ୍ୟିକ ବି ସେମିତି ।

ବେଶଭୂଷାରେ ଡକ୍ଟର ସାମନ୍ତରାୟ ସଂପୂର୍ଣ୍ଣ ବ୍ରିଟିଶ । ତାଙ୍କର ସୁଟ୍, ନେକ୍ ବୋ, ଛତା ସବୁ ଇଂରାଜୀ । କିନ୍ତୁ ଘରେ ସଂପୂର୍ଣ୍ଣ ଓଡ଼ିଆ । ଠିକ୍ ସେମିତି ଅଧ୍ୟାପକ ବିଧୂଭୂଷଣ ଦାସ ।

ଡକ୍ଟର ସାମନ୍ତରାୟଙ୍କୁ ସମସ୍ତେ ବିଶେଷତଃ ଉଦ୍‌ଭିଦ ବିଜ୍ଞାନ ବିଭାଗର ଶିକ୍ଷକ, ଛାତ୍ର ସମସ୍ତେ ଭୟ କରନ୍ତି ବାଘ ଭଳି । ତାଙ୍କ ଆସିବା ଶୁଣିଲେ ଉଦ୍‌ଭିଦ ବିଜ୍ଞାନର ଲନ୍, କରିଡ଼ର ସବୁ ଖାଲି ହୋଇଯାଏ । ଲନ୍ ଉପରେ ପଇଁତରା ମାରିବା ଛାଡ଼ି ସମସ୍ତେ ପଳାନ୍ତି । କିନ୍ତୁ ସେ ସବୁକୁ ନଡ଼ରିଲେ ବା ଟିକିଏ ସହ୍ୟ କରିଗଲେ ଡକ୍ଟର ସମାନ୍ତରାୟ ଫୁଲପରି କୋମଳ, ସ୍ନେହୀ ।

ଡକ୍ଟର ସାମନ୍ତରାୟ ଆସୁଛନ୍ତି । ପଳାଅ । ମୋତେ ଦୀନବନ୍ଧୁ ମିଶ୍ର କହିଲେ, ମୁଁ ମୋର ଗୋଟିଏ ସାନଭାଇକୁ ବଟାନିକାଲ ଗାର୍ଡନ ଦେଖାଉଥିଲି । ମୁଁ ଗଲି ନାହିଁ । ଗଛ ଦେଖାଇବାକୁ ଲାଗିଲି । ତମେ ଏଠି କ'ଣ କରୁଛ ? ଡକ୍ଟର ସାମନ୍ତରାୟ ନାକରେ କଥା କହନ୍ତି । ଗଛ ଦେଖାଉଛି, ମୋର ଉତ୍ତର । ତମେ କଣ ଗଛ ଜାଣିଛ ? ଶାଳ, ଶିଶୁ, ମହୁଲ, ପୁଣି ମୋର ଉତ୍ତର । ସେ ଗୁଡ଼ାକ କଣ ନାଁ ବଟାନିକାଲ ନାଁ ନ କହିଲେ ଲାଭ କ'ଣ ? ବାପା ଜଂଗଲ ବିଭାଗରେ କର୍ମଚାରୀ ଥିଲେ । ତାଙ୍କଠାରୁ କିଛି ନାଁ ଜାଣିଥିଲି । ସୋରିଆ ରୋବଷ୍ଟା, ଟ୍ରାକ୍‌ଟୋନା ଗ୍ରାଣ୍ଡିସ୍, ମଧୁକାଲାଟି ଫୋଲିଆ । ଦେଖ, ଡକ୍ଟର ସାମନ୍ତରାୟଙ୍କ ଆନନ୍ଦ ।

ଡକ୍ଟର ସାମନ୍ତରାୟ ଖାଲି ନିରୂତ୍ୟ ବିଜ୍ଞାନୀ ନ ଥିଲେ । ବୃକ୍ଷଲତାକୁ ଭଲ ପାଉଥିଲେ ଏବଂ ତାଙ୍କର ଗବେଷଣା ଯୋଗୁଁ ହିମାଳୟର ଏକ ସଦ୍ୟ ଆବିଷ୍କୃତ ଉଦ୍‌ଭିଦକୁ ତାଙ୍କରି ନାମରେ ନାମିତ ହୋଇଚି । କୃଷି ମହାବିଦ୍ୟାଳୟର କୁଳପତି ପଦରୁ ଅବସର ନେଲାପରେ ସେ ଅପସରି ଗଲେ ସବୁଥିରୁ । ପାରିବାରିକ ବିପର୍ଯ୍ୟୟ ତାଙ୍କୁ ଗ୍ରାସ କରିଗଲା । କିନ୍ତୁ ଗର୍ବିତ, ସ୍ୱାଭିମାନୀ ସାମନ୍ତରାୟ ସେ ଦୁଃଖ କାହାକୁ କହିଲେ ବି ନାହିଁ କେବେହେଲେ । ନ କହି ପାରିବା ଯୋଗୁଁ ସେ ଦୁଃଖ ତାଙ୍କୁ ଜାଳି ଦେଇଗଲା କ୍ଷିପ୍ର ଗତିରେ ।

ତଥାପି, ଛାତ୍ର ଛାତ୍ରୀ ମାନଙ୍କର ସାଫଲ୍ୟ, ଦେଖିଲେ ସେ ଆନନ୍ଦିତ ହୁଅନ୍ତି, ଗର୍ବିତ ହୁଅନ୍ତି । ମଣିଷ ଓ ଅରଣ୍ୟ ଉପରେ ୧୨୦୦ ପୃଷ୍ଠାର ବହି ତାଙ୍କୁ ଦେଖାଇବାରେ ସେ ମୋତେ କୁଣ୍ଢାଇ ପକାଇ ଯେପରି ପ୍ରଶଂସା କଲେ ତାହା ଆଜି ମନେ ପଡ଼ିଲେ ଆଖିରେ ଲୋତକପୂର୍ଣ୍ଣ ହୋଇଆସେ । ଠିକ୍ ସେଇପରି ଯେତେବେଳେ ମୋ ସ୍ତ୍ରୀ କମଳ କୁମାରୀ ପବ୍ଲିକ ସର୍ଭିସ କମିଶନ ସଭ୍ୟ ହେଲା ପରେ ତାଙ୍କର ଆଶୀର୍ବାଦ ଲୋଡ଼ିବାକୁ ଗଲେ ତାଙ୍କ ଆଖିରୁ ଆନନ୍ଦରେ ଧାର ଧାର ଲୁହ ଗଡ଼ିବାର ଦେଖିଛି ।

ଡକ୍ଟର ସାମନ୍ତରାୟ ଆଉ ନାହାନ୍ତି । କେହି ରହିବେ ନାହିଁ , ରହିବେ ନାହିଁ ଏ ମର୍ତ୍ତ୍ୟ ମଣ୍ଡଳେ, କିନ୍ତୁ ସମସ୍ତେ ଫେରିଯିବେ ସେହି ସ୍ୱର୍ଗ ପୁରକୁ ନିଜ ନିଜର କର୍ମର ଫଳ ନେଇ । କିନ୍ତୁ ସେମିତି କ୍ଲାସିକାଲ ମଣିଷ ମିଳିବେ କେଉଁଠୁ ? ଏବଂ କ୍ଲାସିକାଲ ମଣିଷ ନ ଥିଲେ ସମାଜରେ ଆଲୋକ ମିଳିବ କେଉଁଠୁ ?



# ଗାନ୍ଧିବାଦର ଶେଷ ସନ୍ତକ

ପ୍ରସିଦ୍ଧ ଗାନ୍ଧିବାଦୀ, ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ବିଶ୍ୱମ୍ଭର ନାଥ ପାଣ୍ଡେ ଆଉ ନାହାନ୍ତି । ୯୨ ବର୍ଷ ବୟସରେ ନୂଆଦିଲ୍ଲୀରେ ଲୋଧିରୋଡ଼ ବାସଭବନରେ ତାଙ୍କର ପରଲୋକ ହୋଇ ଯାଇଛି । ଗଲା ବେଶ୍ କିଛି ବର୍ଷ ହେଲା ସେ ଅସୁସ୍ଥ ରହୁଥିଲେ । ଜୀବନ ଦୀପ ଧୀରେ ଧୀରେ ଅସ୍ତମିତ ହୋଇ ଯାଉଥିଲା । ଅପରାହ୍ନ ସୂର୍ଯ୍ୟ ଅସ୍ତମିତ ହୋଇଗଲା ଭଳି ଦିଗ୍‌ବଳୟରେ ।

ତାଙ୍କ ସହିତ ପରିଚିତି ବହୁଦିନରୁ । ପ୍ରସିଦ୍ଧ ସ୍ୱାଧୀନତା ସଂଗ୍ରାମୀ ପଣ୍ଡିତ ସୁନ୍ଦରଲାଲଙ୍କର ସେ ଥିଲେ ସହକର୍ମୀ ଏବଂ ଶିଷ୍ୟ । ଭାରତ-ଚୀନ୍ ମୈତ୍ରୀ ସମିତିର ପ୍ରତିଷ୍ଠାତା ମାନଙ୍କ ମଧ୍ୟରେ ଅନ୍ୟତମ । ଚୀନ ଦେଶ ବା ତା'ର ନେତୃବୃନ୍ଦ ଗ୍ରହଣ କରିଥିବ । ଅନେକ ନୀତି ସହିତ ସେ ଏକମତ ହୋଇ ନାହାନ୍ତି ଏବଂ ତାଙ୍କର ଭିନ୍ନ ମତକୁ ସେ ଚୀନା କର୍ତ୍ତୃପକ୍ଷଙ୍କୁ ଜଣାଇବାରେ କୁଣ୍ଠିତ ହୋଇନାହାନ୍ତି । ମତଭେଦ, ମତ ପାର୍ଥକ୍ୟ ସତ୍ତ୍ୱେ ଏଇ ଦୁଇ ଦେଶ ମଧ୍ୟରେ ମୈତ୍ରୀ ଏବଂ ବନ୍ଧୁତା ବିଶ୍ୱ ଶାନ୍ତି ତଥା ପରସ୍ପରର ବିକାଶ ପାଇଁ ଏକାନ୍ତ ଅପରିହାର୍ଯ୍ୟ ବୋଲି ତାଙ୍କର ମତ ଥିଲା । ଏହାଛଡ଼ା ଆଲୋଚନା ଜରିଆରେ ହିଁ ଉପୁଜିଥିବା ସମସ୍ୟାର ସମାଧାନ ହୋଇ ପାରିବ, ସଂଘର୍ଷ ଦ୍ୱାରା ନୁହେଁ ବୋଲି ତାଙ୍କର ମତ ଥିଲା । ସେଇଯୋଗୁଁ ସମସ୍ତ ଉତ୍ଥାନ ପତନ ସତ୍ତ୍ୱେ ସେ ଭାରତ ଚୀନ ମୈତ୍ରୀର ଏକନିଷ୍ଠ ବାବଦୂକ ଥିଲେ । ଆମ ଏଇ ସରକାରୀ ଘରକୁ ସେ ଆସିଛନ୍ତି ରିକ୍ସାରେ । ଏଇ ସରକାରୀ ଘର ପାଖରେ ଥିବା ୟୁନିଭର୍ସକୁ ଆସିଛନ୍ତି ବହୁବାର ରାଜ୍ୟପାଳ ଭାବରେ । ରାଜ୍ୟପାଳ ପଦବୀରୁ ବିଦାୟ ନେଲାପରେ ଦେଖା ହୋଇଛି ବହୁବାର ଦିଲ୍ଲୀରେ । ତାଙ୍କ ଘରେ ନଚେତ୍ ଗାନ୍ଧି ସ୍ମାରକୀ ପୀଠରେ । ଏହା ଥିଲା ତାଙ୍କର ଶେଷ କର୍ମସ୍ଥଳୀ । ପାର୍ଲାମେଣ୍ଟରେ ସେ ଥିଲେ ମନୋନୀତ ସଭ୍ୟ କିନ୍ତୁ ଚଳନ୍ତି ଶାସନ ଠାରୁ ସେ ଖାପଛଡ଼ା ହୋଇ ଯାଉଥିଲେ । ଇନ୍ଦିରାଗାନ୍ଧିଙ୍କ ସହିତ ତାଙ୍କର ଥିଲା ନିବିଡ଼ ପରିଚିତି ଏବଂ ପାରିବାରିକ ବନ୍ଧୁତ୍ୱ । ତା'ପରବର୍ତ୍ତୀ ସରକାର ମାନଙ୍କ ସହିତ ସେ ଆପଣାକୁ ଖାପ ଖୁଆଇ ପାରୁନଥିଲେ । ମନେ ହେଉଥିଲା ସମୟର ପରିବର୍ତ୍ତନ ହୋଇ ଯାଇଛି, ସେ ପୁରୁଣା ବା ମରହଟ୍ଟି ହୋଇଗଲେଣି । ଥରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀଙ୍କ ସହିତ ସାକ୍ଷାତର କାର୍ଯ୍ୟକ୍ରମ ସ୍ଥିର ହୋଇଥିବା ସତ୍ତ୍ୱେ ତାଙ୍କୁ ଅପେକ୍ଷା କରିବାକୁ ପଡ଼ିଥିଲା ଅନେକ ସମୟ । ବ୍ୟଥିତ ପାଣ୍ଡେଜୀଙ୍କୁ ପ୍ରଧାନମନ୍ତ୍ରୀଙ୍କ ଦପ୍ତର ଉପଦେଶ ଦେଇଥିଲା, କାହିଁକି ଆପଣ ଏ ବୟସରେ ଏମାନଙ୍କୁ ଦେଖା କରିବାକୁ ଆସୁଚନ୍ତି ? କ'ଣ ଦରକାର, ଆପଣଙ୍କର ? ତାପର ଠାରୁ ଆଉ ସେ ଯାଇ ନାହାନ୍ତି ପ୍ରଧାନମନ୍ତ୍ରୀଙ୍କୁ ଭେଟିବା ପାଇଁ । ଯିଏ ଚାହିଁଛନ୍ତି ସେମାନେ ଆସିଛନ୍ତି ତାଙ୍କୁ ଭେଟିବା ପାଇଁ ।

ବିଶ୍ୱମ୍ଭର ନାଥ ପାଣ୍ଡେ ୧୯୦୬ ମସିହା ଡିସେମ୍ବର ୨୩ ତାରିଖରେ ମଧ୍ୟ ପ୍ରଦେଶର ଉତ୍ପ୍ରେଖରେ ଜନ୍ମ ଗ୍ରହଣ କରିଥିଲେ । ଜୁନ୍ ପହିଲା, ୧୯୯୮ରେ ପ୍ରଚଣ୍ଡ ରୌଦ୍ର ତାପ ଭିତରେ ତାଙ୍କର ପରଲୋକ ହୋଇଗଲା । ମୁକ୍ତିର ଅଗ୍ନି ତାଙ୍କର ପରିବାର ଭିତରେ ଜଳୁଥିଲା ଏବଂ ତାର ସେ ଥିଲେ ଗର୍ବିତ ଉତ୍ତରାଧିକାରୀ । ତାଙ୍କର ପିତାମହ ୧୮୫୭ ମସିହାର ସିପାହୀ ବିଦ୍ରୋହରେ ଅଂଶ ଗ୍ରହଣ କରି ମୃତ୍ୟୁଦଣ୍ଡ ଭୋଗ କରିଥିଲେ । ବାପା ମଧ୍ୟ ଯୋଗ ଦେଇଥିଲେ ସ୍ୱଦେଶୀ ଆନ୍ଦୋଳନରେ । ସ୍ୱାଭାବିକ ଭାବରେ ବିଶ୍ୱମ୍ଭର ନାଥ ସ୍ୱାଧୀନତା ଆନ୍ଦୋଳନର ପ୍ରବାହ ଭିତରକୁ ଆସିଯାଇଥିଲେ ପିଲାଦିନରୁ ।

ମାତ୍ର ୧୫ ବର୍ଷ ବୟସରେ ସେ ମଧ୍ୟ ଯୁଗୀୟ ଭାରତବର୍ଷର ଇତିହାସ ଓ ସଂସ୍କୃତି ଉପରେ ନିବନ୍ଧ ଲେଖି ଡକ୍ଟରେଟ ଉପାଧି ଲାଭ କରନ୍ତି ଏବଂ ସଙ୍ଗେ ସଙ୍ଗେ ଚାକିରି ନ ଖୋଜି ଚାଲି ଯାଆନ୍ତି ସାବରମତୀ ଆଶ୍ରମକୁ ଗାନ୍ଧିଜୀଙ୍କ ସହିତ ଯୋଗଦେବା ପାଇଁ । ଚଳିତ ଶତାବ୍ଦୀର ଦ୍ୱିତୀୟ ଦଶକରେ ସେ ଆଲାହାବାଦ ସହରକୁ ଆପଣାର କର୍ମସ୍ଥଳୀ ଭାବରେ ବାଛି ନେଇଥିଲେ । ଏଇଠି ତାଙ୍କର ପରିଚିତି ଏବଂ ଆତ୍ମୀୟତା ଗଢ଼ିଉଠେ ନେହେରୁ ପରିବାରର ଚାରିପୁରୁଷ ସହିତ । ଆତ୍ମୀୟତାର ସେ ନିବିଡ଼ତା ଅକ୍ଷୁର୍ଣ୍ଣ ରହେ ସମୟର ଘାତ ପ୍ରତିଘାତ ଭିତରେ । ୧୯୨୦ରେ ସେ ବିଧିବଦ୍ଧ ଭାବରେ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗ ଦିଅନ୍ତି । ୧୯୨୧ ରୁ ୧୯୪୨ ପର୍ଯ୍ୟନ୍ତ ସବୁ ସଂଗ୍ରାମରେ ସେ ଅଂଶ ଗ୍ରହଣ କରନ୍ତି ଏବଂ କାରାବରଣ କରନ୍ତି । ତାହା ତାଙ୍କୁ ପ୍ରବାଦ ପୁରୁଷରେ ପରିଣତ କରେ ।

ହିନ୍ଦୀ, ଉର୍ଦ୍ଦୁ ଏବଂ ଇଂରାଜୀରେ ଭାଷଣ ଦେବାରେ ପ୍ରବୀଣ ବିଶ୍ୱମ୍ଭର ନାଥ ପାଣ୍ଡେ କଟକରେ କୋରାନ ଶାସ୍ତ୍ର ଉପରେ ଅନର୍ଗଳ ବକ୍ତୃତା ଦେଇ ମୌଲବୀ ମାନଙ୍କୁ ଚକିତ ଏବଂ ମନ୍ତ୍ରମୁଗ୍ଧ କରନ୍ତି ।

ପାଣ୍ଡେଜୀ ୧୯୫୨ ମସିହା ପର୍ଯ୍ୟନ୍ତ ଉତ୍ତର ପ୍ରଦେଶ ବିଧାନସଭାର ସଦସ୍ୟ ଭାବରେ ନିର୍ବାଚିତ ହୁଅନ୍ତି । ଉତ୍ତରପ୍ରଦେଶର ବିଧାନ ପରିଷଦର ସଭ୍ୟ ଭାବରେ ନିର୍ବାଚିତ ହୁଅନ୍ତି ୧୯୭୪ ମସିହାରେ । ପରବର୍ତ୍ତୀ କାଳରେ ୧୯୭୬ ମସିହାରେ ସେ ରାଜ୍ୟସଭାକୁ ମନୋନୀତ ହୁଅନ୍ତି । ୧୯୮୨ ମସିହାରେ ସେ ରାଜ୍ୟସଭାକୁ ନିର୍ବାଚିତ ହୁଅନ୍ତି ଉତ୍ତର ପ୍ରଦେଶ ବିଧାନସଭାରୁ । ୧୯୮୮ ମସିହାରେ ଓଡ଼ିଶାର ରାଜ୍ୟପାଳ ପଦବୀରୁ ବିଦାୟ ନେଲାପରେ ସେ ପୁଣି ରାଜ୍ୟସଭାକୁ ମନୋନୀତ ହୁଅନ୍ତି ଏବଂ ଗାନ୍ଧୀ ସ୍ମାରକ ନିଧିର ଦାୟିତ୍ୱ ବହନ କରନ୍ତି । ଜୀବନର ଶେଷ ସମୟ କଟିଯାଏ ସେଇ ସ୍ମାରକ ନିଧିର କାମରେ । ୧୯୭୬ ମସିହାରେ ତାଙ୍କୁ ପଦ୍ମଶ୍ରୀ ଉପାଧିରେ ଭୂଷିତ କରାଯାଏ । ଜୀବନର କିଛି ବର୍ଷ ସେ ଗୁରୁଦେବ ରବୀନ୍ଦ୍ରନାଥଙ୍କ ଶାନ୍ତିନିକେତନରେ କଟାଇଥିଲେ ଏବଂ ସେଇଠାରେ ବିବାହ ମଧ୍ୟ କରିଥିଲେ । ଭାରତୀୟ ଜାତୀୟ କଂଗ୍ରେସର ଇତିହାସ ରଚନା କମିଟିର ଅଧ୍ୟକ୍ଷ ଭାବରେ ସେ କରି ଯାଇଥିବା କାର୍ଯ୍ୟ ତାଙ୍କୁ ଚିରଦିନ ଅମର କରି ରଖିବ ।

ମହାତ୍ମା ଗାନ୍ଧି, ପଣ୍ଡିତ ନେହେରୁ, ଗୁରୁଦେବ ରବୀନ୍ଦ୍ରନାଥଙ୍କ ସହିତ ନିବିଡ଼ ସଂପର୍କରେ ଆସିଥିବା ବିଶ୍ୱମ୍ଭର ନାଥ ପାଣ୍ଡେ ଓଡ଼ିଶାର ରାଜ୍ୟପାଳ ଥିଲେ । ୧୯୮୩ ରୁ ୧୯୮୮

ପର୍ଯ୍ୟନ୍ତ । ରାଜ୍ୟର ସବୁ ସ୍ତରର ମଣିଷ ସହିତ ତାଙ୍କର ପରିଚିତି ଥିଲା । ଆପଣାର ଅଗାଧ ପାଣ୍ଡିତ୍ୟ, ବିଶେଷତଃ ଭାଷା, ଇତିହାସ ଏବଂ ରାଜନୈତିକ ଦର୍ଶନ ଉପରେ ପାଣ୍ଡିତ୍ୟ ତାଙ୍କୁ ଆପଣାର କରିଥିଲା ସମାଜର ସବୁ ଶ୍ରେଣୀର ବ୍ୟକ୍ତି ମାନଙ୍କ ସହ ।

"ଆପଣଙ୍କ ଦେହ କାହିଁକି ଭଲ ରହୁନାହିଁ । ପାଣ୍ଡେଜୀ" ମୁଁ ପ୍ରଶ୍ନ କଲି । ୟୁନିଭର୍ସିର ବାର୍ଷିକ ଉତ୍ସବରେ ପୌରୋହିତ୍ୟ କରି ସେ ଚାଲିଚାଲି ଯାଉଥାନ୍ତି ଗାଡ଼ି ପାଖକୁ । " ଏଇ ରାଜ୍ୟପାଳ ପଦବୀର ବନ୍ଦୀ ଜୀବନ ଏବଂ ଶାରୀରିକ ପରିଶ୍ରମର ଅଭାବ ଯୋଗୁଁ ଏଇ ଦେଖୁନ, ଗାଡ଼ି କେତେ ପାଖରେ ? ଚାଲିବା ମଧ୍ୟ ସମ୍ଭବ ହେଉ ନାହିଁ । "

ବିଶ୍ୱମ୍ଭର ନାଥ ପାଣ୍ଡେଙ୍କ ପରଲୋକରେ ମୁଁ ଜଣେ ଆତ୍ମୀୟଙ୍କୁ ହରାଇଛି । ଦିଲ୍ଲୀ ଗଲେ ପଚାରନ୍ତି କେତେ ଲୋକଙ୍କ କଥା । କେତେ ଘଟଣାର ସବିଶେଷ ବିବରଣୀ । ଫେରିଲାବେଳେ କହନ୍ତି ଆର ଥରକୁ ଆସିଲେ ଆସିବା ପାଇଁ ଭୁଲିବ ନାହିଁ ଟି ?

କିନ୍ତୁ ଏଥରକ ଆଉ ତ ଯିବାକୁ ହେବ ନାହିଁ । ନୂଆ ଲୋକ ଆସିଯିବେଣି । ସେ ଗଲେ କିନ୍ତୁ ମନେ ପଡ଼ିବ ସେଇ ସୌମ୍ୟ ଋଷି ଭଳି ଚେହେରାର ମଣିଷଟିକୁ ।



# ବାର୍‌ର ବାଦଶାହଙ୍କ ବିଦାୟ

ମୃତ୍ୟୁ ଆସିବ । ତା'ର ପଦଧ୍ୱନି ଶୁଭିଲାଣି । କିନ୍ତୁ ସେଥିପାଇଁ ବିବ୍ରତ ବା ଭୟଭୀତ ହେଲେ କ'ଣ ହେବ ? ଲାଭ ମଧ କ'ଣ ମିଳିବ ? ସେଇଯୋଗୁଁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କାର୍ଯ୍ୟ ଲିପ୍ତ ରହିବା ହିଁ ଉଚିତ । ଜୀବନରେ ଯେଉଁ ସବୁ ଜିନିଷକୁ ଭଲ ପାଇ ଆସିଛ, ତାକୁ ମଧ ମୃତ୍ୟୁର ଆତଙ୍କରେ ଛାଡ଼ି ଦେବା ଉଚିତ ନୁହେଁ । ଜୀବନକୁ ଉପଭୋଗ କର । ଜୀବନକୁ ଭଲ ପାଅ । ଜୀବନ ଜୀବନ ପାଇଁ ମୃତ୍ୟୁ ପାଇଁ ନୁହେଁ ।

ବୀରେନ୍ଦ୍ର ମୋହନ ପଟ୍ଟନାୟକ ଏଇ ଦର୍ଶନର ବାବଦୂକ । କଚେରୀ ଭିତରେ ଆଇନ୍‌ର ସଫଳ ବାବଦୂକ ଯେମିତି କୋର୍ଟ ବାହାରେ ଜୀବନର ବାବଦୂକ ବି ସେମିତି । ତାଙ୍କର ମରଣରେ ଜୀବନର ଜୟଗାନ ମୁଁ ଶୁଣିଚି, ସେଇ ଜୟଗାନ ରାମ ନାମ ସତ୍ୟ ହୈ ଧ୍ୱନି ଭିତରେ । ଜୀବନର ଶିଖା ଜଳିବାର ଦେଖିଚି ଖାନନଗରରେ ଚିତାନଳ ଭିତରେ । ବୀରେନ୍ଦ୍ର ମୋହନଙ୍କ ପରଲୋକ ହୋଇଗଲା ମାର୍ଚ୍ଚ ୧୦, ୧୯୯୭ ମସିହା ମ୍ଳାନ ଅପରାହ୍ନରେ । ତାଙ୍କର ମରଦେହ ପାଖରେ ଆଣ୍ଠୁମାଡ଼ି ଆପଣାର ଶ୍ରଦ୍ଧାଞ୍ଜଳି ଅର୍ପଣ କଲାବେଳେ ତାଙ୍କର କଣ୍ଠରୁ ସେଇ ବାକ୍ୟର ପ୍ରତିଧ୍ୱନି ଶୁଣିଥିଲି । ୧୯୫୭ ମସିହାରେ ବିଶ୍ୱଯୁବ ଉତ୍ସବର ଅଂଶ ଭାବରେ ଓଡ଼ିଶାର ଯୁବ ଉତ୍ସବରେ ପୌରୋହିତ୍ୟ କରି ସେ କହିଥିଲେ ଯୌବନ ବୟସ ମାନେ ନାହିଁ । ଯୌବନ ହେଉଛି ଏକ ମାନସିକ ଅବସ୍ଥା । କର୍ମ ପାଇଁ, ସ୍ୱପ୍ନ ପାଇଁ, ସୁନ୍ଦର ଲକ୍ଷ୍ୟ ଦିଗରେ ଧାବିତ ହେବାପାଇଁ ଯେଉଁ ପ୍ରେରଣା ମିଳେ ତାହାରି ନାଁ ହେଉଛି ଯୌବନ । ତାକୁ ଉପଭୋଗ କର ଚିରକାଳ । ସେଇ ଚିର ବସନ୍ତ ବିରାଜିତ ହେଉ ଆମ୍ଭମାନଙ୍କ ମଧରେ । ବୀରେନ୍ ବାବୁ ଶୋଇ ପଡ଼ିଛନ୍ତି । ଆଉ କ'ଣ ଉଠିବେ ନାହିଁ ? ବସନ୍ତ କ'ଣ ସତରେ ନିଦାଘରେ ପରିଣତ ହୋଇଛି ? କୁଢ଼ କୁଢ଼ ମଣିଷର ବିଭିନ୍ନ ଜୀବିକାର, ବିଭିନ୍ନ ବୟସର, ବିଭିନ୍ନ ସ୍ୱପ୍ନର । ବୀରେନ୍ ବାବୁ ସେ ସବୁର ଏକ ଜୀବନ୍ତ ସମାରୋହ, ଯାହା ମଳିନ ପଡ଼ି ଯାଇଛି କାଳର କରାଳ ଆଘାତରେ ।

ପ୍ରକୃତିର ରାସଭୂମି ବାଣୀ ତୁ ନର୍ମଦା ବାରିପଦା ସହରରେ ତାଙ୍କର ଜନ୍ମ ହୋଇଥିଲା । ନୃତ୍ୟ, ଗୀତ ସହିତ ପ୍ରକୃତିର ସବୁ ମନୋରମ ସୃଷ୍ଟି ତାଙ୍କୁ ଚିରକାଳ ବିମୋହିତ କରି ରଖିଥିଲା । ରେଭେନ୍ସା କଲେଜରୁ ଅଧ୍ୟୟନ ଶେଷ କରି ସେ ସବ ଡିପୋଟି ହୋଇଥିଲେ ଖୋର୍ଦ୍ଧାରେ । ଓଳସିଂହ ଗ୍ରାମର ପ୍ରସିଦ୍ଧ ଜମିଦାର ଦାଶରଥି ପଟ୍ଟନାୟକ ଏଇ ପ୍ରତିଭାଶାଳୀ ଯୁବକ ପ୍ରତି ଆକୃଷ୍ଟ ହୋଇଥିଲେ ଏବଂ ଆପଣାର ଗୁଣବତୀ ସୁନ୍ଦରୀ କନ୍ୟା ବୁଢ଼ୀ ସହିତ ତାଙ୍କର ବିବାହ କରାଇଥିଲେ । ପରେ ଜାମାତା ବୀରେନ୍ଦ୍ର ମୋହନଙ୍କୁ ସେ ବାରିଷ୍ଟରୀ ପଢ଼ିବା ପାଇଁ ପଠାଇଥିଲେ । ବିଲାତରୁ ଫେରି ବୀରେନ୍ଦ୍ର ମୋହନ ଓକିଲାତି ଆରମ୍ଭ କଲେ କଟକରେ ।

ଆରିଷ୍ଟୋକ୍ରାଟ ବୀରେନ୍ଦ୍ର ମୋହନ ଘର ଦେଖିବାର ବସ୍ତୁ । ଦୁର୍ମୂଲ୍ୟ କ୍ୟାକଟସ୍ ଗଛର ସମାରୋହ । ବହୁ କ୍ୟାକ୍‌ଟସ ଗଛରେ ଫୁଲ ଫୁଟିଛି । କ୍ୟାକ୍‌ଟସ୍ ଗଛରେ ଫୁଲ ଫୁଟିବା ଖୁବ୍ ବିରଳ । କଣ୍ଟା ଭିତରେ ଫୁଲର ସୌନ୍ଦର୍ଯ୍ୟ ଉପଭୋଗ କରିବା ଆଉ ଜଣକୁ ଦେଖିଥିଲି । ସେ ହେଉଛନ୍ତି ବୀରେନ୍ଦ୍ର ମୋହନଙ୍କ ସହପାଠୀ ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟଙ୍କ ସହଧର୍ମିଣୀ ଶ୍ରୀମତୀ ନଳିନୀ ଦେବୀ ରାଉତରାୟ । କ୍ୟାକ୍‌ଟସ୍ ଗଛ ସବୁକୁ ମୁଁ ବହୁବାର ଦେଖିଚି । ତାଙ୍କର ସୁନ୍ଦର ଲନ୍‌ର ଚାରିପଟରେ । ଆଜି କିନ୍ତୁ ଚମକ ଲାଗିଲା । ଜୀବନର ବହୁ କଣ୍ଟା ଭିତରେ ସେ ଜୀବନକୁ ଫୁଲ ପରି ଉପଭୋଗ କରିଯାଇଛନ୍ତି ତ ସତରେ । କଣ୍ଟା ଫୁଟିଛି କିନ୍ତୁ ଫୁଲ ବି ଫୁଟିଛି ତାଙ୍କର ଜୀବନରେ । ବୀରେନ୍ଦ୍ର ମୋହନଙ୍କ ଜୀବନ ହେଉଛି ତାହାର ପ୍ରତିଛବି ।

ବୀରେନ୍ଦ୍ର ମୋହନ କ୍ୟାନସର ରୋଗରେ ଆକ୍ରାନ୍ତ ହୋଇଥିଲେ କିଛି କାଳ ହେଲା । ଅର୍ଥର ଅଭାବ ନ ଥିଲା ତେଣୁ ଚିକିତ୍ସାରେ ତ୍ରୁଟି ହୋଇ ନାହିଁ । ଆକ୍ରାନ୍ତ ହେବା ଯୋଗୁଁ ସେ ଜୀବନର ଅନେକ ସରାଗକୁ ମାରି ଦେଇଥିଲେ । କିନ୍ତୁ କ୍ୟାନସର ସେଲ ସବୁ ଚିକିତ୍ସା ପରେ ମରି ଯାଇଛନ୍ତି ଭାବି ସେ ପୁଣି ଫେରି ଥିଲେ କର୍ମକୁ ଏବଂ ସରାଗକୁ । ବୀରେନ ବାବୁ ବହୁ ମୋକଦ୍ଦମାର ମହାରଥୀ । କୋର୍ଟକୁ ସେ ଭୟ କରନ୍ତି ନାହିଁ । ଆଲୋଚନା ମଧ କରି ନାହାନ୍ତି । ମହତାବଙ୍କ ବିରୁଦ୍ଧରେ ମାନହାନି ମୋକଦ୍ଦମା ଠାରୁ ଆରମ୍ଭ କରି ରାଜ୍ୟପାଳଙ୍କ ବିରୁଦ୍ଧରେ ମୋକଦ୍ଦମା ତାଙ୍କର ଓକିଲାତି ଜୀବନରେ ମାଇଲ ଖୁଣ୍ଟ । ଓଡ଼ିଶା ହାଇକୋର୍ଟର ସେ ଜଣେ ଏକ ନମ୍ବର ଆଡ୍‌ଭୋକେଟ୍ ଥିଲେ । କିଛିକାଳ ଆଡ୍‌ଭୋକେଟ୍ ଜେନେରାଲ ମଧ ଥିଲେ । ହାଇକୋର୍ଟ ବିଚାରପତି ପଦବୀ ତାଙ୍କ ଦ୍ୱାରା ଅଳଙ୍କୃତ ହେବାର ସୌଭାଗ୍ୟ ପାଇ ନାହିଁ । ବହୁ କମିଶନ ଆଗରେ, ବହୁ ସ୍ପର୍ଶକାତର ମୋକଦ୍ଦମାରେ ବୀରେନ୍ଦ୍ର ମୋହନ ଆପଣାର ପାରଦର୍ଶିତା ପ୍ରମାଣ କରି ଯାଇଛନ୍ତି । ଖୁରାନା, ବର୍ମନ, କୁଞ୍ଜ ବିହାରୀ ପଣ୍ଡା, ବି.ବି.ପଟ୍ଟନାୟକ କମିଶନର ରାୟ ତାଙ୍କର ବିତର୍କରେ ପଟୁତା ଲିପିବଦ୍ଧ କରିଛନ୍ତି । ବିଜୁ ପଟ୍ଟନାୟକ, ଜାନକୀ ବଲ୍ଲଭ ପଟ୍ଟନାୟକ, ହରେକୃଷ୍ଣ ମହତାବ୍‌ଙ୍କ ପାଇଁ ସେ ମକଦ୍ଦମା ଲଢ଼ିଛନ୍ତି ।

କିନ୍ତୁ ତାଙ୍କର ଜୀବନରେ ବିଭିନ୍ନ ସ୍ୱାଦ ଥିଲା । ଆଇନ ବ୍ୟବସାୟର ବ୍ୟସ୍ତତା ସତ୍ତ୍ୱେ ସେ ସମୟ କରୁଥିଲେ ଅନ୍ୟ କାର୍ଯ୍ୟ ପାଇଁ । ଆଇନ ବ୍ୟବସାୟ ଏକ ଜୀବିକା ମାତ୍ର । ଏହା ତ ସଂପୂର୍ଣ୍ଣ ନୁହେଁ । ତାଙ୍କ ସଙ୍ଗରେ ମାସ ମାସ ଧରି ମୁଁ ଓଡ଼ିଶାର ବହୁ ଅଞ୍ଚଳ, ଯୁବ ଉତ୍ସବର ସଂଗଠନ ବୁଝିଛି । ଦେଖିଚି କିପରି ଦରଦୀ ମଣିଷ ଥିଲେ ସେ । ହୁଇସ୍କି ସେ ଏକାକୀ ପିଅନ୍ତି ନାହିଁ । ସାଙ୍ଗରେ ଥିବା ବନ୍ଧୁମାନଙ୍କୁ ନିଶ୍ଚୟ ଡ଼ାକିବେ । କେତେ ପଇସା ଖର୍ଚ୍ଚ ହେବ ତାର ହିସାବ ସେ କରନ୍ତି ନାହିଁ ।

ଥରେ ଜଣେ ଅଧାପକ ବନ୍ଧୁଙ୍କୁ ନେଇ ମୁଁ ତାଙ୍କ ପାଖରେ ପହଞ୍ଚିଲି । ଉକ୍ତ ଅଧ୍ୟାପକଙ୍କର ଏକ ମକଦ୍ଦମା କରିବାର ଥିଲା ସରକାରଙ୍କ ବିରୁଦ୍ଧରେ । କେସ୍‌ଟି ବେଶ୍ ଜଟିଳ ଥିଲା । କାଗଜ ପତ୍ର ସବୁ ତନଖି କରି ସାରିଲା ପରେ ବିରେନ୍ ବାବୁ କେଶ୍ ଲଢ଼ିବା ପାଇଁ ସମ୍ମତ ହେଲେ । କାଗଜ ପତ୍ର ତନଖି କରନ୍ତି ଟିକିନିଖି । କେତେ ଖର୍ଚ୍ଚ ପଡ଼ିବ (ଫିସ୍ ପଡ଼ିବ ବୋଲି ତ କହି

ପାଇଲି ନାହିଁ) ବୋଲି ମୁଁ ବିନମ୍ରତାର ସହିତ ପଚାରିବାରୁ ସେ ଉତ୍ତର ଦେଲେ, ତମେ କ'ଣ ମୋର ଷ୍ଟାଣ୍ଡାର୍ଡ ଖରାପ ହୋଇଗଲାଣି ବୋଲି ଭାବିଲଣି ନା କ'ଣ ? ମୋର କ'ଣ ବ୍ୟବସାୟୀ କ୍ଲାଏଣ୍ଟ କର୍ପୋରେସନ କ୍ଲାଏଣ୍ଟ ନାହାନ୍ତି ଯେ ମୁଁ ଏଇ ଅଧ୍ୟାପକଙ୍କ କେସ୍‌ରୁ ପଇସା ଅର୍ଜନ କରିବି । ତା ପରେ ସେ ତାଙ୍କର ଆସିଷ୍ଟାଣ୍ଟକୁ ପ୍ରଶ୍ନ କଲେ ଏଥିରେ କେତେ ଟଙ୍କା କୋର୍ଟ ଫି ଲାଗିବ, କେତେ ଟଙ୍କା ଲାଗିବ ଟାଇପ କରିବା ପାଇଁ । ଆଜିକୁ ପ୍ରାୟ ୩୦ ବର୍ଷରୁ ଊର୍ଦ୍ଧ୍ୱ ସମୟର କଥା । ଆସିଷ୍ଟାଣ୍ଟ ହିସାବ କରି କହିଲେ ଯେ ତିନିଶହ ଟଙ୍କା ଲାଗିବ । ବୀରେନ ବାବୁ କହିଲେ ଅଧ୍ୟାପକ ତିନି ଶହ ଟଙ୍କା କୁଆଡୁ ଦେଇ ପାରିବ ? ସେ ନିଜ ପର୍ସରୁ ଦେଢ଼ଶହ ଟଙ୍କା ବାହାର କରି ଆସିଷ୍ଟାଣ୍ଟ ହାତକୁ ବଢ଼ାଇ ଦେଇ କହିଲେ ଏଇତ ମୋର କଣ୍ଟ୍ରିବ୍ୟୁସନ, ବାକି ତକ ଅଧ୍ୟାପକ ଦେବେ । ସେ ଦିନ ଜାନୁପାତି ଶ୍ରଦ୍ଧାଞ୍ଜଳି କଲାବେଳେ ମନେ ହେଉଥିଲା ଏଇ ଭଳି ମଣିଷଟିଏ ହେଜିବାକୁ ପଡ଼ିବ । ଏକ ଭାନିସିଂ ଟ୍ରାଇବର ପ୍ରତିଭୂ ସେ ।

ବୀରେନ୍ଦ୍ର ମୋହନ ପଟ୍ଟନାୟକ ଆଉ ନାହାନ୍ତି । ବୟସ ଅଶୀ ପାଖେଇ ଥିଲା । କିନ୍ତୁ ବେଶ୍ କାର୍ଯ୍ୟଦକ୍ଷ ଥିଲେ ସେ । ଏବେ ନର୍ସିଂହୋମରେ ଯାଇ ତାଙ୍କୁ ଭେଟିଥିଲି । ମୋର ଝିଆରୀ ବାହା ହୋଇଥିଲା ତାଙ୍କ ବୋହୂର ଭାଇକୁ । କରୁଣାକର ପଟ୍ଟନାୟକ (ମୁଥର ବାପା) ପ୍ରଥମେ ଯାଇଥିଲେ, ମୁଁ ପରେ ଯାଇଥିଲି । ଏକ ମ୍ଳାନ ହସର କ୍ଷୀଣ ରେଖା ଉକୁଟି ଲିଭି ଯାଇଥିଲା । ସେ ଦୁର୍ବଳ କଣ୍ଠରେ କହୁଥିଲେ ମୁଁ ଫେରି ଯାଏ ଘରକୁ । ତମମାନଙ୍କୁ ସମସ୍ତଙ୍କୁ ଡାକିବି । ସେ ଫେରିଥିଲେ । କିନ୍ତୁ ଆଉ ଡାକିବାର ଶକ୍ତି ନ ଥିଲା ।

ବୀରେନ୍ ବାବୁ । ଆପଣ କେମିତି ଚାଲିଗଲେ । ସେ ନିମନ୍ତ୍ରଣ ପରା ବାକି ରହିଯାଇଛି । ନା, ସେ ନିମନ୍ତ୍ରଣ ଭୋଜି ହେବ ସେଇଠି ଯେଉଁଠି ଆମେ ଦିନେ ସମସ୍ତେ ଏକାଠି ହେବା । ତା ହେଲେ ଆଜିର ବିଦାୟ ତ ବିଦାୟ ନୁହେଁ । ନମସ୍ତେ । ଫିର ମିଲେଙ୍ଗେ । ଅରୋଭର (ଦେଖା ହେବା ପାଇଁ ବିଦାୟ), ଦସ୍ ବିଦାନିଆଁ (ଦେଖା ହେବା ପାଇଁ ବିଦାୟ) । ଆପଣ ଜୀଇଁ ରହିବେ ଆମ ସମସ୍ତଙ୍କ ଭିତରେ । ଆମେ ହେଜିବୁ ଆପଣଙ୍କୁ । କାରଣ ଜୀବନର ଅନ୍ୟ ସବୁ ବିଭାବ ପରି ବାରରୁ ମଧ୍ୟ କ୍ଲାସିକାଲ ମଣିଷ ହଜି ହଜି ଗଲେଣି ।



# କଲୋସସ

ବିଜୁ ପଟ୍ଟନାୟକ ଆଉ ନାହାନ୍ତି । ୧୯୯୭ ମସିହା ଏପ୍ରିଲ ୧୭ ତାରିଖ । କଜ୍ଜ୍ୱଳ ନିଭ ଉଷାର ନିକଷରେ ସୁର ନନ୍ଦିନୀ ଉଷା ରୂପସୀର ଉଜ୍ଜ୍ୱଳ ହିମରେଖା ଲେଖା ହେବା ସହିତ ତାଙ୍କର ଜୀବନର ଯିବନିକା ପଡ଼ି ଯାଇଛି । ୧୯୧୬ ମସିହାରେ ଓଡ଼ିଶା ଜାତୀୟତାର ମହାରଥୀ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ସହଧର୍ମିଣୀ ଆଶାଲତାଙ୍କ ୨ୟ ପୁତ୍ର ଜନ୍ମ ଲାଭ କରେ ମାର୍ଚ୍ଚ ୫ ତାରିଖରେ । ନାଁ ଦିଆଯାଇଥିଲା ବିଜୟ । ଜୀବନର ଦୀର୍ଘ ଯାତ୍ରା ପଥରେ ସେ ଯେ ସାରା ପୃଥିବୀରେ ଆପଣାର ବିଜୟ ଦୁନ୍ଦୁଭି ବଜାଇଯିବ ଏକଥା କିଏ ଜାଣିଥିଲା ? ତୁଳସୀପୁର ସେଇ ଛକକୁ ଲୋକେ ବିଜୁ ପଟ୍ଟନାୟକ ଛକ ବୋଲି ଡାକନ୍ତି ଆଜି । ଲୋକେ ତାହାର ନାମକରଣ କରିଛନ୍ତି । କେହି ସେ ନାଁ ଦେଇ ନାହାନ୍ତି ।

ଘର ଆଗରେ ବାରବାଟୀ ଦୁର୍ଗ । ଉତ୍କଳୀୟ ଇତିହାସର ମୂକସାକ୍ଷୀ । ଏଇଠି ଓଡ଼ିଆ ପାଇକ ବାହିନୀ ଦିନେ ବହୁ ଆକ୍ରମଣକାରୀଙ୍କୁ ପରାସ୍ତ କରିଛନ୍ତି । ଟିକିଏ ଦୂରରେ ଗଡ଼ଗଡ଼ିଆ ଘାଟ । ଓଡ଼ିଶାର ସାଧବପୁଅ ଏଇଠାରୁ ଯାଉଥିଲେ ବାଣିଜ୍ୟ ପାଇଁ, ଓଡ଼ିଆ ଜାତିର ପରାକାଷ୍ଠା ପ୍ରଦର୍ଶନ କରିବା ପାଇଁ ସାତ ସମୁଦ୍ର ସେପାରି ଜାଭା, ବୋର୍ଣ୍ଣିଓ, ସିଂହଳକୁ । ଶିଶୁ ବିଜୁ ପଟ୍ଟନାୟକ ସେଇଥିରୁ ସଂଗ୍ରହ କରିଥିଲେ ଆପଣାର ଶକ୍ତି । ସ୍ୱପ୍ନ ଦେଖିଥିଲେ ନୂତନ ଭାରତବର୍ଷ ନୂତନ ଓଡ଼ିଶାର ।

"ଏ ମାଟିର ସ୍ତନ୍ୟ ପିଇ ଗାଇଲା ସେ,
ଏ ମାଟିର ଜୟ,
ମାଟିର ଦୁରନ୍ତ ଶିଶୁ,
ଜନତାର ଚିର ସ୍ତନନ୍ଧୟ ।"

ଦେଶ ପରାଧୀନ । ମୁକ୍ତିର ଦୁନ୍ଦୁଭି ବାଜୁଛି । ପିକେଟିଂ କରି ଗୋରା ସର୍ଜେଣ୍ଟର ଲାଠି ଆଘାତରେ ଆହତ ବିଜୁ ପଟ୍ଟନାୟକ ଆପଣା ଘରକୁ ଫେରନ୍ତି । କିନ୍ତୁ ସ୍ୱାଭିମାନୀ ଗର୍ବିତ ବାପା ପଚାରନ୍ତି କେବଳ ତୋ ମୁଣ୍ଡ ଫାଟିଚି ନା ସେ ଗୋରା ସର୍ଜେଣ୍ଟର ମୁଣ୍ଡକୁ ଫଟାଇ ଆସିଚୁ ତୁ ? ରକ୍ତରେ ବିଜୁଳି ଖେଳିଯାଏ ଶିଶୁର । କିଛି ଦିନ ପରେ ହକି ଖେଳରେ ଭେଟ ହୁଏ ସେଇ ଗୋରା ସର୍ଜେଣ୍ଟର । ପ୍ରତିଶୋଧ ନିଏ ଏଇ ଯୁବକ ଗୋରା ସର୍ଜେଣ୍ଟର ଗୋଡ଼ ଦୁଇଟାକୁ ଭାଙ୍ଗିଦେଇ । ଆଗାମୀ ଯୁଗରେ ଯଦି କେବେ ଦୁର୍ଦ୍ଦିନ ଆସେ ଦେଶର, ସେତେବେଳେ ଛାତ୍ର ଯୁବକ ମାନେ ହେରିବେ ଏଇ ମହାରଥୀକୁ ଆପଣାର ସାହସିକତା ପାଇଁ ।

ବିଜୁ ପଟ୍ଟନାୟକ ଭାରତର ବଡ଼ଲାଟ ଲର୍ଡ ୱାଭେଲଙ୍କର ପର୍ସନାଲ ପାଇଲଟ । ସବୁଠାରୁ ସୁରକ୍ଷିତ ଉଡ଼ାଜାହାଜ ସେଇଠି ଥାଏ "ବ୍ଲାକ୍ ବକ୍ସ" ଭାରତ ସ୍ୱାଧୀନତା ସଂଗ୍ରାମ

ବିରୁଦ୍ଧରେ ବ୍ରିଟିଶ ସରକାରଙ୍କର ଗୁପ୍ତ ନଥି ।ସେଇ ଗୁପ୍ତ ନଥିକୁ ଯୋଗାଇ ଦିଅନ୍ତି ବିଜୁ ପଟ୍ଟନାୟକ ମହାତ୍ମା ଗାନ୍ଧୀଙ୍କୁ । ସେଇ ଉଡ଼ାଜାହାଜ କେବେ କେବେ ଓହ୍ଲାଇଯାଏ ଅପନ୍ତରା ଲାଣ୍ଡିଂ ଗ୍ରାଉଣ୍ଡ ମାନଙ୍କରେ । ବଡ଼ଲାଟଙ୍କର ଉଡ଼ାଜାହାଜ । ପ୍ରଶ୍ନ ପଚାରିବ କିଏ ? ସେଇ ଉଡ଼ାଜାହାଜରେ ଉଠନ୍ତି ବା ଓହ୍ଲାଇ ଯାଆନ୍ତି ଜଣେ ସୁଦର୍ଶନା ଭଦ୍ର ମହିଳା । କିଏ ଏଇ ନାରୀ ? ସେ ହେଉଛନ୍ତି ଭାରତଛାଡ଼ ଆନ୍ଦୋଳନର ଅନ୍ୟତମ ମହାରଥୀ ଅରୁଣା ଆସଫ ଅଲ୍ଲୀ । ତାଙ୍କୁ ଧରିବା ପାଇଁ ସାରା ଭାରତବର୍ଷରେ ହୁଲିଆ ଜାରି ହୋଇଛି । ପୁଲିସ ଓ ସାମରିକ ବାହିନୀ ଖୋଜୁଛନ୍ତି । ସେ ଦୁଃସାହସର ପଟାନ୍ତର ନାହିଁ । ଆପଣାର ଜୀବନକୁ ବାଜି ରଖି ଦେଶର ମୁକ୍ତି ପାଇଁ ଏପରି କାର୍ଯ୍ୟ କରି ପାରନ୍ତି କେତେ ଜଣ ? ମହାକାଳ ତାକୁ ପୋଛି ପାରିବ ନାହିଁ । ସେ କାହାଣୀ ପ୍ରତିଭାତ ହୋଇ ରହିବ ଚିରକାଳ ।

ଧରାପଡ଼ି ବିଜୁ ପଟ୍ଟନାୟକ ଲାଲ କିଲ୍ଲାରେ ବନ୍ଦୀ । ପିଇବାକୁ ପାଣି ଦିଆଯାଏ ନାହିଁ । ତୃଷାର୍ତ୍ତ ବନ୍ଦୀ ଦାବି କରେ ପିଇବା ପାଣି  ଲାଲ କିଲ୍ଲାର ଗଭର୍ଣ୍ଣର ଚଣ୍ଡୁଲାଲ ମାଧବଲାଲ ତ୍ରିବେଦୀଙ୍କୁ । ଏତ ନିବେଦନ ନୁହେଁ, ଦାବି  । ଚଣ୍ଡୁଲାଲ ବୋତଲରେ ପରିଶ୍ରାକରି ଦିଅନ୍ତି ରକ୍ଷୀକୁ ବନ୍ଦୀ ପାଇଁ । ଶାହେବୋ ପିଛାପ୍ ଦୋ ପିନେ କେ ଲିୟେ । ବନ୍ଦୀ ନେଲା ବୋତଲ ହାତକୁ, କିନ୍ତୁ ପର ମୁହୂର୍ତ୍ତରେ ସେଇ ବୋତଲ ବାଜିଲା ଯାଇ ଚଣ୍ଡୁଲାଲଙ୍କ ମୁହଁରେ । ବନ୍ଦୀର ମୁହଁରେ ତୃପ୍ତ ହସ । ପିଇବା ପାଇଁ ପାଣି ତାକୁ ମିଳିଯାଇଛି କି ଆଉ !

ବିଜୁ ପଟ୍ଟନାୟକ ଦିଲ୍ଲୀ ଜେଲରେ ବନ୍ଦୀ । ପାଞ୍ଚ ହଜାରରୁ ଉର୍ଦ୍ଧ୍ୱ ବନ୍ଦୀ । ତାଙ୍କର ଅନେକ ବନ୍ଧୁ ସେଇଠି - ଖେଳବନ୍ଧୁ ବିଶେଷତଃ । ଦିନେ ପଚାରିଲି ତାଙ୍କର ଜଣେ ବନ୍ଧୁଙ୍କୁ  । ସେ କହିଲେ ଯେ ପରବର୍ତ୍ତୀ ଜୀବନରେ କ'ଣ ହେଲା ଅଲଗା କଥା । କିନ୍ତୁ ସେତେବେଳେ ଯେଉଁ ସାମାନ୍ୟ କେତେ ଜଣ ସ୍ୱାଧୀନତା ସଂଗ୍ରାମୀ ପରବର୍ତ୍ତୀ କାଳର ଭାରତବର୍ଷର ସ୍ୱପ୍ନ ଦେଖୁଥିଲେ ସେମାନଙ୍କ ଭିତରେ ବିଜୁ ପଟ୍ଟନାୟକ  ଅନ୍ୟତମ । ଅନ୍ୟ ସମସ୍ତଙ୍କ ଲକ୍ଷ୍ୟ କେବଳ ସ୍ୱାଧୀନତାରେ ହିଁ ସୀମିତ ଥିଲା , ବିଜୁ ପଟ୍ଟନାୟକ ଅନନ୍ୟ ସାଧାରଣ ।

ଭାରତବର୍ଷ ସ୍ୱାଧୀନ ହୋଇଛି । କିନ୍ତୁ ପାକିସ୍ଥାନ ଆକ୍ରମଣ କରିଛି କାଶ୍ମୀରକୁ । ରାଜା ହରି ସିଂ ଶେଷ ମୁହୂର୍ତ୍ତରେ ଭାରତ ସହିତ ମିଶ୍ରଣ ପାଇଁ ଚୁକ୍ତି କରନ୍ତି । ସେତେବେଳକୁ ପାକିସ୍ଥାନ ସୈନ୍ୟ ବାହିନୀ ଶ୍ରୀନଗରର ମାତ୍ର କୋଡ଼ିଏ କିଲୋମିଟର ଦୂରରେ । ହାତରେ ସେମାନଙ୍କର ଦୂରଗାମୀ ଅସ୍ତ୍ର ଏବଂ ସାଂଜୁଆ ବାହିନୀ । ବିବ୍ରତ ଜବାହାରଲାଲ ଡକାଇଲେ ସେନାଧକ୍ଷ ମାନଙ୍କୁ କଣ କରାଯିବ ? ଉଡ଼ାଜାହାଜ  ବାହିନୀ ଓହ୍ଲାଇବା ଛଡ଼ା ଉପାୟ ନାହିଁ । କିନ୍ତୁ ସେନାଧକ୍ଷ ମାନେ କହିଲେ ଯେ ବର୍ତ୍ତମାନ ତାହା କୌଣସି ମତେ ସମ୍ଭବ ନୁହେଁ । ତା ହେଲେ କଣ ଆମକୁ କାଶ୍ମୀର ହରାଇବାକୁ ପଡ଼ିବ ? ନା  ଏକ ଗମ୍ଭୀର ଉତ୍ତର ଆସିଲା ଜଣେ ଯବୁକଙ୍କ କଣ୍ଠରୁ ଶୁଭିଲା ଆବାଜ । ଜବାହାରଲାଲ ବୁଲି ଦେଖିଲେ ଯେ ତାଙ୍କ ପଛରେ ଠିଆ ହୋଇଥିବା ତରୁଣ ବିଜୁ ପଟ୍ଟନାୟକ ଏଇ ଉତ୍ତର ଦେଇଛନ୍ତି । ତମେ ପାରିବ ? ଯାହା ସେନାଧକ୍ଷ ମାନେ ପାରୁ ନାହାନ୍ତି । ମୁଁ ଅବତରଣ କରିବି ମୋର ଉଡ଼ାଜାହାଜରେ । କଣ୍ଟ୍ରୋଲରଟା ମୋର ଅକ୍ତିଆର

କରିନେବି । ତା'ପରେ ସୈନ୍ୟ ଓ ବିମାନବାହିନୀର କାମ । ବିଜୁ ପଟ୍ଟନାୟକ ଅବତରଣ କଲେ ଏବଂ କାଶ୍ମୀର ଭାରତବର୍ଷର ଅବିଚ୍ଛେଦ୍ୟ ଅଙ୍ଗ ହୋଇ ରହିଚି ।

ମହାକାଳ ଏଇ ସ୍ମୃତିକୁ ପୋଛି ଦେଇ ପାରିବ ନାହିଁ । କାଳର କପାଳରେ ତାହା ସମୁଜ୍ଜ୍ୱଳ ହୋଇ ରହିବ ଚିରକାଳ ।

କେବଳ ମୋର ମାତୃଭୂମିର ମୁକ୍ତି ନୁହେଁ, ସବୁ ଦେଶର ମୁକ୍ତି ମଧ୍ୟ ମୋର କାମ୍ୟ । ମୋ ପାଇଁ ମୋ ମାତୃଭୂମି ଯେଭଳି ପ୍ରିୟ, ଅନ୍ୟମାନଙ୍କ ପାଇଁ ସେମାନଙ୍କର ମାତୃଭୂମି ମଧ୍ୟ ସେଇଭଳି ପ୍ରିୟ । ବିଜୁ ପଟ୍ଟନାୟକ ଓଡ଼ିଆ, ସେଇଯୋଗୁଁ ସେ ଭାରତୀୟ, ସେଇଯୋଗୁଁ ସେ ଆନ୍ତର୍ଜାତିକ ।

ଇନ୍ଦୋନେସିଆ ଉପରେ ଡଚ୍ ସୈନ୍ୟ ବାହିନୀ ହସ୍ତକ୍ଷେପ କରିଚନ୍ତି । ଏଇ ଦେଶକୁ ପୁଣିଥରେ ଦଖଲ କରିଯିବା ପାଇଁ ଡଚ୍ ସାମ୍ରାଜ୍ୟବାଦୀ ମାନେ ଜଳ,ସ୍ଥଳ, ଆକାଶ ବାହିନୀ ସହିତ ଆକ୍ରମଣ କରିଛନ୍ତି । ଜାକର୍ତ୍ତା ସହର ଅବରୁଦ୍ଧ । ଇନ୍ଦୋନେସିଆ ମୁକ୍ତି ଆନ୍ଦୋଳନର ସବୁ ମହାରଥୀ ବ୍ୟୂହ ଭିତରୁ । ହଠାତ୍ ଜଣେ ଯୁବକ ଆପଣାର ଏକ ଇଂଜିନ୍ ବିଶିଷ୍ଟ ଉଡ଼ାଜାହାଜରେ ଇନ୍ଦୋନେସିଆ ମୁକ୍ତି ଆନ୍ଦୋଳନର ମହାରଥୀ ସାହରିଅରଙ୍କୁ ଧରି ଚମ୍ପଟ ସେ ବ୍ୟୂହ ଭିତରୁ । କିପରି ସମ୍ଭବ ହେଲା ଏହା ? ଦୁର୍ଦ୍ଧର୍ଷ ଡଚ ସୈନ୍ୟବାହିନୀର ବ୍ୟୂହ ଭେଦ କରି କିଏ ଏଇ ଯବକ ଏହା କରି ପାରିଲା ? ସାହରିଅର ପହଞ୍ଚିଲେ ଦିଲ୍ଲୀରେ । ଏସିଆ ସମ୍ମିଳନୀ ଆହୂତ ହେଲା । ଡଚ୍ ହସ୍ତକ୍ଷେପ ବନ୍ଦ ହେଲା । ଇନ୍ଦୋନେସିଆର ଜନସାଧାରଣ ତାଙ୍କୁ 'ଭୂମିପୁତ୍ର' ଉପାଧିରେ ଭୂଷିତ କଲେ । ସର୍ତ୍ତ କଲେ ଯେ ଭୂମିପୁତ୍ର ଯେତେବେଳେ ଯାହା ଚାହିଁବ ତାହା ସେମାନେ ଦେବ ପାଇଁ ପ୍ରସ୍ତୁତ । କାରଣ ଅନ୍ୟ ଦେଶ ପାଇଁ ଆଉ ଏକ ଦେଶର ଯୁବକର ଏହି ତ୍ୟାଗର ପଟାନ୍ତର ନାହିଁ ।

ସେଇ ଯୁବକ ହେଉଛନ୍ତି ବିଜୁ ପଟ୍ଟନାୟକ । ସେଦିନ ଇନ୍ଦୋନେସିଆର ସରକାର ଯାହା ସବୁ ଯାଚିଥିଲେ, ସେ ସବୁ ଫେରାଇ ଦେଇ ସେ କହିଥିଲେ ଯେ ସମୟ ଆସିଲେ ମୁଁ ମାଗିନେବି ।

ସେଇ ସମୟ ଆସିଲା ଭାରତ ପାକିସ୍ଥାନ ଯୁଦ୍ଧ ସମୟରେ । ପାକିସ୍ଥାନ ଭାରତବର୍ଷର ନୌବାହିନୀର ଆକ୍ରମଣରେ ଅତିଷ୍ଠ ହୋଇ ଇନ୍ଦୋନେସିଆର ଶରଣାପନ୍ନ ହେଲେ ଏବଂ ମାଗିଲେ ଏକ ବୁଡ଼ାଜାହାଜ ବାହିନୀ । ଇନ୍ଦୋନେସିଆ ତାହା ଦେଲା ଏବଂ ବୁଡ଼ା ଜାହାଜ ବାହିନୀ ଚାଲିଲେ ଭାରତ ମହାସାଗରର ବକ୍ଷଚିରି । ଦିଲ୍ଲୀରେ ଏ ଖବର ପହଞ୍ଚିଲା । ମହାସଂକଟର ସମୟ । ଭାରତର ପ୍ରଧାନମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ପଠାଇଲେ ଇନ୍ଦୋନେସିଆ । ହଠାତ୍ ପହଞ୍ଚି ବିଜୁ ପଟ୍ଟନାୟକ ସାକ୍ଷାତ କଲେ ଇନ୍ଦୋନେସିଆର ରାଷ୍ଟ୍ରପତି ସୁକର୍ଣ୍ଣଙ୍କୁ । ସେଦିନ ଥିଲା ମେଘାଛନ୍ନ ରାତ୍ରି । ଆକାଶରୁ ଝରୁଥିଲା ଧାର ଧାର ବର୍ଷା । ବିଜୁ ପଟ୍ଟନାୟକ ସୁକର୍ଣ୍ଣଙ୍କୁ କହିଲେ, ମୁଁ ଭୂମିପୁତ୍ର, ଆଜି ମାଗିବାକୁ ଆସିଚି । ତମେ ସେଦିନ କହିଥିଲ ଯେ ମୁଁ ଯାହା ମାଗିବି ଦେବ । ସୁକର୍ଣ୍ଣ ସମ୍ମତି ଦେଲେ । ତାଙ୍କୁ ଚକିତ କରି ବିଜୁ

ବାବୁ ତାଙ୍କୁ ମାଗିଲେ - ଫେରାଇ ଆଣ ତମର ବୁଡ଼ାଜାହାଜ ବାହିନୀକୁ ପାକିସ୍ଥାନ ସାଗରରୁ । ଆମ ଜନ୍ମଭୂମି 'ଆକ୍ରମଣ କରିଛି ପାକିସ୍ଥାନ ତମେ ତାକୁ ଯୋଗାଇଚ ବୁଡ଼ାଜାହାଜ ବାହିନୀ । ଫେରାଇ ଆଣ ତାକୁ ଭାରତ ପାଇଁ, ମୋ ଜନ୍ମ ମାଟି ପାଇଁ ମୁଁ ଏଇ ନିବେଦନ କରୁଛି ।

କିନ୍ତୁ, ଅନେକ ବିଳମ୍ବ ହୋଇ ଯାଇଛି । ସେମାନେ ତ ଯାଇ ପାକିସ୍ତାନ ପାଖାପାଖି ହୋଇ ଯିବେଣି । ପାକିସ୍ତାନ ସୈନ୍ୟ ବାହିନୀ ବି ସେ ଖବର ପାଇସାରିଛନ୍ତି । ସୁକର୍ଣ୍ଣ କହିଲେ ।

ମୁଁ କିନ୍ତୁ .... ମାଗିବାକୁ ଆସିଛି । ମୁଁ ଭୂମିପୁତ୍ର । ମୋତେ ତୁମକୁ ଦେବାକୁ ହେବ ମୋର ପ୍ରାପ୍ୟ ।

ସେଦିନ ଫେରିଥିଲା ଏଇ ବୁଡ଼ା ଜାହାଜ ବାହିନୀ ପାକିସ୍ତାନ ଉପସାଗରରୁ । ପାକିସ୍ତାନ ଚକିତ ହୋଇଥିଲା । ଭାରତୀୟ ନୌବାହିନୀର ପ୍ରବଳ ଆକ୍ରମଣରେ ପରାସ୍ତ ହେଲା ପାକିସ୍ତାନର ନୌବାହିନୀ ।

ବିଜୁ ପଟ୍ଟନାୟକ ପ୍ରବାଦ ପୁରୁଷ । ଏ କାହାଣୀ ଆଜି ମଧ୍ୟ ଇନ୍ଦୋନେସିଆର ଜନସାଧାରଣ ସ୍ମରଣ କରନ୍ତି । ସେଇଯୋଗୁଁ ବହୁ ବର୍ଷ ପରେ ମଧ୍ୟ ସେଠାରେ ଜନସାଧାରଣ ବିଜୁ ପଟ୍ଟନାୟକଙ୍କୁ ସମ୍ମାନିତ କରିଥିଲେ ।

ସମୟର ବାଲିରେ ସବୁ ହଜିଯାଏ । କିନ୍ତୁ ଏହା କ'ଣ କେବେ ହଜି ଯାଇପାରେ ?

ଦ୍ୱିତୀୟ ମହାଯୁଦ୍ଧର ସମୟ । ନାଜୀଝଟିକା ବାହିନୀ ଅବରୁଦ୍ଧ କରିଛନ୍ତି ଷ୍ଟାଲିନଗ୍ରାଡ଼ ସହରକୁ । ହିଟଲର ପଣ କରିଛି । ମଇ ପହିଲା ଦିନ ଷ୍ଟାଲିନ ନୁହେଁ, ସେ ଭାଷଣ ଦେବ ମସ୍କୋର ଲାଲ ଚୌକରେ । ସୋଭିଏତ୍ ରକ୍ତ ବାହିନୀ ପଣ କରିଛି ଏଇଠାରୁ ଫେରିବ ହିଟଲର । ଘର ଘର ପାଇଁ ଯୁଦ୍ଧ ଚାଲିଛି । ସମଗ୍ର ପୃଥିବୀ ଚକିତ ହୋଇ ଅନେଇଚି । ଏହି ସଂଗ୍ରାମ ମହା ପରୀକ୍ଷାର ବେଳ । ସମଗ୍ର ପୃଥିବୀ କଣ ବୁଡ଼ିଯିବ ଅନ୍ଧକାରରେ । ସୋଭିଏତ୍ ଜନସାଧାରଣଙ୍କୁ ଅବରୁଦ୍ଧ ସୈନ୍ୟ ବାହିନୀକୁ ଅସ୍ତ୍ର ଯୋଗାଯିବ କିପରି ?

ହଠାତ୍, ଦେଖାଗଲା ଯେ ଜଣେ ଯୁବକ ଶତ୍ରୁର ଦୁର୍ଭେଦ୍ୟ ବଳୟ ଭେଦ କରି ନିଜ ଉଡ଼ାଜାହାଜରେ ଅସ୍ତ୍ରନେଇ ପହଞ୍ଚାଇ ଦେଉଚି । କିପରି ସମ୍ଭବ ହୋଇ ପାରୁଚି ଏହା ? କିଏ ଏଇ ଦୁର୍ଦ୍ଧାନ୍ତ ଯୁବକ ? ସମଗ୍ର ମିତ୍ର ଶକ୍ତି ବାହିନୀ ଚକିତ । ଥରେ ନୁହେଁ ଦୁଇଥର ନୁହେଁ ଶତାଧିକ ଥର ଏଇ ଯୁବକ ଯୋଗାଇ ଦେଇଛି ଅସ୍ତ୍ର । ବହୁ ବର୍ଷ ପରେ, ଯୁଦ୍ଧ ସରିବାର ପଚାଶବର୍ଷ ପାଳନ ଉପଲକ୍ଷେ ଇଂଲଣ୍ଡ, ଆମେରିକା, ଫ୍ରାନ୍ସ, ରୁଷିଆ ସମେତ ସବୁ ତତ୍କାଳୀନ ମିତ୍ର ଶକ୍ତି ଅନ୍ତର୍ଭୁକ୍ତ ଦେଶ ସମ୍ମାନ ଜଣାଇ ଥିଲେ ଏଇ ଯୁବକକୁ ।

ବିଜୁ ପଟ୍ଟନାୟକ ଶତାବ୍ଦୀ ପୁରୁଷ । କେବଳ ନିଜ ଦେଶରେ ନୁହେଁ । ପୃଥିବୀର ବହୁ ଦେଶରେ ତାଙ୍କର ପରିଚିତି । ଏଭଳି ସମ୍ମାନ ଖୁବ୍ କମ୍ ଲୋକଙ୍କୁ ମିଳିଛି ।

ଆମଷ୍ଟରଡାମ ଏୟାର ପୋର୍ଟ ପୃଥିବୀର ସବୁଠାରୁ କର୍ମବହୁଳ ଏୟାରପୋର୍ଟ ଭାବରେ ଏହା ଜଣା । ସେତେବେଳେ ବହୁ ଉଡ଼ାଜାହାଜ ଆକଶପଥରୁ ହରଣଚାଳ ହୋଇ ଯାଉଥାଏ ।

ସବୁ ଉଡ଼ାଜାହାଜ ପଡ଼ିଆରେ ଅଭୂତପୂର୍ବ ନିରାପରା ବ୍ୟବସ୍ଥା । ପୁରୁଷ ସ୍ତ୍ରୀ ସମସ୍ତଙ୍କୁ ବିଶୁଦ୍ଧ ଉଲଗ୍ନ କରି ଖାନତଲାସି କରାଯାଉଥାଏ । କେହି ବାଦ ପଡୁ ନଥାନ୍ତି ସେଥିରୁ । ହଠାତ୍ ଦେଖାହେଲା ବିଜୁପଟ୍ଟନାୟକଙ୍କୁ । ଉଡ଼ାଜାହାଜ ଛାଡ଼ିବାର ମାତ୍ର କିଛି ସମୟ ପୂର୍ବରୁ ସେ ପହଞ୍ଚିଲେ ଏବଂ ଚାଲିଲେ ସିଧା ଉଡ଼ାଜାହାଜକୁ । ସମସ୍ତେ ସାଲ୍ୟୁଟ କରି ଠିଆ ହେଲେ । ଖାନତଲାସି ଆଦୌ ହେଲା ନାହିଁ । ମୁଁ ପଚାରିଲି ଜଣେ ନିରାପରା ବାହିନୀର ଅଫିସରଙ୍କୁ । ସେ ବୈଦେଶିକ । ଆପଣ ତାଙ୍କୁ ଖାନତଲାସ କଲେ ନାହିଁ ? ସେ ବିସ୍ମିତ ହୋଇ ମୋତେ ଅନେଇଲେ । ସେ ଆପଣଙ୍କ ଦେଶର ଲୋକ, ଆପଣ ତାଙ୍କୁ ଚିହ୍ନିନାହାନ୍ତି । ସେ ପରା ବିଜୁ ପଟ୍ଟନାୟକ । ପୃଥିବୀର ସବୁଠାରୁ ସିନିଅର ପାଇଲଟ ।

ମନ ଗର୍ବରେ ଭରିଗଲା ଓଡ଼ିଆ ପୁଅ ।

ବିଜୁ ପଟ୍ଟନାୟକ ସ୍ୱାଧୀନତା ସଂଗ୍ରାମର ମହାରଥୀ । ଏଇ କଟକ ସହରରେ ପରିବର୍ଦ୍ଧିତ । ଏଇଠି ଏକ ଭଙ୍ଗା ସାଇକେଲରେ ତାଙ୍କର ରାଜନୈତିକ ଜୀବନର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ । ସେ ଓଡ଼ିଶାର ଦୁଇଥର ମୁଖ୍ୟମନ୍ତ୍ରୀ, କେନ୍ଦ୍ର ମନ୍ତ୍ରୀ ମଣ୍ଡଳରେ ମନ୍ତ୍ରୀ, ଜନତା ଦଳ ସରକାରର "କ୍ରାଇସିସ୍ ମ୍ୟାନେଜର" । ଓଡ଼ିଶାର ମାନଚିତ୍ର ବଦଳି ଯାଇଛି ତାଙ୍କର କାଉଁରୀ ସ୍ପର୍ଶରେ । କେବଳ ଏକ୍ସପ୍ରେସ ହାଇୱେ ଲାଗି ସେ ସ୍ମୃତ ହୋଇ ରହିବେ । କାରଣ ଭୂଗୋଳ , ମାନଚିତ୍ର ବଦଳି ଯାଇଛି ସେଇଥିଯୋଗୁଁ । ସେଇଯୋଗୁଁ ଏଇ ଅଞ୍ଚଳରେ ଏଭଳି ବୟସ୍କ ବ୍ୟକ୍ତି ଅଛନ୍ତି ଯେଉଁ ମାନେ ଆପଣା ଜୀବନକୁ ବାଜି ପକାଇ ପାରନ୍ତି ବିଜୁ ପଟ୍ଟନାୟକଙ୍କ ପାଇଁ । ସେମାନେ ଦେଖିଛନ୍ତି ଏକ୍ସପ୍ରେସ ନ ଥିବା ବେଳର ଅବସ୍ଥା । ବିଜୁ ଅଧୈର୍ଯ୍ୟ, ଅନେକ ସମୟରେ ଅସହିଷ୍ଣୁ । ମନ୍ଥରତା କୁ ସେ ସହ୍ୟ କରି ପାରନ୍ତି ନାହିଁ । ସେ ଜେଟ୍‌ର ଦ୍ରୁତ ଗତିରେ ଯିବାକୁ ଚାହାନ୍ତି, ଅନ୍ୟମାନେ କଚ୍ଛପର ମନ୍ଥର ଗତିରେ ଗଲାବେଳେ । ସେଇ ଯୋଗୁଁ ସେ ସବୁବେଳେ ତରତର । ଶାରୀରିକ କଷ୍ଟ ତାଙ୍କୁ ଲାଗେନା, ବୟସ ତାଙ୍କ ଆଗରେ ହାର ମାନିଥିଲା । ମୃତ୍ୟୁକୁ ସେ ବରଣ କରି ଆଣୁ ଥିଲେ ଯେପରି । ସେଥିପାଇଁ ସେ ବିବ୍ରତ ନ ଥିଲେ । ଚାଲ, ଚାଲ, ଆଗେଇ ଚାଲ । ଚରୈବତି, ଚରୈବତି, ଚରୈବତି ।

ସଂକୀର୍ଣ୍ଣତା, କୌଣସି ପ୍ରକାରର ସଂକୀର୍ଣ୍ଣତା ତାଙ୍କୁ ଛୁଇଁ ପାରି ନଥିଲା । ସଂପୂର୍ଣ୍ଣ ଅନ୍-କନଭେନ୍‌ସନାଲ, ଅଣପାରମ୍ପରିକ ମଣିଷ । ପୂଜାପାଠ ନ ଥିଲା । କର୍ମ ଥିଲା ତାଙ୍କର ଏକମାତ୍ର ପୂଜା । ରାଜନୈତିକ ବିଜୁ ପଟ୍ଟନାୟକ ହୁଏତ ହଜିଯିବେ ମହାକାଳ ବକ୍ଷରେ, ସମୟର ବାଲିରେ କିନ୍ତୁ ଦୁର୍ଦ୍ଧର୍ଷ, ନିର୍ଭୀକ, ସ୍ୱାଭିମାନୀ ବିଜୁପଟ୍ଟନାୟକ ଜୀଇଁ ରହିବେ ଚିରକାଳ ।

ମୋ ମାଟି ମାଆକୁ ଏଭଳି ଏକ ସନ୍ତାନ ପାଇବା ପାଇଁ ବହୁ ଯୁଗ ବିତିଯିବ । ସେ ଯୁଗାନ୍ତକାରୀ, ଦୀର୍ଘତମ ସନ୍ତାନ ମୋ ମାଟି ମାଆର ।



# ଅବସାନ - ଯୁଗାବସାନ

ମହାକାଳର ଆହ୍ୱାନ । ସମୟର ଆବାଜ ।

ଏ ଖାଲି ଅବସାନ ନୁହେଁ । ଏ ହେଉଛି ଯୁଗାବସାନ । ୧୯୯୭ ମସିହା ଏପ୍ରିଲ ୧୭ ତାରିଖ ସକାଳ ୭ଟା । ଏ ମାଟିର ସବୁଠାରୁ ଦୀର୍ଘକାୟ ସନ୍ତାନ ବିଜୁ ପଟ୍ଟନାୟକ ଶୋଇ ଯାଇଛନ୍ତି ମହାନିଦ୍ରାରେ । ସେ ଆଉ ଫେରିବେ ନାହିଁ । ଏହା ପର ସମୟକୁ ବିଜୁ ପଟ୍ଟନାୟକ ପରବର୍ତ୍ତୀ ଯୁଗ ବୋଲି ନାମିତ ହେବ ।

ମହାକାଳର ଏଇ ଦୃପ୍ତ ଘୋଷଣା ଏକଦା କଂଗ୍ରେସର ମହାରଥୀ ବିଜୁ ପଟ୍ଟନାୟକଙ୍କ ପାଇଁ ନୁହେଁ, ଏହା ନୁହେଁ ଜନତାଦଳର ସଂକଟକାଳୀନ ମ୍ୟାନେଜର ପାଇଁ ଏହା ନୁହେଁ ଓଡ଼ିଶାର ଏକଦା ମୁଖ୍ୟ ମନ୍ତ୍ରୀ ପାଇଁ । ଇତିହାସ ତାକୁ କେତେଦିନ ମନେ ରଖିବ ମୁଖ୍ୟମନ୍ତ୍ରୀ ଭାବରେ କହିବା କଠିନ ।

କିନ୍ତୁ ଆଜିଠାରୁ ବହୁ ଯୁଗ ପରେ ଏଇ ମଣିଷ ଉତ୍ତର ପୀଢ଼ିର ପାଠ୍ୟ ପୁସ୍ତକରେ ସ୍ଥାନ ପାଇବ । ସେ ଦିନର ଶିଶୁ ହେରିବ ଏଇ ମଣିଷକୁ ଭାରତର ସ୍ୱାଧୀନତା ସଂଗ୍ରାମ କଥା ପଢ଼ିଲାବେଳେ, ଦେଶର ଅଖଣ୍ଡତା, ସର୍ବଭୌମତ୍ୱ କଥା ପଢ଼ିଲାବେଳେ । ଦେଶର ସ୍ୱାଧୀନତା କେବେ ଯଦି ବିପନ୍ନ ହୁଏ ସେତିକିବେଳେ ସେଇ ନୂତନ ଯୁଗର ଯୁବକ ଶକ୍ତି ସଂଗ୍ରହ କରିବ ଏଇ ମଣିଷର ଜୀବନ କାହାଣୀରୁ । ଦେଶର ଜାତିର ସ୍ୱାଭିମାନ, ଦୃପ୍ତ ବୈଜୟନ୍ତୀର ପ୍ରତୀକ ଭାବରେ ପୁଣିଥରେ ସେ ପ୍ରତିଭାତ ହେବେ ମଣିଷ ମନରେ ।

ପାଠ ପଢୁଥିଲା ସ୍କୁଲରେ । ଗୋରା ସର୍ଜେଣ୍ଟର ବେତ୍ରାଘାତରେ ଆହତ ବାଳକ ଫେରିଥିଲା ଘରକୁ । ଦୃପ୍ତ ପିତାର ପ୍ରଶ୍ନ ଥିଲା ଖାଲି ନିଜ ମୁଣ୍ଡ ଫଟାଇ ଫେରିବୁ ନା ତା ମୁଣ୍ଡ ବି ଫାଟିଛି । ପ୍ରତିଶୋଧ ନେଇଥିଲା ବାଳକ ଗୋରା ସର୍ଜେଣ୍ଟର ଦୁଇ ଗୋଡ଼ ଭାଙ୍ଗିଦେଇ । ଇତିହାସ ସେଇ କଥା ମନେ ପକେଇ ଦେବ ଆଗାମୀ ବଂଶଧର ମାନଙ୍କୁ ।

ବଡ଼ଲାଟ ୱାଭେଲଙ୍କ ପାଇଲଟ ବିଜୁ ପଟ୍ଟନାୟକ । ପ୍ରକୃତରେ ତତ୍କାଳୀନ ସମୟରେ ସବୁଠାରୁ ବେଶୀ ନିରାପତ୍ତାର ବଳୟରେ ଏହି ଉଡ଼ାଜାହାଜ; କିନ୍ତୁ ସେଇ ଉଡ଼ାଜାହାଜରେ ଥିବା 'ବ୍ଲାକ୍ ବାକ୍ସ'ରୁ ବ୍ରିଟିଶ ସରକାରଙ୍କର ଗୁପ୍ତ ନଥିପତ୍ର ଯାଇ ପହଞ୍ଚିଛି ମହାତ୍ମା ଗାନ୍ଧିଙ୍କ ପାଖରେ । ପୁଣି ସେଇ ଉଡ଼ାଜାହାଜ ଓହ୍ଲାଇ ଯାଉଛି ବିଭିନ୍ନ ଏରୋଡ୍ରମରେ ବିନା ନୋଟିସରେ ଏବଂ ନେଇ ଯାଉଛି ବା ଓହ୍ଲାଇ ଦେଉଛି ସେଇ ପ୍ରଖ୍ୟାତ୍ ନେତ୍ରୀ ଅରୁଣା ଆସଫ ଅଲ୍ଲିଙ୍କୁ । ଅରୁଣାକୁ ଧରିବା ପାଇଁ ସାରା ଭାରତ ଖୋଜା ଚାଲିଛି । ଆଗାମୀ ଯୁଗର ଶିଶୁ ପଢ଼ିବ ଏଇ ବୀରତ୍ୱର କାହାଣୀ ।

ଭାରତର କାଶ୍ମୀରକୁ ଦଖଲ କରିଯିବା ପାଇଁ ପାକିସ୍ଥାନ ସୈନ୍ୟବାହିନୀ ପ୍ରବେଶ କରିଛନ୍ତି କାଶ୍ମୀରରେ । ରାଜା ହରି ସିଂ ଶେଷ ମୁହୂର୍ତ୍ତରେ ଭାରତ ସହିତ ମିଶ୍ରଣ ଚୁକ୍ତି ଦସ୍ତଖତ କରିଛନ୍ତି ଏବଂ ସାହାଯ୍ୟ ଲୋଡ଼ିଛନ୍ତି ଭାରତବର୍ଷର । ବିବ୍ରତ ଜବାହାରଲାଲ ଆହ୍ବାନ କରିଛନ୍ତି ସେନାଧ୍ୟକ୍ଷମାନଙ୍କର ସମ୍ମିଳନୀ । ଆକ୍ରମଣକାରୀମାନେ ଶ୍ରୀନଗରଠାରୁ ମାତ୍ର କୋଡ଼ିଏ କିଲୋମିଟର ଦୂରରେ ପହଞ୍ଚି ସାରିଲେଣି । ସେମାନଙ୍କ ହାତରେ ଅଛି କମାଣ ଏବଂ ଉଡ଼ାଜାହାଜମାନଙ୍କୁ ଗୁଳି କରିଦେବା ଭଳି ଅସ୍ତ୍ର । କଣ କରାଯିବ ? ସେନାଧକ୍ଷମାନେ ମତ ଦେଲେ ଯେ ବର୍ତ୍ତମାନ କୌଣସି ବାଟରେ ଶ୍ରୀନଗର ବିମାନ ବନ୍ଦରରେ ପହଞ୍ଚିବା ଅସମ୍ଭବ । ତାହେଲେ କଣ ଶ୍ରୀନଗର ଓ କାଶ୍ମୀର ଆମେ ହରାଇଲୁ ? ପ୍ରଶ୍ନ କଲେ ଜବାହାରଲାଲ । ସେନାଧକ୍ଷମାନେ ମୁଣ୍ଡ ତଳକୁ କରି ବସିଲେ । ହଠାତ୍ ପଛ ପଟରୁ ଉତ୍ତର ଶୁଭିଲା ନା । ଜଣେ ତରୁଣ ଠିଆ ହୋଇଚନ୍ତି ଏବଂ ତାଙ୍କ କଣ୍ଠରୁ ଏଇ ଉତ୍ତର ମିଳୁଛି ବଜ୍ରର ଆବାଜ ଭଳି । ମୁଁ ଓହ୍ଲାଇଯିବି ଶ୍ରୀନଗର ବିମାନ ବନ୍ଦରରେ । ଦଖଲ କରିଯିବି କଣ୍ଟ୍ରୋଲ ଟାୱାର । ତା ପରେ ଆମ ସେନା ବାହିନୀ ଓହ୍ଲାଇଯିବେ । ତାହାହିଁ ହେଲା । ଯାହା ସେନାଧକ୍ଷ, ପେଶାଦାର ସାମରିକ ବୈମାନିକ କରି ପାରିଲେ ନାହିଁ ତାହା ହିଁ ଘଟି ପାରିଲା ସେଇ ତରୁଣ ପାଇଁ । ସେ ହେଉଛନ୍ତି ବିଜୁ ପଟ୍ଟନାୟକ ।

ଏକବିଂଶ ଶତାବ୍ଦୀର ଶିଶୁମାନେ ପଢ଼ିବେ ସେଇ କାହାଣୀ - ଆମ ଦେଶର ଅଖଣ୍ଡତା, ସାର୍ବଭୌମତ୍ୱ କଥା ପଢ଼ିଲାବେଳେ ।

କେବଳ ନିଜ ଜନ୍ମଭୂମିର ମୁକ୍ତି ଯଥେଷ୍ଟ ନୁହେଁ । ସମସ୍ତଙ୍କ ପାଇଁ ନିଜର ମାତୃଭୂମି ମା'ଭଳି । ତେଣୁ ସବୁ ଦେଶର ମୁକ୍ତି ଆମର କାମ୍ୟ । ଦ୍ୱିତୀୟ ମହାଯୁଦ୍ଧ ସରିଚି । ଡଚ ସୈନ୍ୟବାହିନୀ ହସ୍ତକ୍ଷେପ କରିଛନ୍ତି ଇଣ୍ଡୋନେସିଆ ଉପରେ । ପୁଣିଥରେ ଏଇ ଦେଶକୁ ଗୋଲାମ କରିବା ପାଇଁ ସାମ୍ରାଜ୍ୟବାଦୀମାନଙ୍କର ଉଦ୍ୟମ ।

ଜଳ, ସ୍ଥଳ, ଆକାଶ ତିନି ଦିଗରୁ ଆକ୍ରମଣ କରିଛି ଡଚ ସୈନ୍ୟବାହିନୀ । ଜାକର୍ତ୍ତା ସହର ସଂପୂର୍ଣ୍ଣ ଅବରୁଦ୍ଧ । ସେଇ ବଳୟ ଭେଦ କରି ସେଦିନ ଇଣ୍ଡୋନେସିଆ ମୁକ୍ତି ସଂଗ୍ରାମର ଅନ୍ୟତମ ମହାରଥୀ ସାହରିଅରଙ୍କୁ ନେଇପଳାଇ ଆସିଛି ଜଣେ ତରୁଣ । କି ସାହସ ଏବଂ ତାକୁ ଆଣି ଉପସ୍ଥାପିତ କରିଛି ଭାରତୀୟ ମୁକ୍ତି ସଂଗ୍ରାମର ମହାରଥୀ ଜବାହାରଲାଲଙ୍କ ପାଖରେ ଏସିଆ ସମ୍ମିଳନୀରେ ।

ଇତିହାସ ବକ୍ଷରେ ସେଇ ବାର୍ତ୍ତାର ପ୍ରତିନିଧି ଶୁଭିବ । ଯେଉଁଠି ମୁକ୍ତିର ରଣ, ସେଇଠି ଏହା ଧ୍ୱନିତ ହେବ ମହାକାଳ ଭେଦି । ଆଗାମୀ ଯୁଗର ଯୁବକମାନଙ୍କୁ ତାହା ପ୍ରେରଣା ଦେବ, ଶକ୍ତି ଦେବ ।

ଓଡ଼ିଶାର ମାନଚିତ୍ରକୁ ବଦଳାଇ ଦେଇଛି ଏକ୍ସପ୍ରେସ ହାଇୱେ । ସେଥିଯୋଗୁଁ ଏବେ ବି ପାଟକୁରା, ପଟାମୁଣ୍ଡାଇ, କେନ୍ଦ୍ରାପଡ଼ାରେ ଏଭଳି ବୃଦ୍ଧ ଅଛନ୍ତି ଯେଉଁମାନେ ବିଜୁ ପଟ୍ଟନାୟକଙ୍କ ବିରୋଧରେ ପଦେ କଥା ଶୁଣିବାକୁ ନାରାଜ ।

ଆଜି ବି ପଞ୍ଜାବର ଯୁବକ କହେ "ଆଦମୀ ହୋଗା କୈସା - ବିଜୁ ପଟ୍ଟନାୟକ କୈସା ।"

ଗଞ୍ଜାମ ଜିଲ୍ଲାରେ ଆଜି ମଧ୍ୟ ଅନେକ କାହାଣୀ ପ୍ରଚଳିତ ଏଇ ପ୍ରଥିତ ଯଶା ବ୍ୟକ୍ତି ପାଇଁ କେବଳ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପାଇଁ ନୁହେଁ ।

ଦଳ, ମତ, ଗୋଷ୍ଠୀ ନିଗଡ଼ ଭେଦକରି ଏଇ ମଣିଷ ଜାତୀୟ ସ୍ୱାଭିମାନର ପ୍ରତୀକ ରୂପେ ପ୍ରତିଶ୍ରୁତି ଯୁଗ ଯୁଗ ପାଇଁ । ସେ ଏ ଜାତିର ଶତାବ୍ଦୀ ପୁରୁଷ । ତାହାଙ୍କୁ ପ୍ରଣାମ ଏ ଜାତିର । ବିଦାୟ, ବିଦାୟ, ଏ ଜାତିର ମଉଡ଼ମଣି ! ସେଇଭଳି ପୁତ୍ରଟିଏ ପାଇବା ପାଇଁ ଏଇ ମାଟି ମାଆକୁ ବହୁ ଯୁଗ ଲାଗିଯିବ । ସେ ବର୍ତ୍ତମାନ ଆମର ଇତିହାସ, ଆମର ପରଂପରା, ଆମର ଐତିହ୍ୟ ଆମର ସ୍ୱାଭିମାନ । ତାଙ୍କ ସାହସ, ତାଙ୍କ ଶକ୍ତି ଏ ଜାତିର ଧମନୀରେ ପ୍ରବାହିତ ହେଉ । ତମପରି ସହସ୍ର ସହସ୍ର ଯୁବକ ତମର ବୈଜୟନ୍ତୀ ଉଡ଼ାଇ ଜନ୍ମ ଲାଭ କରନ୍ତୁ ଏ ମାଟିରେ ।



# ପ୍ରତିଭାର ପରଲୋକ

**ବୀ**ଣା ଚାଲିଯିବ ବୋଲି ସମସ୍ତେ ଜାଣିଥିଲେ । କ୍ୟାନସର ଏକ ଦୁରାରୋଧ ବ୍ୟାଧି । ମୃତ୍ୟୁର ପଦଧ୍ୱନି ସେ ଶୁଣିଥିଲା । ଜନ୍ମିଲେ ମରଣ ସତ୍ୟ ! ସେ ଥିଲେ ଅବିଚଳିତ । କାହାକୁ ନିଜର ରୋଗ, ଅସୁସ୍ଥତା କଥା କହୁ ନ ଥିଲେ । ମୁହଁରେ ହସ ଲାଗି ରହିଥିଲା ସେଇପରି । ମନକିଣା ହସ । ତାଙ୍କ ସଙ୍ଗରେ ଦେଖାହୁଏ, ସଭା, ସମିତିରେ, ଦେଖାହୁଏ ବିଭିନ୍ନ ପ୍ରତିଯୋଗିତାର ବିଚାରକ ଭାବରେ । ୟୁନିଭର୍ସର ସଭାମାନଙ୍କୁ ଆସନ୍ତି । କେବେ କେବେ ଏଇଠି କବିତା ଆବୃତ୍ତି କରନ୍ତି । ପ୍ରତିଯୋଗିତାମାନଙ୍କରେ ଆବୃତ୍ତି କରନ୍ତି । ଭାଇ ବୋଲି ଡାକନ୍ତି । ତାଙ୍କ ସ୍ୱାମୀ ଗୌରାଙ୍ଗ ଜଣେ ପଦସ୍ଥ ପୁଲିସ ଅଫିସର । ସ୍ୱାମୀ ସ୍ତ୍ରୀ ଉଭୟଙ୍କର କିନ୍ତୁ ମୁଁ ଭାଇ । ମୁଁ ରେଭେନ୍ସା କଲେଜରେ ପଢ଼ିଲାବେଳେ ଗୌରାଙ୍ଗ ପଢୁଥିଲା କଲେଜରେ । । ମୋର ସ୍ୱପ୍ନ ତାକୁ ବି ସ୍ୱପ୍ନାବିଷ୍ଟ କରିଥିଲା କିଛି କିଛି ଅନ୍ୟାନ୍ୟ ବହୁ କନିଷ୍ଠ ବା ସହପାଠୀଙ୍କ ଭଳି । ସମୟର ସୁଅରେ ସେ ପାଲଟି ଯାଇଥିଲା ପୁଲିସ ଅଫିସର । ଅନ୍ୟାନ୍ୟ ଅନେକଙ୍କ ଭଳି । ସେମାନଙ୍କ ସହିତ ବନ୍ଧୁତା ରେଭେନ୍ସା କଲେଜର ସୀମା ଟିପି ନାହିଁ । ରହିଯାଇଛି ସେଇପରି । ଗୌରାଙ୍ଗ ସହିତ ସେଇ ସଂପର୍କ ସମ୍ପ୍ରସାରିତ ହୋଇଥିଲା ବୀଣା ପର୍ଯ୍ୟନ୍ତ । କେତେ ସାନ ମୋ ଠାରୁ । ୧୯୪୫ ମସିହା ଡିସେମ୍ବର ମାସ ୧୦ ତାରିଖରେ ଆମ ଗାଁ ପାଖ ଛେଣ୍ଡିପଦା ଥାନା ବାଗେଡ଼ିଆ ଗାଁରେ ଜନ୍ମ ହୋଇଥିଲା ସେ ।

ପାଠ ପଢ଼ିଥିଲା ଅଳ୍ପ । ସେତିକିବେଳେ ବିବାହ ହୋଇଗଲା ତା'ର ଗୌରାଙ୍ଗ ସହିତ । ଚଉଠି ରାତିରେ କନ୍ୟା କହେ ସ୍ୱାମୀକୁ ପ୍ରେମର ପ୍ରଥମ ସମ୍ବୋଧନ । ତାର ଅନୁରୋଧ ଥିଲା ସ୍ୱତନ୍ତ୍ର । "ମୁଁ ପାଠ ପଢ଼ିବି" । ବୟସ ୧୪ ବର୍ଷରୁ କିଛି ଅଧିକ । ସେ ଥିଲା ପଞ୍ଚମ ଶ୍ରେଣୀର ଛାତ୍ରୀ । ଏ କି ଅଳି, ଏ କି ସ୍ୱପ୍ନ । ଅଷ୍ଟମଂଗଳା ପରେ ପରେ ସେ ସ୍କୁଲରେ ପାଠ ପଢ଼ିଲା । ଜନନୀ ହେଲା ପ୍ରଥମ ପୁତ୍ର ଭବାନୀର ୧୯୬୧ ମସିହା ଅଗଷ୍ଟ ୨୮ ତାରିଖରେ । ପାଠ ପଢ଼ା କିନ୍ତୁ ଚାଲିଥିଲା । ବିରାଟ ସ୍ୱପ୍ନ, ବାଟ ବହୁତ ଦୂର । ଚରୈବତି, ଚରୈବତି, ଚରୈବତି । ଆଗେଇ ଚାଲ । ୧୯୬୩ ମସିହାରେ ମାଟ୍ରିକ ପ୍ରଥମ ଶ୍ରେଣୀରେ ପାସ । ତାପରେ ଭାବାନୀପାଟଣା ଓ ବାରିପଦା କଲେଜରେ ଦୁଇବର୍ଷ ବିଜ୍ଞାନରେ ଶିକ୍ଷା । ସ୍ୱପ୍ନ ଥିଲା ଡାକ୍ତରାଣୀ ହେବ । ଦରିଦ୍ର, ଦୁସ୍ଥ ମଣିଷର ସେବା କରିବ । କିନ୍ତୁ ପାରିବାରିକ କାରଣରୁ ତାହା ସଫଳ ହେଲା ନାହିଁ । କନ୍ୟା ଅଳକା ନନ୍ଦା, ଅଶୋକା ଛନ୍ଦା ସହିତ ପୁତ୍ରର ତଥା ସ୍ୱାମୀଙ୍କର ଯତ୍ନ ନେବାର ଆବଶ୍ୟକତା ବଡ଼ ମନେ ହେଲା । ପିଲାମାନେ ଟିକିଏ ବଡ଼ ହେଲେଣି । ପଢ଼ିବାର ତୃଷା କମିନାହିଁ । ୧୯୭୪ ମସିହାରେ ଆଇ.ଏ. , ୧୯୭୬ ମସିହାରେ ବି.ଏ. ଏବଂ ୧୯୮୦ ମସିହାରେ ରାଜନୀତି ବିଜ୍ଞାନରେ ଏମ.ଏ. ପାସ କରେ । ୧୯୮୩ ମସିହାରେ ବି.ଇଡି. ପାଶ୍ କରେ ପ୍ରଥମ ଶ୍ରେଣୀରେ ଏବଂ ୧୯୯୦ ମସିହାରେ ଆଇନରେ ସ୍ନାତକ ହୋଇ ଆଇନଜୀବି ହୁଏ । ପଢ଼ିବାର କି ବିରାଟ ତୃଷା !

ପିଲାଦିନୁ ଡିବେଟ୍‌ରେ ଯୋଗ ଦେଇ ଆସିଛି । ପରେ କଥା କହିବାର ଶୈଳୀ ପାକଳ ହୋଇଛି । ଗଳ୍ପ ଲେଖିଛି, କବିତା ଲେଖିଛି । ୧୯୮୭ ମସିହାରେ ପନ୍ଦରଟି ଗଳ୍ପକୁ ନେଇ "ଋତୁପର୍ଣ୍ଣା" ପୁସ୍ତକ ପ୍ରକାଶିତ ହୁଏ । ଓଡ଼ିଶାର ସବୁ ଖବରକାଗଜ ଏବଂ ଜଣାଶୁଣା ମେଗାଜିନ୍‌ରେ ତାର ଲେଖା ପ୍ରକାଶିତ ହୁଏ । ମୋର ମନେ ପଡୁଛି । ଗଳ୍ପର ପ୍ରତିକ୍ରିୟା ଜଣାଇ ତାକୁ ଚିଠି ଖଣ୍ଡିଏ ଲେଖିଥିଲି । ସେ ଉତ୍ତର ଦେଇଥିଲା । ମୁଁ ଧନ୍ୟ ହୋଇଛି ।

ଦାଶରଥି ପଟ୍ଟନାୟକ ଜଣେ ଗୁଣଗ୍ରାହୀ ଚିହ୍ନରା ମଣିଷ । ଯଦୁମଣି ସାହିତ୍ୟ ସଂସଦ ତରଫରୁ ବୀଣାକୁ ସମ୍ବର୍ଦ୍ଧନା ଓ ମାନପତ୍ର ଦିଆଯାଏ । ସେହିଦିନ ଦୈବାତ୍ ମୁଁ ସେଇ ଗ୍ରାମରେ ଉପସ୍ଥିତ ଥାଏ । ସେଇଟା ୧୯୮୯ ମସିହାର କଥା । ତାର ଆଖିରେ ଲୁହ ଟଳଟଳ କରୁଥିଲା । ବୀଣା, ଏହା ଆନନ୍ଦରେ ଅଶ୍ରୁ..... ମୋ କଥା ସରିନାଇଁ, ସେ କହିଥିଲା 'ନା' ଏହା କୃତଜ୍ଞତାର, ନାରୀ ମାନଙ୍କର ସମସ୍ୟା ଉପରେ ତାର ଲେଖା ତାକୁ ଆଣିଦେଇଥିଲା ଦେଶର ବଧେଇ ।

ଅନେକ ଗଳ୍ପ, ଏକାଙ୍କିକା, କବିତା ପାଣ୍ଡୁଲିପି ସ୍ତରରେ । ଅପେକ୍ଷା କରିଛନ୍ତି ପ୍ରକାଶିତ ହେବା ପାଇଁ । କିନ୍ତୁ ଲେଖିକା ଅପେକ୍ଷା କରି ନାହାନ୍ତି । ସେ ଚାଲିଯାଇଛନ୍ତି ସେଇଠିକୁ, ଯେଉଁଠୁ କେହି କେବେ ଫେରି ନାହିଁ ।

କହିଛି, କଥା, ଭାଷା, ଶୈଳୀ ପାକଳ ହୋଇଥିଲା । କଲମ ପୋଷା ମାନି ଥିଲା ବହୁ । ସଭା ସମିତିରେ ତାକୁ ଦେଖିଚି ବକ୍ତା ଭାବରେ ।

ଦେଶପ୍ରେମରେ ସେ ଉଦ୍‌ବୁଦ୍ଧ ହୋଇଥିଲା । ୧୯୬୨ ମସିହା ଭାରତ ଚୀନ ସଂଘର୍ଷ ସମୟରେ ସବୁ ସୁନା ଅଳଙ୍କାର ଦେଇ ଦେଲା ପ୍ରଧାନମନ୍ତ୍ରୀଙ୍କ ରିଲିଫ ପାଣ୍ଠିକୁ । ସ୍ୱାମୀ ପୁଲିସ ବିଭାଗର ଜଣେ ଉଚ୍ଚ ପଦସ୍ଥ ଅଫିସର । କିନ୍ତୁ ବୀଣାକୁ ଅନେକ ସମୟରେ ଦେଖାଯାଏ ପରିବାର କଲ୍ୟାଣ କେନ୍ଦ୍ର ମାନଙ୍କରେ । ମାଆ, ଝିଅ, ଶିଶୁ ମାନଙ୍କର ବିକାଶ ପାଇଁ ସେ କାର୍ଯ୍ୟ କରି ଯାଉଥିଲା କୌଣସି ପୁରସ୍କାର,ସମ୍ମାନ ବା ଆୱାର୍ଡ ପାଇଁ ନୁହେଁ, କେବଳ ମଣିଷର କଲ୍ୟାଣ ପାଇଁ ।

" ପଛଘୁଞ୍ଚା ନାହିଁ କେବେ ବୀରର ଜାତକେ
ନ ମରେ ସେ କେବେ ପରାଣ ଆତଙ୍କେ ।"

ସେ କାହାକୁ ଭୟ କରିନଥିଲା ମୃତ୍ୟୁକୁ ବି ନୁହେଁ । ତେଣୁ ମୃତ୍ୟୁ ଆସିଥିଲା ଯନ୍ତ୍ରଣାର ଉପସର୍ଗକୁ ଦୂରରେ ଛାଡ଼ି, ଧରେ ଧୀରେ । ଠିକ୍ ଯେପରି ଦିନ ଯାଇ ନୀରବରେ ସନ୍ଧ୍ୟା ହୋଇଯାଏ, ସେଇପରି ସେ ଚାଲିଗଲା ଜୀବନରୁ ମରଣକୁ ।

ସେଦିନ ସେ ଯିବା ଖବର ପାଇଲା ବେଳକୁ ସମୟ ଅତିକ୍ରାନ୍ତ ହୋଇ ସାରିଥିଲା । ତାର ମର ଦେହ ପାଉଁଶରେ ପରିଣତ ହୋଇସାରିଥିଲା । କିନ୍ତୁ ସେ ଦିନ ତା ଘରେ ତାର ଫଟୋ ପାଖରେ ସ୍ମୃତିର ଅର୍ଘ୍ୟ ବାଢ଼ିଲାବେଳେ ଫଟୋ ଭିତରୁ ସେ ଗୁଂଜରି ଉଠୁଥିଲା ... ମୁଁ ... ଅଛି, ମୁଁ... ଅଛି ।

ତାର ପୋଷା ଆଲ୍‌ସେସିଆନ୍‌ଟା ବାହୁନି, ବାହୁନି କାନ୍ଦୁଥିଲା..... ଫେରିଆ, ଫେରିଆ । ଆମେ ସବୁ ଆଖିରୁ ଲୁହ ପୋଛି ପୋଛି ଓହ୍ଲାଇ ଆସୁଥିଲୁ ପାହାଚରେ । ଗୌରାଙ୍ଗ ଠିଆ ହୋଇ ଅନାଇଥିଲା ଆକାଶକୁ ।



# ପଲ୍ଲୀ ଯାହାଙ୍କର ସ୍ୱପ୍ନରେ ବସାବାନ୍ଧିଥିଲା

**ବା**ପା ମୋର ସରକାରୀ କର୍ମଚାରୀ ବନ୍ୟ ବିଭଗରେ । ୧୯୪୦ ମସିହାର କଥା, କେଜାଣି କାହିଁକି ବାପା ଓ ସେ ବନ୍ଧୁ ହୋଇ ଉଠିଲେ ସମ୍ୱଲପୁରରେ ପହଞ୍ଚିବାର ମାତ୍ର କିଛି ଦିନ ଭିତରେ । ସେ କାଳକ୍ରମେ ଆମର ପାରିବାରିକ ବନ୍ଧୁ ହୋଇ ଉଠିଲେ । ବିଶେଷତଃ ସ୍ୱାଧୀନତା ସଂଗ୍ରାମୀ ମୋର ଦାଦା ବିରଞ୍ଚିନାରାୟଣଙ୍କ ସହିତ । ଏକ ଧନାଢ୍ୟ ପରିବାରରେ ତାଙ୍କର ଜନ୍ମ । ୧୮୯୦ ମସିହାର ଜୁନ୍ ୫ ତାରିଖରେ ବୋଧହୁଏ ଲାର୍‌ମ୍ବାରେ । ବାପା ବୃନ୍ଦାବନ ଓ ମା' ଚନ୍ଦ୍ରମା ଉଭୟ ଥିଲେ ଉଦାରଧର୍ମୀ । ମାତୃଭୂମିର ସେବା କରିବା ପାଇଁ ସେମାନେ ହିଁ ତାଙ୍କର ପ୍ରଥମ ପ୍ରେରଣାର ଉତ୍ସ ।

ମା' କେବଳ ଜନ୍ମ ଦାତ୍ରୀ ନୁହେଁ, ପ୍ରଥମ ଶିକ୍ଷୟିତ୍ରୀ ମଧ୍ୟ । ବ୍ରଜମୋହନଙ୍କ କ୍ଷେତ୍ରରେ ତାହା ପ୍ରମାଣିତ ହୋଇଥିଲା । ଲରମ୍ବା ଗ୍ରାମରେ ସେତେବେଳେ କୌଣସି ଶିକ୍ଷାନୁଷ୍ଠାନ ନ ଥିଲା । ବ୍ରଜମୋହନ ଆସିଥିଲେ ପଟ୍ଟନାୟକ ପଡ଼ା ୟୁ.ପି.ସ୍କୁଲ ସମ୍ୱଲପୁରକୁ ପଢ଼ିବା ପାଇଁ । ସେ ସିନା ଆସି ପାରିଲେ କିନ୍ତୁ ଅନ୍ୟମାନେ ? ଯେଉଁମାନେ ସେ ସୁଯୋଗ ପାଇଲେ ନାହିଁ ସେମାନେ ରହିଗଲେ ଗଜ ମୂରୁଖ ହୋଇ ଗାଁରେ । ବ୍ରଜମୋହନଙ୍କର ସେଇ ଅବଶୋଷ ରୂପାନ୍ତରିତ ହୋଇଥିଲା ଶିକ୍ଷା ପାଇଁ ପ୍ରସାର ଉଦ୍ୟମରେ ।

ମା ହେଉଛି ଶିଶୁର ଶିକ୍ଷାଦାତ୍ରୀ । ଏହାର ସଫଳ ପ୍ରୟୋଗ ଘଟିଥିଲା ବ୍ରଜମୋହନ ବାବୁଙ୍କ କ୍ଷେତ୍ରରେ । ବରପୁତ୍ର ପୁତ୍ରୀ ମାନଙ୍କର ଜୀବନ କାହାଣୀ ସେ ଶୁଣାଉଥିଲେ ଶିଶୁ ବ୍ରଜମୋହନଙ୍କୁ । ତାହାରି ଅଖଣ୍ଡ ପ୍ରଭାବ ପଡ଼ିଥିଲା । ବ୍ରଜମୋହନଙ୍କ ଉପରେ । ବ୍ରଜମୋହନ ପଢ଼ିଲେ ସମ୍ୱଲପୁର ଜିଲ୍ଲା ସ୍କୁଲରେ । ବଡ଼ଭାଇ ଗଲେ ଉଚ୍ଚ ଶିକ୍ଷା ପାଇଁ ନାଗପୁରକୁ । ତେଣୁ ବ୍ରଜମୋହନ ଆଉ ପଢ଼ି ନ ପାରି ଫେରିଲେ ଗାଁକୁ । କିନ୍ତୁ ପୁଣି ଫେରିଲେ ଜିଲ୍ଲା ସ୍କୁଲକୁ । ୧୯୧୦ ମସିହାରେ ସେ ମାଟ୍ରିକ ପାଶ୍ କଲେ । ପଟ୍ଟନାୟକ ପଡ଼ା ୟୁ.ପି. ସ୍କୁଲ (ଆମ ବେଳକୁ ତାହା ମାଇନର ଏବଂ ବର୍ତ୍ତମାନ ହାଇସ୍କୁଲରେ ପରିଣତ ହେଲାଣି )ରେ ବହୁ ବର୍ଷ ପରେ ପଢ଼ିଲେ ନିୟମିତତା ଓ ଶୃଙ୍ଖଳା ବିଷୟରେ ଶିକ୍ଷକମାନେ ଆମକୁ ବ୍ରଜମୋହନ ପଣ୍ଡାଙ୍କ ବିଷୟ କହୁ ଥିଲେ ।

ସମ୍ୱଲପୁରର ବାଳମୁକୁନ୍ଦ ବେହେରାଙ୍କ କନ୍ୟା ଲଳିତାଙ୍କ ସହ ତାଙ୍କର ବିବାହ ହୋଇଯାଏ । ପାଠପଢ଼ାରେ କିନ୍ତୁ ତାହା ବ୍ୟାଘାତ ଆଣିପାରେ ନାହିଁ । ସେ ଯାଆନ୍ତି କଲିକତା ଉଚ୍ଚ ଶିକ୍ଷା ପାଇଁ । କଲିକତାରେ ଛଅ ବର୍ଷ କଟିଯାଏ । ସେଇଠି ସେ ଶୁଣନ୍ତି ଆଫ୍ରିକାର ଏକ

ବନ୍ୟ ବିଶାରଦ ଗବେଷକଠାରୁ ଶିଶଳ ଗଛର ଉପକାରିତା । ସେ ନିଷତ୍ତି କରନ୍ତି ଯେ ପାଠପଢ଼ା ପରେ ସେ ଆପଣାର ଜମିରେ ଏକ ଶିଶଳ ଫାର୍ମ ପ୍ରତିଷ୍ଠା କରିବେ । ବ୍ରଜ ମୋହନ ଫେରନ୍ତି ଏକ ଡିଗ୍ରୀ ନେଇ କିନ୍ତୁ ଲୋଭନୀୟ ସରକାରୀ ଚାକିରି ତାଙ୍କୁ ପ୍ରଲୋଭିତ କରି ପାରିଲା ନାହିଁ । ସେ ଗାଁରେ ଚାଷକାମ କରନ୍ତି ଏବଂ ଜମିର ଉତ୍ପାଦିକା ଶକ୍ତି ବୃଦ୍ଧି ପାଇଁ ତାହା କିପରି ଦେଶର ଏବଂ ସମାଜର ଉପକାରରେ ଆସିବ ତାହା ହିଁ ଥିଲା ତାଙ୍କର ଜୀବନର ଲକ୍ଷ୍ୟ । ଖାଲି କଥାରେ କାମ ଚଳେନା, କାର୍ଯ୍ୟକ୍ଷେତ୍ରରେ ତାର ପ୍ରୟୋଗ ଆବଶ୍ୟକ , ଏହାହିଁ ଥିଲା ତାଙ୍କ ଜୀବନର ଧର୍ମ । ଭାରତବର୍ଷ ହେଉଛି ଗ୍ରାମର ଦେଶ । ଗ୍ରାମର ବିକାଶରେ ହିଁ ଦେଶର ବିକାଶ । ସେଇ ଯୋଗୁଁ ବ୍ରଜ ମୋହନ ସବୁବେଳେ ରହୁଥିଲେ ଗ୍ରାମରେ । ଲୋକେ ସରକାରୀ ଅନୁଦାନ, ଅନୁଗ୍ରହ ଉପରେ ନିର୍ଭର ନକରି ନିଜେ କିପରି ଆପଣାର ଆର୍ଥିକ ବିକାଶ କରି ପାରିବେ ଏହି ନୀତିକୁ ସେ କାର୍ଯ୍ୟରେ ପ୍ରମାଣିତ କରି ଯାଇଛନ୍ତି । ଗପ୍ପ ବା ଅବସର କରିବା ତାଙ୍କର ଜାତକରେ ନ ଥିଲା । ଗାନ୍ଧୀଙ୍କ ଗଠନ ମୂଳକ କାର୍ଯ୍ୟର ପ୍ରକୃତ ରୂପାନ୍ତର ହେଇଥିଲା ତାଙ୍କ ପାଖରେ । କେବଳ ଗଠନମୂଳକ କାର୍ଯ୍ୟ ନୁହେଁ ପଠନକୁ ମଧ୍ୟ ସେ କାର୍ଯ୍ୟ ବୋଲି ବିଚାରୁ ଥିଲେ । ପଢୁଥିଲେ ସେ ବହୁତ । ଭଲ ବହିଟିଏ ପାଇଲେ ଅନ୍ୟମାନଙ୍କୁ ପଢ଼ାଉଥିଲେ । ପଢ଼ିବାକୁ ଦେଉଥିଲେ । ଭଲ ବହିଟିଏ ଅନ୍ୟ ଲୋକ ପାଖରୁ ମାଗିନେଇ ପଢୁଥିଲେ । ଠିକ୍ ସମୟରେ ଫେରାଇ ଦେଉଥିଲେ । ବହୁତ ବଡ଼ ଲୋକ ବହି ମାଗିନେଇ ଫେରାନ୍ତି ନାହିଁ । ସେ ଅଭ୍ୟାସ ତାଙ୍କର ନ ଥିଲା । କବି, ଲେଖକମାନଙ୍କ ସହିତ ସାନିଧ୍ୟ ତାଙ୍କର ଆଉ ଏକ ସଉକ ଥିଲା । ଫକୀରମୋହନ, ଗଂଗାଧର ମେହେର ପ୍ରଭୃତି ଲେଖକମାନଙ୍କ ସହିତ ତାଙ୍କର ପରିଚିତ ଥିଲା ନିବିଡ଼ । କୁହାଯାଏ ଯେ ବ୍ରଜମୋହନଙ୍କ ପୃଷ୍ଠପୋଷକତା ପାଇ ନ ଥିଲେ ଗଂଗାଧର ମେହେର ବଣମଲ୍ଲୀ ପରି ଝଡ଼ି ଯାଇଥାନ୍ତେ । ପୃଥିବୀ ତାଙ୍କୁ ଚିହ୍ନି ପାରି ନଥାନ୍ତା । ଗଂଗାଧର ମେହେର ଆର୍ଥିକ ଦୁଃସ୍ଥିତି ଯୋଗୁଁ 'କୀଚକ ବଧ' ପରେ ଲେଖିବା ଛାଡ଼ି ଦେଇଥିଲେ । ବ୍ରଜମୋହନ ତାଙ୍କର ବହିମାନଙ୍କର ମୁଦ୍ରଣ ଦାୟିତ୍ୱ ବହନ କରି ତାଙ୍କୁ ଲେଖିବା ପାଇଁ ଉତ୍ସାହିତ କରିଥିଲେ । ସେ ଓଡ଼ିଆ ସାହିତ୍ୟର କେବଳ ଧୂରୀଣ ପାଠକ ନ ଥିଲେ, ଥିଲେ ମଧ୍ୟ ପ୍ରବୀଣ ପୃଷ୍ଠପୋଷକ ।

ବ୍ରଜମୋହନ ନିଜର ଜୀବନର ଅଭିଜ୍ଞତା ଶିକ୍ଷାର ପ୍ରସାର ପ୍ରତି ଗଭୀର ଉଦ୍ୟମ କରିଥିଲେ । ସମ୍ବଲପୁରରେ ଏକ କଲେଜ ପ୍ରତିଷ୍ଠା, ଏହି କଲେଜର ବିକାଶ ପାଇଁ 'ଟ୍ରଷ୍ଟ ଫଣ୍ଡ ଗଠନ' ରେ ତାଙ୍କର ଉଦ୍ୟମ ଅବିସ୍ମରଣୀୟ । ବୁର୍ଲାରେ ଏକ ଇଂଜିନିୟରିଂ କଲେଜ ପାଇଁ ତାଙ୍କର ଅବଦାନ ମଧ୍ୟ ପ୍ରଭୂତ । ଓଡ଼ିଶା ଏଡୁକେଶନ ସୋସାଇଟି ନାମରେ ଏକ ସୋସାଇଟି ଗଠନ କରି ସେ ତାହାର ସଂପାଦକ ହୋଇଥିଲେ । ପ୍ରଖ୍ୟାତ ଶିକ୍ଷାବିଦ୍ ଡକ୍ଟର ପର୍ଶୁରାମ ମିଶ୍ର ଥିଲେ ତାହାର ସଭାପତି । ଏହି ସୋସାଇଟି ଲରମ୍ଭା ଗ୍ରାମରେ ଏକ ହାଇସ୍କୁଲ ପ୍ରତିଷ୍ଠା କରିଥିଲେ । ପରେ ଏହା ବୃଦ୍ଧି ପାଇ କଲେଜରେ ପରିଣତ ହୋଇଥିଲା ।

ସ୍ୱାଧୀନତା ପାଇଁ ଆନ୍ଦୋଳନ ସକାଶେ ମହାତ୍ମା ଗାନ୍ଧୀଙ୍କ ଡାକରା ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା । ସେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ୧୯୨୧ ମସିହାରେ ସେ କଂଗ୍ରେସର ଅହମ୍ମଦାବାଦ ଅଧିବେଶନରେ ଯୋଗ ଦେଇଥିଲେ । ତିରିଶବର୍ଷ ଧରି ସେ

ସମ୍ବଲପୁର ଜିଲ୍ଲାବୋର୍ଡର ସଭାପତି ଥିଲେ । ସମ୍ବଲପୁର ଜିଲ୍ଲାରେ ପ୍ରାଥମିକ ଶିକ୍ଷାର ବିକାଶ ତାଙ୍କର ମୁଖ୍ୟକାର୍ଯ୍ୟ ଥିଲା । ଶିକ୍ଷାର ବିକାଶ ହିଁ ଜାତିର ବିକାଶ । ଏଇ ମହାନ ମନ୍ତ୍ରରେ ସେ ନିଜେ ଉଦ୍‌ବୁଦ୍ଧ ଯେପରି ଥିଲେ, ଅନ୍ୟମାନଙ୍କୁ ମଧ୍ୟ ସେଇପରି ଉଦ୍‌ବୁଦ୍ଧ କରାଇଥିଲେ ।

ବ୍ୟକ୍ତିଗତ ଜୀବନରେ ଅନେକ ବିପର୍ଯ୍ୟୟ ଆସିଛି । ସେ ସବୁ ସେ ସହ୍ୟ କରି ଯାଇଛନ୍ତି । ଦୁଇଟି ପୁତ୍ର ଏବଂ ପତ୍ନୀ ତାଙ୍କୁ ଅକାଳରେ ଛାଡ଼ି ଚାଲି ଯାଇଛନ୍ତି । ସଂସାର ପ୍ରତି ବୀତସ୍ପୃହ ହୋଇଯାଇଛନ୍ତି ସେ ଧୀରେ ଧୀରେ । ସମୟ ବଦଳି ଯାଇଛି । ନୂତନ ପୀଢ଼ି ପାଖରେ ମୂଲ୍ୟବୋଧ ହ୍ରାସ ତାଙ୍କୁ ବ୍ୟଥିତ କରିଛି । ସେ କ୍ରମଶଃ ନିଜକୁ ହଜାଇ ରଖିଛନ୍ତି ଆଧ୍ୟାତ୍ମିକ ଏବଂ ଧାର୍ମିକ କାର୍ଯ୍ୟରେ । ଏହା ପଛରେ କୌଣସି ପାର୍ଥିବ କାମନା ନାହିଁ । ତାରି ଭିତରେ ସେ ଖୋଜିଛନ୍ତି ଶାନ୍ତି ଏବଂ ସଂସାରର ଜଂଜାଳରୁ ମୁକ୍ତି ।

୧୯ ମାର୍ଚ୍ଚ, ୧୯୬୫ । ଓଡ଼ିଶାର ଏହି ତେଜସ୍ୱୀ ସନ୍ତାନ ଆଖି ବୁଜି ଦେଇଛନ୍ତି ଚିରଦିନ ପାଇଁ । ସାଧନାମୟ ଏକ ଜୀବନର ପରିସମାପ୍ତି ଘଟିଛି ।



# ସମସ୍ତଙ୍କର କଥା ଟିପୁ ଟିପୁ

ସ୍ୱାଧୀନତା ସଂଗ୍ରାମୀ ଓ ଲେଖକ ବଳରାମ ମହାନ୍ତିଙ୍କର ଏପ୍ରିଲ ୨୩, ୧୯୯୮ ରେ ପରଲୋକ ହୋଇଯିବା ସଂବାଦ ମୋତେ ଚକିତ କଲା । ତାଙ୍କର ଜନ୍ମ ୧୯୧୪ ମସିହାର ଗହ୍ମା ପୂର୍ଣମୀ ଦିନ । ବୟସ ୮୪ ବର୍ଷ ପୂରି ଯାଇଥିଲା । ସେ କର୍ମଠ ଥିଲେ, ଦାନ୍ତ କିଛି ପଡ଼ି ଯାଇଥିଲା, ହସ କିନ୍ତୁ ସେଇପରି ଲାଗି ରହିଥିଲା ମୁହଁରେ । ସାଧାସିଧା ମଣିଷ । ରିକ୍ସାରେ ଯିବାକୁ ଘୃଣା କରନ୍ତି । କଣ ଗୋଟଏ ମଣିଷ ଟଣା ଗାଡ଼ିରେ ଯିବ ? ସେଇ ଯୋଗୁଁ ସେ ପ୍ରାୟ ଚାଲିକରି ଯାଆନ୍ତି ସବୁ ଆଡ଼କୁ । ତାରିପୁଅ ଦୁଇ ଝିଅ । ସଂସାର ଜଞ୍ଜାଳ କିଛି ନାହିଁ । ସ୍ତ୍ରୀ ଚାଲିଯାଇଛନ୍ତି ଆଗରୁ । ଲେଖିବା, ସଭାସମିତିକୁ ଯିବା, ବନ୍ଧୁ ସଂ[illegible]ଇବା କେବଳ କାମ । ସକାଳୁ ଗୋଟାଏ କେଉଁ କାର୍ଯ୍ୟକ୍ରମରେ ଯାଇଥିଲେ ମାଷ୍ଟର କାଣ୍ଟିନ ପାଖକୁ । ଫେରି ଉପରବେଳା ଯାଇଥିଲେ 'ବିଶ୍ୱ ପୁସ୍ତକ ଦିବସ' କାର୍ଯ୍ୟକ୍ରମକୁ । ଲୋକ ସଂପର୍କ ବିଭାଗର କନ୍‌ଫରେନ୍ସ ହଲରେ କାର୍ଯ୍ୟକ୍ରମ । ଉତ୍କଳ ସମ୍ମିଳନୀ ଦ୍ୱାରା ପ୍ରକାଶିତ ଆପଣାର 'ଦେଶ ମିଶ୍ରଣ ଗୀତିକା' ଉନ୍ମୋଚିତ ହେବ । ସେ ମଧ "ମୁକ୍ତି" ନାମକ ଏକ ପୁସ୍ତକ ଉନ୍ମୋଚିତ କରିବେ । କାର୍ଯ୍ୟକ୍ରମ ଭିତରେ ହିଁ ସେ ଅଶ୍ୱସ୍ତି ଅନୁଭବ କରିଛନ୍ତି ଛାତିରେ ଏବଂ ପରିଶ୍ରା ଲାଗିଛି । ଆପଣାର ବିନୟୀ କଣ୍ଠରେ ମୁଁ ଟିକିଏ ଆସୁଚି କ[illegible]ଯାଇଛନ୍ତି ପରିଶ୍ରାଗାରକୁ । "ମୁକ୍ତି"ର ଉନ୍ମୋଚନ ସହିତ ତାଙ୍କର ଜୀବନ ମୁକ୍ତ ହୋଇ ଯାଇଛି ଦେହରୁ, ଏକଥା କେହି ଜାଣି ପାରିନାହାନ୍ତି । ସଭା କାର୍ଯ୍ୟ ସରିଛି । କେହି ମୁଖ୍ୟ ଅତିଥି କୁଆଡ଼େ ଗଲେ ସେ ଖବର ନେଇ ନାହାନ୍ତି । ସେ ଇମିତି ବିନୟୀ ହୋଇ ଚାଲିଯାଆନ୍ତି ସଭାରୁ । ରାତିରେ ହଲ ବନ୍ଦ କରିବାକୁ ଯାଇ ଚୌକୀଦାର ଆବିଷ୍କାର କରେ ତାଙ୍କର ମୃତ ଶରୀର ପରିଶ୍ରାଗାରରେ । ଖବର ପାଇଁ ସମସ୍ତେ ପହଞ୍ଚିଲା ବେଳକୁ ତାଙ୍କର ଛୁଟି ହୋଇ ଯାଇଛି ସଂସାରରୁ । ସ୍ୱର୍ଗଦ୍ୱାରରେ କାଲି (୨୪ ଏପ୍ରିଲ ୧୯୯୮) ତାଙ୍କର ମରଦେହ ଚିତାଗ୍ନିରେ ପୋଡ଼ି ପାଉଁଶ ହୋଇ ଯାଇଛି । ସେ ପାଲଟି ଯାଇଛନ୍ତି ଇତିହାସ ।

ବଳରାମ ମହାନ୍ତି ସ୍ୱାଧୀନତା ସଂଗ୍ରାମୀ । ଘର ଜଗତସିଂହପୁର ବସନ୍ଦରା । ପଞ୍ଚମ ଶ୍ରେଣୀରୁ ସେ ସ୍ୱାଧୀନତା ଆନ୍ଦୋଳନରେ ଉଦ୍‌ବୁଦ୍ଧ ହୋଇଥିଲେ ଏବଂ ଖଦଡ଼ ପିନ୍ଧିବା ଆରମ୍ଭ କରିଥିଲେ । ରେଭେନ୍ସା କଲେଜରେ ପାଠ ପଢ଼ିଲାବେଳେ ୧୯୩୮ ମସିହା ଛାତ୍ର ଆନ୍ଦୋଳନରେ ସେ ଯୋଗ ଦିଅନ୍ତି ଏବଂ କାରାବରଣ କରନ୍ତି । ନେତାଜୀ ସୁଭାଷ ଚନ୍ଦ୍ର ବୋଷ ତାଙ୍କର ଥିଲେ ଆଦର୍ଶ ଏବଂ ସେ ୧୯୪୦ ମସିହାରେ ନେତାଜୀଙ୍କ ଦ୍ୱାରା ଗଠିତ ଫରୱାର୍ଡ ବ୍ଲକ୍‌ରେ ଯୋଗ ଦିଅନ୍ତି । ତାଙ୍କର ପ୍ରଥମ ପୁସ୍ତକ ହେଉଛି 'ବିପ୍ଳବୀ ସୁଭାଷ' । ଏହି ବହି ପ୍ରକାଶିତ

ହେବା ପରେ ପରେ ହିଁ ଭାରତ ସରକାରଙ୍କ ଦ୍ୱାରା ବେଆଇନ ହୋଇ ଯାଇଥିଲା ଏବଂ ବହି ସବୁ ବାଜ୍ୟାପ୍ତ ହୋଇଥିଲା । ଫଳରେ ଯେଉଁ ସବୁ ରହିଯାଥିଲା ସେଗୁଡ଼ିକ ଗୁପ୍ତରେ ପଠିତ ହୋଇଥଲା ଦ୍ରୁତ ଗତିରେ ବହୁ ପାଠକଙ୍କ ଦ୍ୱାରା । ବଳରାମ ମହାନ୍ତିଙ୍କ ନାମ ମଧ ତାହା ସହିତ ପରିବ୍ୟାପ୍ତ ହୋଇଥିଲା । ସାରା ଓଡ଼ିଶାରେ । ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନରେ ସେ କାରାବରଣ କରନ୍ତି ଏବଂ ଦୀର୍ଘ ସାଢ଼େ ତିନିବର୍ଷ ଜେଲଖାନା ଭୋଗ କରନ୍ତି ।

ଏଇ କାରାବାସ ସମୟରେ ଓଡ଼ିଶାର ବହୁ ନେତାଙ୍କ ସହିତ ବନ୍ଧୁତା ପ୍ରତିଷ୍ଠିତ ହୋଇଥିଲା । ତାଙ୍କ ର ବିନୟ ବ୍ୟବହାର ଏବଂ ସାରଲ୍ୟ ତାଙ୍କୁ ନିକଟ କରିଥିଲା ବହୁ ପରସ୍ପର ବିରୋଧୀ ବ୍ୟକ୍ତିଙ୍କର ସହ । ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସହ ତାଙ୍କର ସଖ୍ୟ ପ୍ରତିଷ୍ଠା ହୋଇଥିଲା । ଏବଂ ଏହାର ଫଳ ସ୍ୱରୂପ ସେ ନବବାବୁଙ୍କର ଲୋକ ସଂପର୍କ ଅଫିସରର ଭାବରେ ବହୁ ବର୍ଷ କାର୍ଯ୍ୟ କରିଥିଲେ । ଜେଲ୍‌ଖାନାରୁ ଫେରି ସେ ନିର୍ବାଚନର ଧନ୍ଦା ଭିତରେ ପଶି ନାହାନ୍ତି । କିଛି କାଳ 'ସମାଜ'ର ସହକାରୀ ସଂପାଦକତ୍ୱ ପରେ ସେ ନବବାବୁଙ୍କ ଦପ୍ତରରେ ଯୋଗ ଦିଅନ୍ତି । ଟିପି ରଖିବା କାମଟି ସେ ଶିଖିଥିଲେ ନବ ବାବୁ ଓ ରାଧାନାଥ ବାବୁଙ୍କଠାରୁ, ସେଇ କାରାବାସ ଭିତରୁ ।

ଏହାର ଫଳ ସ୍ୱରୂପ ବହୁ ବହି ତାଙ୍କର କଲମରୁ ରୂପ ପାଇଛି । ସେ ଗୁଡ଼ିକ ଛାତ୍ରମାନଙ୍କ ପାଇଁ ଯେପରି ଉପଯୋଗୀ, ଗାବେଷକ ମାନଙ୍କ ପାଇଁ ସେଇପରି ସାହାଯ୍ୟକାରୀ ଏବଂ ସର୍ବୋପରି ସାଧାରଣ ପାଠକ ପାଇଁ ଅଶେଷ ଉପକାରୀ ହୋଇଛି । ଓଡ଼ିଆ ଭାଷାରେ "ଓଡ଼ିଶା ପରିଚୟ", "ଓଡ଼ିଶାର ରାଜନୈତିକ ଇତିହାସ", "ଓଡ଼ିଆ ଆନ୍ଦୋଳନର ଇତିହାସ", "ଯୁଗ ଜ୍ୟୋତି ଜବାହାରଲାଲ ନେହେରୁ", ଜନନାୟକ ନବ କୃଷ୍ଣ ଚୌଧୁରୀ, ଅଗଷ୍ଟ ବିପ୍ଳବ, ସ୍ୱାଧୀନତା ସଂଗ୍ରାମ ଓ ଓଡ଼ିଶା, ଇଂରାଜୀରେ - ଇନ୍‌ଟ୍ରଡ୍ୟୁସିଙ୍ଗ ଓଡ଼ିଶା ପ୍ରଭୃତି ପୁସ୍ତକ ବେଶ୍ ଇନ୍‌ଫରମେଟିଭ ଏବଂ ବହୁ ବ୍ୟକ୍ତିଙ୍କ ପାଇଁ ସାହାଯ୍ୟକାରୀ ହୋଇଛି ।

ନବବାବୁଙ୍କ ସହିତ ବୁଲି ବୁଲି ସେ ଏପରି ଭାବରେ ଟିପୁଥିଲେ ଯେ ଲୋକେ ତାଙ୍କୁ 'ଟିପା ଖାତା' କହିବା ଶୁଣିଛି । ସମସ୍ତଙ୍କ କଥା ଟିପୁଥିବା ବ୍ୟକ୍ତି ନିଜର ଜୀବନର ଟିପାଖାତାର ଶେଷ ପୃଷ୍ଠା ଆସିଗଲାଣି ଏକଥା ସେ ଜାଣି ପାରି ନଥିଲେ, ନା ଅନ୍ୟ କେହି ଜାଣିପାରିଥିଲେ ? ବଳରାମ ବାବୁ ଆଉ ନାହାନ୍ତି କିନ୍ତୁ ଓଡ଼ିଶା ବିଷୟରେ ଜାଣିବାକୁ ହେଲେ ଉତ୍ତର ପୀଢ଼ି ତାଙ୍କୁ ହେରିବେ ଏବଂ ଖୋଜିବେ ବଳରାମ ମହାନ୍ତିଙ୍କୁ । ତାହାହିଁ ତାଙ୍କ ଜୀବନର ସାର୍ଥକତା ।



# ଭାରତୀୟ ଗଣତନ୍ତ୍ରର ତାତ୍ତ୍ୱିକ ପ୍ରହରୀ

ଭାରତର ଗଣତନ୍ତ୍ର ଉପରେ ଗବେଷଣାର ଦିଗ ଯେଉଁମାନେ ପରିବର୍ତ୍ତନ କରିବା ପାଇଁ ଯେଉଁ ସବୁ ସ୍ୱଳ୍ପ ସଂଖ୍ୟକ ବ୍ୟକ୍ତି ଦାୟୀ, ସେମାନଙ୍କ ମଧ୍ୟରେ ଅଧ୍ୟାପକ ବସିରୁଦ୍ଦିନ ଅହମ୍ମଦ ଅନ୍ୟତମ୍ । ତାଙ୍କର ଗଲାକାଲି ଦିଲ୍ଲୀରେ ପରଲୋକ ହୋଇଯାଇଛି । ପରିଣତ ବୟସ ହୋଇଥିଲା । କିଛି ଦିନଧରି ଅସୁସ୍ଥ ଥିଲେ । କିନ୍ତୁ ତାଙ୍କର ହଠାତ୍ ପରଲୋକ ହୋଇଯିବ ବୋଲି ଏ କଥା କେହି ଆଶଙ୍କା କରିନ ଥିଲେ । ଭାରତବର୍ଷ ସ୍ୱାଧୀନତା ପରେ ଇତିହାସ ପଠନର ଏକ ନୂଆ ଯୁଗ ଆରମ୍ଭ ହେଲା । କାରଣ ଏହା ପୂର୍ବରୁ ଯେଉଁ ଇତିହାସ ପଢ଼ା ବା ଲେଖା ଯାଉଥିଲା ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲା ସାମ୍ରାଜ୍ୟବାଦୀମାନଙ୍କର ଶାସନକୁ ସୁହାଇଲା ଭଳି ଇତିହାସ । ତା ବିରୁଦ୍ଧରେ ଯେଉଁ ଜାତୀୟତାବାଦୀ ଇତିହାସ ଲେଖା ଯାଉଥିଲା ତାହାର ସଂଖ୍ୟା ସ୍ୱଳ୍ପ ହେଲେ ହେଁ ସେ ଗୁଡ଼ିକ ଥିଲା ଜାତୀୟ ଆନ୍ଦୋଳନରେ ଆୟୁଧ, ଏକ ନୂତନ ଚେତନାରେ ଶାଣିତ ଗ୍ରନ୍ଥ । କିନ୍ତୁ ସେମାନଙ୍କ ମଧ୍ୟରୁ ଅନେକଙ୍କର ଆଖି ନିବଦ୍ଧ ଥିଲା ରାଜନୈତିକ ସଂଗଠନ, ସଂବିଧାନ, କୂଟନୈତିକ ଇତିହାସ ଏବଂ ଜୀବନୀ ଉପରେ । ଅନ୍ୟ ଦିଗରେ ରାଜନୈତିକ ବିଶ୍ଳେଷଣକାରୀ ମାନଙ୍କର ମନ୍ତବ୍ୟର ଭଙ୍ଗୀ ଥିଲା ତାର୍ଯ୍ୟକ ଏବଂ ଅନେକ ସମୟରେ ତାହା ଶସ୍ତା ନୀତିବାଗୀଶତା ବା ବ୍ୟକ୍ତିଗତ ଦୃଷ୍ଟିଭଂଗୀରେ ଭବିତବ୍ୟ ଉପରେ ତାର୍କିକ ଯୋଜନାରେ ସେ ଗୁଡ଼ିକ ରସାଣିତ ଥିଲା ।

ଅଧ୍ୟାପକ ବସିରୁଦ୍ଦିନ ଏକ ନୂତନ ଦିଗ୍‌ଦର୍ଶନ ଏବଂ ଜୀବନ ପ୍ରଦାନ କଲେ ଏଇ ଗବେଷଣାର ସାଧାରଣ ମଣିଷ ପାଖକୁ ଯିବା, ତାର ଜୀବନର ସ୍ପନ୍ଦନ ଜାଣିବା ଏବଂ ଇତିହାସକୁ ସେଇ ପରିପ୍ରେକ୍ଷୀରେ ରୂପାୟନ କରିବା ଥିଲା ତାଙ୍କର ମହାମନ୍ତ୍ର । ରାଜୈନିକ ତତ୍ତ୍ୱର ପାଠ୍ୟପୁସ୍ତକ ଉଦ୍ଧାର କରା ପଠ କ୍ଲାସରୁମ୍ ବା ସେମିନାରରେ ବନ୍ଧ୍ୟା ନୀତିବୟାନରୁ ସେ ମୁକ୍ତ କରିବାକୁ ଉଦ୍ୟମ କଲେ ଇତିହାସର ଅଧ୍ୟୟନକୁ । ସମସାମୟିକ ଇତିହାସ ତାଙ୍କର ଦୃଷ୍ଟିଭଂଗୀରେ ନୂତନ ରୂପ ପାଇଥିଲା ।



# 'ବଟୁଆ'ର ପୁଅ ନାଟୁଆ

ପାଠ ପଢ଼ିଲା ବେଳେ ମୋର ତାଙ୍କ ସହିତ ପରିଚୟ । ଆମ ଉପର କ୍ଲାସରେ ରେଭେନ୍ସା କଲେଜରେ ପାଠ ପଢୁଥିଲେ । କିନ୍ତୁ 'ନାଟୁଆ' ଭାବରେ ତାଙ୍କର ଖ୍ୟାତି ସେଇଦିନରୁ । ପିଲାଦିନର ପାଠ ଟାଟାନଗରରେ । ବାପା ଗୋବିନ୍ଦ ତ୍ରିପାଠୀ ପ୍ରସିଦ୍ଧ 'ବଟୁଆ'ର ଲେଖକ । ପଢ଼ିବାର ତ୍ରୁଟି ହୋଇନ ଥିଲା । ରେଭେନ୍ସା କଲେଜ ଏବଂ ପରେ କଲିକତାରେ ପଢ଼ି ସେ ବି.ଏସ୍‌ସି. ପାଶ୍ କରିଥିଲେ । ଚାହିଁଥିଲେ ଅକ୍ଳେଶରେ ଚାକିରୀଟିଏ ପାଇ ପାରିଥାନ୍ତେ । ସେତେବେଳେ କିଛି ଅସୁବିଧା ନ ଥିଲା । ଭାଇମାନେ ସେଇ ଲାଇନରେ ଯାଇ ନିରାପଦ ଏବଂ ପ୍ରତିଷ୍ଠିତ । କିନ୍ତୁ ତାଙ୍କୁ ନିଶା ଧରିଥିଲା ପିଲାଦିନରୁ ନାଟକ ଲେଖିବା, ନାଟକର ନିର୍ଦ୍ଦେଶନା ଦେବା ଏବଂ ସର୍ବୋପରି ନାଟକରେ ଅଭିନୟ କରିବାର ନିଶା ।

"ବିପଦ ପଥ ଏ ରାଜନ,
ବେଳୁଁ ହୋଇବ ସାବଧାନ"

କିନ୍ତୁ ସେ ସତର୍କ ବାଣୀ କେତେଜଣ ମତୁଆଲା ଶୁଣନ୍ତି ? ବ୍ୟୋମକେଶ ତ୍ରିପାଠୀ ସେମାନଙ୍କ ମଧ୍ୟରେ ଜଣେ ।

ଅନ୍ନପୂର୍ଣ୍ଣା 'ଏ' ଗ୍ରୁପର ଘର ତାଙ୍କର ଘର ପାଲଟିଥିଲା । ଦୀର୍ଘ ୧୨ ବର୍ଷ ଧରି ସ୍ତ୍ରୀ, ପିଲା ଛୁଆ ସେଇ ସହରରେ । ବ୍ୟୋମକେଶଙ୍କୁ କିନ୍ତୁ ନିଶା ଧରିଚି । ନୂଆ ପ୍ରକାରର ନାଟକ ହେବ, ନୂଆ ପରୀକ୍ଷା ନିରୀକ୍ଷା ହେବ । ରଂଗମଞ୍ଚକୁ ନୂତନ ରୂପରେ ସଜାଇବାକୁ ହେବ । ଏପରି ରଂଗମଞ୍ଚ ପ୍ରସ୍ତୁତ କରିବାକୁ ହେବ ଯାହା କି ଓଡ଼ିଆ ଦର୍ଶକ ଏ ପର୍ଯ୍ୟନ୍ତ ଦେଖିନାହାନ୍ତି । ସେ ସ୍ୱପ୍ନ ରହିଗଲା । ତାକୁ ରୂପ ଦେବେ ଭବିତବ୍ୟ ବଂଶଧର, ଓଡ଼ିଶା ସରକାର । ସବୁ କଣ ଜଣେ ଲୋକ କରି ପାରିବ ? ଅନ୍ନପୂର୍ଣ୍ଣ 'ଏ' ଗ୍ରୁପ ତାଙ୍କର ବାସସ୍ଥାନ ପାଲଟି ଥିଲା । ବୋଧହୁଏ ଅତ୍ୟଧିକ ଶ୍ରମରେ କ୍ଳାନ୍ତ ବ୍ୟୋମକେଶ ଫେରିଥିଲେ ଘରକୁ । ସେଇଠି ଅନ୍ନପୂର୍ଣ୍ଣା 'ଏ' ଗ୍ରୁପର ଗୃହରେ ତାଙ୍କ ସହିତ ଭେଟ ହୋଇଛି ଦି ଚାରିଥର ।

ପାଠ ପଢ଼ିଲାବେଳେ 'ସପ୍ତଶଯ୍ୟା' ଚଳଚ୍ଚିତ୍ର ରୂପ ପାଏ ଏବଂ ବ୍ୟୋମକେଶ ଚଳଚ୍ଚିତ୍ରରେ ଅଭିନୟ କରି ଖ୍ୟାତି ଲାଭ କରନ୍ତି । ଓଡ଼ିଶାର ଚଳଚ୍ଚିତ୍ର ଇତିହାସରେ ବହୁତ ବର୍ଷର ବ୍ୟବଧାନରେ ସପ୍ତଶଯ୍ୟା ନିର୍ମିତ ହୋଇଥିଲା । ସେଇଥିରୁ ସେ ଶିକ୍ଷା ଲାଭ କରିଥିଲେ ଯେ ଓଡ଼ିଶା ଚଳଚ୍ଚିତ୍ରର ବିକାଶ ପାଇଁ ଅନେକ ଅତ୍ୟାଧୁନିକ ପଦ୍ଧତି ଏବଂ କୌଶଳ ଗ୍ରହଣ କରିବାକୁ ହେବ । ସେ ୧୯୮୫ ମସିହାରେ ଏସିଆନ୍ ଥିଏଟର୍ସ ଇନଷ୍ଟିଚ୍ୟୁଟ୍‌ରେ ତାଲିମ ପାଇଥିଲେ ।

ଅନ୍ୟ କୌଣସି ଜୀବିକା ଗ୍ରହଣ ନ କରି ସେ ଫେରିଥିଲେ ନାଟ୍ୟ ଜଗତକୁ ପୂରା ସମୟ ଦେଇ କାମ କରିବାର ଅଭିଳାଷ ନେଇ । ପ୍ରଥମେ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପରେ ପରେ ଜନତା ଥିଏଟର୍ସ ତାପରେ କଳାଶ୍ରୀ ଥିଏଟର୍ସ କାର୍ଯ୍ୟ କରିବା ପରେ ସେ ଫେରିଥିଲେ ପୁଣି ଅନ୍ନପୂର୍ଣ୍ଣା 'ଏ'କୁ । ଅଭିନୟ ସହିତ ନିର୍ଦ୍ଦେଶନା ଦେବା ଛଡ଼ା ରଂଗମଞ୍ଚର ପୁନରୁଦ୍ଧାରର ପରିକଳ୍ପନା ରହିଥିଲା ଆଖି ଆଗରେ । କାରଣ ସେ ଅନୁଭବ କରିଥିଲେ ଯେ ରଂଗମଂଚର ପୁନରୁଦ୍ଧାର ନ ହେଲେ, ସେଥିରେ ନୂଆ ପରୀକ୍ଷା ନିରୀକ୍ଷା ଯୋଗ ନ ହେଲେ, ରଂଗମଞ୍ଚର ଟେକ୍‌ନିକାଲ ବିକାଶ ନ ହେଲେ ଏକ ପଟରେ ଚଳଚ୍ଚିତ୍ର ଆଉ ଆର ପଟରେ ଅପେରା ମାନଙ୍କର ବିକାଶ ଭିତରେ ରଂଗମଂଚ ତିଷ୍ଠି ରହି ପାରିବ ନାହିଁ । ଏହି ଭବିଷ୍ୟତ ବାଣୀ ଆଜି ଅକ୍ଷରେ ଅକ୍ଷରେ ସତ୍ୟ ବୋଲି ପ୍ରମାଣିତ ହୋଇଛି ।

ଦୀର୍ଘ ସମୟ । ଦୀର୍ଘ ଅଭିଜ୍ଞତା ଅଭିନୟ ନିର୍ଦ୍ଦେଶନା, ନାଟକ ଲେଖିବାର କଲମ ପାକଳ ହୋଇଛି । ଏକ୍ରୁ, ଦୁଇ,ତିନିରୁ ଆରମ୍ଭ ହୋଇଥିବା ଅଧ୍ୟାୟର ପରିସମାପ୍ତି ଘଟିଛି "ମୋଗଲ ତାମସା" ର ଚିତ୍ର ଗ୍ରହଣରେ । ଚଳଚ୍ଚିତ୍ର ପ୍ରସ୍ତୁତ କରିବା ଓଡ଼ିଆ ନାଟକର ଇତିହାସର ଚଳଚ୍ଚିତ୍ର ପ୍ରସ୍ତୁକ କରିବା ପାଇଁ ପରିଶେଷରେ ଅନୁଦାନ ପାଇଛନ୍ତି । ମନ ଖୁସି ହୋଇଛି, ବୟସକୁ ଦୃଷ୍ଟି ନ ଦେଇ ଲାଗି ଯାଇଛନ୍ତି କାମରେ - ଦିନରାତି । ସମୟକୁ ସମୟ ବୋଲି ମଣି ନାହାନ୍ତି ।

ଦୁଃଖ ରାତିର ତମସା କଟି କଟି ଆସୁଛି ବୋଲି ମନେ ହୋଇଛି । କଳାକାରର ଅଭାବୀ ଜୀବନ ଭିତରେ ଜୀବନର ବହୁ ବର୍ଷ କଟି ଯାଇଛି । ଚଳଚ୍ଚିତ୍ର ଓ ବହି ପ୍ରକାଶନରୁ ମଧ୍ୟ କିଛି ଆୟ ହୋଇଛି । ବର୍ତ୍ତମାନ ଚଳଚ୍ଚିତ୍ର ପ୍ରଯୋଜକ ଭାବରେ ସେ କେବଳ ଓଡ଼ିଆ ନାଟକର ଇତିହାସ ଲିପିବଦ୍ଧ କରି ଯିବେ ନାହିଁ, ଆପଣାର ଦୁର୍ଦ୍ଦଶା ବି କଟିଯିବ ବୋଲି ଆଶା ହୋଇଛି । କିନ୍ତୁ ମହାକାଳ କ'ଣ ସବୁ ଆଶା ପୂରଣ ହେବାକୁ ଦିଏ ?

ପଚିଶରୁ ଉର୍ଦ୍ଧ୍ୱ ଚଳଚ୍ଚିତ୍ର, ୧୦୦ ପାଖାପାଖି ନାଟକରେ ଅଭିନୟ କରିଛନ୍ତି । ମଇ ମାସ ୯ ତାରିଖ, ଅପରାହ୍ଣ, ରେଡକ୍ରସ ରୋଡ଼, ପୁରୀ ତାଙ୍କ ବାସଭବନ 'ତ୍ରିପାଠୀ ଭବନ' କ୍ଳାନ୍ତିର ନିଦ ଭାଂଗି ଅଭିନେତା ଉଠିଲେ । ଚା ଖାଇବେ, ଚା ଆସିଚି । କିନ୍ତୁ ତାଙ୍କୁ ସତେ ଯେମିତି କିଏ ଡାକିଚି ଚାହା ଖାଇବା ପାଇଁ ଅନ୍ୟତ୍ର । ହଠାତ୍ ସବୁ ନିଷ୍ପନ୍ଦ ହୋଇଯାଇଚି । ମୁଣ୍ଡ ତଳକୁ ଝୁଙ୍କି ପଡ଼ିଛି । ଏ କ'ଣ ଅଭିନୟର ରିହରସଲ ନା ଜୀବନର ଶେଷ ଅଭିନୟ ? ବ୍ୟୋମକେଶ ଆଉ ନାହାନ୍ତି ।

ବ୍ୟୋମକେଶ ଓଡ଼ିଆ ରଂଗମଂଚର ଜୀବନ୍ତ ଇତିହାସ, ପାଲଟି ଯାଇଛନ୍ତି ଇତିହାସ । ଜୟଦେବ ପୁରସ୍କାର ପାଇବା ପାଇଁ ମନୋନୀତ ହୋଇଛନ୍ତି । କିନ୍ତୁ ତାହା ପାଇବା ପୂର୍ବରୁ ସେ ଚାଲିଯାଇଛନ୍ତି । ଅନେକ ପୁରସ୍କାର ପାଇଛନ୍ତି କିନ୍ତୁ ଆର୍ଥିକ ଅବସ୍ଥା ରହିଛି ସେଇପରି । ନିଶା ଘାରିଚି ସେଇପରି ।

ବ୍ୟୋମକେଶର କେଶରାଜି ଅବିନ୍ୟସ୍ତ, ରଜତଶୁଭ୍ର ହୋଇଛି । ଦାରିଦ୍ର୍ୟର କଷାଘାତରେ ସେ କ୍ଳାନ୍ତି ଦେହ ହଠାତ୍ ଶୋଇ ଯାଇଛି ଚିର ନିଦ୍ରାରେ । କୃତି କିନ୍ତୁ ରହିଯିବ ଅମର ହୋଇ ।



# ବିଜ୍ଞାନର ଜଟିଳତାକୁ ଯେ କାବ୍ୟରେ ପରିଣତ କରିଥିଲେ

ବହୁବାର ଆପଣ ଅଭିଯୋଗ କରିଛନ୍ତି ଖାଲି ମଲା ମଣିଷର ଉପରେ ଶ୍ରଦ୍ଧାଞ୍ଜଳି କବିତା ରଚୁଛ କାହିଁକି ? ଜୀବିତ ଲୋକମାନଙ୍କ ଉପରେ ଲେଖୁନ । ଜୀବିତ ଲୋକମାନଙ୍କର ଆକଳନ କରିବା କେତେ କାଠିକର ପାଠ ତାହା ମୁଁ ଆପଣଙ୍କୁ ବୁଝାଇ ପାରି ନାହିଁ । ଏହା ଛଡ଼ା ଜୀବନ ନ ସରୁଣୁ ତା ଉପରେ ଆକଳନ କାହିଁକି ?

ଆଜି ଆପଣ ନାହାନ୍ତି । ଆପଣ ମୋର ଶିକ୍ଷକ ଗୋଷ୍ଠୀର । କିନ୍ତୁ ଆପଣ ତ ଜାଣନ୍ତି ଯେ ପିଲାଦିନୁ ମୁଁ ଗୁରୁ, ଗଡ୍ ଗାର୍ଡିଆନ୍ ଏବଂ ଗଭର୍ଣ୍ଣମେଣ୍ଟ ବିରୁଦ୍ଧରେ ଅବାଧ ହୋଇଛି । ଆପଣ ତ ଦେଖିଛନ୍ତି ବହୁ ଥର ମୋର ଅମାନିଆଁ ପଣ । ଛାତ୍ର ଆନ୍ଦୋଳନ ଠାରୁ ଆରମ୍ଭ କରି ସୀମା ଆନ୍ଦୋଳନ ପର୍ଯ୍ୟନ୍ତ । ଆଜି ଆପଣଙ୍କୁ ଶ୍ରଦ୍ଧାଞ୍ଜଳି ଜଣାଇ ଆପଣଙ୍କର ନିର୍ଦ୍ଦେଶକୁ ଅମାନ୍ୟ କରୁଛି । ଆଉ ତ ଆପଣ ତାଗିଦ୍ କରି ପାରିବେ ନାହିଁ । ଆପଣଙ୍କର ସେଇ ସ୍ନେହବୋଳା ତାଗିଦ୍ ଶୁଣିବାକୁ ମିଳିବ ନାହିଁ ।

ଆପଣ ଜଣେ ଉଦ୍‌ଭିଦ ବିଜ୍ଞାନୀ । ଆପଣଙ୍କର ଗୁରୁ ମାନଙ୍କର ଭିତରେ ପ୍ରଖ୍ୟାତ ବୈଜ୍ଞାନିକ ପ୍ରାଣକୃଷ୍ଣ ପରିଜା, ଅଧ୍ୟାପକ ଡକ୍ଟର ବଂଶୀଧର ସାମନ୍ତରାୟ ଅନ୍ତର୍ଭୁକ୍ତ । ସେମାନେ ବୈଜ୍ଞାନିକ କିନ୍ତୁ ଓଡ଼ିଆ ଭାଷା , ଓଡ଼ିଆ ସାହିତ୍ୟ ଉପରେ ତାଙ୍କର ଅଗାଧ ପାଣ୍ଡିତ୍ୟ । ବୈଜ୍ଞାନିକ ଜଟିଳ ଚିନ୍ତା ସହଜ ବୁଝିପାରିବା ଭାଷାରେ ପ୍ରକାଶ କରିବାର ଦକ୍ଷତା ଆପଣଙ୍କୁ ମଧ୍ୟ ଉଦ୍‌ବୁଦ୍ଧ କରି ଥିଲା । ମୁଁ ଉଦ୍‌ଭିଦ ବିଜ୍ଞାନର ଛାତ୍ର ନୁହେଁ । କିନ୍ତୁ ଶୁଣିଚି ଆପଙ୍କର ଛାତ୍ରଛାତ୍ରୀ ମାନଙ୍କଠାରୁ ଆପଣଙ୍କର ପଢ଼ାଇବାର ଶୈଳୀ ସଂପର୍କରେ । ଆପଣଙ୍କ ରଚିତ ପୁସ୍ତକାବଳୀ ତ ଆପଣଙ୍କୁ ଅମର କରି ରଖିବ । ପ୍ରକୃତିର ରହସ୍ୟ ଉନ୍ମୋଚନ ତ ଲାଗି ରହିବ ଚିରଦିନ, ପିଲାମାନେ ବୁଝିବାକୁ ଚାହିଁବେ ବିଜ୍ଞାନର ଜଟିଳ ତତ୍ତ୍ୱ ସହଜ ଭାଷାରେ ଆଉ ସେତିକିବେଳେ ଆପଣ ମନେ ପଡ଼ିବେ ସେମାନଙ୍କର ।

ରେଭେନ୍ସା କଲେଜରେ ଆପଣ ଅଧ୍ୟାପନା ଓ ଗବେଷଣା କରିଛନ୍ତି । ବହୁ ବର୍ଷଧରି । ଆପଣଙ୍କ ତତ୍ତ୍ୱାବଧାନରେ ଗବେଷଣା କରିଥିବ । ସେଇ ତରୁଣ ଅଧ୍ୟାପକଙ୍କୁ ସେଦିନ ଦେଖିଲି ଅଶ୍ରୁ ବିସର୍ଜନ କରିବାର । ତାଙ୍କର ଆଖିରୁ ଥପ୍‌ଥପ୍ ଲୁହ ଗଡ଼ି ପଡୁଛି । ଏ କ'ଣ ଶୋକର ନା ସ୍ମୃତିର ? ବୋଧହୁଏ ଉଭୟର । ଏଇତ ଆପଣଙ୍କର ସାର୍ଥକତା । କାହିଁ କେତେ ବର୍ଷ ତଳେ

କିଏ ଗବେଷଣା କରିଥିଲା । ସେଇଥିପାଇଁ ଆଜି ଅଶ୍ରୁ ବହୁ ବର୍ଷ ପରେ ? ପୁଣି ଏଭଳି ଏକ ଦେଶରେ ଯେଉଁଠି କୃତଜ୍ଞତା ମିଳେ ଢେଲା ପଥରରେ ? ଆପଣଙ୍କର ଅଧ୍ୟାପନା ସାର୍ଥକ ହୋଇଛି ।

ଫୋନ୍ ବାଜୁଛି । ତୁହାକୁ ତୁହା, ସେ ପଟରେ ରବନ୍ତୀ ଦେବୀ । ଶୁଣିଲଣି ଡକ୍ଟର ବିଦ୍ୟାଧର ପାଢ଼ୀ ଆଉ ନାହାନ୍ତି । କଣ୍ଠ ବାଷ୍ପରୁଦ୍ଧ । କଥାରୁ ଶୁଭୁଛି କୋହ ଉଠୁଚି । ନିଜେ ଅସୁସ୍ଥ । ତଥାପି ସେ ଜଣେଇ ଦେଉଛନ୍ତି ଆପଣାର ସହକର୍ମୀ ଏବଂ ବନ୍ଧୁମାନଙ୍କୁ ଏଇ ଶୋକାବହ ଘଟଣା । ଶୁଣ.... ଶୁଣ... ଶୁଣ, ସାର୍ ଆଉ ନାହାନ୍ତି । ବର୍ତ୍ତମାନ ଆଉ ଏକ ଛାତ୍ରୀ କମଳ କୁମାରୀଙ୍କ ପାଳି । ସେ ଫୋନ କରି ଚାଲିଛନ୍ତି ବନ୍ଧୁ ମାନଙ୍କ ପାଖକୁ । ଆଖିରୁ ଲୁହ ପୋଛି ଦେଉଛନ୍ତି ମଝିରେ ମଝିରେ ।

"ସାର କେମିତି ସରଳ ଭାଷାରେ ପଢ଼ାନ୍ତି ? ସାର୍ କିମିତି ମଉଜିଆ କଥା କହନ୍ତି ? ନାଇଁ.... ସାର୍ଙ୍କ ସବାଶେଷ ବହି ତୁ ପଢ଼ିନୁ ନା ନାଇଁ ?"

ଇମିତି କେତେ କଥା ।

ସାର୍ ଆପଣ ମରି ନାହାନ୍ତି । ଆପଣଙ୍କର ପୁର୍ନଜନ୍ମ ହୋଇଛି । ଆପଣ ବର୍ତ୍ତମାନ ଆଉ ଶରୀର ଭିତରେ ସ୍ମୃତ ହୋଇ ରହିବେ ନାହିଁ । ଆପଣ ସ୍ମୃତ ହୋଇ ରହିବେ ଅଗଣିତ ଛାତ୍ର, ଗବେଷକଙ୍କ ମନରେ, ଆପଣଙ୍କର ସହକର୍ମୀ ମାନଙ୍କ ମଧ୍ୟରେ ସେମାନଙ୍କର ବୌଦ୍ଧିକତା ଭିତରେ ।

ଦେହଧରିଲେ ଯିବାକୁ ପଡ଼ିବ । କିନ୍ତୁ ଆପଣ ଏତେ ଶୀଘ୍ର ଗଲେ କାହିଁକି ? ସବୁ ତ ଅମଳିନ ଥିଲା, ବୁଦ୍ଧି, ପ୍ରଜ୍ଞା, ସ୍ମରଣଶକ୍ତି । ତାହାହେଲେ କ'ଣ ହେଲା ହଠାତ୍ ? କିଏ କହିବ ? ସେ ପ୍ରଶ୍ନର ତ ଉତ୍ତର ମିଳିନାହିଁ । ମୃତ୍ୟୁତ ଅଲଂଘନୀୟ । ଆପଣ ଚାଲିଗଲେ । ସେଇ ନିୟମରେ । ପଛରେ ରହିଗଲା ସବୁ । ଉଦ୍‌ଭିଦ ବିଜ୍ଞାନ, ଲୋକପ୍ରିୟ ବିଜ୍ଞାନ, ରେଭେନ୍ସା କଲେଜ । ଆପଣଙ୍କୁ ସେମାନେ ଝୁରିବେ, ଆଉ ସେଇତ ସାଫଲ୍ୟ ଆପଣଙ୍କର ।



# ସାଗରର କ୍ଷୁଧା

**ସା**ଗର ଯେପରି ଅସୀମ ଏହାର କ୍ଷୁଧା ମଧ ସେଇପରି ଅସୀମ । ଟାଇଟାନିକ୍ ଜାହାଜ ଠାରୁ ଆରମ୍ଭ କରି କାଶ୍ମୀର ପ୍ରିନସେସ୍ ଉଡ଼ାଜାହାଜ ପର୍ଯ୍ୟନ୍ତ ବହୁ ଜାହାଜ, ଉଡ଼ାଜାହାଜ ଏହାର ଗର୍ଭରେ ଲୀନ ହୋଇ ଯାଇଛନ୍ତି । ଦୁଇ ଦୁଇଟା ମହାଯୁଦ୍ଧ ତ ସାଗରକୁ ଅନେକ ଖାଦ୍ୟ ଯୋଗାଇ ଦେଇଛି । ହୁଡ୍ , ବିସମାର୍କ, ପ୍ରିନ୍ସ ଅଫ୍ ୱେଲସ୍, ଆର୍କରୟାଲ ପ୍ରଭୃତି ବହୁ ପ୍ରସିଦ୍ଧ ଜାହାଜ ଏହାର ଗର୍ଭସ୍ଥ । ତା ଛଡ଼ା ପ୍ରତ୍ୟେକ ଦିନ, ପ୍ରତ୍ୟେକ ଘଣ୍ଟା ରେଁ ପୃଥିବୀର ଏକ କୋଣଠାରୁ ଅନ୍ୟ କୋଣ ପର୍ଯ୍ୟନ୍ତ କେହି ନା କେହି ସାଗରର ଗର୍ଭସ୍ଥ ହେବାର ସଂବାଦ ଅଖିରେ ଲୁହ ଭରିଦିଏ । କଣ ତାର କ୍ଷୁଧା ମଧ ଅମାପ ? ତାହାର କୌଣସି ଅନ୍ତ ନାହିଁ ।

କିନ୍ତୁ କଣ ମିଳେ ସାଗରକୁ କ୍ଷୁଦ୍ର ନିଷ୍ପାପ ଜୀବନକୁ ଗ୍ରାସ କରି ? କଣ ମିଳେ ମାଆ ବାପାଙ୍କ ମନରେ ଅମାପ ଦୁଃଖ ଭରିଦେଇ ? କଣ ମିଳେ ବିଧାତାକୁ ଏଇ ଶିଶୁ ମାନଙ୍କୁ ସଂସାରରୁ ନେଇ ଯାଇ ? ଜୀବନତ ସେମାନଙ୍କର ଆରମ୍ଭ ହୋଇନାହିଁ, ସରିବ ତାହାହେଲେ ହଠାତ୍ କାହିଁକି ?

ସେଦିନ ଓଡ଼ିଶାର ପ୍ରଥମ ଆଇ.ସି.ଏସ୍. ଶ୍ରୀ ନୀଳମଣି ସେନାପତିଙ୍କର ଦେହାନ୍ତ ହୋଇଥାଏ । ନୀଳମଣି ସେନାପତି ଜଣେ ପ୍ରବାଦ ପୁରୁଷ । ଶାସନ ଓ ଶିକାର ଦୁଇଥିରେ ସେ ପାରଙ୍ଗମ ଥିଲେ । ସମାଜ ସଂପାଦକ ଶ୍ରୀ ରାଧାନାଥ ରଥ ଓ ମୁଁ ଯାଇଥାଉଁ ତାଙ୍କର ମରଦେହରେ ପୁଷ୍ପାଞ୍ଜଳି ଦେବା ପାଇଁ । ହଠାତ୍ ସେଇଠି ଖବର ମିଳିଲା ବାପି ଆଉ ନାହିଁ । ସେ ଯାଇଥିଲା ସାଙ୍ଗ ମାନଙ୍କ ସହିତ ପୁରୀ ବୁଲିବା ପାଇଁ । ହାଠାତ୍ ସେଇଠି । ସମୁଦ୍ରରେ ଗାଧୋଉ ଗାଧୋଉ ସାଗର ତାକୁ ଟାଣି ନେଇଛି ଆପଣା ବକ୍ଷକୁ । ଆଉ ତା ପରେ ତାର ଆଉ ପତ୍ତା ମିଳୁନାହିଁ । ଖବର ପାଇ ଆଗେ ପହଞ୍ଚିଲୁ ତାର ପିତା ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ରଙ୍କ ଘରେ । କେହି କୁଆଡ଼େ ନାହାନ୍ତି । ଘର ଭିତରେ ଏକ ବିରାଟ ଆତଙ୍କର ନିସ୍ତବ୍ଧତା । ସବୁ ଥମ୍ ଥମ୍ । ସୁଧାଂଶୁର ମାଆ ବାହୁନୁଛନ୍ତି । ପୁଅ ମ, କହିଲ ଦେଖି ସୁଧାଂଶୁର ଭାଗ୍ୟଟା ଇମିତି କଣ ? ପିଲାଦିନେ ବାପା ଚାଲି ଯାଇଥିଲେ, ବର୍ତ୍ତମାନ ଯୁବା ବୟସରେ ଏକମାତ୍ର ପୁଅ ଚାଲିଗଲା । ନାଇଁ ମ ମାଉସୀ, ବାପି ହଜି ଯାଇଛି ଠାବ କରିବେ ନାହିଁ ସେମାନେ ? ତମେ ବ୍ୟସ୍ତ ହୁଅନା । ନାଇଁ ମ ପୁଅ, ମନକୁ ଯେତେ ବୁଝେଇଲେ କଣ ହେବ । ସମୁଦ୍ର କଥା ମୁଁ ଜାଣିନି ? ମିଳିଥିଲେ ତ ମିଳନ୍ତାଣି । ଏଇନା ମିଳିଲେ କ'ଣ ମିଳିବ ? ହେ ଭଗବାନ, ମୋ ପୁଅ ବୋହୂକୁ ସାହା ହୁଅ । ଜୀବନର ବାସ୍ତବତା କଠୋର ଆଘାତରେ ମାଉସୀ ପଥର ପାଲଟି ଯାଇଛନ୍ତି । ଫେରିଲୁ । ଶୁଣିଲୁ ପରେ ସେ କାହାଣୀ । ବାପା ମାଆ ନୁହେଁ, ଜିଲ୍ଲାପାଳ

ବନ୍ଧୁ ଅମୂଲ୍ୟ ରତ୍ନ ନନ୍ଦ, ଜଣା ଅଜଣା ବହୁ ବନ୍ଧୁଙ୍କ ସାହାଯ୍ୟରେ ଜାଲ, ଡ଼ଂଗା ବୁଡ଼ାଳି ଏବଂ ପରିଶେଷରେ ହେଲିକପ୍ଟର । ସାଗରର ଉତ୍ତାଳ ତରଙ୍ଗ ସେମାନଙ୍କୁ ଉପହାସ କରି ଫଣା ଟେକୁଥିଲା । ଉପରକୁ , ନାଗ ସାପର ଫଣା ପରି । ସେମାନେ ନିୟତିର କ୍ରୁର ହାତରେ କ୍ରୀଡ଼ନକ ପରି ଖାଲି ଧାଉଁଥିଲେ ସାଗର ବିଚୀର । ସବୁ ଦାନ ମାଜଣା ସବୁ ପୂଜା ଉପାସନା ବ୍ୟର୍ଥ ହେଲା । କେହିତ ଶୁଣିଲେ ନାହିଁ ମାଆର ବିକଳ କାନ୍ଦଣା, କେହିତ ଶୁଣିଲେ ନାହିଁ ବାପାର ଆକୁଳ ପ୍ରାର୍ଥନା । ସବୁ ବ୍ୟର୍ଥ, ଖାଲି ହାହାକାର, ଆକୁଳ କାନ୍ଦଣା । ସାଗରର ଉତ୍ତାଳ ତରଙ୍ଗମାଳା ଖାଲି ବାପିର ଦେହକୁ ନେଇ କ୍ଷୁଧା ମେଣ୍ଟାଇ ପାରିନାହିଁ, ଫଣା ଟେକି ଯେପରି ସେ ନାଚୁଚି ସବୁ ଗ୍ରାସ କରିଯିବା ପାଇଁ । ମାଆ ବିଦ୍ୟା ପଥର ପାଲଟି ଯାଉଚି ଧୀରେ ଧୀରେ । ଭିତରଟା ସବୁ ଯେମିତି ଧୂଆଁଳିଆ ହୋଇ ଯାଉଚି ସାଗରର ବୁକୁ ପରି । ତରଙ୍ଗର ବିକ୍ଷୁବ୍ଧତା ପରେ ଯେମିତି ସାଗର ବକ୍ଷ ଶାନ୍ତ, ଠିକ୍ ସେଇପରି ଶୋକର ପ୍ରଚଣ୍ଡ ଝଡ଼ପରେ ଯେମିତି ସବୁ ଶାନ୍ତ, ଘ୍ରଶାଁନ୍ତିର ଏକ ଆସ୍ତରଣ । ତାରି ଭିତରେ ବାପି ଦେଖାଯାଉଛି । ଆସୁଛି ହସି ହସି, ବାପା ମୁଁ ଅଙ୍କରେ କେତେ ନମ୍ବର ରଖିଚି, କହିଲ ଦେଖି ? ବାପା କହୁଛନ୍ତି ନମ୍ବର ଦେଖି ଖୁସିରେ, ବାପା, ତୁ ତ ମୋତେ ଟପିଗଲୁ । ସାବାସ୍, ମୁଁ ତୋ ଠାରୁ ଗୋଟାଏ ମାର୍କ କମ ରଖିଥିଲି । ବାପି, ଡ୍ରେସ ମାଗୁଛି । ମାଗୁଛି ବ୍ୟାଗ, ମାଗୁଛି ଟିଫିନ୍ ବାକ୍ସ । ଏ କଣ ସତ୍ୟ, ନା ପ୍ରଳାପ ? ବାସ୍ତବତା ନା ଉନ୍ମାଦ । ମାଆ ଏ ସବୁକୁ ସତ୍ୟ, ବାସ୍ତବ ବୋଲି ଗ୍ରହଣ କରି ଯାଉଚି ।

ବନ୍ଧୁ ଅମୂଲ୍ୟରତ୍ନ ନନ୍ଦ କହୁଛନ୍ତି ବିଶ୍ୱାସ କରି ହୁଏନା । ସବୁ ତ ସରିଲା । ଖୋଜା ପର୍ବ ସରିଲା । ପୂଜା ଆରାଧନା ଦେବାର୍ଚ୍ଚନା ସବୁ ସରିଲା । ବାଧ ହୋଇ ଗତାନ୍ତିକର ଅଶ୍ରୟ ନେଲୁ । ସେ କହିଲେ ଯେ ଆଜି ମଧ ରାତ୍ରି ଠାରୁ କିଛି ବିଳମ୍ବିତ ପ୍ରହରରେ ସେ ଆସି ଲାଗିବ ଅମୁକ ସ୍ଥାନ ଠାରୁ ଅମୁକ ସ୍ଥାନ ଭିତରେ । ସତକୁ ସତ ଠିକ୍ ସେଇ ଯାଗାରେ ନୁହେଁ କିଛି ଦୂରରେ ଆସି ବାପି ଲାଗିଲା । କିନ୍ତୁ ଏ ତ ବାପି ନୁହେଁ, ଏତ ତାର କ୍ଷତବିକ୍ଷତ ମରଦେହ ମାତ୍ର ।

ନାଟକର ସମାପ୍ତି । କି କରୁଣ, କି ଭୟାନକ ହେ ସମୁଦ୍ର । କ୍ଷାନ୍ତ ହୁଅ ଏଇ ପିପାସାରୁ ।

ଠିକ କିଛି ଦିନ ତଳେ ପୁଣି ଏକ ସଂବାଦ । ଖ୍ରୀଷ୍ଟୋଫର ଆଉ ନାହାଁନ୍ତି । ତାକୁ ବି ସମୁଦ୍ର ନେଇ ଯାଇଛି ତାର ଗର୍ଭକୁ । ବାପା ତାର ପୋଲିସ ଅଫିସର । କେତେଥର ଜୀବନରେ ଖେଦି ଧରିଛନ୍ତି ଅପରାଧୀ, ଦାଗୀକୁ । ଆଜି ସମୁଦ୍ର କୂଳରେ ଧାଉଁଛନ୍ତି ଅସହାୟ ହୋଇ । ବିପର୍ଯ୍ୟସ୍ତ ସବୁ । ବିପର୍ଯ୍ୟସ୍ତ ପରିବାର । ଖାଲି କାନ୍ଦ ଆଉ କାନ୍ଦ । ସୀମାହୀନ ସେ କାନ୍ଦଣା ।

ମୁଁ ଅନେଇ ଦେଖୁଚି ମୋର ଏଇ ସାତ ନମ୍ବର ଘରୁ ପଡ଼ିଆକୁ । ଆଠ ନମ୍ବରରେ ବାପି, ନଅ ନମ୍ବରରେ ଖ୍ରୀଷ୍ଟୋଫର, ଦୁଇ ଜଣ ଏଇଠି ପଡ଼ିଆରେ ଖେଳନ୍ତି ଆମ ପୁଅମାନଙ୍କ ସାଙ୍ଗରେ । ସ୍ଥାନାନ୍ତର ଯୋଗୁଁ ଦଇ ପିତା ଚାଲିଯାଇଛନ୍ତି ଅନ୍ୟତ୍ର । କିନ୍ତୁ ଆଜି ଅନେଇ ଦେଖୁଚି, ସେମାନେ ସତେ ଯେମିତି ଖେଳୁଛନ୍ତି ପଡ଼ିଆରେ । ସେମାନଙ୍କ ପାଟି ଶୁଭୁଛି । ନା, ଏସବୁ ଖାଲି ପ୍ରହେଳିକା । ବାସ୍ତବତାର କଠୋରତା ସୃଷ୍ଟି କରିଛି ଏଇ ପ୍ରହେଳିକା ମଣିଷ ମନରେ ।

କ'ଣ ପାଇଲ ସାଗର ସେମାନଙ୍କୁ ଗ୍ରାସ କରି ? ମନେ ପଡୁଚି ଅନେକ ଦିନ ତଳର କଥା । ମୋର ବାଲ୍ୟ ବନ୍ଧୁ ଯାମିନୀ ମୋହନ ଆସିଥିଲା ପୁରୀ, ବାପାଙ୍କ ସଙ୍ଗରେ । କିଛି ଘଣ୍ଟା ପରେ ସେ କିନ୍ତୁ ଆଉ ଫେରିଲା ନାହିଁ । ସମୁଦ୍ରରେ ଗାଧୋଉ ଗାଧୋଉ ସମୁଦ୍ର ଟାଣିନେଲା ତାକୁ ଆପଣାର ବକ୍ଷକୁ ଏବଂ ଜୀବନ ନାଟିକାକୁ ଚିପୁଡି ଫିଙ୍ଗିଦେଲା । ଡାକ୍ତର ରଘୁନାଥ ସାହୁ ଏଇଠି ହରାଇଲେ ତାଙ୍କର ପୁତ୍ରକୁ ସାଗର ବକ୍ଷରେ । ଏଇଠି ଖୋଜିଛି ମୁଁ ଜର୍ମାନ ନାଗରିକ ବନ୍ଧୁକୁ, ସେ ମଧ୍ୟ ଏଇଠି ସାଗରର ବକ୍ଷରେ ଲୀନ ହୋଇଗଲେ ସେ ଦିନ । ତାଙ୍କର ପତ୍ତା ବି ମିଳିଲା ନାହିଁ । ସାଗର ! ତୃପ୍ତ ହୁଅ ଏତିକିରେ । ନା, ତୁମର କ୍ଷୁଧାର ଅନ୍ତ ନାହିଁ । ସହସ୍ର ମାଆ, ସ୍ତ୍ରୀ, ବାପା, ପରିବାର ସ୍ୱଜନଙ୍କର ବୁକୁର ଅଗ୍ନି ତୁମକୁ ଶୁଖାଇ ପାରିବ ନାହିଁ । ତୁମେ ସେଇପରି ହରିଯିବ ଉଦ୍‌ବେଳିତ, କ୍ଷୁଧିତ । ତରଙ୍ଗର ଉତ୍ପଣ ଗ୍ରାସ କରିଯିବ କେତେ ବ୍ୟକ୍ତିଙ୍କୁ ।

ଇତିହାସ ପୃଷ୍ଠାରେ ସେମାନେ ହଜିଯିବେ । କିନ୍ତୁ ସନ୍ତାନହରା ଯେମାନେ ତ ତୁମକୁ ଭୁଲି ପାରିବେ ନାହିଁ । ସେମାନେ ତୁମକୁ ଦେଖିଲେ ଭୟ କରିବେ । ସେମାନଙ୍କର ବୁକୁର ବେଦନା ରହିଯିବ ଚିରକାଳ । ହେ ସାଗର ! ତୁମକୁ ମୋର ନମସ୍କାର । ଅନ୍ୟ ଜୀବନରେ ଅଶାନ୍ତି ସୃଷ୍ଟି କରିଥିବା ହେ ସାଗର ତୁମେ ରୁହ ଚିର ଅଶାନ୍ତ ହୋଇ । ବେଳା ଲଂଘନ କରିବା ପାଇଁ ତୁମର ଉଦ୍ୟମ ଏଇପରି ବ୍ୟର୍ଥ ହୋଇ ରହୁ । ତୁମକୁ ମୋର ଏଇ ଅଭିଶାପ ।



# ମହାଶୂନ୍ୟରୁ ଜନ୍ମ ଓ ବିଲୟ

ଚଳିତ ବର୍ଷ (୧୯୯୭) ଜାନୁଆରୀ ୨୮ । ଫେବୃଆରୀ କୋଡ଼ିଏ ତାରିଖରେ ବିଦ୍ୟୁତ୍ ପ୍ରଭା ପହଞ୍ଚିବାର କଥା ପଣ୍ଡିଚେରୀରେ । ଶ୍ରୀମାଙ୍କର ଜନ୍ମଦିନ । କିନ୍ତୁ ଗଲା କାଲି ଭୁବନେଶ୍ୱର ରେଳଲାଇନ ଉପରେ ଶୋଇ ଆତ୍ମହତ୍ୟା କରିଥିବା ବିଦ୍ୟୁତ୍‌ପ୍ରଭାଙ୍କର ଶବ ମିଳିଛି । ଏପରି ଏକ ଖବର ତାଙ୍କୁ ଜାଣିଥିବା ସମସ୍ତଙ୍କ ଦେହରେ ଯେପରି ବିଦ୍ୟୁତ୍‌ର ଶିହରଣ ସୃଷ୍ଟି କରିଛି । କଣ ହେଲା ତାଁଙ୍କର ? ଗଲା ବେଶ୍ କିଛି ବର୍ଷ ହେବ ସେ ଶ୍ରୀମା ଓ ଶ୍ରୀ ଅରବିନ୍ଦଙ୍କ ଦର୍ଶନରେ ଗଭୀର ଭାବରେ ଅନୁପ୍ରାଣିତ ହୋଇଥିଲେ । ସାଧକ ଭଳି ଜୀବନ ଅତିବାହିତ କରୁଥିଲେ । କୁହାଯାଉଥିଲା ଯେ ସେ ଏକ ସମର୍ପିତ ଜୀବନ ହୋଇଯାଇଛନ୍ତି । ସମର୍ପିତ ଜୀବନକୁ ରେଳଲାଇନ ଉପରେ ସମର୍ପି ଦେବାର ଅଧିକାର ତାଙ୍କୁ କିଏ ଦେଲା ? ଏଭଳି ଏକ ସୃଜନଶୀଳ, ପ୍ରତିଭାଦୀପ୍ତ ଜୀବନକୁ ସେ ଏପରି କରୁଣ ଭାବରେ ଶେଷ କରିଦେଲେ କାହିଁକି ?

କିନ୍ତୁ ଏ ପ୍ରଶ୍ନର ଉତ୍ତର କିଏ ଦେଇ ପାରିବ ? ମଣିଷ କଣ ମଣିଷକୁ ସବୁବେଳେ ଠିକ୍ ବୁଝିପାରେ ! ତାଙ୍କ ଜୀବନର କେଉଁ ସୂକ୍ଷ୍ମ ତନ୍ତ୍ରୀରେ କ'ଣ ଆଘାତ ହେଲା, ଏବଂ କାହିଁକି ହେଲା ତାହା ଜାଣିବା ପୂର୍ବରୁ ସେ ଆଉ ନାହାନ୍ତି । ତେବେ ଗଲାକେତେ ବର୍ଷ ହେଲା ସେ ନିଜକୁ ଶେଷ କରିଦେବା ପାଇଁ ଉଦ୍ୟମ କରୁଥିଲେ ଏଥିରେ କୌଣସି ସଂଦେହ ନାହିଁ । ମାନସିକ ଡିପ୍ରେସନ ତାଙ୍କୁ ବାରମ୍ବାର ଗ୍ରାସ କରୁଥିଲା । ଥରେ ବିନ୍ଦୁସାଗର ପୋଖରୀରେ ସେ ନିଜକୁ ବିସର୍ଜନ ଦେଇଥିଲେ କିନ୍ତୁ ଦିନ ଥିଲା ବୋଲି ସେ ରକ୍ଷା ପାଇଯାଇଥିଲେ । ପୁଣି ଥରେ ଦୁଇଥର ଘରୁ ବାହାରି ଯାଇଛନ୍ତି, ଜୀବନ ନେବାକୁ ଚେଷ୍ଟା କରି ଫେଲ୍ ମାରିଛନ୍ତି । ଫେରି ଆସିଛନ୍ତି ଘରକୁ ଏବଂ ପିଲାଙ୍କ ପରି କହିଛନ୍ତି, ଯାଇଥିଲି ଜୀବନ ହାରିବାକୁ ଯେ ଚେଷ୍ଟା କରି ପାରିଲି ନାହିଁ ।

୧୯୨୬ ମସିହା ଜୁଲାଇ ମାସ ୧୨ ତାରିଖ । ପିତା ନିମାଇଁ ଚରଣ ଦାସ ଏବଂ ମାତା ରେଖା ଦେବୀଙ୍କ ଔରସରୁ ଜନ୍ମ ଲାଭ କରିଥିଲା ଏକ କନ୍ୟା, ସେଦିନ ବର୍ଷଣ ମୁଖର ସନ୍ଧ୍ୟାରେ । ଆକାଶରେ ଶତହଜାର ସ୍ଫୁରଣ । ଘନ ଘନ ବିଦ୍ୟୁତର ରେଖା ଏକୁଡିଶାଳରୁ ବି ଦେଖାଯାଉଥିଲା । ବାପା ମାଆ ସେଇଯୋଗୁଁ ନାମ ରଖିଲେ ବିଦ୍ୟୁତ ପ୍ରଭା । ସତକୁ ସତ ବିଦ୍ୟୁତ ଭଳି ପ୍ରତିଭା ଜଣାପଡ଼ିଲା ପିଲାଦିନରୁ । ନାଟରା ଗ୍ରାମ ତାଙ୍କର ଜନ୍ମସ୍ଥଳୀ । ତାଙ୍କର ଜନ୍ମ କିନ୍ତୁ ମାମୁଁ ଘରେ ।

ସ୍ତ୍ରୀ ଶିକ୍ଷାର ପ୍ରସାର ନ ଥିଲା । କିନ୍ତୁ ଇଚ୍ଛା ଥିଲେ ବାଟ ବାହାରେ । ବିଦ୍ୟୁତ ପ୍ରଭା ଘରେ ହିଁ ପାଠ ଆରମ୍ଭ କଲେ, ମନକୁ ମନ । ଗ୍ରାମରେ ଜନ୍ମ, ଗାଁରେ ହିଁ ବଢ଼ିଥିଲେ ସେ ।

ତେଣୁ ଗ୍ରାମୀଣ ଜୀବନ, ଗ୍ରାମୀଣ ପ୍ରକୃତି ସ୍ଥାନ ପାଇଚି ତାଙ୍କ ଲେଖାରେ ବହୁଳ ଭାବରେ । ମାତ୍ର ଦଶମ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ି ପାରିଲେ ସେ । କିନ୍ତୁ ପିଲାଦିନୁ ପଦକୁ ପଦ ମିଳାଇ ସେ ରଚନା କରି ଚାଲିଥିଲେ ବହୁ କବିତା । ପିତା ତାଙ୍କୁ ସିନା ଅଧିକ ପାଠ ପଢ଼ାଇ ପାରିନ ଥିଲେ କିନ୍ତୁ କବିତା ଲେଖିବା ପାଇଁ ଉତ୍ସାହ ପ୍ରଦାନ କରିଥିଲେ । ଠିକ୍ ସେଇପରି ପାରିବାରିକ ବନ୍ଧୁ ଶ୍ରୀ କୃଷ୍ଣଚନ୍ଦ୍ରଙ୍କର ଅବଦାନ କିଛି କମ ନ ଥିଲା ତାଙ୍କ ପାଇଁ । ଉତ୍କଳର ବରେଣ୍ୟ ପ୍ରତିଭା ମାନଙ୍କ ଉପରେ ଲିଖିତ ତାଙ୍କର କବିତା ବହି ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ମାଟ୍ରିକୁଲେଶନ ପାଠ୍ୟକ୍ରମରେ ସ୍ଥାନ ପାଇଥିଲା ଏବଂ ତାଙ୍କୁ ଆଣିଦେଇଥିଲା ସ୍ୱୀକୃତି ।

୧୯୪୪ ମସିହାରେ ତାଙ୍କର ପ୍ରଥମ କବିତା ଗୁଚ୍ଛ 'ସବିତା' ନାମରେ ପ୍ରକାଶ ପାଏ । ତା'ପରେ 'ମରିଚୀକା' ତାଙ୍କର ଖ୍ୟାତିକୁ ନେଇ ଯାଇଥିଲା ନୂତନ ଦିଗ୍‌ବିଜୟକୁ । ଏଇ ସମୟରେ ବମ୍ବେ ସହରରେ ଏକ ଅଭିନବ ମେଗାଜିନ୍ 'କୁଙ୍କୁମ' ପ୍ରକାଶିତ ହୁଏ ଶ୍ରୀ ଦେବ ମହାପାତ୍ରଙ୍କ ସଂପାଦନାରେ । ବିଦ୍ୟୁତ୍ ପ୍ରଭା ପ୍ରବେଶ କରନ୍ତି ନୂତନ ପାଠକ୍ ଗୋଷ୍ଠୀରେ । ସାମାଜିକ ଜୀବନର ସମସ୍ୟା ଫୁଟିଉଠେ ତାଙ୍କର କବିତାର ଛନ୍ଦରେ ।

୧୯୪୯ ମସିହାରେ ତାଙ୍କର ବିବାହ ହୁଏ ଭଦ୍ରଖ ଜିଲ୍ଲାର ଶ୍ରୀ ପଞ୍ଚାନନ ମହାନ୍ତିଙ୍କ ସଙ୍ଗରେ । ତାଙ୍କର ବାସସ୍ଥାନ କିଛିକାଳ ପାଇଁ ଭଦ୍ରଖ ଏବଂ ପରେ ଭୁବନେଶ୍ୱର ହୋଇଯାଏ । ଶାଶୁଘରେ ସବୁ ପାଇଟି ସାରି, ଶାଶୁଙ୍କର ସେବା କରି ସାରିଲା ପରେ ଡିବିରି ଆଲୁଅରେ ସେ ଲେଖନ୍ତି କବିତା, "ପଲ୍ଲୀପଥେ" କବିତାବଳୀ ପ୍ରକାଶିତ ହୁଏ ଏବଂ ଗ୍ରାମ୍ୟ ଜୀବନର ନିଛକ ପ୍ରତିଛବି ଫୁଟି ଉଠେ ଏହି କବିତାବଳୀର ପ୍ରତ୍ୟେକ କବିତାରେ । ପଲ୍ଲୀର ସୌନ୍ଦର୍ଯ୍ୟ ତାଙ୍କୁ ଯେପରି ମୁଗ୍ଧ କରିଛି, ସମସ୍ୟାବଳୀ ମଧ ସେଇପରି ଦେଇଛି ରୋଷ, କାରୁଣ୍ୟ । ବିଦ୍ୟୁତ୍‌ପ୍ରଭା ଆସିଛନ୍ତି ଭଦ୍ରଖ ଗ୍ରାମାଞ୍ଚଳରୁ ଭୁବନେଶ୍ୱର ସହରକୁ । ସହରର ସମସ୍ୟା ରୂପ ପାଇଛି ତାଙ୍କର କିରାନୀ ବୋହୂ କବିତାରେ ।

ଲେଖିବା ଥିଲା ତାଙ୍କର ନିଶା । ସେ ଲେଖି ଚାଲିଛନ୍ତି, କେତେବେଳେ ତାହା ଗିରି ନଦୀ ପରି ବୋହି ଚାଲିଛି ପଥରକୁ ପଥର ଟପି, କେତେବେଳେ ରିକ୍ସାବାଲାର ଦୁଃଖରେ ତାଙ୍କର କବିତାର ବଂଶୀ ବେସୁରା ହୋଇ ଯାଇଛି । କେତେବେଳେ କଲିକତାର କୁଲିର ବୋଝ ତାଙ୍କ କବିତା ରୂପରେ ଅଜାଡ଼ି ହୋଇ ପଡ଼ିଛି ଆଉ କେତେବେଳେ ନିଧି ମଳିକ ଝାଳ ସହିତ ତାଙ୍କର କବିତାର ଛନ୍ଦ ଟପ୍ ଟପ୍ ହୋଇ ଗଡ଼ି ପଡିଚି ଦିହ ମୁଣ୍ଡରୁ । କନ୍ୟା ମିନତିର ଜନ୍ମ ପରେ ତାକୁ ଦୋଳିରେ ଶୁଆଇ ହଲେଇ ଦେଉ ଦେଉ ସେ ଲେଖି ଯାଇଛନ୍ତି ଶିଶୁମାନଙ୍କ ପାଇଁ କବିତା "ଯାହା କୁ ଯିଏ" କବିତାବଳୀ । ଭାରତ ସରକାରଙ୍କ ଦ୍ୱାରା ପୁରସ୍କୃତ ହେଲା ।

ଏଇ ସମୟରେ ସେ କଟକ ଆସିଥିବା ସମୟରେ ପାରିବାରିକ ବଂଧୁ ଶ୍ରୀ ରଘୁନାଥ ମହାନ୍ତିଙ୍କ ଘରେ ଶ୍ରୀ ଅରବିନ୍ଦ ପାଠଚକ୍ରରେ ଯୋଗ ଦିଅନ୍ତି ଏବଂ ତାଙ୍କ ଭିତରେ ଭାବାନ୍ତର ଦେଖାଯାଏ । ମାଙ୍କଡ଼ ଯେପରି ମଣିଷରେ ରୂପାନ୍ତରିତ ହୋଇଛି ଠିକ୍ ସେଇପରି ମଣିଷ ଦିନେ ଅତିମାନବରେ ରୂପାନ୍ତିରତ ହେବ, ସେଇ ଟ୍ରାନ୍ସଡେଣ୍ଟାଲ ଶକ୍ତିର ପରଶରେ । ସେଇ ଶକ୍ତିକୁ

ଆବାହନ କରିବା ପାଇଁ ମନୁଷ୍ୟ ପ୍ରସ୍ତୁତ ହେବ । ବିଦ୍ୟୁତ୍‌ପ୍ରଭାଙ୍କର ଦେହ ଓ ମନରେ ନୂତନ ବିଦ୍ୟୁତ ଶିହରଣ । ସେ ପଣ୍ଡିଚେରୀ ଆଶ୍ରମରେ ଛାଡ଼ିଲେ ତାଙ୍କର ପୁତ୍ର କନ୍ୟା ମାନଙ୍କୁ ପାଠ ପଢ଼ିବା ପାଇଁ ଏବଂ ସେଇ ଶକ୍ତିକୁ ଆବାହନ କରିବା ସକାଶେ ପ୍ରସ୍ତୁତ ହେବା ପାଇଁ । ନିଜେ ବି ଯାଇ ରହିଲେ ଅନେକ ଦିନ ପଣ୍ଡିଚେରୀ ଆଶ୍ରମରେ ନବଜ୍ୟୋତି କାର୍ଯ୍ୟାଳୟରେ ।

ତାପରଠାରୁ ସେ ଲେଖିଲେ ଆଧ୍ୟାତ୍ମିକ କବିତା । ୨୮ଟି ଗୀତର ସମାରୋହ 'ପୁଷ୍ପାଞ୍ଜଳି' ନିବେଦିତ ହେଲା । ଶ୍ରୀ ଅରବିନ୍ଦ ଓ ଶ୍ରୀମାଙ୍କୁ । କିଛି କାଳ ସେ ନବଜ୍ୟୋତିର ଗେଷ୍ଟ ହାଉସ ଓଡ଼ିଆ ନିଗମ୍‌ରେ ରହି ସାଧନାରେ ଲିପ୍ତ ରହନ୍ତି । କିନ୍ତୁ ସେ ଫେରି ଆସନ୍ତି ପୁଣି ଓଡ଼ିଶାକୁ । ଦୁଇଥର ଅସ୍ତ୍ରୋପଚାର ହୁଏ । ପରେ ସେ ଧୀରେ ଧୀରେ ନୀରବତାକୁ ଆଦରି ନେଲେ । ଏକ ଅତିନ୍ଦ୍ରିୟ ଭାବନା ଯେପରି ତାଙ୍କୁ ଆଚ୍ଛାଦନ କରିଦେଲା ସମଗ୍ର ଭାବରେ । ତାଙ୍କର ଶେଷ ଲେଖା ହେଉଛି 'ମାଟି ପାଣି ପବନ' । ତାଙ୍କୁ ଦେଖାଯାଏ ଅନେକ ପାଠଚକ୍ରରେ, ଅନେକ ଆଧ୍ୟାତ୍ମିକ ବୈଠକରେ । ସେ ଯେପରି ଧୀରେ ଧୀରେ ହଜିଯାଉଥିଲେ ଏଇ ପୃଥିବୀରୁଁ ।

ଏହା ଉନ୍ମାଦନା ନା ଅତିନ୍ଦ୍ରିୟତା । ହୁଏତ ଦୁଇଟାରୁ କିଛି କିଛି । ଆଉ ବେଶୀ କୁଆଡ଼େ ଯାଆନ୍ତି ନାହିଁ । ଉଦର ରୋଗ, ମୁଣ୍ଡ ବୁଲାଇବା, ଛାତି ଥରିବା ରୋଗରେ ସେ ପୀଡ଼ିତ ହୁଅନ୍ତି ୧୯୯୭ ମସିହାରୁ, ସେ ତନ୍ଦ୍ରାଚ୍ଛନ୍ନ ରହୁଥିଲେ ପ୍ରାୟ ମନକୁ ମନ ବା ଔଷଧ ଖାଇ । ମୁହଁ ମାଡ଼ି ଶୋଇ ରହୁଥିଲେ ଖଟ ଉପରେ ।

ତା ପରେ ?

ସେଇଦିନ ୧୯୯୭ ମସିହାର ଜାନୁଆରୀ ୨୮ ତାରିଖ ସକାଳେ ତାଙ୍କର ମର ଦେହ ମିଳିଲା ରେଳଲାଇନ ଉପରୁ । ବିଦ୍ୟୁତର ଝଲକ ଆସିଥିଲା ମହାକାଶରୁ । କିଛି କ୍ଷଣ ପାଇଁ କ୍ରନ୍ଦସୀ, ଆକାଶକୁ ଆଲୋକିତ କରି, ପୁଣି ଶତହଦା ମିଶିଗଲା ମହାକାଶରେ ।



# ବନ୍ଧୁବତ୍ସଳ ବିପ୍ରବର

ଚାକିରିରୁ ଅବସର ଏବେ ନେଇଥିଲେ । କିନ୍ତୁ ଜୀବନରୁ ଅବସର ଏତେ ଶୀଘ୍ର ଆସିଯିବ ବୋଲି କିଏ ଜାଣିଥିଲା ? ସେଇ ହସ ହସ ମୁହଁ । ହସଟା ଯେପରି ବସା ବାନ୍ଧିଛି ମୁହଁରେ । ଯେତେ ଦୁଃଖ ଆସୁ, ଯେତେ କଷ୍ଟ ପଡୁ ହସୁଥିବେ ସେଇପରି । ଅନେକ କଥା ଆହୁରି କରିବା ପାଇଁ ଇଚ୍ଛା ଥିଲା । ସହକର୍ମୀ ବିନୟଭୂଷଣ ମିଶ୍ର ଅବସର ନେଇଛନ୍ତି ତାଙ୍କରି ପରି । ତାଙ୍କର ବି ଅନେକ କିଛି କରିବା ପାଇଁ ଇଚ୍ଛା । ତାଙ୍କୁ ଫୋନ କରିଥିଲେ ସକାଳେ । ସମୟ ଦେଇଥିଲେ ଉପରବେଳା ଯିବା ପାଇଁ ଭୁବନେଶ୍ୱର । ବିନୟ ଅପେକ୍ଷାକରି ବସିଛନ୍ତି । ବିପ୍ର ତ କାହିଁ ଆସିଲା ନାହିଁ । କେବେ ତ ଏପରି ଘଟି ନାହିଁ ଜୀବନରେ । ସମୟ ଦେଇଥିଲେ ନିଶ୍ଚୟ ପହଞ୍ଚିବେ । ସେଥିପାଇଁ ତ ତାଙ୍କର ଖ୍ୟାତି ରହିଛି ସରକାରୀ ଜୀବନରେ , କ'ଣ ହେଲା ?

ଫୋନ୍ କଲାବେଳକୁ ବିପ୍ରବର ଚାଲିଗଲେଣି ଅନ୍ୟତ୍ର । ସେଠାରୁ ସେ ଆଉ ଫେରିବେ ନାହିଁ । କୁଆଡ଼େ ଗଲେ, କାହିଁକି ଗଲେ, କ'ଣ ଆହୁରି ଜରୋରୀ କାମ ପଡ଼ିଲା ? ସେ ସବୁ ପ୍ରଶ୍ନର ଉତ୍ତର କେହି ପାରିବେ ନାହିଁ । ସେ ସବୁ ଅନନ୍ତ ପ୍ରଶ୍ନ । ସେସବୁ କେବଳ ହିଁ ପ୍ରଶ୍ନବାଚୀ ହୋଇ ରହିବ ?

କିଛି ତ ନ ଥିଲା । ଖାଇ ବସିଛନ୍ତି । ଖାଇସାରି ଟିକିଏ ବିଶ୍ରାମ ନେଇ, ଯିବେ ଭୁବନେଶ୍ୱର । ହଠାତ୍ ଛାତିରେ ଯନ୍ତ୍ରଣା । ଆଉ ତା'ପରେ ସବୁ ଶେଷ ।

ମନେ ପଡୁଛି । ୧୯୬୨ ମସିହାର ପ୍ରଳୟଙ୍କରୀ ବାତ୍ୟା ଓ ବନ୍ୟାର ସମୟ । ବିପ୍ରବର ସରକାରୀ ଅଫିସର । ନିଜେ ରିଲିଫ ଯୋଗାଡ଼ କରି ଗାଡ଼ି ନେଇ ଆସି ରାଧାନାଥ ବାବୁଙ୍କ ପାଖରେ ହାଜର । ରାଧାନାଥ ବାବୁ ଆଶୀର୍ବାଦ ନେଇ ସେ ଚାଲିଲେ । କିନ୍ତୁ ଥରେ ନୁହେଁ ବହୁବାର । ସରକାରୀ ଚାକିରି କରୁଥିଲେ କିନ୍ତୁ ଭୟ ନ ଥିଲା ଜନକଲ୍ୟାଣ କାର୍ଯ୍ୟ ପାଇଁ ।

୧୯୩୮ ମସିହାରରେ ଜନ୍ମ ତାଙ୍କର । ଏମ୍.ଏ. ପାସ୍ କରିବା ପରେ ଡେପୁଟି କଲେକ୍ଟର ଭାବରେ ଚାକିରି ଆରମ୍ଭ କରନ୍ତି । ଚକବନ୍ଦୀ ଅଫିସର, ବନ୍ଦୋବସ୍ତ ବିଭାଗ ଅଫିସର, ବାଲେଶ୍ୱରରେ କଲେକ୍ଟର ପ୍ରଭୃତି ହୋଇଥିଲେ । ସଚ୍ଚୋଟ ଅଫିସର ଭାବରେ ତାଙ୍କର ଖ୍ୟାତି ଥିଲା, ଖ୍ୟାତି ଥିଲା ଅମାୟିକ ଅଫିସର ଭାବରେ । କେବେ ରୁକ୍ଷ ହୋଇ ନାହାନ୍ତି, କର୍ତ୍ତବ୍ୟରେ ହେଳା କରି ନାହାନ୍ତି, କ୍ରୋଧ ପ୍ରକାଶ କରି ନାହାନ୍ତି । ସମୟ ଦେଇ ସେଥିରେ ଖିଲାପ କରି

ନାହାନ୍ତି । ଅନେକ ସହକର୍ମୀ ଆଜି ବି ମନେ ପକାନ୍ତି, ବାଲେଶ୍ୱର ଭଳି ସମସ୍ୟା ବହୁଳ ଜିଲ୍ଲାରେ ଜିଲ୍ଲାପାଳ ହୋଇ ଦିନେ ବି ନିଜର ଭାରସାମ୍ୟ ହରାଇ ନାହାନ୍ତି । ହସ ମୁହଁରୁ ଲିଭି ନାହିଁ ।

ସେଇ ମୁହଁଟି ହଠାତ୍ ହଜିଗଲା ମହାକାଳ ବକ୍ଷରେ । ସେ ଆଉ ଫେରିବ ନାହିଁ । ସବୁ ସ୍ୱପ୍ନ ଅଧାରେ ରହିଗଲା । ବିଶ୍ରାମ ନେବାକୁ ଚାହିଁ ନାହାନ୍ତି । ସରକାରୀ ଚାକିରି ସିନା ସରିଲା, ଆହୁରି ତ ଅନେକ କାମ ଅଛି ବାକି । ସବୁ ରହିଗଲା ସେଇ ପରି ।

ସେ କିନ୍ତୁ ସ୍ମୃତ ହୋଇ ରହିବେ ତାଙ୍କର ଅଗଣିତ ବନ୍ଧୁ, ସହକର୍ମୀଙ୍କ ସ୍ମୃତିରେ ଚିରକାଳ । ଦେଶରେ ପୁଣି ଯଦି କେବେ ପ୍ରାକୃତିକ ବିପର୍ଯ୍ୟୟ ଦେଖାଦେବ ତା ହେଲେ ଏଇଭଳି ଏକ ଅଫିସର, ଏଇଭଳି ଏକ ମଣିଷ ଖୋଜା ପଡ଼ିବେ । ସେଇ ହେବ ତାଙ୍କର ସାଫଲ୍ୟ ।



# ତତ୍ତ୍ୱାବଧାରକଙ୍କ ପରଲୋକ

ପ୍ରତି ବର୍ଷ ପରି ଏ ବର୍ଷ (୧୯୯୮) ମଧ୍ୟ ଦଶହରା ଆସିଛି । ସେପ୍ଟେମ୍ବର ୨୯, ୧୯୯୮ ମସିହା । ସବୁ ବର୍ଷ ପରି ଏ ବର୍ଷ ମଧ୍ୟ ସେ ମିଠେଇ ପଠାଇବେ ବିଭିନ୍ନ ବ୍ୟକ୍ତିଙ୍କ ଘରକୁ । ଏ ବର୍ଷ ମଧ୍ୟ ସେ ଯିବେ ବିଭିନ୍ନ ବ୍ୟକ୍ତିଙ୍କ ଘରକୁ । ସବୁ ବର୍ଷ ପରି ଆସିଛନ୍ତି ସେ ଏହାକୁ ନିସ୍ତାର ସହିତ । ବୟସ ହେଲାଣି ୮୭ ବର୍ଷ । ସେଥିରେ ଯାଏ ଆସେ କଣ ? ସେ ଅଛନ୍ତି କର୍ମଦକ୍ଷ, ଆଲର୍ଟ, ସବୁଦିନ ପରି । କେବେ ମୋଟା ନ ଥିଲେ । ସେ ଦିନ ଯେମିତି ପତଳା ଥିଲେ ଆଜି ବି ସିମିତି । ଆଠଗଡ଼ର ଗହନ ଜଂଗଲ ଭିତରେ 'ସମାଜ' କାଗଜକୁ ଲିଥୋ କରି ଗୁପ୍ତରେ ବିଭିନ୍ନ ସ୍ଥାନକୁ ପଠାଇଲାବେଳେ ଯେପରି ଉତ୍ସାହ ଥିଲା, ଆଜି ବି ସିମିତି । କାମ ସିରିଲା । ଗାଧୋଇ ଖାଇଲେ । ତାପରେ ହଠାତ୍ ଛାତିରେ ଯନ୍ତ୍ରଣା ଆଉ ତା ପରେ ? ତା ପରେ ମୃତ୍ୟୁ ।

ଡ଼ାକ୍ତରଖାନା ବେଡ଼୍‌ରେ ଶୁଆଇ ପକାଇ ପରୀକ୍ଷା କରିବାକୁ ଗଲାବେଳକୁ, ସେ ସବୁ ପରୀକ୍ଷାକୁ ପାର ହୋଇ ଚାଲି ଯାଇଛନ୍ତି ସେଇଠିକୁ, ଯେଉଁଠାରୁ ଆଉ କେହି ଫେରି ନାହାନ୍ତି । ୮୭ ବର୍ଷର କର୍ମମୟ ଜୀବନର ପରିସମାପ୍ତି ଘଟିଛି । ବିଶ୍ରାମ କଣ ଜାଣି ନ ଥିଲେ । ଆଜି ଚିର ବିଶ୍ରାମରେ ଶୋଇ ଯାଇଛନ୍ତି ।

ଜଗତ୍‌ସିଂହପୁର ମୁଣ୍ଡିଳୋ ଗ୍ରାମରେ ୧୯୦୯ ମସିହାରରେ ଜନ୍ମ । କିନ୍ତୁ ନିଜ ସଂପର୍କରେ ପବ୍ଲିସିଟି ବିମୁଖ ଭ୍ରମରବର ରାଉତ କଣ ନିଜର ଇତିହାସ କିଛି ଟିପି ଯାଇଛନ୍ତି ? ସେଥିରୁ କଣ ମିଳିବ ? ଜନ୍ମ ଦୈବର ଅଧୀନ, କର୍ମ ମୋର ଅଧୀନ । କର୍ମ ହିଁ ମୋର ପରିଚୟ, ଜନ୍ମ ବା କୁଳ ନୁହେଁ । ପୁଅ ବୀରେନ୍ କହୁଛି, ବାପା କଣ କେବେ ଆମକୁ ତାଙ୍କ କଥା କହିଛନ୍ତି ନା ଆମକୁ ସେ କଥା ହେଜିବା ପାଇଁ କେବେ ସେ ସୁଯୋଗ ଦେଇଛନ୍ତି ?

ଘରେ ରହିଛି ତାମ୍ରପତ୍ର । ଭାରତ ସରକାରଙ୍କର ଏବଂ ଓଡ଼ିଶା ସରକାରଙ୍କର । ସ୍ୱାଧୀନତା ସଂଗ୍ରାମୀ ତାମ୍ରପତ୍ର । ସେଥିରେ ଧୂଳି ଜମିଛି । ପୋଛି ପଢ଼ିବାକୁ ହେବ । ମିଳିଛି, ଆନନ୍ଦର କଥା । କିନ୍ତୁ ତାକୁ ଧୋଇମାଜି ଦେଖାଇବାକୁ ବେଳ ନାହିଁ, ଇଚ୍ଛା କାହିଁ ଭ୍ରମରବର ରାଉତଙ୍କର ।

ଏକାଡ଼େମୀ ସ୍କୁଲ, କଟକରେ ପାଠପଢ଼ା । ସେଇ ଭିତରେ ଅସହଯୋଗ ଆନ୍ଦୋଳନର ଡ଼ାକରା । ଦୁଇ ଥର, ୧୯୩୨, ୧୯୩୩ ମସିହାରେ କାରାବାସ । ତା'ପରେ ?

ଏକ ଚିଠିରୁ କିଛି ଇତିହାସ ମିଳୁଛି ।

"ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ରମାଦେବୀ ଏବଂ ରାଧାନାଥ ରଥ ମୋ ଉପରେ ଲଦି ଦେଲେ ଏକ ଦାୟିତ୍ୱ, ଯାହା ନିଷ୍ଠାର ସହିତ ପୂରଣ କରିବାରେ ଲାଗିଗଲି । ଆଠଗଡ଼ ଜଂଗଲ ଭିତରେ ଲେଖା ହେବ ଖବର କାଗଜ, ଲିଥୋ ହେବ ଏବଂ ପଠାହେବ ଗୁପ୍ତରେ ବିଭିନ୍ନ ସ୍ଥାନକୁ । କେହି, ବିଶେଷତଃ ପୁଲିସ ଜାଣି ପାରିବ ନାହିଁ କିନ୍ତୁ ଖବର କାଗଜ ପ୍ରକାଶ ପାଉଛି କେଉଁଠୁ । ଦୁରାରୋଧ ସେ କାମ । ଖବର କାଗଜ ସହିତ ନିଜକୁ ବି ଅପ୍ରକାଶିତ ରଖିବାକୁ ହେବ । ସେଇ କାମ ତୁଲାଇଛି ନିଷ୍ଠାର ସହିତ । ଆମର ଖବର କାଗଜ ବାହାରିଛି ନିୟମିତ, ସ୍ୱାଧୀନତାର ଅରୁଣୋଦୟ ପର୍ଯ୍ୟନ୍ତ ଏବଂ ସେଇ କାମରେ ଲାଗିଗଲି ଇମିତି ଯେ ମୋର ଆଉ ଜେଲଖାନା ଯିବାର ଗୌରବ ମିଳିଲା ନାହିଁ ।"

୧୯୩୨ ରୁ ୧୯୪୭ - ଏଇ ହେଉଛି ଭ୍ରମରବର ରାଉତଙ୍କର ଜୀବନ କାହାଣୀ । ତା'ପରେ ନାନା ପ୍ରକାର କାର୍ଯ୍ୟବ୍ୟସ୍ତତା ଭିତରେ ସମୟ କଟିଯାଇଛି । ୧୯୫୧ ମସିହାରେ 'ସମାଜ' ରେ ଯୋଗଦାନ ଏବଂ ୧୯୬୧ ମସିହାରେ ଅବସର ଗ୍ରହଣ । ସମାଜର ବିଜ୍ଞାପନ ବିଭାଗ ଦାୟିତ୍ୱରେ ରହିଛନ୍ତି ବହୁ ବର୍ଷ ଧରି । ସମସ୍ତଙ୍କ ପ୍ରତି ସମାନ ବ୍ୟବହାର । କୌଣସି ଲୋକ ଉପରେ ବିରକ୍ତ ହେବାର କେହି ଦେଖି ନାହିଁ । ସମାଜର ସମସ୍ତଙ୍କର ବିଶ୍ୱାସ ଭାଜନ । ଚାକିରି ଆରମ୍ଭ ହୋଇଛି, ଶେଷ ହୋଇଛି, କୌଣସି ଘଟଣା ବା ଦୁର୍ଘଟଣା ଘଟିନାହିଁ ।

କଟକ ସହରରେ ଏବଂ ଭୁବନେଶ୍ୱରରେ ବହୁତ ବିବାହ ବ୍ରତ ହୁଏ, ଭୋଜି ହୁଏ । ଭ୍ରମର ବାବୁଙ୍କୁ ଖାଲି କହିଦେଲେ ଯଥେଷ୍ଟ । କେବେ କାହାକୁ ନାହିଁ କରି ନାହାନ୍ତି । ସବୁ ଭୋଜିରେ ଖାଇବା ଆୟୋଜନର ଦାୟିତ୍ୱ ଭ୍ରବର ବାବୁଙ୍କ ଉପରେ ଦେଇଦେଲେ କର୍ତ୍ତା ନିଶ୍ଚିନ୍ତ । ରନ୍ଧାଶାଳରେ ଭ୍ରମରବାବୁ ବସିଥିବେ ମୂଳରୁ ଶେଷ ପର୍ଯ୍ୟନ୍ତ । ବିଶ୍ରାମ ନାହିଁ, ବିରକ୍ତି ନାହିଁ । ହସୁଥିବେ କାମ କରୁଥିବେ । ଅତିଥିମାନେ ଖାଇବାର ପ୍ରଶଂସା କଲେ ତାଙ୍କ ପେଟ ପୁରି ଯାଏ । ସେ ନିଜେ କିଛି ଖାଆନ୍ତି ନାହିଁ । ଅନ୍ୟକୁ ଖୁଆଇବାରେ ତାଙ୍କର ତୃପ୍ତି । ସେଇଥିରେ ହିଁ ତାଙ୍କର ଅପାର ଆନନ୍ଦ ।

ଦିନ ସରି ସରି ଗଲାଣି । ଛାଇ ଲମ୍ବା ହୋଇ ଗଲାଣି । କିନ୍ତୁ ବିଶ୍ରାମ ନେଇ ନ ଥିଲେ । ଆଜି ସେଇ ବିଶ୍ରାମର ଦିନ । କାଲି ଭୋଜି ହେବ । ମ୍ୟାନେଜର ଖୋଜିବେ ସମସ୍ତେ । କିନ୍ତୁ ମ୍ୟାନେଜର କାହାନ୍ତି । ସେ ଭଳି ମଣିଷ ହଜି ହଜି ଗଲେଣି । କ୍ଲାସିକାଲ ଲୋକ ସମାଜରେ ମିଳୁ ନାହାନ୍ତି ।

ପରିଚୟ ଅନେକ ଦିନର । ଆତ୍ମୀୟତା ବି ଅନେକ ଦିନର । ଖବର ପାଇଲାବେଳକୁ ତାଙ୍କର ମର ଦେହ ପୋଡ଼ି ପାଉଁଶ ହୋଇଗଲାଣି ସ୍ୱର୍ଗଦ୍ୱାରରେ । ବୀରେନ୍ ଖବର ବି ଦେଲା ନାହିଁ । ଆଖିରେ ଲୁହ ଜକେଇ ଆସିଲା ।

ସ୍ୱର୍ଗ ଦ୍ୱାରରେ ଚିତା ଜଳୁଛି ।



# ବ୍ରିଟିଶ ଲୋକଙ୍କୁ ଓଡ଼ିଆ ପଢ଼ାଉଥିବା ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀ ଜନନାୟକ

ଇମିତି ଲୋକ କଣ ସତରେ ଥିଲେ ନା କ'ଣ ? ଏଆଡ଼େ ଇଂରେଜ ଲୋକଙ୍କୁ ଓଡ଼ିଆ ପଢ଼ାଉଥିଲେ ଆଉ ସେ ପଟେ ଇଂରେଜ ସାମ୍ରାଜ୍ୟବାଦ ସହିତ ଲଢୁଥିଲେ । ଇମିତି କ'ଣ ସମ୍ଭବ ହୋଇପାରେ ? ଏପରି ଅନ୍ତତଃ ତିନୋଟି ମଣିଷଙ୍କୁ ମୁଁ ଦେଖିଛି ।

ଗଲା ସପ୍ତାହରେ, ୯ ଜୁଲାଇ, ୧୯୮୦ ମସିହାରେ ସେ ମଧ୍ୟରୁ ଜଣକର- ଭାଗୀରଥୀ ପଟ୍ଟନାୟକଙ୍କର ପରଲୋକ ହୋଇଗଲା ।

ସମ୍ବଲପୁରରେ ପଞ୍ଚସଖା କହିଲେ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର, ଶ୍ରୀ ଦୟାନନ୍ଦ ଶତପଥୀ, ଶ୍ରୀ ନୃସିଂହ ପ୍ରସାଦ ଗୁରୁ, ଶ୍ରୀ ଚିନ୍ତାମଣି ପୁଝାରୀ ଏବଂ ଶ୍ରୀ ଭାଗୀରଥୀ ପଟ୍ଟନାୟକଙ୍କୁ ବୁଝାଯାଉଥିଲା । କାଳଚକ୍ର ଆବର୍ତ୍ତନରେ ଶ୍ରୀ ଦୟାନନ୍ଦ ଶତପଥୀ କଂଗ୍ରେସ ଛାଡ଼ି କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦିଅନ୍ତି । ଶ୍ରୀ ଭାଗୀରଥୀ ପଟ୍ଟନାୟକ ମଧ୍ୟ ଉତ୍ତର ଜୀବନରେ ଭୂ-ଦାନ ଏବଂ ବାମପନ୍ଥୀ ଆନ୍ଦୋଳନ ସହିତ ସାମିଲ ହୁଅନ୍ତି । ଶ୍ରୀ ନୃସିଂହ ଗୁରୁ ଗଠନ ମୂଳକ କାର୍ଯ୍ୟ ଓ ସାମ୍ବାଦିକତାରେ ମନୋନିବେଶ କରନ୍ତି । ପଣ୍ଡିତ ଲକ୍ଷ୍ମୀନାରାୟଣ କଂଗ୍ରେସ ଦଳରେ ରହନ୍ତି କିନ୍ତୁ ଆପଣାର ନିର୍ଭୀକ ମତ ପ୍ରକାଶ ଯୋଗୁଁ ଆତତାୟୀ ଦ୍ୱାରା ନିହତ ହୁଅନ୍ତି । କିନ୍ତୁ ମତାନୈକ୍ୟ ସତ୍ତ୍ୱେ ସେମାନଙ୍କ ଭିତରେ ଅକୃତ୍ରିମ ବନ୍ଧୁତା ଏବଂ ସହଯୋଦ୍ଧୃତ୍ୱ ରହିଥିଲା ।

ଶ୍ରୀ ଭାଗୀରଥୀ ପଟ୍ଟନାୟକ ଥିଲେ ଏକ ସ୍ୱତନ୍ତ୍ର ଧରଣର ମଣିଷ । ଯେ କୌଣସି କାମ ସେ ହାତକୁ ନେବେ ସେ କାମରେ କଦାପି ହେଳା କରିବେ ନାହିଁ । ନୀତି ଆଗରେ ବ୍ୟକ୍ତିର ସ୍ୱାର୍ଥକୁ ବଳି ଦେବା ଭଳି ମଣିଷ ଅନେକ କିନ୍ତୁ ତାହାର କ୍ରମାନ୍ୱୟତା ରକ୍ଷା କରିବା ଭାରି କଠିନ । ଭାଗୀରଥୀ ପଟ୍ଟନାୟକ ସେଇପରି ଜଣେ ମଣିଷ ଥିଲେ ଯେ ଆଦର୍ଶ ପାଇଁ ଆପଣାକୁ ବଳି ଦେବା ପାଇଁ କୁଣ୍ଠିତ ହେଉ ନ ଥିଲେ । ତାଙ୍କୁ ଅର୍ଥ ପଦବୀ କୌଣସିଥିରେ କିଣିନେବା ଅସମ୍ଭବ । ଏଭଳି ଏକ ପ୍ରସ୍ତାବ ବାଢ଼ିବା ପାଇଁ ସାହସ କରିବା ମଣିଷ ମଧ୍ୟ ମିଳିବେ ନାହିଁ ।

ନଭେମ୍ବର ୯, ୧୮୮୪ ମସିହାରେ ସେ ବରପାଲି ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଜାତୀୟତାବାଦ ତାଙ୍କ ମନରେ ବସା ବାନ୍ଧିଥିଲା ପିଲାଦିନୁ । ମହାତ୍ମାଗାନ୍ଧୀଙ୍କୁ ସେ ଅନୁସରଣ କରୁଥିଲେ ସତ୍ୟ କିନ୍ତୁ ନିଜର ମତକୁ ଜାହିର କରିବା ପାଇଁ ସେ ଥିଲେ ପ୍ରଚଣ୍ଡ ଶକ୍ତିଶାଳୀ । ବାପାଙ୍କ ନାମ ଥିଲା ଯଦୁନାଥ, ମା'ଙ୍କ ନାଁ ଥିଲା ବାଣୀ । ବାପା ଥିଲେ ସ୍ୱାଧୀନଚେତା ଏବଂ ମା' ଥିଲେ ଧର୍ମ ପରାୟଣା । ତାଙ୍କ ଜେଜେବାପା ଥିଲେ ପାଇକ ସେନାରେ ଘୋଡ଼ା ସବାର ।

ପାଇକ ବିଦ୍ରୋହର ଦମନ ପରେ ସେ ସୁରେନ୍ଦ୍ର ସାଏଙ୍କ ବାହିନୀରେ ଯୋଗ ଦେଇଥିଲେ । ଏଇପରି ଏକ ନିର୍ଭୀକତାର ସଂସ୍କାର ଭିତରେ ଭାଗୀରଥୀ ଜନ୍ମ ଗ୍ରହଣ କରିଥିଲେ ।

ପାଠ ପଢ଼ିବାର ଇଚ୍ଛା ଥିଲା ପ୍ରବଳ । ବାପାଙ୍କର ମଧ ପୁଅକୁ ପାଠ ପଢ଼ାଇବାର ଇଚ୍ଛା ଥିଲା ପ୍ରଭୂତ । କିନ୍ତୁ ବାପାଙ୍କର ଅକାଳ ବିୟୋଗ ହେତୁ ଅକାଳରେ ଭାଗୀରଥୀଙ୍କର ପାଠପଢ଼ାରେ ଡୋର ବନ୍ଧା ହେଲା । ପରିବାର ଭରଣପୋଷଣର ଦାୟିତ୍ୱ ପଡ଼େ ତାଙ୍କ ଉପରେ ଏବଂ ସେ ଏକ ଜୀବିକା ଖୋଜି ବୁଲନ୍ତି ।

ସେତେବେଳେ ବ୍ରିଟିଶ ଶାସନ । ସମ୍ବଲପୁରକୁ ଅନେକ ଗୋରା ସାହେବ ଆସନ୍ତି । ଆସନ୍ତି ଅନେକ ଅଣ ଓଡ଼ିଆ ହାକିମ । ନିମୟ ଅନୁଯାୟୀ ସମସ୍ତେ ଓଡ଼ିଆ ପଢ଼ିବାକୁ ବାଧ । ଏବେ ବି ସେ ନିୟମ ଅଛି । କିନ୍ତୁ ଅଧିକାଂଶ ଅଣଓଡ଼ିଆ ଅଫିସର ଓଡ଼ିଆ ଶିଖନ୍ତି ଯେପରି ସେମାନେ ଏଇ ଦେଶ, ଏଇ ଭାଷାକୁ ଦୟା ଦେଖାଉଛନ୍ତି । ଗୋରା ସାହେବ ମାନଙ୍କୁ ଓଡ଼ିଆ ପଢ଼ାଇବାର ଦାୟିତ୍ୱ ନେଲେ ଭାଗୀରଥୀ । ବିଧାନ ବିଚିତ୍ର । ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀ ଭାରଗୀରଥୀ ଇଂରେଜ ଶାସକ ମାନଙ୍କୁ ଓଡ଼ିଆ ପଢ଼ାନ୍ତି । ସେ ଚାକିରି ଛାଡ଼ି ଦିଅନ୍ତି କିଛି ବର୍ଷ ପରେ । କିନ୍ତୁ ଭାଗୀରଥୀ ସେଇ ଅଫିସର ମାନଙ୍କର ବ୍ୟକ୍ତିଗତ ସମ୍ମାନନୀୟ ହୋଇ ରହି ଯାଆନ୍ତି ଚିରକାଳ । ତା'ପରେ ପାଟଣା ରାଜ ଦରବାରରେ ତାଙ୍କୁ ଏକ ଚାକିରି ମିଳେ ଏବଂ ନିଜର ଦକ୍ଷତା ତଥା ସଚ୍ଚୋଟତା ହେତୁ ସେ କିଛିକାଳ ପାଇଁ ରାଜାଙ୍କର ବ୍ୟକ୍ତିଗତ ସେକ୍ରେଟେରୀ ମଧ ହୁଅନ୍ତି ।

ସେ ଦେଖନ୍ତି ରାଜ ଅତ୍ୟାଚାର ସ୍ୱ-ଚକ୍ଷୁରେ । ସେ ବିଦ୍ରୋହ କରନ୍ତି ଏଇ ଅତ୍ୟାଚାର ଏବଂ ଶୋଷଣ ବିରୁଦ୍ଧରେ । ଠିକ୍ ସେତିକିବେଳେ ବାମଣ୍ଡା ରାଜ୍ୟର ରାଜ ପୁରୋହିତଙ୍କ ପୁତ୍ର ଦୟାନନ୍ଦ ଶତପଥୀ ମଧ ବିଦ୍ରୋହର ଗୈରିକ ପତାକା ଉତ୍ତୋଳିତ କରନ୍ତି ରାଜ ଅତ୍ୟାଚାର ବିରୁଦ୍ଧରେ । ଭାଗୀରଥୀ କାରାଗାରରେ ନିକ୍ଷିପ୍ତ ହୁଅନ୍ତି ଏକ ବର୍ଷ ପାଇଁ । ଲୁହା ଇସ୍ପାତରେ ପରିଣତ ହୁଏ ।

ନିଖିଳ ଭାରତ କଂଗ୍ରେସ କମିଟି ଡାକ ଦେଇଛି, ଅସହଯୋଗ ଡାକରା । ଦୁନ୍ଦୁଭି ନିନାଦିତ ହୋଇଛି । ସମଗ୍ର ଦେଶରେ ଅଗ୍ନିଜଳି ଉଠିଛି । ନୃସିଂହ ଗୁରୁ ପଢ଼ା ଛାଡ଼ି ବିଶାଳ ଜନ ଆନ୍ଦୋଳନର ପୁରୋଭାଗରେ । ହରତାଳ ସଫଳ ହୋଇଛି ଗୋପବନ୍ଧୁ, ନୀଳକଣ୍ଠ ପ୍ରଭୃତି ପହଞ୍ଚିଗଲେଣି ସମ୍ବଲପୁରରେ ଛାତ୍ର ମାନଙ୍କ ଉଦ୍‌ବେଳନକୁ ସମର୍ଥନ ଦେବାଲାଗି । ଫ୍ରେଜର କ୍ଲବରେ ସମାନ୍ତରାଳ ଜାତୀୟ ସ୍କୁଲ ପ୍ରତିଷ୍ଠା ହୋଇଛି । ଭାଗୀରଥୀ ଚାଲିଲେ କଂଗ୍ରେସର ଗୟା ଅଧିବେଶନକୁ ପାଦରେ ଚାଲି ଚାଲି ସମ୍ବଲପୁରରୁ ଗୟା । ଚୌରୀଚୌରା ଘଟଣା ପରେ ଗାନ୍ଧିଜୀ ଆନ୍ଦୋଳନ ପ୍ରତ୍ୟାହାର କରିନେଲେ । ଅନେକ କଂଗ୍ରେସ କର୍ମୀ ଫେରିଗଲେ ନିଜ ଅଂଚଳକୁ ଖଦୀ, ଗ୍ରାମୋଦ୍ୟୋଗ, ଚରଖା ଆନ୍ଦୋଳନରେ ବିନିଯୋଗ କରିବା ପାଇଁ । ସମ୍ବଲପୁରର ପଞ୍ଚସଖା ସେଇ କାର୍ଯ୍ୟରେ ଲିପ୍ତ ହେଲେ ।

୧୯୨୨ ମସିହା ମାର୍ଚ୍ଚ ୧୦ ତାରିଖରେ ଗାନ୍ଧିଜୀ ଗିରଫ ହେଲେ । ତାଙ୍କୁ ଛଅବର୍ଷ କାରାଦଣ୍ଡ ହେଲା । ଭାଗୀରଥୀ ସମ୍ବଲପୁର ଜିଲ୍ଲା କଂଗ୍ରେସ କମିଟିର ସଂପାଦକ ନିଯୁକ୍ତ

ହୁଅନ୍ତି । ମଦ ଦୋକାନ ଆଗରେ ପିକେଟିଂ ଚାଲିଲା, ବିଲାତି ଲୁଗା ପୋଡ଼ା ହେଲା । ସମ୍ବଲପୁର ଜିଲ୍ଲାରେ ଅଭୂତପୂର୍ବ ଜନ ଜାଗରଣ ଦେଖାଗଲା । ସ୍ୱାମୀ ସ୍ତ୍ରୀ ଦୁଇଜଣ ଏବଂ ପୁଅ ଲାଗିଗଲେ ସ୍ୱଦେଶୀ ଆନ୍ଦୋଳନରେ । ଏଇ ଅପରାଧରେ ତାଙ୍କୁ ଚାରିବର୍ଷ ସଶ୍ରମ କାରାଦଣ୍ଡ ମିଳେ ପୁରସ୍କାର । ପାଟନା କ୍ୟାମ୍ପ ଜେଲରେ ଥିବାବେଳେ ବିହାରର ଐତିହାସିକ ଭୂମିକମ୍ପ ହୁଏ ଏବଂ ସରକାର ରିଲିଫ କାର୍ଯ୍ୟ ସୁପରିଚାଳନା ପାଇଁ ରାଜେନ୍ଦ୍ର ପ୍ରସାଦ ଏବଂ ତାଙ୍କର ସହକର୍ମୀମାନଙ୍କୁ ଖଲାସ କରିଦିଆଯାଏ । ଭାଗିରଥୀ ଡକ୍ଟର ରାଜେନ୍ଦ୍ର ପ୍ରସାଦ, ପଣ୍ଡିତ ଜବାହାରଲାଲ ନେହେରୁ, ମୀରାବେନ୍ ପ୍ରଭୃତିଙ୍କ ସହ ରିଲିଫ କାର୍ଯ୍ୟ କରନ୍ତି ।

୧୯୩୫ ରୁ ୧୯୪୦ ପର୍ଯ୍ୟନ୍ତ ସ୍ୱାମୀ ସ୍ତ୍ରୀ ଅସ୍ପୃଶ୍ୟତା ବିରୋଧୀର ଆନ୍ଦୋଳନରେ ଆପଣାକୁ ଉତ୍ସର୍ଗ କରନ୍ତି । ପଞ୍ଚମ ବାହିନୀର ଷଡ଼ଯନ୍ତ୍ର ଫଳରେ ଭାଗୀରଥୀ ଗିରଫ ହୁଅନ୍ତି ଭାରତ ଛାଡ଼ ଆନ୍ଦୋଳନରେ । ଜେଲରେ ଥିଲାବେଳେ ହିଁ ତାଙ୍କର ସ୍ତ୍ରୀଙ୍କର ପରଲୋକ ହୋଇଯାଏ ଏବଂ ତାଙ୍କର ଏକମାତ୍ର ପୁଅ ପ୍ରଫୁଲ୍ଲକୁ ୨୧ ବର୍ଷ କାରାଦଣ୍ଡରେ ଦଣ୍ଡିତ କରାଯାଏ । ଭାଗୀରଥୀ ସୂର୍ଯ୍ୟୋଦୟର ଉଷା କାଳରେ ୧୯୪୫ ମସିହାର ମଇ ମାସରେ ସମ୍ବଲପୁରକୁ ଫେରନ୍ତି କାରାବାସରୁ ।

ସେଦିନ ତାଙ୍କୁ ବିପୁଳ ଜନ ସମ୍ବର୍ଦ୍ଧନା ଅପେକ୍ଷା କରି ରହିଥିଲା । ତାଙ୍କୁ ଘେରି କେତେ ପ୍ରକାର ପରିକଳ୍ପନା ଚାଲିଥିଲା । ସେ ବିଧାନସଭାକୁ ପ୍ରାର୍ଥୀ ହେବେ, କେଉଁଠି ହେବେ ଇତ୍ୟାଦି । ଭାଗୀରଥୀ କିନ୍ତୁ ବିନମ୍ରତାର ସହିତ ସେ ସବୁକୁ ଉପେକ୍ଷା କରି ଫେରିଗଲେ ଭୂଦାନ ଏବଂ ବାମପନ୍ଥୀ ଆନ୍ଦୋଳନକୁ । ଏଇ କ'ଣ ସ୍ୱରାଜ୍ୟ ? ଏଥିପାଇଁ ଆମେ ତ୍ୟାଗ କରିଥିଲୁ ଜନ, ଜୀବନ, ସମ୍ପତ୍ତି ? କାହିଁ ଚାଷୀକୁ ଜମି, ମଜୁରିଆକୁ ମୂଲ, ବେକାରକୁ ଚାକିରି ? ଏକ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ପାଇଁ ପ୍ରସ୍ତୁତି କରିବାକୁ ହେବ । ଭୂଦାନ ଆନ୍ଦୋଳନ ବରିଆରେ ଚାଷୀଙ୍କୁ ଜମି ମିଳିବାର ବନ୍ଦୋବସ୍ତ ହେବ । ବାମପନ୍ଥୀ-ଗାନ୍ଧିଜି ଭାଗୀରଥୀ ସେଇ କାର୍ଯ୍ୟରେ ଲିପ୍ତ ଥିବାବେଳେ ଚାଲିଯାଇଛନ୍ତି ଚିରଦିନ ପାଇଁ ୯ ଜୁଲାଇ, ୧୯୮୦ ମସିହାରେ ଏବଂ ରଖି ଯାଇଛନ୍ତି ମହାକାଳ ବକ୍ଷରେ ଆପଣାର ଆଜିନ ସ୍ୱାକ୍ଷର ।



# ମଣିଷ ପରି ମଣିଷଟିଏ ଡାକ୍ତରଟିଏ

୧୯୪୮ ମସିହାର ଆଦ୍ୟକାଳ । ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜରେ ମେଡ଼ିସିନ୍ ବିଭାଗର ମୁଖ୍ୟ ଥାଆନ୍ତି, ପ୍ରବାଦପୁରୁଷ କର୍ଣ୍ଣେଲ ପିସାରୁଟି ।

ରୋଗୀଟି ଖୋର୍ଦ୍ଧା ଅଞ୍ଚଳର ଏକ ସ୍କୁଲଛାତ୍ର । ଚିକିତ୍ସା ପାଇଁ ଆସିଥାଏ । ପିସାରୁଟିଙ୍କର ସମସ୍ତ ଚେଷ୍ଟା ସତ୍ତ୍ୱେ ପିଲାଟିର ପରଲୋକ ହୋଇଯାଏ । ସାଙ୍ଗରେ କେବଳ ବଡ଼ଭାଇ । ବୟସ ବି ବେଶୀ ନୁହେଁ । ଶବ ପୋଡ଼ା ହେବ କିପରି, କେଉଁଠି ? ରେଭେନ୍ସା କଲେଜକୁ ଖବର ଦିଆଗଲା । ସେତେବେଳେ ରେଭେନ୍ସା କଲେଜରେ ବେଶ ଗୁଡ଼ିଏ ଶବସଂସ୍କାର ସମିତି, ରକ୍ତଦାନ ସମିତି ଥିଲା । ଶବଦାହ କରିବାକୁ ପଡ଼ିଲେ, ରକ୍ତ କାହାରି ଆବଶ୍ୟକ ହେଲେ, ଏଇ ସମିତିଗୁଡ଼ିକୁ ଖବର ଦେଲେ ଯଥେଷ୍ଟ । ମୃତ ବାଳକର ଶବକୁ କାଳିଆବୋଦା ଶ୍ମଶାନରେ ଦାହ କରିବାକୁ ଯାଇ ଆମେସବୁ ପହଞ୍ଚିଲୁ ବଡ଼ଡାକ୍ତରଖାନାର ମେଡିସିନ୍ ବିଭାଗରେ । ପିଲାଟି ଆସିଥିଲା ଖୋର୍ଦ୍ଧା ଡାକ୍ତରଖାନାରୁ । ସେଠାକା ଡାକ୍ତର ପଠାଇଥିଲେ ତାକୁ । କାରଣ ରୋଗର ନିଦାନ ହୋଇଯାଇଛି ସେଠି; କିନ୍ତୁ ଚିକିତ୍ସକପାଇଁ କିଛିନାହିଁ । ମୋର ମନେ ପଡୁଚି, କର୍ଣ୍ଣେଲ ପିସାରୁଟି କହିଥିଲେ ଏ ରୋଗୀ ବଞ୍ଚିବାର କୌଣସି ବାଟ ନ ଥିଲା । ଦୁରାରୋଧ୍ୟ ଏ ରୋଗକୁ ଚିହ୍ନଟ କରିବା ତ କଷ୍ଟକର । ଚିକିତ୍ସା ଏ ପର୍ଯ୍ୟନ୍ତ ଡାକ୍ତରୀ ବିଜ୍ଞାନରେ ହୋଇପାରିନାହିଁ । ଖୋର୍ଦ୍ଧାର ଡାକ୍ତରଙ୍କୁ ମୋର ଅଶେଷ ଶୁଭେଚ୍ଛା । କିପରି ସେ ଚିହ୍ନଟ କରିପାରିଲେ ରୋଗକୁ ସେ ଖୋର୍ଦ୍ଧା ଭଳି ଛୋଟିଆ ସହରର ଡାକ୍ତରଖାନାରେ । ରୋଗୀକୁ ରକ୍ଷା କରାଯାଇ ପାରିନାହିଁ ସତ, କିନ୍ତୁ ଏଇ ଭଳି ଏକ ଡାକ୍ତର ଏ ଦେଶର ଉଜ୍ଜ୍ୱଳ ଭବିଷ୍ୟତ ଓ ସଫଳ ଚିକିତ୍ସାର ଶୁଭ ସଂକେତ ବହନ କରନ୍ତି । ତାଙ୍କୁ ଶତ ପ୍ରଣିପାତ । ରୋଗର ନାମ ଲିକ୍ୟୁଇମିଆ ବା ରକ୍ତରେ କ୍ୟାନସର । କିଏ ଏଇ ଡାକ୍ତର ?

ସେଇ ଡାକ୍ତର ମାତ୍ର ୧୦ ଦିନ ତଳେ ଚାଲି ଯାଇଛନ୍ତି ସେଇଠିକୁ ଯେଉଁଠୁ କେହିକେବେ ଫେରି ନାହାନ୍ତି । ତାଙ୍କର ନାମ ହେଉଛି ଭାସ୍କର ଚନ୍ଦ୍ର ରଥ । ଭାସ୍କର ବାବୁଙ୍କର ଜୀବନ ଏକ ସଫଳ କାହାଣୀ । ନିଜେ ଆସିଷ୍ଟାଣ୍ଟ ସର୍ଜନ ପଦବୀରୁ ଉଠି ପହଞ୍ଚିଥିଲେ ବିଭାଗର ଶୀର୍ଷସ୍ତରରେ । ମଣିଷ ଭାବରେ ତାଙ୍କର ଖ୍ୟାତି ଯେପରି ଠିକ୍ ସେଇପରି ଖ୍ୟାତି , ଡାକ୍ତର ଭାବରେ । ଡାକ୍ତରୀ ଚିକିତ୍ସା ତାଙ୍କର ଥିଲା ପେଷା ଓ ନିଶା ଉଭୟ । ଏହା ଥିଲା ମାନବିକତାର ଏକ ଆୟୁଧ । ଓଡ଼ିଶାର ବିଭିନ୍ନ ସ୍ଥାନରେ ଚାକିରି, ବିଶେଷତଃ ପଶ୍ଚିମ ଓଡ଼ିଶାରେ । ସବୁଠି ସୁନାମ ଅର୍ଜିଛନ୍ତି । ପଇସାର ଲୋଭ ଅନେକ ଡାକ୍ତରଙ୍କୁ ଗ୍ରାସ କରିଛି, ସମାଜର ଅନ୍ୟ ବିଭାବ

ଭଳି । ଭାସ୍କର ବାବୁ ସେଥିରୁ ଆପଣାକୁ ନିଷ୍କ୍ରାନ୍ତ କରି ନେଇଛନ୍ତି । କୌଣସି ଚାପର ଶିକାର ହୋଇନାହାନ୍ତି । ମୋର ମନେପଡୁଚି ପ୍ରାୟ ୨୦ ବର୍ଷ ତଳର କଥା । କୌଣସି ଏକ ଦୁର୍ନୀତିର ତଦନ୍ତ କରୁଥିଲେ ସେ । ବିଭାଗୀୟ ମନ୍ତ୍ରୀଙ୍କୁ ମୁଁ ଜାଣିଥିଲି । ତାଙ୍କ କୋଠରୀରେ ଆଲୋଚନା ହେଉଥିଲା । ଭାସ୍କର ବାବୁଙ୍କୁ ଟିକିଏ କହିଲେ ହୁଅନ୍ତାନି ! କିଏ କହିବ ? ଲୋକ ମିଳିଲେ ନାହିଁ । ମନଟା ଗର୍ବରେ ଫାଟି ପଡ଼ିଥିଲା ସେଦିନ ।

ଭାସ୍କର ବାବୁ ମେଡିକାଲ କଲେଜକୁ କାହିଁକି ଆସିଲେ ନାହିଁ ମୋର ମନେପଡୁନି ଏସବୁ । କିନ୍ତୁ କଣ ଗୋଟାଏ କାରଣରୁ ସେ ଆସିଲେ ନାହିଁ । ଆସିଲେ ଭଲ ହୋଇଥାନ୍ତା ବୋଲି ଆଜି ବି ଭାବୁଛି ।

ଦେଖା ହୋଇଛି ଅନେକଥର ବିଭିନ୍ନ ସମୟରେ । ପୁଅ କଲମ୍ବିଆରେ ଆମର ରାଷ୍ଟ୍ରଦୂତ । ଏଇ ତ ଖବର ପହଞ୍ଚିଛି ଯେ ସେଠି ବାମପନ୍ଥୀ ଗରିଲା ମାନେ ଜେଲଭାଂଗି ୩୫୦ ରୁ ଊର୍ଦ୍ଧ୍ୱ ରାଜନୈତିକ କଏଦୀଙ୍କୁ ମୁକ୍ତକରି ଦେଇଛନ୍ତି । ପୁଅ ଚୀନଠାରୁ ସିଂହଳ ପର୍ଯ୍ୟନ୍ତ ବହୁ ସ୍ଥାନରେ କାମ କରିଛି ସାଫଲ୍ୟର ସହିତ । ଭାସ୍କର ବାବୁ ସାର୍ଥକ ହୋଇଛନ୍ତି, ପୁଅକୁ ଠିକ ମଣିଷ ଭାବରେ ଗଢ଼ି ପାରିଛନ୍ତି । ଦୁଇ ସାନଭାଇ ବିନୟ ଓ ରବି । ସେମାନେ ମଧ୍ୟ ଭାଇର ଆଦର୍ଶ ଅନୁସରଣ କରି ସଫଳ ହୋଇଛନ୍ତି ଆପଣାର କାର୍ଯ୍ୟରେ । ଜୀବନର ଅପରାହ୍ନ ନଇଁ ଆସିଛି । ଭାସ୍କର ବାବୁ ଅବସର ନେଇଛନ୍ତି । କାମ କିନ୍ତୁ ସରିନାହିଁ । ରିଟାୟାର୍ଡ ନୁହେଁ 'ରିଟ୍ରାଏର୍ଡ ଜୀବନ ତାଙ୍କର । ବହୁବିଧ କାମ । ତାରି ଭିତରେ ଆସିଚି ମୃତ୍ୟୁ । ଖବର ପାଇଲି ବନ୍ଧୁ ଚନ୍ଦ୍ରମଣି ନାୟକଙ୍କ ପାଖରୁ । ଚମକ ଲାଗିଲା । ସତରେ ସେ ଆଉ ନାହାନ୍ତି । ଆଖିରୁ ଦୁଇଟୋପା ଲୁହ ଖସି ଆସିଲା । ମନକୁ ଇମିତି ଦୁଇଟୋପା ଲୁହ ଗଡ଼ିଥିବ ବହୁ ଲୋକଙ୍କ ଆଖିରୁ ଏଇ ମୃତ୍ୟୁ ସମ୍ବାଦ ପାଇଁ । ସେଇ ତ ତାଙ୍କର ସାଫଲ୍ୟ ।



# ମୁକ୍ତି ସଂଗ୍ରାମର ଅନ୍ୟତମ ମହାରଥୀ

ଏଭଳି ଅନେକ ଲୋକ ଅଛନ୍ତି ଯେଉଁମାନେ ମୁକ୍ତି ସଂଗ୍ରାମରେ ନୈବେଦ୍ୟ ହୋଇଛନ୍ତି, କିନ୍ତୁ ବିଶେଷ କିଛି ସ୍ୱୀକୃତି ପାଇନାହାନ୍ତି ବା ପଦବୀ ମଣ୍ଡନ କରିନାହାନ୍ତି । ଠିକ୍ ସେଇପରି ଆମ ଦେଶର ପୂର୍ବତନ ଗଡ଼ଜାତ ବା ଜମିଦାରୀମାନଙ୍କର ଅନେକ ସଂଗ୍ରାମୀ ମାନଙ୍କ ପାଇଁ ସଂଗ୍ରାମ ଥିଲା ଦ୍ୱିବିଧ । ବ୍ରିଟିଶ ସରକାର ବିରୁଦ୍ଧରେ ସଂଗ୍ରାମ ଏବଂ ରାଜା ଜମିଦାର ମାନଙ୍କ ବିରୁଦ୍ଧରେ ସଂଗ୍ରାମ ସେମାନଙ୍କ ପାଇଁ ସଂଗ୍ରାମ ଥିଲା ଅଧିକ କଷ୍ଟକର । ସୂର୍ଯ୍ୟଙ୍କ ଉତ୍ତାପ ସହିବା କଷ୍ଟକର କିନ୍ତୁ ସୂର୍ଯ୍ୟଙ୍କ ଉତ୍ତାପରେ ଉତପ୍ତ ବାଲିର ଉତ୍ତାପ ସହିବା ଆହୁରି କଠିନ । ବ୍ରିଟିଶ ସରକାର ଦେଶକୁ ଲୁଣ୍ଠନ କରୁଥିଲା । ଲୁଣ୍ଠନର ପ୍ରତିବାଦ କଲେ କଠୋର ଦଣ୍ଡ ମିଳୁଥିଲା । ରାଜା ଜମିଦାର ମାନେ ଥିଲେ ବ୍ରିଟିଶ ସରକାରର ଖୁଣ୍ଟ । ସେଇମାନେ ଯେଉଁ ଅତ୍ୟାଚାର କରୁଥିଲେ ତାହା ଥିଲା ଅସହ୍ୟ । ଦେଶ ଭରି ରହିଥିଲା କୁସଂସ୍କାର ଏବଂ ଅନ୍ଧବିଶ୍ୱାସରେ । ରାଜା ଜମିଦାର ହେଉଛନ୍ତି ସ୍ୱୟଂ ଭଗବାନ ବା ତାଙ୍କର ଅବତାର । ସେହି ମାନେ ହିଁ ରାଷ୍ଟ୍ର । ଠିକ୍ ସେହିପରି ଜାତିପ୍ରଥା ହେଉଛି ଭଗବାନଙ୍କ ଅବଦାନ । କିଏ କେଉଁ ଜାତିରେ ଜନ୍ମ ତାହା ହେଉଛି ଭଗବଦ୍ ଦତ୍ତ । ଅସ୍ପୃଶ୍ୟ ମାନେ ଶସ୍ତାରେ ମୂଲ ଖଟିବେ, ବେଠିରେ ରସ ଯୋଗାଇବେ ଏବଂ ଥିଲାବାଲାମାନେ ତାକୁ ଉପଭୋଗ କରିବେ । ସେଇଯୋଗୁଁ ହିଁ ସେମାନେ ଅସ୍ପୃଶ୍ୟ । ସେମାନଙ୍କୁ ସମାନ ମଣିଷ ଭାବରେ ଗଣନା କରିବା ବଡ଼ ଲୋକମାନଙ୍କ ପାଇଁ ଅସହ୍ୟ ରାଜା ଜମିଦାର ମାନେ ନିଜର ଗାଦୀ ଓ ଲୁଣ୍ଠନକୁ ଜାହିର ରଖିବା ପାଇଁ ଏହାର ଥିଲେ ସମର୍ଥକ । ଦେଶ ଭିତରେ ଆଇଁସିଆ ଅନ୍ଧକାର ।

ଏ ସବୁ ବିରୁଦ୍ଧରେ କିନ୍ତୁ କେତେକେଳେ ଆପଣାର ପ୍ରତିବାଦ ଜଣାଇବାକୁ ଅଣ୍ଟା ଭିଡ଼ିଥିଲେ। ମହାନଦୀ-ବ୍ରାହ୍ମଣୀ-ବୈତରଣୀର ପାଣିକୁ ସାକ୍ଷୀ ରଖି ଏମାନେ ବିଦ୍ରୋହ ଘୋଷଣା କରିଥିଲେ, ବ୍ରିଟିଶ ସରକାର, ରାଜା ଜମିଦାର ମାନଙ୍କ ବିରୁଦ୍ଧରେ ଏବଂ ଅସ୍ପୃଶ୍ୟତାର ବିରୁଦ୍ଧରେ ଏ ସବୁ ସଂଗ୍ରାମ ସେମାନଙ୍କ ପାଇଁ ମିଶି ଏକାକାର ହୋଇ ଯାଇଥିଲା । ଭାରତୀୟ ମୁକ୍ତି ସେମାନଙ୍କ ପାଇଁ ଥିଲା ବ୍ରିଟିଶ ସରକାର, ରାଜା-ଜମିଦାର ଏବଂ କୁସଂସ୍କାର ତଥା ଅସ୍ପୃଶ୍ୟତାର ଅବସାନ । ମଣିଷର ସାମ୍ୟରେ ହିଁ ଭାରତର ମୁକ୍ତି । ଏଇ କଥା କହି ଯାଇଛନ୍ତି ଭଗତ ସିଂହ ଲାହୋର କେନ୍ଦ୍ର ଜେଲରେ ଫାଶି ପାଇବା ପୂର୍ବରୁ ।

ତାହାର ପ୍ରତିଧ୍ୱନି ଶୁଭିଥିଲା ସେଦିନ ଯାଜପୁର ଜିଲ୍ଲା, ଦଶରଥପୁର ପଞ୍ଚାୟତ ବାଉଜିଆ ଗ୍ରାମର ଭାଗୀରଥୀ ରାୟଙ୍କ କାନରେ । ସେ ଉଦ୍‌ବେଳିତ ହୋଇଥିଲେ ।

ଭାଗୀରଥୀ ଜନ୍ମ ହୋଇଥିଲେ ୧୯୧୧ ମସିହା ଜୁନ୍ ୬ ତାରିଖରେ । ବାପା ପ୍ରତିପତ୍ତି ସମ୍ପନ୍ନ ଜମିଦାର ମାଧବାନନ୍ଦ ରାୟ । ଭାଗୀରଥୀ କିନ୍ତୁ ବାପାଙ୍କୁ ଦେଖିନାହାନ୍ତି । ସେ ମାଆ ପେଟରେ ଥିଲା ବେଳେହିଁ ବାପାଙ୍କର ପରଲୋକ ହୋଇଯାଇଥିଲା । ବଡ଼ ଭାଇ ବୈଷ୍ଣବ ଓ ଭାଗୀରଥୀ ମାଆଙ୍କ ଯତ୍ନରେ ବଢ଼ିବାକୁ ଲାଗିଲେ । ନାମର କୌଣସି ଅର୍ଥ ନାହିଁ ବୋଲି କୁହାଯାଏ । କର୍ଣ୍ଣ ନାମଥିବା ବ୍ୟକ୍ତି ବିଲୁଆକୁ ଦେଖିଲେ ଡ଼ରେ । ଲକ୍ଷ୍ମଣ ନାମ ଥିବା ବ୍ୟକ୍ତି ବଡ଼ଭାଇ ସହିତ ମୋକଦ୍ଦମା କରେ ଟେନାଏ ଭୂଇଁ ପାଇଁ । କନ୍ତୁ ବୈଷ୍ଣବ ଓ ଭାଗୀରଥୀ ନାମ ଦୁଇଟି ସେମିତି ନ ଥିଲା ବୋଲି ପରେ ଜଣା ପଡିଲା । ପିଲାଦିନୁଁ ବୈଷ୍ଣବ ଥିଲେ ଧର୍ମ ଭାବାପନ୍ନ । ତାଙ୍କର ଧାରଣା ଥିଲା ଯେ ଭଗବଦ୍ ପ୍ରେମ ଦ୍ୱାରା ହିଁ ସମାଜର ପରିବର୍ତ୍ତନ ସମ୍ଭବ । ଭାଗୀରଥୀ କିନ୍ତୁ ଏକ ନୂଆ ମନ୍ତ୍ରର ଭଗୀରଥ ପାଲଟିଥିଲେ ପିଲାଦିନରୁ । ମଣିଷ ଭିତରେ ସାମ୍ୟ ହିଁ ମୁକ୍ତିର ନିର୍ଘୋଷ । ସତକୁ ସତ ବୈଷ୍ଣବ ଘର ସଂସାର କରିଥିଲେ ହେଁ ପରବର୍ତ୍ତୀ କାଳରେ ପିଲାପିଲିଙ୍କୁ ଭାଗୀରଥୀଙ୍କ ଜିମା ଦେଇ ବୈଷ୍ଣବ ହୋଇ ଯାଇଥିଲେ ।

ବାଲ୍ୟାବସ୍ଥାରୁ ଭାଗୀରଥୀ ଥିଲେ ଚଳଚଞ୍ଚଳ । ଦରିଦ୍ର ନାରାୟଣ ସେବା ସହିତ ଦୃଢ଼ମନା ଭାଗୀରଥୀଙ୍କୁ ଦେଖି ସମସ୍ତେ ଭାବିଥିଲେ ସେ ହିଁ 'ଶ୍ରୀବନ୍ତ ରାୟ'ଙ୍କ କୁଳ ଉଜ୍ଜ୍ୱଳ କରିବ । ସମଗ୍ର ଦେଶକୁ ଉଜ୍ଜ୍ୱଳ କରିବା ପାଇଁ ଯେ ନିବେଦିତ ତା ପାଇଁ ଗୋଟିଏ କୁଳ ଯେ କୁଳାନ ହେବ ନାହିଁ ଏକଥା କିଏ ଜାଣିଥିଲା ?

ମାଇନର ପାଶ ପରେ ପାଠ ପଢ଼ାରେ ଡୋରି ବଂଧା ହୋଇଥିଲା । ଜମିଦାର ଘରର ପିଲା । ଚାକିରି ତ କରିବ ନାହିଁ । ତେଣୁ ଇଚ୍ଛା ଥିଲେ ବି ପାଠପଢ଼ା ସେତିକିରେ ଶେଷ ହେଲା । କିନ୍ତୁ ଆରମ୍ଭ ହେଲା ଜୀବନର ବଡ଼ ଚାହାଳୀରେ ପାଠ ପଢ଼ା । ଜମିଦାରୀ ଅତ୍ୟାଚାର ଦେଖି ଦେଖି ସେ ବିଦ୍ରୋହୀ ହୋଇ ଉଠିଲେ । ଜାତିଆଣ ଭାବ ବିରୁଦ୍ଧରେ ମଧ ସେ ବିଦ୍ରୋହର ଗୈରିକ ପତାକା ଉତ୍ତୋଳିତ କରିଛନ୍ତି ।

୧୯୨୮ ମସିହା ଫେବୃଆରୀ ୩ ତାରିଖରେ ସାଇମନ କମିଶନର ଭାରତ ଆଗମନ । ସାରା ଭାରତବ୍ୟାପୀ ବିଦ୍ରୋହ ଲାଠିମାଡ଼, ଗୁଳିକାଣ୍ଡ, ସାରା ଭାରତ ରକ୍ତସ୍ନାତ । ସେତେବେଳକୁ ଭାଗୀରଥୀ ବିବାହିତ । ସ୍ତ୍ରୀଙ୍କ ନାମ ସୀତା । ବିବାହ ବନ୍ଧନ ସହିତ କିନ୍ତୁ ମୁକ୍ତିର ଡ଼ାକରା ଆଗରେ ତାହା ବନ୍ଧନ ହୋଇ ପାରିନ ଥିଲା । ଜମିଦାରମାନଙ୍କର ଭୟକୁ ଖାତିର ନ କରି ସେ ଓ ତାଙ୍କର ସହକର୍ମୀ ମାନେ କେରୁଣା, କରମ ଗାଁ ଓ ନିଜ ଗାଁ ଜମିଦାର ମାନଙ୍କର ଅମାର ଭାଙ୍ଗି ଲୋକମାନଙ୍କ ଭିତରେ ସବୁ ଧାନ ବାଣ୍ଟିଦେଲେ । ତାଙ୍କୁ ବର୍ତ୍ତମାନ ଷଡ଼ଯନ୍ତ୍ରର ସମ୍ମୁଖୀନ ହେବାକୁ ପଡ଼ିଲା । ଶହୀଦ ଭଗତ ସିଂଙ୍କ ଉଦାତ୍ତ ବାଣୀ ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା । ବର୍ଣ୍ଣ ବୈଷମ୍ୟ ଓ ଜାତିପ୍ରଥା ବିରୁଦ୍ଧରେ ମଧ ବିଦ୍ରୋହ ଆରମ୍ଭ ହେଲା । ତାଙ୍କର ପରିବାରକୁ ବାସନ୍ଦ କରିଦିଆଗଲା । ତଥାପି ସେ ଡରିଲେ ନାହିଁ । ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା । ଭାଗୀରଥୀ ସେଥିରେ ଯୋଗଦେଲେ । ସରକାରୀ ଅଫିସ ସବୁ

ପୋଡ଼ି ଦିଆଗଲା । ସରକାର ତଟସ୍ଥ । ଶ୍ରୀ ଭାଗୀରଥୀ ରାୟ ଲୁଚି ଛପି ଆନ୍ଦୋଳନ ପରିଚାଳନା କଲେ । ତାଙ୍କର ସମ୍ପତ୍ତି ବାଜ୍ୟାପ୍ତ ହୋଇ ନିଲାମ ହୋଇଗଲା ।

୧୯୪୨ ଆନ୍ଦୋଳନ ତାଙ୍କୁ ଦେଖିଥିଲା ସତ୍ୟାଗ୍ରହ ଭିତରେ । କଟକ ଓ ବ୍ରହ୍ମପୁର ଜେଲ୍‌ରେ ଦୁଇବର୍ଷରୁ ଅଧିକ କାଳ କାରାବାସରେ କଟାଇ ସେ ଫେରିଥିଲେ ଗ୍ରାମକୁ । ଜନହିତକର କାର୍ଯ୍ୟ ଛଡ଼ା ସେ ଆଉ କୌଣସି ଦଳ ବା ଗୋଷ୍ଠୀର ଅନ୍ତର୍ଭୁକ୍ତ ହୋଇ ନ ଥିଲେ । ଭାଇଙ୍କ ପରିବାରର ଦାୟିତ୍ୱ ପଡ଼ିଥିଲା ତାଙ୍କ ଉପରେ । ନିଜ ସନ୍ତାନ ଭିତରେ ଝିଅଟିଏ ।

ବୟସ ବଢ଼ି ଚାଲିଥିଲା । ସ୍ତ୍ରୀ ଛାଡ଼ି ଚାଲିଗଲେଣି । ସାଙ୍ଗ ସାଥୀ ସବୁ ହଜି ଗଲେଣି । ଝିଅ ବିବାହ ହୋଇଗଲାଣି । ସେ ଏକୁଟିଆ ହୋଇ ଯାଇଛନ୍ତି । ପରିଶେଷରେ ସେଇ ଅଶୁଭ ମୁହୂର୍ତ୍ତ ଆସି ଯାଇଛି ଏବଂ ସେ ଆଖିବୁଜି ଦେଇଛନ୍ତି ୧୯୯୮ ମସିହା ମଇ ମାସ ୨୮ ତାରିଖ ଦିନ । •



# ଜୀବନ ସାଗରର ନିଃସଙ୍ଗ ସନ୍ତରଣକାରୀ

୧୯୫୮ ମସିହା ସେପ୍ଟେମ୍ବର ୨୭, ଜଣେ ଭାରତୀୟ ତଥା ଉତ୍କଳୀୟ ସନ୍ତରଣକାରୀ ପ୍ରସିଦ୍ଧ ଇଂଲିଶ୍ ଚାନେଲ ପହଁରି ପାର ହୋଇଗଲେ ଏକାକୀ । 'ମୋ ଆଖିରେ ଖାଲି ଦେଖା ଯାଉଥିଲା ବେଳାର ନାଲି କୋଟଟି' । (ବେଲା ସମୁଦ୍ରର ବେଳା ନୁହେଁ, ବେଳା ଇରେନ୍ସ ସନ୍ତରଣ କାରୀଙ୍କର ପ୍ରିୟତମା ଏବଂ ପରେ ପତ୍ନୀ) ।

୧୯୯୭ ମସିହା ଜୁନ୍ ୧୧ ଜଣେ ପ୍ରସିଦ୍ଧ ସନ୍ତରଣକାରୀଙ୍କର ପରଲୋକ ହୋଇଯାଏ, କଲିକତାର ଆନନ୍ଦମାର୍ଗୀଙ୍କ ଦ୍ୱାରା ପ୍ରତିଷ୍ଠିତ ଡାକ୍ତରଖାନାରେ । ପାଖରେ କପର୍ଦ୍ଦକଟିଏ ନାହିଁ । ଖାଲି ରହିଛି ଦୁଇଟି ପଦକ - ପଦ୍ମଶ୍ରୀ, ପଦ୍ମଭୂଷଣ । ଚିକିତ୍ସାର ଅଭାବ । ଆଲ୍‌ଜେରିକ ରୋଗ ଗ୍ରାସ କରିଛି ସାତ ବର୍ଷ ହେଲା । ପୃଥିବୀର ସବୁ ମହାଦେଶର ପ୍ରଣାଳୀକୁ ପହଁରି ଅତିକ୍ରମ କରିଥିବା ସନ୍ତରଣକାରୀ କଲିକତାରେ ଘରୁ ବାହାରି ଗଲେ ଫେରିବା ବାଟ ପାଉନାହାନ୍ତି । ବିଧିର କି କ୍ରୁର ପରିହାସ । ବନ୍ଧୁ ବାନ୍ଧବ କେହି ଦେଖା ଦେଉ ନାହାନ୍ତି । ପଶ୍ଚିମ ବଂଗ ସରକାର ଦେଉଥିବା ମାସକୁ ହଜାର ଟଙ୍କା ସମୁଦ୍ରକୁ ଶଂଖେ ପାଣି ପରି । ଝିଅମାନେ ପ୍ରବାସରେ ସଂସାର ପାତି ସାରିଛନ୍ତି । ବେଳେବେଳେ ସାହାଯ୍ୟ ପଠାନ୍ତି । ଜୀବନ ନିଃସଙ୍ଗ । ବେଲାର ନାଲି କୋଟ୍ ମଧ ନାହିଁ । ଆଗରେ କ'ଣ ଦେଖୁଥିଲେ କହିହେବ ନାହିଁ, କାରଣ ମୃତ୍ୟୁ ପୂର୍ବରୁ ସେ କେବଳ ନିଃସଙ୍ଗ ହୋଇ ଯାଇଥିଲେ ନୁହେଁ, ଅଚେତ ମଧ ହୋଇ ଯାଇଥିଲେ । ସେଇ ଅବସ୍ଥାରେ ହିଁ ତାଙ୍କର ପରଲୋକ ହୋଇଗଲା ।

ଏକ ବିରାଟ ପାଇଓନିଅର୍‌ର ପରଲୋକ ହୋଇଗଲା ନିସ୍ତବ୍ଧରେ । ଏହା ପରେ ଶୋକବାର୍ତ୍ତା ଆସିବ, ସଭା ହେବ, ସମିତି ଗଠିତ ହେବ କିନ୍ତୁ ପାଇଓନିଅରର ଜୀବଦ୍ଦଶାରେ ସେ କି ଯନ୍ତ୍ରଣା ଏବଂ ଅବହେଳା ଭୋଗ କରିଗଲେ ତାର ହିସାବ କେହି ରଖିବେ ନାହିଁ । ଏଇ ମଣିଷଟିର ନାମ ହେଉଛି ମିହିର ସେନ୍ ।

ମୋର ଉପରକ୍ଲାସରେ ପାଠ ପଢୁଥିଲେ ମିହିର । ତାଙ୍କ ଭିତରେ ଇମିତି କୌଣସି ପ୍ରତିଭା ମୁଁ ଦେଖିଲା ପରି ମନେ ହେଉନାହିଁ । ବିଜ୍ଞାନ ଛାତ୍ର ଥିଲେ, ସାଧାରଣ ଛାତ୍ର । ବିଜ୍ଞାନରେ ସ୍ନାତକ ଡ୍ରିଗୀ ପାଇଲା ପରେ ଆଇନ ପଢ଼ିଲେ । ଆଇନ ପାଶ କରି ହଠାତ୍ ଚାଲି ଗଲେ ଇଂଲଣ୍ଡ । ଶୁଣାଗଲା ସେ ଯାଇଛନ୍ତି ବାରିଷ୍ଟର ହେବା ପାଇଁ । ହୋଇ ମଧ ଫେରିଲେ । କିନ୍ତୁ ସେତେବେଳକୁ ତାଙ୍କର ଖ୍ୟାତି ହୋଇଯାଇଥିଲା ଆନ୍ତର୍ଜାତିକ । ବାରିଷ୍ଟର ଭାବରେ ନୁହେଁ ଇଂଲିଶ ଚାନେଲକୁ ପହଁରି ଯିବାରେ ସେ ପ୍ରଥମ ଭାରତୀୟ ଏବଂ ବୋଧହୁଏ ପ୍ରଥମ ଏସୀୟ ।

ତାଙ୍କୁ କିନ୍ତୁ କଲେଜରେ ସମସ୍ତେ ଜାଣୁଥିଲେ ଦୁଃସାହସୀ ଯୁବକ ଭାବରେ । ରେଭେନ୍ସା କଲେଜ ପୋର୍ଟିକୋ ଉପରେ ଚଢ଼ି କିଏ ତଳକୁ ଡେଇଁ ପାରିବ ଦେଖି ? ମିହିର ସେନ୍ ଆଗୁଆ ମାନଙ୍କ ମଧ୍ୟରେ ଅନ୍ୟତମ । ଦୁଃସାହସ ବସା ବାନ୍ଧିଥିଲା ପିଲାଦିନରୁ ତାଙ୍କ ଭିତରେ । ଦୁଃସାହସିକ କାର୍ଯ୍ୟର କ୍ରମାନ୍ୱୟତା ତାଙ୍କୁ ପହଞ୍ଚାଇଥିଲା ଖ୍ୟାତି ଏବଂ ସାଫଲ୍ୟର ଶୀର୍ଷରେ । ଦୁଃସାହସକୁ ଜୀବନର ପାଥେୟ କରି ସାଫଲ୍ୟର ଅନ୍ୟତମ ହିରୋ ବିଜୁ ପଟ୍ଟନାୟକ ଚାଲି ଯାଇଛନ୍ତି ଏଇ ମାସକ ତଳେ । ଏବଂ ଏହା ମଧ୍ୟ ସତ୍ୟ ଯେ ଇଂଲିଶ ଚାନେଲ ପହଁରିବା ପାଇଁ ଯେଉଁମାନେ ସାହାଯ୍ୟ ଦେଇଥିଲେ ସେମାନଙ୍କ ଭିତରେ ବିଜୁ ପଟ୍ଟନାୟକ ଅନ୍ୟତମ । ମୋର ମନେ ପଡୁଛି, କିଛି ବର୍ଷ ତଳେ ପ୍ରସିଦ୍ଧ ଇଂରାଜୀ ଖବରକାଗଜ 'ଷ୍ଟେଟସ୍ ମ୍ୟାନ୍'ରେ ମିହିର ସେନଙ୍କର ପରାକାଷ୍ଠା ଏବଂ ଦୁର୍ଦ୍ଦଶା ଉପରେ ଏକ ଲେଖା ପ୍ରକାଶ ପାଇଥିଲା । ଉକ୍ତ ଖବରକାଗଜର କଟିଙ୍ଗ କରି ମୁଁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ନିବେଦନ କରିଥିଲି ମିହିର ସେନଙ୍କ ସାହାଯ୍ୟ ପାଇଁ । ସେ ମଧ୍ୟ ଆଦେଶ ଦେଇଛନ୍ତି ବୋଲି ମୋତେ କହିଥିବାର ମନେ ପଡୁଛି କିନ୍ତୁ ସରକାରୀ ଅମଲାତନ୍ତ୍ରର ଅର୍ଗଳୀ ଭେଦ କରି ସେ ସାହାଯ୍ୟ ମିହିରସେନ୍ଙ୍କ ପାଖରେ ପହଞ୍ଚି ପାରିଲା ନାହିଁ । ଯଦି ସେ ପୁର ବୋଲି କୌଣସି ଜିନିଷ ଥାଏ (ମୋ ବିଶ୍ୱାସରେ ନାହିଁ) ତାହେଲେ ସେଇଠି ବର୍ତ୍ତମାନ ମିହିରସେନ କହିଥିବେ ବିଜୁ ପଟ୍ଟନାୟକଙ୍କୁ ତାଙ୍କର ଦୁର୍ଦ୍ଦଶାର କଥା ଆଉ ବୋଧହୁଏ ବିଜୁ ପଟ୍ଟନାୟକ ତାଙ୍କର ସ୍ୱଭାବ ସୁଲଭ ଭଂଗୀରେ ଗର୍ଜି କରି କହିଥିବେ ଏପରି ଅଫିସରମାନଙ୍କୁ ବାଡ଼େଇବା ପାଇଁ । କିନ୍ତୁ ଦେଶ ଚାଲିଥିବ ସେମିତି । ମିହିର ସେନ୍‌ରୁ କାର୍ତ୍ତିକ ଘୋଷ । ରାଧାମଣୀରୁ ଦାଶରଥି ।

ମିହିର ସେନ ବଂଗାଳୀ । ତାଙ୍କର ପୂର୍ବପୁରୁଷ ଆସିଥିଲେ ବଂଗଳାରୁ । ମାହାଙ୍ଗାରେ ବସତି ସ୍ଥାପନ କରିଥିଲେ । ମିହିର ସେନଙ୍କ ବାପା ଥିଲେ ଡାକ୍ତର । କିନ୍ତୁ ଜମିଦାରୀ ବୋଧହୁଏ କିଛି କିଛି ଥିଲା । ମୁଁ ଠିକ୍ କହିପାରୁନାହିଁ , ମିହିର ଜନ୍ମ ହୁଅନ୍ତି ୧୯୩୦ ମସିହା, ୧୬ ନଭେମ୍ବରରେ । ପାଠ ପଢ଼ନ୍ତି ରେଭେନ୍ସା କଲେଜିଏଟ୍, ରେଭେନ୍ସା କଲେଜ ଏବଂ ମଧୁସୂଦନ ଆଇନ କଲେଜରେ । ପିଲାଦିନୁଁ ପହଁରା ତାଙ୍କର ସଉକ ଥିଲା । କିନ୍ତୁ ସନ୍ତରଣରେ ଖୁବ ବେଶୀ ନାମ କମାଇବା ମୋର ହେତୁ ହେଉନାହିଁ ।

ମିହିର ସେନ ଇଂଲିଶ ଚାନେଲ ଥରକରେ ଟପି ପାରିନାହାନ୍ତି । ଇଂଲିଶ ଚାନେଲ ପାରିହେବା ପାଇଁ ପ୍ରତିଯୋଗିତା ବେଶ୍ କଷ୍ଟସାଧ୍ୟ ଏବଂ ବ୍ୟୟସାପେକ୍ଷ । ମିହିର ତ ପହଞ୍ଚିଥିଲେ ବାରିଷ୍ଟରୀ ପଢ଼ିବା ପାଇଁ ମାତ୍ର ସାତଦିନର ଖୋରାକ ହାତରେ ଧରି । ବିଭିନ୍ନ ପ୍ରକାରର ଉଦ୍ୟମ ଓ ଚାକିରି କରିବାକୁ ପଡ଼ିଥିଲା ତାଙ୍କୁ, ଇଂଲଣ୍ଡରେ ରହିବା ପାଇଁ । କାକା ଶ୍ୟାମା ଚରଣ ସେନ୍ ତାଙ୍କର ଥିଲେ ପୃଷ୍ଠପୋଷକ ଏବଂ ଉତ୍ସାହଦାତା । ବିଜୁ ପଟ୍ଟନାୟକ ଓ ଓଡ଼ିଶାର କିଛି ବ୍ୟକ୍ତି, ଅନୁଷ୍ଠାନ ତାଙ୍କୁ ଦେଇଥିଲେ ସାହାଯ୍ୟ । ଏକନିଷ୍ଠ ଉଦ୍ୟମ ଏବଂ ସାହସ ହେଉଛି ସାଫଲ୍ୟ । ମିହିର ସେନ୍ ତାହା ହିଁ ପ୍ରମାଣିତ କରିଦେଲେ ।

ଚପଳମତି ଇଂଲିଶ ଚାନେଲ୍ ସହଜରେ ଧରା ଦିଏନା । ଏପରି ଅନେକ ବ୍ୟକ୍ତି ଅଛନ୍ତି ଯେଉଁମାନେ ସାରା ଜୀବନ ଏଇ କୁମାରୀକୁ ଜୟ କରିବା ପାଇଁ ବିତାଇ ଦେଇଛନ୍ତି । ବିବାହ

କରି ନାହାନ୍ତି । ତଥାପି ଏଇ ଇଂଲିଶ ଚାନେଲ କୁମାରୀ ତାଙ୍କୁ ଧରା ଦେଇନାହିଁ । ରେଭେନ୍ସା କଲେଜରେ ତାଙ୍କୁ ଦିଆଯାଇଥିବା ସମ୍ବର୍ଦ୍ଧନା ସଭାରେ ସେ କଥା ସ୍ମରଣ କରନ୍ତି ମିହିର ସେନ୍ ।

ବୁକ୍ ଅଫ୍ ଗିନ୍‌ନେସ ତାଙ୍କୁ "ପୃଥିବୀର ସର୍ବଶ୍ରେଷ୍ଠ ଦୀର୍ଘ ସନ୍ତରଣକାରୀ" ବୋଲି ଅଭିହିତ କରିଛି । ବହୁ ଭାରତୀୟଙ୍କ ପାଇଁ ସେ ହୋଇଛନ୍ତି ପ୍ରେରଣାର ଉତ୍ସ । ୧୯୯୪ ମସିହାର ଭାରତୀୟ କୁତ୍ରାଲିଶ୍ୱରନ୍ ଯେତେବେଳେ ତାଙ୍କୁ ଅନୁସରଣ କରି ତାଙ୍କର ରେକର୍ଡକୁ ଟପିଗଲା ସେତେବେଳକୁ ମିହିର ସେନ୍ ଏତେ ଅସୁସ୍ଥ ହୋଇ ପଡିଥିଲେ ଯେ ଏ ସଂବାଦ କୌଣସି ପ୍ରତିକ୍ରିୟା ତାଙ୍କ ଭିତରେ ସୃଷ୍ଟି କରିପାରିଲା ନାହିଁ । ସ୍ମରଣଶକ୍ତି ହଜି ଯାଇଥିଲା ତାଙ୍କର ।

୧୯୫୮ରୁ ୧୯୬୨ । ମିହିର ସେନ୍‌ଙ୍କ ନୂତନ ପ୍ରସ୍ତୁତି ପର୍ବ । ୧୯୬୬ ଏପ୍ରିଲ ମାସରେ ସେ ଚାଲିଲେ ପ୍ରସିଦ୍ଧ ପକ୍ ପ୍ରଣାଳୀ ପହଁରିବା ପାଇଁ । ବିଷାକ୍ତ ସାପ ଏବଂ ସାର୍କରେ ପରିପୂର୍ଣ୍ଣ ଏହି ଭୟାନକ ପ୍ରଣାଳୀକୁ ତାଙ୍କ ପୂର୍ବରୁ କେହି ପହଁରିବା ପାଇଁ ସାହସ କରିନ ଥିଲେ । କିନ୍ତୁ ୨୫ ଘଣ୍ଟା ପହଁରି ମିହିର ପକ୍ ପ୍ରଣାଳୀ ପାର ହୋଇଗଲେ ଏବଂ ରଖିଗଲେ ଆପଣାର ନାମକୁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରି । ସେଇ ବର୍ଷ ଅଗଷ୍ଟ ମାସରେ ସେ ଟପିଗଲେ ସବୁଠାରୁ ଭୟାନକ ଜିବ୍ରାଲଟର ପ୍ରଣାଳୀକୁ । (ସ୍ପେନର ଟାରିଫା ଠାରୁ ଆଫ୍ରିକାର ସିଉଟା ପର୍ଯ୍ୟନ୍ତ) ତାପରେ ସେଇବର୍ଷ ଡାର୍ଡନେଲେସ୍ ପ୍ରଣାଳୀ ପହଁରି ଗଲେ (ଇଉରୋପର ଗାଲିପୋଲିସ୍ ରୁ ଏସିଆର ସେଡୁଲବାହିର) ପରିଶେଷରେ ଆସିଲା ସବୁଠାରୁ ବଡ଼ ଅଗ୍ନି ପରୀକ୍ଷା । ଏହାକୁ ବସ୍ ଫୋରସ ମହାଯୁଦ୍ଧ ବୋଲି ଆଖ୍ୟା ଦେଇଥିଲେ ସନ୍ତରଣବିଦ୍‌ମାନେ । ରୁଷିଆର କୃଷ୍ଣ ସାଗର ଠାରୁ ଇସ୍ତାନବୁଲର ଗୋଲଡେନ୍ ହର୍ଣ୍ଣ ପର୍ଯ୍ୟନ୍ତ ସାଗର ଖଣ୍ଡକୁ ସେ ଟପିଗଲେ । ବରଫର ହିମଶୀତଳ ଜଳ ତାଙ୍କୁ ଭୀତ କରି ପାରିଲା ନାହିଁ । ସେଇବର୍ଷ ଅକ୍ଟୋବର ମାସରେ ସେ ଭୟାନକ କୁମ୍ଭୀର ମାନଙ୍କର ବାସସ୍ଥଳୀ ପାନାମା କେନାଲକୁ ମାତ୍ର ୩୪ ଘଣ୍ଟା ପନ୍ଦର ମିନିଟ୍‌ରେ ଟପି ପାର ହୋଇଗଲେ । ଏହି ପାନାମା କେନାଲକୁ ମାତ୍ର ତିନିଜଣ ସନ୍ତରରଣକାରୀ ଏହା ପୂର୍ବରୁ ଆଠ ସପ୍ତାହରେ ଟପିଥିଲେ । ନିଜ ଦେଶ ବାକି ଥିଲା ତାଙ୍କ ପାଇଁ । ହିମ ଶୀତଳ ଜଳ, କୁମ୍ଭୀର, ସାପ, ସାମୁଦ୍ରିକ ଝଡ଼, ସମୁଦ୍ରସ୍ରୋତ ତାଙ୍କୁ ଭୀତ କରି ପାରିଲା ନାହିଁ । ବର୍ତ୍ତମାନ ଶ୍ରୀଲଙ୍କାରୁ ଭାରତ ବର୍ଷ, ଗିରିମେଖଳା ପରିପୂର୍ଣ୍ଣ ଏହି ସାଗରକୁ ପହଁରି ଟପିବା ଏକ ରୋମାଞ୍ଚକର କାହାଣୀ । ମିହିର ସେନ୍ କିନ୍ତୁ ତାଙ୍କୁ ମଧ ଟପି ପାର ହୋଇଗଲେ । ଗୋଟିଏ ବର୍ଷରେ ସାତ ମହାସାଗର, ପଞ୍ଚମହାଦେଶର ପାଞ୍ଚଟି ପ୍ରଣାଳୀକୁ ଟପି ସେ ଯେଉଁ ରେକର୍ଡ ପ୍ରତିଷ୍ଠା କରିଗଲେ ତାହା ୨୮ ବର୍ଷ ପର୍ଯ୍ୟନ୍ତ ଭଗ୍ନ ନ ହୋଇ ରହିଗଲା ସେଇପରି । ତା ପରେ ୧୯୯୪ ମସିହାରେ ଏଇ ରେକର୍ଡ ଭାଙ୍ଗିଲେ ଜଣେ ତରୁଣ । କିନ୍ତୁ ତାହା ଜାଣିବାକୁ ମିହିର ସେନ୍‌ଙ୍କ ସ୍ମରଣ ଶକ୍ତି ନ ଥିଲା ।

ମିହିର ସେନ ସ୍ୱାଭାବିକ କାରଣରୁ ଆଉ ଭଲ ଓକିଲ ହୋଇ ପାରିଲେ ନାହିଁ । ଏକ୍ସପ୍ଲୋରର କ୍ଲବ ଗଠନ କରିବା, ଭାରତ ଉପକୂଳରୁ ଆଣ୍ଡାମାନକୁ ନୌଯାତ୍ରା ବଙ୍ଗୋପସାଗରର ଉପକୂଳ ଦେଇ ସିଂହଳକୁ ନୌଯାତ୍ରା କରିବାରେ ସମୟ ବିତିଗଲା । ସେ

ହସ୍ତତନ୍ତରେ ପ୍ରସ୍ତୁତ ସାମଗ୍ରୀ ରପ୍ତାନି କରି ଜୀବିକା ନର୍ବାହ କଲେ ଏବଂ ସେଥିରେ ମଧ୍ୟ ପ୍ରତିଷ୍ଠା ଲାଭ କଲେ । ମାଣିଆବନ୍ଧ ଶାଢ଼ୀ, ସ୍କଟ ନେବା ପାଇଁ ସେ ଆସନ୍ତି ଏବଂ ଓଡ଼ିଶା ହାଣ୍ଡଲୁମ୍ ଡେଭଲପମେଣ୍ଟ କର୍ପୋରେସନ ବୋର୍ଡ ମେମ୍ବର ଭାବରେ ତାଙ୍କ ସହିତ ଦେଖା ହୋଇଛି, ଆଲୋଚନା ହୋଇଛି ଅନେକଥର । କିନ୍ତୁ ଲକ୍ଷ୍ୟ କରିଚି ସେ ଅଜାଣତରେ ଆସି ଚାଲିଯିବା ପାଇଁ ପସନ୍ଦ କରୁଥିଲେ । କାହାକୁ ଜଣାନ୍ତି ନାହିଁ । ରପ୍ତାନି ପାଇଁ ଆୱାର୍ଡ ମଧ୍ୟ ପାଇଛନ୍ତି ।

କିନ୍ତୁ ହଠାତ୍ ସେ ଆଲଜେରିକ ରୋଗରେ ଆକ୍ରାନ୍ତ ହୁଅନ୍ତି । ଏଇପରି ରୋଗରେ ଆକ୍ରାନ୍ତ ହୋଇଥିଲେ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ । ଓଡ଼ିଶାର ପ୍ରସିଦ୍ଧ ଡାକ୍ତର ରଘୁନାଥ ସାହୁ ବର୍ତ୍ତମାନ ସେଇ ରୋଗରେ ପୀଡ଼ିତ । ତାଙ୍କର ସ୍ମରଣ ଶକ୍ତି ହଜିଗଲା । ବନ୍ଧୁବାନ୍ଧବ ସଂପର୍କୀୟ କେହି ତାଙ୍କୁ ପଚାରିଲେ ନାହିଁ । ସଂଖୋଜିବାକୁ ମଧ୍ୟ ଗଲେ ନାହିଁ । ସେ ବନ୍ଧୁହୀନ ହୋଇଗଲେ ଏବଂ ଏଇପରି ଏକ କରୁଣ ପରିସ୍ଥିତିରେ ତାଙ୍କର ପରଲୋକ ହୋଇଗଲା । ଏକ ଦୀର୍ଘ ସଂଗ୍ରାମର ଅବସାନ ହୋଇଗଲା । ତାଙ୍କର ଜୀବନ ଓ କାର୍ଯ୍ୟ ବହୁ ଯୁବକଙ୍କୁ ଅନୁପ୍ରାଣିତ କରିଛି ।



# ଇତିହାସର ବିସ୍ମୃତ ଚରିତ୍ର - ମୋତିଲାଲ

**ଡା**କ୍ତର ମୋତିଲାଲ ତ୍ରିପାଠୀ ଆଉ ନାହାନ୍ତି । ୮୨ ବର୍ଷ ବୟସରେ ସର୍ବଶେଷ କର୍ମପୀଠ ଝାରସୁଗୁଡ଼ାରେ ତାଙ୍କର ପରଲୋକ ହୋଇଯାଇଛି । ୧୯୫୨ ମସିହାରେ ସରକାରୀ ଚାକିରି ଛାଡ଼ି ଜୀବନର ଅବଶିଷ୍ଟ ସମୟକୁ ସେ ରୋଗୀ ସେବାରେ ଏବଂ ଜନମଙ୍ଗଳ କାର୍ଯ୍ୟରେ ବିନିଯୋଗ କରିବାକୁ ସ୍ଥିର କରିବା ପରେ ସେ ସେଇ ଅଞ୍ଚଳ ଭିତରେ ଆପଣାର କାର୍ଯ୍ୟକୁ ସୀମିତ କରି ଦେଇଥିଲେ । ଆପଣାର ଜନପ୍ରିୟତା ଫଳରେ ସେ ଝାରସୁଗୁଡ଼ା ମ୍ୟୁନିସିପାଲଟିର ଚେୟାରମ୍ୟାନ୍ କେବଳ ହୋଇନଥିଲେ, ଝାରସୁଗୁଡ଼ାର ସବୁ ଦଳ ,ମତ, ଗୋଷ୍ଠୀ ଓ ଜିବୀକାର ନିର୍ଭରଶୀଳ ନାୟକ ହୋଇଗଲେ ।

ଠିକ୍ ଯେପରି ହୋଇଥିଲେ ସେଦିନ ପ୍ରାକ୍ତନ କଟକ ମେଡିକାଲ ସ୍କୁଲର ଐତିହାସିକ ଧର୍ମଘଟ ସମୟରେ । ମୋର ଯେତିକି ମନେ ପଡୁଚି ଏହି ଛାତ୍ର ଧର୍ମଘଟର ନେତା ଥିଲେ ତିନିଜଣ । ଡାକ୍ତର ରବି ଘୋଷ, ଡାକ୍ତର ମୋତିଲାଲ ତ୍ରିପାଠୀ ଏବଂ ଡାକ୍ତର ନବକିଶୋର ପଟ୍ଟନାୟକ । ରବି ଘୋଷ ଗଲାକେତେ ବର୍ଷ ହେଲା ବାହୁଡ଼ି ସାରିଛନ୍ତି । ବର୍ତ୍ତମାନ ମୋତିଲାଲଙ୍କ ପାଳି । ଡାକ୍ତର ନବକିଶୋର ପଟ୍ଟନାୟକ ଚାକିରିରୁ ଅବସର ଗ୍ରହଣ କରି ଆପଣା ଗ୍ରାମ ଆଠଗଡ଼ ଖୁଣ୍ଟକଟାରେ ସାନ୍ଧ୍ୟ ଜୀବନ ଯାପନ କରୁଛନ୍ତି । ସେ ବର୍ତ୍ତମାନ ଶ୍ରୀଅରବିନ୍ଦଙ୍କ ଭକ୍ତ କିନ୍ତୁ ମାନସିକ ବିସ୍ମରଣରେ ଆକ୍ରାନ୍ତ ।

ଆନ୍ଦୋଳନର ଉଦ୍‌ବେଳନ ପ୍ରଶମିତ ହେଲା ପରେ ବିପ୍ଳବୀମାନେ ଫେରି ଯାଆନ୍ତି ଅନେକ କ୍ଷେତ୍ରରେ ସ୍ୱାଭାବିକ ଜୀବନକୁ । ଅଲଜେରିଆ ମୁକ୍ତି ଆନ୍ଦୋଳନର ମହାରଥୀ ଆବାସ ଫରାସୀ ସାମ୍ରାଜ୍ୟବାଦ କବଳରୁ ଆପଣା ଦେଶକୁ ମୁକ୍ତ କରିବା ପରେ ଫେରିଗଲେ ଏକ ଔଷଧ ଦୋକାନ ଖୋଲି ଜୀବନର ଅବଶିଷ୍ଟ ଦିନଗୁଡ଼ିକୁ କଟାଇବା ପାଇଁ । ଗାରିବାଲ୍ଡି ଇଟାଲୀର ମୁକ୍ତି ପରେ ସବୁ ଶାସନ ଗାଦିର ପ୍ରଲୋଭନକୁ ପ୍ରତ୍ୟାଖ୍ୟାନ କରି ଫେରିଗଲେ ସମୁଦ୍ର କୂଳକୁ ଯେଉଁଠି ସେ ଦେଖିବେ ସେଇ ନୀଳ ସମୁଦ୍ରକୁ ନିଶ୍ଚିନ୍ତ ଭାବରେ ।

ଠିକ୍ ସେଇପରି ଘଟିଥିଲା ମୋତିଲାଲଙ୍କ ଜୀବନରେ । ଡାକ୍ତରୀ ସ୍କୁଲର ନେତୃତ୍ୱ, ୧୯୪୨ର ଐତିହାସିକ ଭାରତ ଛାଡ଼ ଆନ୍ଦୋଳନରେ ଅଂଶ ଗ୍ରହଣ ଏବଂ କାରାବାସ ପରେ ସେ ଫେରିଥିଲେ ପୁଣି ଡାକ୍ତରୀ ପାଠ ପଢ଼ିବା ପାଇଁ । ୧୯୪୭ରେ ଭାରତ ସ୍ୱାଧୀନ ହେଲା । ଏଲ୍.ଏମ୍.ପି. ମୋତିଲାଲ ଏମ.ବି.ବି.ଏସ୍. ହେଲେ କଟକ ମେଡିକାଲ କଲେଜରୁ । ସେ ସରକାରୀ ଚାକିରୀଟିଏ ଗ୍ରହଣ କଲେ । କଟକ ମେଡିକାଲ କଲେଜର ଡାକ୍ତରଖାନା, ରାମପୁର ଷ୍ଟେଟ୍‌ର ରିଫ୍ୟୁଜି କ୍ୟାମ୍ପ ଏବଂ ପରିଶେଷରେ ଝାରସୁଗୁଡ଼ାରେ ଚାକିରି । ମୋତିଲାଲଙ୍କ ଜୀବନରେ ନୂତନ ଅଧ୍ୟାୟ ସୃଷ୍ଟି କଲା ଝାରସୁଗୁଡ଼ା ।

ମୋତିଲାଲ ଏଇ ଝାରସୁଗୁଡ଼ାକୁ ନିଜର କର୍ମପୀଠ ଏବଂ ଆବାସସ୍ଥଳୀ ଭାବରେ ବରିନେଲେ । ସରକାରୀ ଚାକିରିରୁ ଇସ୍ତଫା ଦେଇ ସେ ନିଜର କ୍ଲିନିକ୍ ଖୋଲିଲେ ଏବଂ ଜନସେବାରେ ଆପଣାକୁ ବିନିଯୋଗ କଲେ । କିନ୍ତୁ ମୋର ଯେତେଦୂର ମନେ ପଡୁଛି ବିଧାନ ସଭା, ଲୋକସଭାର ସଭ୍ୟ ହେବା ପାଇଁ ସେ ମନ ବଳାଇ ନାହାନ୍ତି ।

କାରାବାସ କାଳରେ ତାଙ୍କର ବନ୍ଧୁ ସୃଷ୍ଟି ହୁଏ ବ୍ରହ୍ମପୁର ଜେଲରେ ବହୁ ପ୍ରତିଷ୍ଠିତ ବ୍ୟକ୍ତି ମାନଙ୍କ ସହିତ ସହଯୋଦ୍ଧା ଭାବରେ ମେଡିକାଲ ସ୍କୁଲ ଧର୍ମଘଟ ତ ତାଙ୍କୁ ସହଜରେ ଜନପ୍ରିୟତା ଶିଖରକୁ ନେଇ ଯାଇଥିଲା । ଓଡ଼ିଶାରେ କାହିଁକି ସାରା ଭାରତରେ ଏଇଭଳି ଧର୍ମଘଟ ବିରଳ । ଓଡ଼ିଶାର ବିଭିନ୍ନ ଅଞ୍ଚଳର ସ୍କୁଲଛାତ୍ରମାନେ ଆସି ଶହ ଶହ ସଂଖ୍ୟାରେ ସତ୍ୟାଗ୍ରହରେ ଯୋଗ ଦେଇଥିଲେ ଏବଂ କାରାବରଣ କରିଥିଲେ । ନିଖିଳଭାରତ ଛାତ୍ର ସଂଘର ତତ୍‌କାଳୀନ ସଂପାଦକ, ପ୍ରସିଦ୍ଧ ବାଗ୍ମୀ ୰ ବିଶ୍ୱନାଥ ମୁଖାର୍ଜୀ ଆସି ବନ୍ଦୀ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଇଥିଲେ କଟକ ଜେଲର ୧୫ ନମ୍ବର ୱାର୍ଡ ସମ୍ମୁଖ ରାସ୍ତା ଆରପଟରେ ଥିବା ଭେତା ଚୌଧୁରୀଙ୍କର ଦ୍ୱିତଳ ପ୍ରାସାଦ ଉପରୁ । ସେତେବେଳେ ଦେଶରେ ବ୍ରିଟିଶ ରାଜୁତି । କିନ୍ତୁ ଓଡ଼ିଶାରେ ୰ ବିଶ୍ୱନାଥ ଦାସଙ୍କର ମନ୍ତ୍ରିମଣ୍ଡଳ, ଓଡ଼ିଶାରେ ପ୍ରଥମ କଂଗ୍ରେସ ଶାସନ ।

ମୋତିଲାଲ ଗଡ଼ଜାତ ମୁକ୍ତି ଆନ୍ଦୋଳନ ସହିତ ଗଭୀର ଭାବରେ ସଂଶ୍ଲିଷ୍ଟ ଥିଲେ ଏବଂ ଏହି ଆନ୍ଦୋଳନର ମହାରଥୀମାନଙ୍କ ସହିତ ତାଙ୍କର ଘନିଷ୍ଠ ଆତ୍ମୀୟତା ଥିଲା ।

ମୋତିଲାଲ କିନ୍ତୁ ସେ ସବୁ ଆତ୍ମୀୟତାର ଆଉ କୌଣସି ସୁଯୋଗ ନେଇ ନାହାନ୍ତି ।

ରୋଗୀ ଚିକିତ୍ସା ସହିତ ଜନସେବା ତାଙ୍କୁ ଏକ ପିତୃପ୍ରତିମ ମଣିଷରେ ପରିଣତ କରିଥିଲା, ଏବଂ ସବୁ ମତ ଦଳର ଅନୁରୋଧ କ୍ରମେ ସେ କେବଳ ଝାରସୁଗୁଡ଼ା ମ୍ୟୁନିସିପାଲିଟି ଚେୟାରମ୍ୟାନ ହେବାକୁ ରାଜି ହୋଇଥିଲେ ।

୧୯୧୭ ମସିହାରେ ଉପାନ୍ତ ଅଂଚଳ ଚକ୍ରଧରପୁରରେ ତାଙ୍କର ଜନ୍ମ । ଉପାନ୍ତ ଅଂଚଳରେ ଜନ୍ମ ହେତୁ ତାଙ୍କର ଓଡ଼ିଆ ପ୍ରୀତି ଥିଲା ପ୍ରବଳ । ଏହା ସତ୍ତ୍ୱେ ସର୍ବଭାରତୀୟତା ତାଙ୍କର ଥିଲା ବିଶେଷତ୍ୱ । ଝାରସୁଗୁଡ଼ା ଓଡ଼ିଶାର ଏକ ମେଟ୍ରୋପଲିସ ସହର । ଭାରତର ବହୁ ଜାତି ବହୁ ଭାଷାର ଲୋକେ ଏହି ସହରର ବାସିନ୍ଦା । ମୋତିଲାଲ ସେ ସମସ୍ତଙ୍କୁ ଏକାଠି କରିବାକୁ ସମର୍ଥ ହୋଇଥିଲେ । ତାଙ୍କର ମାନବିକ ମୂଲ୍ୟବୋଧ ଆକର୍ଷଣ କରିଥିଲା ସମସ୍ତଙ୍କୁ । ଷଡ଼େଇକଳା ଖରସୁଆଁର ଓଡ଼ିଶାରେ ମିଶ୍ରଣ ପାଇଁ ତାଙ୍କର ଗଭୀର ପ୍ରଚେଷ୍ଟା ଆଜି ବି ଉହିଁକି ରହିଛି ।

ସେଇ ଯୋଗୁଁ ରାଉରକେଲାରେ ୧୯୬୪ର ସାମ୍ପ୍ରଦାୟିକ ଦଂଗା ଓ ହତ୍ୟା ତାଙ୍କୁ ଗଭୀର ବ୍ୟଥିତ କରିଥିଲା । ସାମ୍ପ୍ରଦାୟିକ ଦ୍ୱେଷ ଓ ବିଷ ବିରୁଦ୍ଧରେ ତାଙ୍କର ଉଦ୍ୟମ, ଦଂଗା ପରେ ଥଇଥାନ ବ୍ୟବସ୍ଥା କରିବାରେ ତାଙ୍କର ଅବଦାନ ପ୍ରଭୂତ ।

ବୟସ ଅତିକ୍ରାନ୍ତ ହୋଇଥିଲା । ସେ କ୍ରମଶଃ ଅସୁସ୍ଥ ଏବଂ ଅଚଳ ହୋଇପଡ଼ିଲେ । ପରିଶେଷରେ ୧୯୯୮ ମସିହା ଜାନୁଆରୀ ୨୧ ତାରିଖରେ ସେଇ ଅଶୁଭ ମୁହୂର୍ତ୍ତ ଆସି ଉପସ୍ଥିତ ହେଲା । ମୋତିଲାଲ ଚାଲିଗଲେ ସେଇଠିକୁ, ଯେଉଁଠୁ ଆଉ କେହି ଫେରିନାହିଁ ।

ମୋତିଲାଲ ଇତିହାସର ଏକ ବିସ୍ମୃତ ଚରିତ୍ର । କିନ୍ତୁ ଇତିହାସର ସେ ସେଇ ମାଇଲଖୁଣ୍ଟ ଯାହାକୁ ଅତିକ୍ରମି ମଣିଷ ଚାଲିଛି ଆଗକୁ ମାନବିକତାରେ ଉଦ୍‌ବୁଦ୍ଧ ହୋଇ ।



# ମାଫିଆର ଶିକାର ମୋହନ

ମୋହନଚନ୍ଦ୍ର ମହାପାତ୍ରଙ୍କୁ ମୁଁ ଜାଣିଥିଲି ଛାତ୍ରାବସ୍ଥାରୁ । ତାଙ୍କର ସାନ ଭାଇ ୧୯୬୮ ମସିହାରେ ରିଜିଓନାଲ ଇଞ୍ଜିନିୟରିଂ କଲେଜରେ, ରାଉରକେଲାର ଛାତ୍ର ଥିଲାବେଳେ ଆତ୍ମହତ୍ୟା କରିଥିଲେ । ସେଇଯୋଗୁଁ କିଛି ଲୋକଙ୍କୁ ସୁବିଧା ମିଳିଗଲା ପ୍ରଚାର ପାଇଁ । ତାଙ୍କର ପରିବାରରେ କୁଆଡ଼େ ଆତ୍ମହତ୍ୟା ପ୍ରବୃତ୍ତି ଥିଲା । ଏ ସବୁ ଖୁବ୍ ଜୋର୍‌ରେ ଚାଲିଲା ତାଙ୍କର ମୃତ୍ୟୁର ଅନୁସଂଧାନକୁ ବ୍ୟାହତ କରିବା ପାଇଁ । ସଫଳ ବି ହେଲେ ସେମାନେ, କାରଣ ସେମାନଙ୍କ ପାଖରେ ସବୁ ପ୍ରକାର ଆୟୁଧ ରହିଛି ।

ଆଜି ମୋହନଙ୍କ ଯିବାର ଦଶଦିନ । ସେପ୍ଟେମ୍ବର ୨୭ ତାରିଖରେ ଶାସ୍ତ୍ରୀ ଭବନର ତିନି ମହଲା କୋଠାର ଝରକା ଦେଇ ସେ କୋଠାରୁ ଡେଇଁ ପଡ଼ି ଆତ୍ମହତ୍ୟା କରିଛନ୍ତି ବୋଲି ସମ୍ବାଦ ପ୍ରଚାରିତ । ସୁସ୍ଥ ସବଳ ମଣିଷ । ସକାଳୁ ଘରୁ ଆସିଛନ୍ତି । ସଅଳ ଆସିଛନ୍ତି ଅଫିସକୁ । ଗୁରୁତ୍ୱପୂର୍ଣ୍ଣ ଫାଇଲ ବାକି ଅଛି । ସେ ଆତ୍ମହତ୍ୟା କରିବାକୁ ଯିବେ କାହିଁକି ଏବଂ ଯଦି କରିବେ ଝରକା ବାଟରେ ଗଳି ଡେଇଁବେ କାହିଁକି ? କୋଠା ଉପରକୁ ଯାଇ ଡେଇଁ ପାରିଥାନ୍ତେ, ଅନ୍ୟ ସହଜବାଟ ଅନେକ ଥିଲା । ନା ତାଙ୍କୁ ଝରକା ବାଟରେ ଉଠାଇ ତଳେ ପକେଇ ଦିଆଯାଇଛି ? କ'ଣ ସବୁ ଫାଇଲ ତାଙ୍କର ନିଷତ୍ତି ପାଇଁ ଥିଲା ତାଙ୍କ ପାଖରେ । ସେ ଫାଇଲରେ କୌଣସି ଗୋଷ୍ଠୀର ସ୍ୱାର୍ଥ ନିହିତ ଥିଲା କି ? ସେଇଥିପାଇଁ ତାଙ୍କ ଉପରେ ଚାପା ପଡୁଥିଲା କି ? ଅନେକ ପ୍ରଶ୍ନ ନିହିତ ରହି ଯାଇଛି । ଏହା ଭିତରେ । ଏହାର ବିଧିବଦ୍ଧ ଉଚ୍ଚସ୍ତରୀୟ ତଦନ୍ତ ଆବଶ୍ୟକ । ତାହା ମଧ ଦାବି ହୋଇଛି । ତାଙ୍କ ପରିବାର ପକ୍ଷରୁ, ବନ୍ଧୁମାନଙ୍କ ପକ୍ଷରୁ । କିନ୍ତୁ ଯଦି ସେ ମାଫିଆ ଚକ୍ରାନ୍ତର ଶିକାର ହେଲେ, ସେଇ ମାଫିଆ ମାନେ କଣ ସେ ତଦନ୍ତକୁ ବନ୍ଦ କରିଦେଇ ପାରିବେ ନାହିଁ ? ଇତିହାସ ତାହା ପ୍ରମାଣ କରିବ ।

ମୋହନଚନ୍ଦ୍ର ମହାପାତ୍ର ଆନ୍ଧ୍ର ପ୍ରଦେଶର ଆଇ.ଏ.ଏସ୍. କ୍ୟାଡର ଥିଲେ ଏବଂ କେନ୍ଦ୍ର ସରକାରକୁ ଯାଇଥିଲେ ଡେପୁଟେଶନରେ । ଖଣି ବିଭାଗରେ ସେ କାମ କରୁଥିଲେ ଏବଂ ସୁକିନ୍ଦାର ବିବାଦୀୟ ଖଣି ପଟା ଫାଇଲ ତାଙ୍କର ନିଷତ୍ତି ପାଇଁ ରହିଥିଲା ।

ସନ୍ଦେହର ବାତାବରଣ ଘନୀଭୂତ ହୋଇଛି । ସେ ଓ ତାଙ୍କର ଡ୍ରାଇଭର ଏକା ସାଂଗରେ ପହଞ୍ଚିଥିଲେ ଗାଡ଼ିରେ । ଡ୍ରାଇଭରର ଗାଡ଼ି ପାର୍କିଂ କରି ତାଙ୍କ ଅଫିସରେ ପହଞ୍ଚିଲା ବେଳକୁ ମୋହନ ପହଞ୍ଚି ନାହାନ୍ତି । ସେଇ ସମୟରେ ଅଫିସରେ କେହି ଲୋକ ନ ଥିଲେ ପ୍ରାୟ, ତା ହେଲେ ମୋହନ ରହିଗଲେ କେଉଁଠି ଏବଂ କାହିଁକି ?

ମୋହନ ଯେଉଁ ଝରକା ବାଟରେ ଡେଇଁ ଆତ୍ମହତ୍ୟା କରିଛନ୍ତି ବୋଲି କୁହାଯାଉଛି ସେ ଝରକାଟା ତାଙ୍କ ଅଫିସ ଝରକା ନୁହେଁ, ସିଡ଼ି ପାଖର ଝରକା । ତାଙ୍କୁ ଚଢ଼ି ଡେଇଁବା ଏକ

ରୀତିମତ କୁସ୍ତି କସରତର କାମ । ମୋହନ ଏପରି କ୍ରୀଡ଼ାବିତ ନ ଥିଲେ ଯେ ସେ ଉପରକୁ ଚଢ଼ି ଝରକା ବାଟେ ଗଳି ଆତ୍ମହତ୍ୟା କରିବେ ।

କାମ ତାଙ୍କୁ ବଳାଇ ନାହିଁ କଦାପି । ୨୮ ବର୍ଷ ଚାକିରି । ବହୁ ଫାଇଲ ସେ ଦେଖିଛନ୍ତି, ଜୀବନରେ । ଆନ୍ଧ୍ର ପ୍ରଦେଶର ମୁଖ୍ୟମନ୍ତ୍ରୀ ବି ଶୋକ ପ୍ରକାଶ କରି ତାଙ୍କ କର୍ମଦକ୍ଷତାର ଭୂୟସୀ ପ୍ରଶଂସା କରିଛନ୍ତି ।

ତାଙ୍କର ଦୁଇଟି ଝିଅ ଭାରି ଗେହ୍ଲା । ସେମାନେ କିନ୍ତୁ ଏହାର କୌଣସି ସୁରାକ ବାପାଙ୍କ ବ୍ୟବହାରରୁ ଜାଣି ପାରି ନ ଥିଲେ କିପରି ? ସେଇ ସକାଳେ ସେ ଘରୁ ବାହାରିଲା ବେଳେ ତ କୌଣସି ମାନସିକ ଉଦ୍‌ବିଗ୍ନତାର ସୂଚନା ନ ଥିଲା ।

ମୋହନ ଜୀବନକୁ ଭଲ ପାଉଥିଲେ । ଜୀବନର ସମସ୍ୟାକୁ ଏଡ଼ାଇ ଯିବାର ମଣିଷ ନ ଥିଲେ ସେ । ତେଣୁ ଆତ୍ମହତ୍ୟା କରିବାର କୌଣସି କାରଣ ନ ଥିଲା ତାଙ୍କ ପାଇଁ ।

ମୋହନ କେବଳ ଜଣେ ପ୍ରତିଭାଶାଳୀ ଛାତ୍ର ନ ଥିଲେ, ସେ ଜଣେ ପ୍ରତିଭାଶାଳୀ ଛାତ୍ରନେତା ମଧ ଥିଲେ । କିନ୍ତୁ ସେ ସେଇଭଳି ଛାତ୍ରନେତା ଥିଲେ, ଯାହାଙ୍କର ନେତୃତ୍ୱ ତାଙ୍କର ପାଠପଢ଼ାକୁ କ୍ଷୁର୍ଣ୍ଣ ବା ବ୍ୟାଘାତ କରି ନ ଥିଲା । ଯେପରି ଛାତ୍ରନେତା ଥିଲେ ୯ ଡକ୍ଟର ସତ୍ୟବାଦୀ ମିଶ୍ର, ଡକ୍ଟର ବୈଦ୍ୟନାଥ ମିଶ୍ର, ଡକ୍ଟର ଜଗନ୍ନାଥ ସାହୁ ପ୍ରଭୃତି । ପ୍ରଚଣ୍ଡ ଆତ୍ମବିଶ୍ୱାସ ଥିଲା ତାଙ୍କର । ଜୀବନକୁ ସଢଗ୍ର ଭାବରେ ଭଲ ପାଇବାର ଏଇ ମଣିଷ ଆତ୍ମହତ୍ୟା କଥା ଭାବି ନ ପାରେ ।

ମୋହନଙ୍କ ମୃତ୍ୟୁ ବୋଧହୁଏ ସେଇପରି ରହସ୍ୟମୟ ହୋଇ ରହିଯିବ । ତାଙ୍କ ବ୍ୟାଚର ସବୁ ଆଇ.ଏ.ଏସ୍. ଅଫିସରମାନେ ଏକାଠି ହୋଇ ମଧ ଏ ରହସ୍ୟ ଉନ୍ମୋଚନ କରି ପାରିବେ ନାହିଁ । ଷ୍ଟିଲ ଫ୍ରେମ୍, ସର୍ବଶକ୍ତିମାନ ବ୍ୟୁରୋକ୍ରାସୀ ହାର ମାନିବ ମାଫିଆ ଚକ୍ରାନ୍ତ ଆଗରେ । ଗୃହମନ୍ତ୍ରୀ ଇନ୍ଦ୍ରଜିତ ଗୁପ୍ତ ପ୍ରତିଶ୍ରୁତି ଦେଇଛନ୍ତି ତଦନ୍ତର କିନ୍ତୁ ତାହାର କିଛି ଫଳ ହେବ ନାହିଁ ବୋଲି ମୋର ଧାରଣା । କିଛି ସାମ୍ବାଦିକ ବନ୍ଧୁ ଆଗ୍ରହ ଦେଖାଇଛନ୍ତି ତଦନ୍ତ କରିବା ପାଇଁ । ସେ ସବୁ ମଧ ତମାଦି ହୋଇଯିବ । ବିଧବାର ଆକୁଳ କ୍ରନ୍ଦନ, ପିତୃ ହରା କନ୍ୟାର ନିବେଦନ ସେ ଲୌହ ପରଦାକୁ ଟାଳି ପାରିବ ନାହିଁ ।

ଏହା ଆତଙ୍କ ସୃଷ୍ଟି କରିବ ବ୍ୟୁରୋକ୍ରାସୀ ବା ଅମଲାତନ୍ତ୍ର ଭିତରେ । ସଚ୍ଚୋଟ ଅଫିସର ମାନଙ୍କର ମନବଳ ଭାଂଗିଯିବ । ଭ୍ରଷ୍ଟାଚାରୀ ଅଫିସର ମାନେ ଆନନ୍ଦିତ ହେବେ ଏବଂ ଆପଣାର ପଥ ସୁଗମ ହେଲା ବୋଲି ମନେ କରିବେ ।

ଦେଶ ପାଇଁ, ଜାତି ପାଇଁ ଏହା ହେବ ଅଶୁଭ ସଂକେତ । କିନ୍ତୁ ଦେଶ, ଜାତି କଥା ବିଚାର କରିବା ପାଇଁ ସ୍ପୃହା, ସାହସ, ଶକ୍ତି କାହାର ଅଛି ?



# ଚିତ୍ରଶିଳ୍ପ ଜଗତର ପିତାମହ ଭୀଷ୍ମ

ମୁରଲିଧର ଟାଲି ଆଉ ନାହାନ୍ତି । ଶିଳ୍ପୀଙ୍କର ଶେଷ ଦିନ ଗୁଡ଼ିକ ହୋଇଯାଇଥିଲା ଅତ୍ୟନ୍ତ କରୁଣ । ଦୀର୍ଘଦିନ ଧରି ସେ ଥିଲେ ଶଯ୍ୟାଶାୟୀ । ଖାଇବା ପିଇବା ପ୍ରାୟ ସଂପୂର୍ଣ୍ଣ ଛାଡ଼ି ଦେଇଥିଲେ । ପ୍ରତ୍ୟେକ ଦିନ ତାଙ୍କ ପାଇଁ ଅଧିକ କରୁଣ ହୋଇଯାଉଥିଲା । ପ୍ରତ୍ୟେକ ଦିନର ମ୍ଳାନ ଅପରାହ୍ଣ ତାଙ୍କୁ ଅଧିକ ମ୍ଳାନ କରି ଦେଉଥିଲା । ଜୀବନର ରଂଗ ଲିଭିଲିଭି ଯିବା ସହିତ ତୂଳିର ରଂଗ ମଧ୍ୟ ଲିଭିଲିଭି ଯାଇଥିଲା । ସେ ଶଯ୍ୟାରେ ଶୋଇ ରହିଥିଲେ । ତାଙ୍କୁ ଘେରି ବସିଥିଲେ ତାଙ୍କର ପରିବାର ଓ କିଛି ସାଥୀ ଶିଳ୍ପୀ ।

ମୁରଲିଧର ଜନ୍ମ ହୋଇଥିଲେ ମହାନ୍ତିପଡ଼ା ସମ୍ବଲପୁରରେ । ୮୦ ବର୍ଷ ତଳେ । ସେ ପାଠ ପଢ଼ିଥିଲେ କଲିକତା କଳା ମହାବିଦ୍ୟାଳୟରେ । ଚାହିଁଥିଲେ ଏକ ସ୍ୱାଧୀନ ଜୀବିକା ନେଇ ଜୀବନକୁ କଟାଇ ଦେଇଥାନ୍ତେ । କିନ୍ତୁ ତାହା ହୋଇ ପାରି ନ ଥିଲା । କଳାକୁ ଜୀବିକା କରି ସ୍ୱାଧୀନ ଭାବରେ ଜୀବନ ଅତିବାହିତ କରିବା ଏ ପର୍ଯ୍ୟନ୍ତ ଏ ଦେଶରେ ସମ୍ଭବ ହୋଇ ପାରିନାହିଁ ।

ସେ କିଛିକାଳ ଓଡ଼ିଶାର ବୟନ ଶିଳ୍ପ ନିର୍ଦ୍ଦେଶାଳୟରେ ଚାକିରି ଆରମ୍ଭ କରିଥିଲେ । ପରେ କେନ୍ଦ୍ର ସରକାରଙ୍କ ବୟନ ଶିଳ୍ପ ନିର୍ଦ୍ଦେଶାଳୟରେ ଯୋଗ ଦେଇ ଡେପୁଟି ଡାଇରେକ୍ଟର ଭାବରେ ୧୯୭୫ ମସିହାରେ ଅବସର ଗ୍ରହଣ କରିଥିଲେ । ସମ୍ବଲପୁର ଶିଳ୍ପୀ, ସମ୍ବଲପୁରୀ ଶାଢ଼ୀର ନୂତନ ଡିଜାଇନ କରି ତାକୁ ବିଶ୍ୱ ପ୍ରସିଦ୍ଧ କରିବାରେ ତାଙ୍କର ଅବଦାନ ବିପୁଳ । ଚାକିରି କରିବା ପୂର୍ବରୁ ସେ ଶରତଚନ୍ଦ୍ର ଦେବଙ୍କ ଉତ୍କଳ ସ୍କୁଲ ଅଫ୍ ଆର୍ଟସ୍‌ରେ ପରିଦର୍ଶକ ଅଧ୍ୟାପକ ଭାବରେ କିଛିକାଳ କାର୍ଯ୍ୟ କରିଥିଲେ ।

କଟକରେ ସେତେବେଳେ ଥିବା 'ଶିଳ୍ପପୁରୀ' ସହିତ ତାଙ୍କର ସହଯୋଗ ଥିଲା ଏବଂ ଏଇ ଅବସରରେ ସେ ବାରବାଟୀ ଷ୍ଟାଡିୟମ କ୍ଲବ ହାଉସରେ ଗାନ୍ଧିଜୀଙ୍କ ଜୀବନୀ ଉପରେ ଆଧାରିତ ଚିତ୍ର ଅଙ୍କନ କରିଥିଲେ । ଏଥିରୁ ଗୋଟିଏ ନଷ୍ଟ ହୋଇଯାଇଛି । ଯାହା ଅଛି ତାହା ତାଙ୍କର କାନ୍‌ଭାସ ଉପରେ ଅଙ୍କିତ ଚିତ୍ରର ମହିମା ଆଜି ବି ପ୍ରଦର୍ଶନ କରେ । ଦର୍ଶକଙ୍କୁ ଚକିତ, ମୁଗ୍ଧ କରେ ।

ସମ୍ବଲପୁର ବିଶ୍ୱବିଦ୍ୟାଳୟ ତାଙ୍କୁ ଡି.ଲିଟ୍ ଉପାଧିରେ ଭୂଷିତ କରିଥିଲେ । ସହକର୍ମୀ ମାନଙ୍କର ଓ୍ୟାର୍କିଂ ଆର୍ଟିଷ୍ଟ ଆସୋସିଏସନ୍ ତାଙ୍କୁ 'କଳାରତ୍ନ' ପୁରସ୍କାର ପ୍ରଦାନ କରିଥିଲେ । ଲଳିତ କଳା ଏକାଡ଼େମୀର ସର୍ବୋଚ୍ଚ ସମ୍ମାନ ଧର୍ମପଦ ପୁରସ୍କାର ମଧ୍ୟ ତାଙ୍କୁ ମିଳିଥିଲା । ଲଳିତ କଳା ଏକାଡ଼େମୀର ଉପସଭାପତି ମଧ୍ୟ ଥିଲେ କିଛି କାଳ ପାଇଁ । ତାଙ୍କର କଳାକୃତି

ଦେଶ ବିଦେଶର ବହୁ ଚିତ୍ରାଗାର ମଣ୍ଡନ କରିଛି । ପ୍ରଜାତନ୍ତ୍ର ପ୍ରଚାର ସମିତି, ରାଜ୍ୟ ସାଂସ୍କୃତିକ ପରିଷଦ । ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଇମ୍‌ଫା ଆଦି ବହୁ ଅନୁଷ୍ଠାନ ତାଙ୍କୁ ସମ୍ମାନିତ କରିଛି ।

ମୁରଲୀଧର ଟାଲି ଜଣେ ହିସାବୀ ଲୋକ ନଥିଲେ । ଶିଳ୍ପୀ ଥିଲେ ଠିକ୍ ଶିଳ୍ପୀ ଭଳି । ଜୀବନରେ ଗଣିତରେ ସେ ହାରି ଯାଇଥିଲେ । ତାଙ୍କର ପ୍ରତ୍ୟକ୍ଷ ପ୍ରେରଣାରେ ଛାତ୍ର ଯଦୁନାଥ ସୂପକାର ଜଣେ ପ୍ରଥିତଯଶା ଶିଳ୍ପୀ ହୋଇଥିଲେ କିନ୍ତୁ ଜୀବିକା ପାଇଁ ସେ ବସ୍ତ୍ର ଡିଜାଇନ୍ କରିବା ପାଇଁ ଯୋଗଦେଇଥିଲେ ବନାରସ୍‌ରେ । ତାଙ୍କର ମଧ ପରଲୋକ ହୋଇଯାଇଚି, ଶିଳ୍ପୀଙ୍କ ପରଲୋକ ପୂର୍ବରୁ ।

ମୁରଲୀଧର ବାବୁଙ୍କର ନିଜସ୍ୱ ଶିଳ୍ପକୃତି ଥିଲା ସ୍ୱତନ୍ତ୍ର ଧରଣର । କାନଭାସରେ ଚିତ୍ର ଅଙ୍କନ ଥିଲା ସ୍ୱତନ୍ତ୍ର ଧରଣର । ଜୀବନ୍ତ ଭାବ ସୌମ୍ୟ ସେ ଚିତ୍ର ଯେପରି କଥା କୁହେ ।

ଶିଳ୍ପୀ ଆଉ ନାହାନ୍ତି । ଭୁବନେଶ୍ୱରରେ ରହି ଯାଇଥିଲେ ସ୍ଥାୟୀ ଭାବରେ । ସେଇଠି ହିଁ ତାଙ୍କର ପରଲୋକ ହୋଇଗଲା । କଳା ଇତିହାସର ଗୋଟାଏ ପୃଷ୍ଠା ଓଲଟି ପଡ଼ିଲା ।



# ଲଙ୍‌-ମାର୍ଚ୍ଚରୁ ମହାଯାତ୍ରା

**ସେ**ଦିନ ସେମାନେ ଛିଟିକି ଆସିଥିଲେ ଅଫିମିଆ ଚୀନର ସୀମାନ୍ତ ଟପି ଆନ୍ତର୍ଜାତିକ ସ୍ତରକୁ । କୋମିନଟାଙ୍ଗ ସୈନ୍ୟବାହୀନୀର ଆକ୍ରମଣରେ ଅତିଷ୍ଠ ଏଇ ଅଭିଯାତ୍ରୀ ଦଳ ସେଦିନ ନିଷ୍ପତ୍ତି କଲେ ଏକ ବିରାଟ ଯାତ୍ରାପାଇଁ । ସେମାନଙ୍କୁ ଯିବାକୁ ହେବ ଗରିପର୍ବତ ଭେଦ କରି, ଉଚ୍ଛୃଙ୍ଖଳ ନଦୀ ଟପି ଏବଂ ସର୍ବୋପରି ଦକ୍ଷିଣ ଚୀନ୍‌ରୁ ଉତ୍ତରରେ ୟେନାନ ପର୍ଯ୍ୟନ୍ତ । ଉତିଷ୍ଠତ ଜାଗ୍ରତ, ଉଠ, ଜାଗ । ଲକ୍ଷାଧିକ ଲୋକଙ୍କର ଯାତ୍ରା ଅରମ୍ଭ ହେଲା । ବାଟରେ କୁମିନଟାଙ୍ଗ ସୈନ୍ୟ ବାହିନୀ ସହିତ ଯୁଦ୍ଧ କରି କରି ସେମାନଙ୍କୁ ଯିବାକୁ ହେବ । ସେମାନଙ୍କୁ ଯିବାକୁ ହେବ ସତରଟି ପର୍ବତମାଳା ଭେଦ କରି । ଯିବାକୁ ହେବ କୋଡିଏରୁ ଊର୍ଦ୍ଧ୍ୱ ଦୁର୍ବାର ନଦୀର ବୁକୁଟପି । କିନ୍ତୁ ସେମାନଙ୍କୁ ଯିବାକୁ ହେବ । ଗଲାବେଳେ ଯାତ୍ରା ସମୟରେ ପାଠପଢ଼ା ଚାଲିବ, ପରୀକ୍ଷା ହେବ, କୃତୀ ଛାତ୍ରଛାତ୍ରୀଙ୍କୁ ଡିଗ୍ରୀ ଦିଆଯିବ ଇତ୍ୟାଦି । ଏକ ଅସମ୍ଭବ କଥା ।

ସେମାନେ ଚାଲିଲେ । ସାରା ପୃଥିବୀ ଚକିତ । ଏ କି ଯାତ୍ରା ? ବାଟରେ ଅନେକ ମରି ହଜିଗଲେ । କାହାର ସ୍ତ୍ରୀ ହଜିଗଲା । ହଜିଗଲା କାହାର ଶିଶୁପୁତ୍ର । କୁମିନଟାଙ୍ଗ ସୈନ୍ୟବାହିନୀ ସହିତ ପ୍ରବଳ ଯୁଦ୍ଧରେ ଅନେକଙ୍କର ମୃତ୍ୟୁ ହୋଇଗଲା । ଏହା ସତ୍ତ୍ୱେ ସେମାନେ ପହଞ୍ଚିଲେ ଅବଶେଷରେ ୟେନାନ୍‌ରେ । ଏଇଠି ତିଆରି ହେବ ଚାରିକଣିଆ ରାଷ୍ଟ୍ର । ପଛରେ ସୋଭିଏତ ୟୁନିୟନ ଡାଲ୍ଲ ପରି କାମ କରିବ । ଚାରୋଟି ପର୍ବତ-ଗୁମ୍ଫା ଭିତରେ ନୂଆ ରାଷ୍ଟ୍ର ଗଠନ ହେବ ।

କିଏ ଏଇ ଅଭିଯାତ୍ରୀ ଦଳର ମହାନାୟକ ? କିଏ କିଏ ସେ ? ସାରା ପୃଥିବୀରେ ଉଡୁଟି ଗଲା ସେମାନଙ୍କର ନାମ । ସେମାନେ ମାଓ-ସେ-ତୁଂ ଏବଂ ଚୁ -ଟେ-ମାଓ ହେଉଛନ୍ତି ରାଜନୈତିକ ନେତା ଏବଂ ଚୁଟେ ହେଉଛନ୍ତି ସେନାଧକ୍ଷ । ମାଓ କମ୍ୟୁନିଷ୍ଟ ପାର୍ଟିକୁ ଫେରାଇ ଆଣିଛନ୍ତି ଲି-ଲି-ସାନ୍‌ଙ୍କ ଦ୍ୱାରା ଅନୁସୃତନୀତିରୁ । ମାଓ ହେଉଛନ୍ତି ସୃଜନଶୀଳ ମାର୍କ୍ସବାଦୀ । ସୋଭିଏତ ୟୁନିୟନରେ ଯେଉଁ ପଦ୍ଧତିରେ ସମାଜବାଦୀ ବିପ୍ଳବ ହୋଇ ଯାଇଛି ତାହାକୁ ଅନ୍ୟଦେଶ କପି କରି ବିପ୍ଳବ କରି ପାରିବ ନାହିଁ । ଚୀନା ଦେଶର ସଂସ୍କୃତି, ଐତିହ୍ୟ ଏବଂ ସ୍ୱତନ୍ତ୍ର ପରିସ୍ଥିତିରୁ ହିଁ ଉଦ୍‌ଭବ ହେବ ଚୀନା ବିପ୍ଳବର ପଥ । ଏହାକୁ ହିଁ କୁହାଯିବ ସମାଜବାଦ ପାଇଁ ଚୀନା ଜନ ସାଧାରଣଙ୍କ ରାସ୍ତା । ଚୀନା ଜନସାଧାରଣଙ୍କ ଭିତରୁ ଅଧିକାଂଶ ହେଉଛନ୍ତି ଚାଷୀ ଶ୍ରମିକ ଶ୍ରେଣୀର ସଂଖ୍ୟା ଖୁବ କମ୍ । ତେଣୁ ଯେଉଁ ନୀତି ଘୋଷିତ ହେବ ତାହାର ଦର୍ଶନ ହେବ ଶ୍ରମିକର, କିନ୍ତୁ ତାହାର ପ୍ରୟୋଗ କରିବ ଚାଷୀ । ଚୀନା ବିପ୍ଳବକୁ ନିଜର ସଂସ୍କୃତି ଏବଂ ଐତିହ୍ୟରୁ ଶକ୍ତି ଆହରଣ କରିବାକୁ ହେବ ।

ମାଓ-ସେ-ତୁଂ ଗଢ଼ିଲେ ଯେନାନରେ ଆପଣାର ରାଷ୍ଟ୍ର । "ପର୍ବତର ମୂଷା" ବୋଲି ତାଙ୍କୁ ବିଦ୍ରୁପ କଲେ ସାମ୍ରାଜ୍ୟବାଦୀ ମାନେ । ଏକ ପଟରେ ମାଓ ତୁ ଦ୍ୱିଶକ୍ତି, ଆଉ ଅନ୍ୟ ପଟରେ ସର୍ବାଧୁନିକ ଅସ୍ତ୍ରଦ୍ୱାରା ସଜ୍ଜିତ କୁମିନଟାଙ୍ଗ ବାହିନୀ । ତା'ର ସେନାବାହିନୀ ହାତରେ ରହିଛି ଆମେରିକା ପ୍ରଦତ୍ତ ବିପୁଳ ଅତ୍ୟାଧୁନିକ ଅସ୍ତ୍ର । ଦିନେ ଚୀନା ଜାତିକୁ ଅଫିମିଆ ନିଶାରେ ଆସକ୍ତ କରି ରଖିଥିଲେ ସାମ୍ରାଜ୍ୟବାଦୀମାନେ । ଚୀନା ଜାତି ଶୋଇ ପଡ଼ିଥିଲା ଅଫିମିଆ ନିଦରେ । ସାମ୍ରାଜ୍ୟବାଦୀମାନେ ଲୁଣ୍ଠନ କରି ଚାଲିଥିଲେ ଏହାର ବିପୁଳ ପ୍ରାକୃତିକ ସମ୍ପଦକୁ । ଏହାରି ବିରୁଦ୍ଧରେ ବିଦ୍ରୋହର ପତାକା ଉତ୍ତୋଳନ କରିଥିଲେ ସନ୍‌ୟାତ୍ ସେନ୍ । ସେ ନେତୃତ୍ୱ ସାଫଲ୍ୟ ଲାଭ କରିଥିଲା କିନ୍ତୁ ଏକ ଗୋଷ୍ଠୀର ଷଡ଼ଯନ୍ତ୍ରରେ ଏହି ଆନ୍ଦୋଳନ ବ୍ୟର୍ଥ ହୋଇଯାଇଥିଲା । ସେଇ ପ୍ରବାଦ ପୁରୁଷ ଜନନାୟକ ସନ୍‌ୟାତ୍ ସେନ୍‌ଙ୍କର ଅପୂର୍ଣ୍ଣ ଆଶାକୁ ପୂରଣ କରିବା ପାଇଁ ମାଓ-ତୁଙ୍କର ନେତୃତ୍ୱରେ ଗଠିତ ହୋଇଛି ନୂତନ ସରକାର । ସନ୍‌ୟାତ୍ ସେନ୍‌ଙ୍କର ସହଧର୍ମିଣୀ ଏବଂ ସହକର୍ମୀ ମାଡ଼ାମ ସନ୍‌ୟାତ୍ ସେନ୍ ରହିଛନ୍ତି ସେମାନଙ୍କ ପକ୍ଷରେ ଏବଂ ଆର ପକ୍ଷରେ ମାଡ଼ାମ ସନ୍‌ୟାତ୍ ସେନଙ୍କର ଭଗ୍ନୀ ମାଡ଼ାମ ଚାଙ୍ଗ କାଇସେକ୍ ଏବଂ ତାଙ୍କର ପତି ଖାଙ୍ଗ କାଇସେକ୍ ।

ଚୀନା କମ୍ୟୁନିଷ୍ଟ ପାର୍ଟି ତିଆରି କରିଛି ତାର ରଣକୌଶଳ ଚୀନା ମାଟି ଏବଂ ତା'ର ଇତିହାସକୁ କେନ୍ଦ୍ରକରି । ମାର୍କ୍ସବାଦ ଲେନିନ୍‌ବାଦ ଦେଇଛି ତାତ୍ତ୍ୱିକ ଭିତ୍ତିକି, ସମାଜର ନିୟମକୁ ବିଶ୍ଳେଷଣ କରିବାର ବୈଜ୍ଞାନିକ ଦୃଷ୍ଟିଭଂଗୀ । କିନ୍ତୁ କୌଶଳ ହେଉଛି ତାଙ୍କର ନିଜସ୍ୱ, ସଂପୂର୍ଣ୍ଣ ଭାବରେ ଚୀନା ମାଟିରୁ ପ୍ରସ୍ତୁତ । ଏଇପରି ସୃଜନଶୀଳ ମାର୍କ୍ସବାଦର ସଫଳ ପରୀକ୍ଷା ହେଉଛି ଭିଏତ୍‌ନାମ୍‌ରେ, ଏଇପରି ହେଉଛି ଦକ୍ଷିଣ ଆମେରିକାର କ୍ୟୁବାରେ ।

ଚୀନ ଦେଶ ଭିତରେ ଲାଗିରହିଚି ସଂଗ୍ରାମ ଏକ ପଟରେ ମାଓ ଆର ପଟରେ ଖାଂ କାଇସେକ୍ ଦୁଇ ଶିବିରର ସେନାପତି । ହଠାତ୍ ଜାପାନ ଆକ୍ରମଣ କରିଛି ଚୀନକୁ ଏଇ ସୁଯୋଗରେ । ଦେଶର ସ୍ୱାଧୀନତା ବିପନ୍ନ ହୋଇଛି । ସମସ୍ତଙ୍କୁ ଚକିତ କରି ମାଓ ଆହ୍ୱାନ ଦେଇଛନ୍ତି ଖାଂଙ୍କୁ ଜାପାନ୍ ବିରୁଦ୍ଧରେ ପ୍ରତିରୋଧ ଏବଂ ସଂଗ୍ରାମର ମିଳିତ ସାମ୍ମୁଖ୍ୟ ଗଠନ କରିବା ଲାଗି । ଆମେରିକା ବିପୁଳ ସାମରିକ ଶକ୍ତିରେ ସଜ୍ଜିତ ଖାଂ କାଇସେକ୍ ଏହାକୁ ପ୍ରତ୍ୟାଖାନ କରିଛି । ସେ ଆଶା କରିଚି ଜାପାନ୍ ପ୍ରଥମେ ମାଓଙ୍କ ନେତୃତ୍ୱରେ ରହିଥିବା ଅଂଚଳକୁ ଦଖଲ କରିଯିବ ଏବଂ ପରେ ସେ ଜାପାନ୍‌କୁ ପରାସ୍ତ କରି ପାରିବେ । ଏକାମାଡ଼ରେ ତାଙ୍କର ଦୁଇ ଲକ୍ଷ୍ୟ ସାଧିତ ହୋଇ ପାରିବ । କିନ୍ତୁ ହଠାତ୍ ଏକ ଦେଶପ୍ରେମୀ ସେନାଧକ୍ଷଙ୍କ ହାତରେ ଖାଂ ଗିରଫ ହୁଅନ୍ତି ଏବଂ ତାଙ୍କୁ ମାଓଙ୍କ ପାଖରେ ଉପସ୍ଥିତ କରାଯାଏ । ଆପଣାର ସବୁଠାରୁ ବଡ଼ ଶତ୍ରୁ ବର୍ତ୍ତମାନ ସମ୍ମୁଖରେ ଦଣ୍ଡାୟମାନ ବନ୍ଦୀ ଭାବରେ । କଣ ନିଷ୍ପତ୍ତି ନେବେ ମାଓ ସେତୁଂ ? ସାରା ବିଶ୍ୱ ଚକିତ ହୋଇ ଅନେଇଛି । ମାଓ ସେ ତୁଂ ଅନେଇ ଦେଖୁଚନ୍ତି । ଏକ ପଟରେ ଫାସିଷ୍ଟ ଜାପାନୀ ଶକ୍ତିର ଆକ୍ରମଣ ଅନ୍ୟ ଦିଗରେ ସାମ୍ରାଜ୍ୟବାଦୀ ମାନଙ୍କର କ୍ରୀଡ଼ା ପୁତ୍ତଳିକା ଆଗରେ ବନ୍ଦୀ ଭାବରେ ଦଣ୍ଡାୟମାନ । ଫାସିବାଦ ଓ ସାମ୍ରାଜ୍ୟବାଦ ଭିତରେ ବର୍ତ୍ତମାନ ତାଙ୍କୁ ବାଛିବାକୁ ପଡ଼ିବ ବଡ଼ ଶତ୍ରୁ କିଏ ? କାହାର ପରାଜୟ ପ୍ରଥମେ ହେବା

ଆବଶ୍ୟକ, ଚୀନା ଜନତାର ସ୍ୱାର୍ଥ ପାଇଁ । ମାଓ ସେ ତୁଂ ଙ୍କର ସେ ନିଷ୍ପତ୍ତି ଥିଲା ଐତିହାସିକ, ଯାହା ସମଗ୍ର ଚୀନା ମୁକ୍ତି ଆନ୍ଦୋଳନକୁ ଏକ ନୂଆ ରୂପରେଖ ଦେଲା । ମାଓ ସେ ତୁଂ କେବଳ ଖ୍ୟାଂ କାଇସେକଙ୍କୁ ମୁକ୍ତି ଦେଲେ ନାହିଁ, ତାଙ୍କ ସହିତ ଏକ ଚୁକ୍ତି କଲେ ଜାପାନୀମାନଙ୍କ ବିରୁଦ୍ଧରେ ମିଳିତ ଭାବରେ ଲଢ଼ିବା ପାଇଁ । ସମଗ୍ର ଚୀନ ଦେଶରେ ବିଦ୍ୟୁତର ତରଙ୍ଗ । ଚୀନା କମ୍ୟୁନିଷ୍ଟ ପାର୍ଟି କେବଳ ଆଉ ସର୍ବହରାର ଦଳ ଭାବରେ ସୀମିତ ରହିଲା ନାହିଁ । ଏହା ପାଲଟିଲା ସମଗ୍ର ଚୀନା ଜନତାର ଦଳ ।

ଜନ୍ମଲାଭ କଲା ଏକ ସାମରିକ ବାହିନୀ - ଏଇଟ୍‌ଥ ରୁଟ୍ ଆର୍ମି , ମାଓ ଚୁଙ୍କ ନେତୃତ୍ୱରେ । ଏଇ ବାହିନୀ ଗଠିତ ହେଲା ପରିବର୍ତ୍ତିତ ପରିସ୍ଥିତିରେ ବହୁ ଦେଶପ୍ରେମୀଙ୍କୁ ନେଇ, କିନ୍ତୁ ମୂଳ ଥିଲା ଚୀନା କମ୍ୟୁନିଷ୍ଟ ପାର୍ଟିର ସେନାବାହିନୀର ସଭ୍ୟମାନେ । ସେମାନେ ସଂଗ୍ରାମର ଅଗ୍ନି ଶିଖା ଭିତରେ ଇସ୍ପାତ ପାଲଟି ଯାଇଥିଲେ । ଏଇ ବାହିନୀ ସୃଷ୍ଟି କଲା କମ୍ପନ କେବଳ ଚୀନରେ ନୁହେଁ ସମଗ୍ର ପୃଥିବୀରେ । ଏହି ସେନାବାହିନୀକୁ ସାହାଯ୍ୟ କରିବା ପାଇଁ ଭାରତୀୟ ଜାତୀୟ କଂଗ୍ରେସର ତତ୍‌କାଳୀନ ସଭାପତି ଜାବାହାରଲାଲ ଏକ ଡାକ୍ତର ଦଳ ପ୍ରେରଣ କଲେ ଡାକ୍ତର ମଦନ ଅଟଳଙ୍କ ନେତୃତ୍ୱରେ । ଏଇ ଡାକ୍ତରୀ ବାହିନୀର ସଭ୍ୟ ଡାକ୍ତର ଦ୍ୱାରକାନାଥ କୋଟ୍‌ନିସ୍ ଅପୂର୍ବ ନିଷ୍ଠା ଏବଂ ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କଲେ ସେଇ ଯୁଦ୍ଧ କ୍ଷେତ୍ରରେ ଆଖିବୁଜି ଦେଲେ । ଆଉ ଫେରିଲେ ନାହିଁ କିନ୍ତୁ ଚୀନ ଭାରତ ମୈତ୍ରୀର ସେତୁ ଭାବରେ ରହିଗଲେ ଭବିତବ୍ୟ ପାଇଁ ।

ସେତିକିରେ ତ ଏହା ସୀମିତ ରହିଲା ନାହିଁ । ଯେଉଁ ଆମେରିକା ସହିତ ଯୁଦ୍ଧ ଲାଗିଚି ସେଇ ଦେଶରୁ ଆସିଥିଲେ ଦିନେ ପର୍ଲବକ୍ ଯେ ଚୀନା ଚାଷୀର ଦୁଃଖରେ ଅଭିଭୂତ ହୋଇ ଲେଖିଥିଲେ ଉପନ୍ୟାସ 'ଗୁଡ଼ ଆର୍ଥ (Good Earth)', ଯାହା ସମଗ୍ର ବିଶ୍ୱର ଆଖି ଫେରାଇଥିଲା ଚୀନା ଚାଷୀର ଦୁର୍ଗତି, ଦୁଃଖପ୍ରତି । ଆଜି ସେଇ ଆମେରିକା ଆସି ପହଞ୍ଚଛନ୍ତି ପ୍ରସିଦ୍ଧ ସାମ୍ବାଦିକ ଓ ବ୍ୟାଖ୍ୟାକାର ଏଡ୍‌ଗାର ସ୍ନୋ । ତାଙ୍କର ବହି 'Red Star Over China' 'ରେଡ୍ ଷ୍ଟାର ଓଭର ଚାଇନା' ସାରା ପୃଥିବୀରେ ଗଭୀର ଆଲୋଡ଼ନ ସୃଷ୍ଟି କରିଚି । ଠିକ୍ ସେଇପରି ସେଇ ମାର୍କିନ ଦେଶରୁ ଆସିଛନ୍ତି ପ୍ରସିଦ୍ଧ ସାମ୍ବାଦିକା ଆନା ଲୁଇଷ୍ଟ୍ରଙ୍ଗ । ତାଙ୍କର ବହି ଡନ୍ କମିଙ୍ଗ ଆଉଟ୍ ଲାଇକ୍ ଥଣ୍ଡର ଆଉଟ୍ ଅଫ ଚାଇନା (Dawn coming out like thunder out pf China) ପୃଥିବୀରେ ଉଦ୍‌ବେଳନ ସୃଷ୍ଟି କରିଛି । ସେ ଆସିଛନ୍ତି ଉତ୍ତର ପଟରୁ ସୋଭିଏତ୍ ୟୁନିୟନରେ ଲେନିନଙ୍କର ସମାଜବାଦୀ ପରୀକ୍ଷା ଦେଖି । ଆସିଛନ୍ତି ପ୍ରସିଦ୍ଧ ସାମ୍ବାଦିକ ଆଇ.ଏପିଷ୍ଟିନ । ଲେଖିଛନ୍ତି ଅନ୍ ଫିନିସ୍‌ଡ ରେଭଲ୍ୟୁସନ ଇନ୍ ଚାଇନା Unfinished Revolution in China ଠିକ୍ ସେଇପରି ଏହା ଆଲୋଡ଼ନ ସୃଷ୍ଟି କରିଛି ସାରା ବିଶ୍ୱରେ । ଯେଉଁ ଦେଶର ସାମ୍ରାଜ୍ୟବାଦୀ ମାନେ ଚୀନା ଜାତିକୁ ଅଫିମର ନିଦରେ ଶୁଆଇ ପକାଇଥିଲେ, ସେହି ଦେଶର ଦେଶପ୍ରେମୀମାନେ ମାଓ-ଚୁଙ୍କୁ ସାରା ପୃଥିବୀରେ ପରିଚିତ କରାଇଛନ୍ତି ।

ପ୍ରବଳ ଯୁଦ୍ଧ । ଯୁଦ୍ଧରେ ବିଜୟ ହୋଇଛନ୍ତି ଚୀନା ଜନସାଧାରଣ । ବର୍ତ୍ତମାନ ନାଟକର

ଦ୍ୱିତୀୟ ପର୍ବ । ଆମେରିକା ତାର ମାରଣାସ୍ତ୍ର ଠୁଳ କରିଛି ଚୀନରେ । ବର୍ତ୍ତମାନ ଆରମ୍ଭ ହେଲା ମୁକ୍ତି ଯୁଦ୍ଧର ଦ୍ୱିତୀୟ ପର୍ବ । ସମଗ୍ର ଚୀନ ଜାତି ରକ୍ତସ୍ନାତ ହୋଇଛି । ତଥାପି ମୁକ୍ତି ସଂଗ୍ରାମର ପର୍ବ ସରିନାହିଁ । ମାଓ-ତୁଂ ଙ୍କର ମିଳିତ ନେତୃତ୍ୱରେ ଅମିତ ବିକ୍ରମରେ ମାଡ଼ି ଚାଲିଛନ୍ତି ଚୀନା ମୁକ୍ତି ବାହିନୀ । ସହର ପରେ ସହର, ଗ୍ରାମ ପରେ ଗ୍ରାମ ଚାଲି ଯାଉଛି ମୁକ୍ତି ବାହିନୀ ହାତକୁ । ଇତିହାସରେ ଏହାର ପଟାନ୍ତର ନାହିଁ । ମାଓ ସେ ତୁଂ ଘୋଷଣା କରିଛନ୍ତି ମଇ ମାସ ୧୦ ତାରିଖ, ୧୯୪୯ ମସିହା ପୂର୍ବରୁ ଚୀନର ରାଜଧାନୀ ନାନ୍‌କିଂ ମୁକ୍ତ ହେବ ଚୀନା ମୁକ୍ତି ବାହିନୀ ହାତରେ ।

ମାଓ-ସେ-ତୁଂ ଘୋଷଣା କରିଛନ୍ତି । ଚୀନା ଦେଶର ଦଶୋଟି ଧନାଢ଼୍ୟ ପରିବାର ଯେଉଁମାନେ ସାମ୍ରାଜ୍ୟବାଦୀ ମାନଙ୍କ ସହତ ହାତ ମିଳାଇଛନ୍ତି, ଚୀନା ଜନସାଧାରଣଙ୍କୁ ଲୁଣ୍ଠନ କରି ଚାଲିଛନ୍ତି ସେଇ ଦଶୋଟି ପରିବାର ହେଉଛନ୍ତି ଚୀନା ଜନସାଧାରଣଙ୍କ ଶତ୍ରୁ । ଆଉ ସମସ୍ତେ ମିତ୍ର । ଏହାର ପ୍ରଭୂତ ପ୍ରଭାବ ଦେଶରେ ପଡ଼ିଛି । ସୈନ୍ୟ ବାହିନୀ ପରେ ସୈନ୍ୟ ବାହିନୀ ଆତ୍ମ ସମର୍ପଣ କରୁଛନ୍ତି ମୁକ୍ତି ବାହିନୀ ପାଖରେ ।

ତାପରେ ଆସିଛି ସେଇ ଯୁଗାନ୍ତକାରୀ ଦିବସ । ଆଗରେ ୟାଂସି ନଦୀ । ନଦୀ ଉପରେ ଥିବା ସବୁ ପୋଲକୁ ଉଡ଼ାଇ ଦେଉଛନ୍ତି ପଛକୁ ଫେରୁଥିବା କୁମିନଟାଙ୍ଗ ସେନାବାହିନୀ । ସେମାନେ ନିଶ୍ଚିତ ଯେ ନଦୀର ସ୍ରୋତ ଭେଦ କରି ଲାଲ ଫୌଜ ଦଖଲ କରି ପାରିବ ନାହିଁ ନାନ୍‌କିଂକୁ । କିନ୍ତୁ ଏକି ଦୃଶ୍ୟ । ରସମାନ ପୋଲ ଉପରେ ମାଡ଼ି ଆସୁଚି ମୁକ୍ତି ଫୌଜର ଟ୍ୟାଙ୍କ, ସାଂଜୁଆ ବାହିନୀ ଏବଂ ସୈନ୍ୟ । ପୋଲର ଖୁଣ୍ଟି ଆସିଲା କେଉଁଠୁ ? ଜୀବନକୁ ବାଜି ରଖିଥିବା ଚୀନା ମୁକ୍ତି ବାହିନୀର ସୈନ୍ୟମାନେ ଖୁଣ୍ଟି ହୋଇଠିଆ ହୋଇଛନ୍ତି । ସେମାନେ ପେଷି ହୋଇ ମୃତ୍ୟୁ ବରଣ କରୁଛନ୍ତି ଏବଂ ଜଣକର ମୃତ୍ୟୁ ପରେ ଆଉ ଜଣେ ଠିଆ ହୋଇ ଯାଉଛି । ସେମାନଙ୍କର ସମବେତ କଣ୍ଠରେ ଶୁଭୁଛି ଚୀନା ମୁକ୍ତି ବାହିନୀର ସଂଗୀତ ।

ଆମେ ଜାଣିଛୁ ଆମର ପଥ ଦୁର୍ଗମ ଜାଣିଛୁ ପଥର ଭୟ, ମୃତ୍ୟୁର ଭୟ ନାହିଁ ଯେ ଆମର ମୃତ୍ୟୁ କରିଛୁ ଜୟ ।

ନାନକିଂ ଛାଡ଼ି ଚାଲିଯିବା ପାଇଁ ସବୁ ବିନ୍ଧାଣୀଙ୍କୁ କୁହାଯାଇଛି । ସେମାନଙ୍କ ପାଇଁ ବିମାନବାହିନୀ ପ୍ରସ୍ତୁତ ହୋଇ ରହିଛି । ଯେଉଁମାନେ କିନ୍ତୁ ଏଇ ବିରାଟ ପରିବର୍ତ୍ତନକୁ ଦେଖିବା ପାଇଁ ସେଇଠି ରହିଯିବାର ନିଷ୍ପତ୍ତି କଲେ ସେମାନଙ୍କ ମଧ୍ୟରେ ଅଛନ୍ତି ଜଣେ ଓଡ଼ିଆ ଯୁବ ଅଧ୍ୟାପକ । ସେ ଦେଖୁଛନ୍ତି ବହୁଦିନ ପରେ ବୌଦ୍ଧଧର୍ମାବଲମ୍ବୀ ଚୀନ ଭୂଖଣ୍ଡରେ ବୁଦ୍ଧଙ୍କର ମହିମ୍ନ ବାଣୀ ମୂର୍ତ୍ତ ରୂପ ଧାରଣ କରୁଛି । ସଂଘ ପଦରେ ଶରଣ ଯାଇଛନ୍ତି ଚୀନା ଯୁବକ ଯୁବତୀ । ସଂଘର ବିଜୟ ଘଟୁଛି, ତାହାର ତୂର୍ଯ୍ୟନାଦ ଶୁଭୁଚି ପ୍ରାଚୀ ଗଗନରେ । ନୂଆ ଇତିହାସ ଲେଖା ହେଉଛି ।

ମଇ ୧୦, ୧୯୪୯ ମସିହା । ନାନକିଂ ସହରରେ ମୁକ୍ତି ଫୌଜର ପତାକା ଉଡ଼ିଲା ।

ତାପରେ ଯାହା ହେଲା ତାହା ଇତିହାସ । ପ୍ରବଳ ଯୁଦ୍ଧ ପରେ ଖାଂ କାଇସେକ ପଳାୟନ କଲେ ଫର୍ମୋଜାକୁ । ସାଂଘାଇ ସହର ଦଖଲ ପାଇଁ ଯେଉଁ ସଂଗ୍ରାମ ହେଲା ତାହା ସମଗ୍ର

ପୃଥିବୀକୁ ଚକିତ କଲା ଏବଂ ସାଂଘାଇକୁ ମୁକ୍ତ କରିଥିବା ସେନାପତି ପ୍ରବାଦ ପୁରୁଷରେ ପରିଣତ ହେଲେ ।

ନୂତନ ଚୀନ ଗଢ଼ା ଦେବ । ଅଫିମିଆ, ଅଶିକ୍ଷିତ, ଚୀନରେ ଗଢ଼ା ହେବ ନୂତନ ସଭ୍ୟତା, ସମାଜବାଦ । ଏଇ ଚୀନ ଦେଇଥିଲା ଦିନେ ପୃଥିବୀକୁ ଶିକ୍ଷାର ଆଲୋକ । ପୃଥିବୀର ଯେଉଁ ପାଞ୍ଚଟି ସ୍ଥାନରେ ସଭ୍ୟତାର ଉଦୟ ହୋଇଥିଲା ଚୀନ ସେମାନଙ୍କ ମଧ୍ୟରୁ ଅନ୍ୟତମ । ସେଇ ଚୀନ ଶୋଇ ପଡ଼ିଥିଲା ଅଫିମିଆ ନିଦରେ । ସେ ବର୍ତ୍ତମାନ ଜାଗ୍ରତ - ସୁପ୍ତ ସିଂହର ନିଦ ଭାଙ୍ଗିଛି ।

ସେମାନେ ଆସିଲେ ସମଗ୍ର ପୃଥିବୀରେ ବିକ୍ଷିପ୍ତ ହୋଇ ରହିଥିବା ଚୀନା ମାନେ ଆସିଥିଲେ ଚୀନା ବିପ୍ଳବରେ ଅଂଶ ଗ୍ରହଣ କରିବା ପାଇଁ । ସେମାନେ ଆଜି ଆସିଲେ ନୂତନ, ଚୀନ ଗଠନ କରିବା ପାଇଁ । ଇଂଲଣ୍ଡ, ଆମେରିକା, ୟୁରୋପରୁ ଚୀନା ତରୁଣ ତରୁଣୀମାନେ ଆସିଲେ । ନୂତନ ଚୀନ ଗଠିତ ହେଲା ।

କିନ୍ତୁ ବିପ୍ଳବ ଥରେ ସଂଘଠିତ ହୋଇଗଲେ ତାହା ଯଥେଷ୍ଟ ନୁହେଁ । ଏହାକୁ ଚାଲୁ ରଖିବାକୁ ପଡ଼ିବ । ଏହାର ଗତି ବନ୍ଦ ହୋଇଗଲେ ଏହା ଭିତରେ ଘୁଣ ଧରିବ । ଧରିଲା ମଧ୍ୟ । ମାଓ ସେ ତୁଂ ଘୋଷଣା କଲେ ପାର୍ଟି ଅଫିସ ମାନଙ୍କୁ ଘେରାଉ କର । ଯୁବକ ଯୁବତୀମାନେ ତୁମ ପାଇଁ ସଂସାରରେ ରହିଚି ଅଫୁରନ୍ତ ସମ୍ଭାବନା ବିପ୍ଳବକୁ ଚାଲୁ ରଖ ।

ମାଓ ସେ ତୁଂ ଅବଶ ହୋଇ ଯାଉଥିଲେ ବୟସର ଭାରାରେ । ତାଙ୍କର କହିବାର ଶକ୍ତି ନ ଥିଲା । ଏହାରି ସୁଯୋଗରେ ତାଙ୍କ ନାମରେ ସୃଷ୍ଟି ହେଲା କାହାଣୀ ଯାହା ଆଦୌ ସତ୍ୟ ନୁହେଁ । ମାଓ ସେ ତୁଂଙ୍କ ପ୍ରସିଦ୍ଧ ରେଡ଼ ବୁକ୍ ହେଉଛି ଯୁବକ ମାନଙ୍କ ପାଇଁ ଗାଇଡ଼ । ଏହା ବେଦମନ୍ତ୍ର ନୁହେଁ । ଅଲୌକିକ ଶକ୍ତି ଏହାର ନାହିଁ । ତଥାପି ଭର୍ତ୍ତି କରାଗଲା କାହାଣୀ । ମାଓ କିପରି ପହଁରି ଯାଉଛନ୍ତି ନଦୀ ନାଳ । ରେଡ୍ ବୁକ୍ କିପରି ମୂକକୁ ବାଚାଳ କରିଛି, ପଙ୍ଗୁ ଲଂଘି ଯାଇଛି ଗିରି ରେଡ୍ ବୁକ୍ ଧରି । ମାଓ ସେ ତୁଂ କଥା କହି ପାରୁ ନାହାନ୍ତି । ତାଙ୍କ ଓଠ ଉପରେ ହାତ ରଖି ତାଙ୍କର ପତ୍ନୀ ବଖାଣୁଛନ୍ତି ମାଓ ଙ୍କର ବାଣୀ । ଓଠରେ ହାତ ରଖି ପ୍ରେମ ନିବେଦନ କରା ଯାଇପାରେ, ବିପ୍ଳବର ବୟାନ ସମ୍ଭବ ନୁହେଁ । ମାଓ ହୋଇ ଯାଇଛନ୍ତି ବନ୍ଦୀ, ତାଙ୍କ ଚାରିପଟରେ ଘେରି ରହିଛନ୍ତି ଗ୍ୟାଙ୍ଗ ଅଫ୍ ଫୋ ର । ତାଙ୍କର ସ୍ତ୍ରୀ ତା'ର ନେତ୍ରୀ । ବିପ୍ଳବର ନିର୍ଯ୍ୟାସ ସରି ଯାଉଛି । ବର୍ତ୍ତମାନ କ୍ଷମତା ପାଇଁ ଷଡ଼ଯନ୍ତ୍ର ।

ମାଓଯୁବକ ମାନଙ୍କୁ ଡାକରା ଦେଲେ ପାର୍ଟିର ସ୍ଥାଣୁତା ଭାଙ୍ଗିବା ପାଇଁ । ଷ୍ଟର୍ମ ଦି ପାର୍ଟି ହେଡ୍‌କ୍ୱାଟର୍ସ । କିନ୍ତୁ ଜନ୍ମ ଲାଭ କଲା ତଥାକଥିତ ସାଂସ୍କୃତିକ ବିପ୍ଳବ ସେଇ ନାଁରେ । କି ଭୟାବହ ପରିସ୍ଥିତି । ଶ୍ରେଣୀ ସଚେତନତା ନାଁରେ ବିଶିଷ୍ଟ ନେତାମାନଙ୍କୁ ବିଷ୍ଠାହାଣ୍ଡି ବୋହିବାକୁ ପଡ଼ିଲା । ଚାଭ ଏନ୍ ଲାଇ, ଲିଓ ସାଓ ଚୀ ଏହାର ଶିକାର ହେଲେ । ବିଶିଷ୍ଟ ବୈଜ୍ଞାନିକମାନଙ୍କୁ ପଠାଇ ଦିଆଗଲା ଗ୍ରାମମାନଙ୍କୁ ଚାଷ କରିବା ପାଇଁ । ଇଂରାଜୀ ଭାଷା ଉଠାଇ ଦିଆଗଲା । ଏ ସବୁ ଘଟିଲା ମାଓଙ୍କ ନାମରେ । ଚୀନ ପଳେଇଗଲା କୋଡ଼ିଏ ବର୍ଷ ପଛକୁ । କିନ୍ତୁ ଗୋଟିଏ କଥା ହେଲା , ତା ହେଉଚି ବାବୁଆନି ସଭ୍ୟତା ଉପରେ ବିରାଟ ଧକ୍କା ଲାଗିଲା । ତାହାହିଁ ସାଂସ୍କୃତିକ

ବିପ୍ଳବର ସବୁ ଠାରୁ ଆସ୍ତିମୂଳକ ଦିଗ । କିନ୍ତୁ ଚୀନା ସମାଜର, ଚୀନା ସଂସ୍କୃତିର ଯେଉଁ ବିପୁଳ କ୍ଷତି ହେଲା ତାହା କଳନା କରାଯାଇ ପାରିବ ନାହିଁ । ସୌଭାଗ୍ୟବଶତଃ ଏହା ଆଉ ବେଶୀ କ୍ଷତି କରି ପାରି ନାହିଁ । ଜନସାଧାରଣଙ୍କ ଭିତରେ ତୀବ୍ର ପ୍ରତିରୋଧ ଦେଖାଦେଇଛି ।

ମାଓ ସେ ତୁଂ ଆଉ ନାହାନ୍ତି । ସେ ଥିଲା ସେ ଥିଲା ବେଳେ ଯେଉଁମାନେ ତାଙ୍କର ସ୍ତାବକ ଥିଲେ ସେଇମାନେ କାଲି ହୁଏତ ତାଙ୍କ ବିରୁଦ୍ଧରେ ଲେଖିବେ, କହିବେ, ଏଥିରେ ବିସ୍ମିତ ହେବାର କିଛି ନାହିଁ । ପ୍ରତି ଦେଶରେ ଯୁଗେ ଯୁଗେ ଏଇଭଳି ବ୍ୟକ୍ତିମାନେ ଦେଖା ଦେଇଛନ୍ତି । ମାଓ ସେ ତୁଂ ତାହାର ବ୍ୟତିକ୍ରମ ହେବେ ନାହିଁ । ମଲା ପରେ "ଗବେଷଣା" ହୋଇ ଅନେକ ତଥ୍ୟ ପ୍ରକାଶିତ ହେବ କାନକୁ ଆଖିକୁ ରୋଚକ ହେଲା ଭଳି । କିନ୍ତୁ ସମସ୍ତ ଭୁଲ୍ ତ୍ରୁଟି ସତ୍ତ୍ୱେ ମାଓ ହେଉଛନ୍ତି ମାଓ, ଅନନ୍ୟ । ସେ ଦେବତା ନୁହନ୍ତି, ସେ ମଣିଷ । ତାଙ୍କର ତ୍ରୁଟି ରହିଛି, ରହିଥିବ । କିନ୍ତୁ ତାକୁଇ ଆଦରି ବସିବା ହେଉଛି ତାଙ୍କର ଐତିହାସିକ ଭୂମିକାକୁ ନ୍ୟୂନ କରିବା । ଲୋକସଂଖ୍ୟାରେ ଚୀନ ହେଉଛି ପୃଥିବୀର ସବୁଠାରୁ ବଡ଼ ଦେଶ । କନଫୁସିଅସ୍‌ଙ୍କର ଏଇ ଦେଶର ଜନତାକୁ ସାମ୍ରାଜ୍ୟବାଦୀ ମାନେ ଅଫିମ ଖୁଆଇ ଶୁଆଇ ପକାଇଥିଲେ । ସନ୍‌ୟାତ୍ ସେନ, ମାଓ ସେ ତୁଂ ସେମାନଙ୍କୁ ମହାମନ୍ତ୍ରରେ ଦୀକ୍ଷିତ କଲେ । ଉଠ, ଜାଗ, ହୋୟାଂ ହୋ ନଦୀର ଗତି ଫେରିଲା । ଚୀନା ଜନସାଧାରଣ ଦୀର୍ଘ ଦିନ ଧରି ମୁକ୍ତି ପାଇଁ ଚିନ୍ତା ସଂଗ୍ରାମରେ ଲିପ୍ତ ରହିଲେ । ଇତିହାସରେ ତାହାର ପଟାନ୍ତର ନାହିଁ ।

ମାଓ ସେ ତୁଂ ସେହି ବିପ୍ଳବର ମହାନାୟକ ।



# ତିନି ପତି ତାସଖେଳାଳୀ ତିନି ବାହିନୀର ସେନାଧକ୍ଷ

**ଚୀ**ନ ପିପୁଲ୍‌ସ୍ ଲିବରେସନ୍ ଆର୍ମିର ସେନାଧକ୍ଷ, ବିଶ୍ୱର ପ୍ରବାଦ ପୁରୁଷ ଜେନେରାଲ ଚୁଟେଙ୍କର ପରିଣତ ବୟସରେ ପରଲୋକ ହୋଇଯାଇଛି । ବିପ୍ଳବ ଅନେକ ସମୟରେ ନିଜର ଶିଶୁକୁ ଖାଇଯାଏ - ଏଇ ବାଣୀ ପ୍ରମାଣତି ହୋଇଗଲା ଚୁଟେଙ୍କ ଜୀବନରେ । ଯେଉଁ ଚୀନା ମହାଦେଶର ଅଫିମିଆ ମଣିଷକୁ ସେ ଦିନେ 'ଉତିଷ୍ଠତ ଜାଗ୍ରତ' ମହାମନ୍ତ୍ରରେ ଉଦ୍‌ବୁଦ୍ଧ କରିଥିଲେ, ସେଇ ବିପ୍ଳବର ଏକ ବିକାର, ମହାନାୟକ ଚୁଟେଙ୍କର ଜୀବନକୁ ସଂକ୍ଷିପ୍ତ କରିଦେଲା ।

ଜେନେରାଲ ଚୁଟେ ନିଜେ ଥିଲେ ଗୁଲିଖିଆ । ଥିଲେ ତିନି ପତି ତାସ ଖେଳା ଜୁଆଡି, କିନ୍ତୁ ଦିନେ ବିପ୍ଳବର ମହାମନ୍ତ୍ର ତାଙ୍କର ଜୀବନକୁ ଓଲଟ ପାଲଟ କରିଦେଲା । ଗୁଲିଖିଆ ଚୁଟେ ଗୁଲିଖିଆ ଚୁଟେ ପରିଣତରେ ହେଲେ ଚୀନା ଜନସାଧାରଣଙ୍କର ମୁକ୍ତି ପାଇଁ । କଠୋର ସଂଗ୍ରାମ ତାଙ୍କର ଜୀବନକୁ ରୂପାନ୍ତରିତ କରି ଦେଇଥିଲା ।

ମାଓ-ତୁ-ମାଓ ସେ ତୁଂ ଏବଂ ଚୁଟେ ଏଇ ଦୁଇ ଜଣଙ୍କର ସହଯୋଦ୍ଧୃତ୍ୱ ଚୀନା ଜାତିର ଇତିହାସରେ ନୂତନ ଦିଗନ୍ତ ଉନ୍ମୋଚିତ କଲା । ଚୀନା କମ୍ୟୁନିଷ୍ଟ ପାର୍ଟି ଲି-ଲି-ସାନ୍‌ର ଦୁଃସାହାସିକ ନୀତି ପରିହାର କରି ଫେରିଥିଲା, ମାଓ-ତୁଙ୍କ ନେତୃତ୍ୱରେ ନୂତନ ସଂଗ୍ରାମ ପାଇଁ । ଗ୍ରାମରେ ଗରିଲା ଯୁଦ୍ଧ ଏବଂ ସହରରେ ସଶସ୍ତ୍ର ଅଭ୍ୟୁତ୍ଥାନର ନୀତି ଥିଲା ମାଓ ତୁ ଙ୍କର ନୀତି । ଚୀନା ଥିଲା ଏକ ସାମନ୍ତବାଦୀ ରାଜ୍ୟ । ଗ୍ରାମାଞ୍ଚଳରେ ଏବଂ ବିଶେଷତଃ ସୀମାନ୍ତରେ ଶାସନ ଥିଲା ଦୁର୍ବଳ । ଏଣେ ସାମନ୍ତବାଦୀ ରାଷ୍ଟ୍ର କିନ୍ତୁ ତେଣେ ଚୀନା ଜାତୀୟ ବୁର୍ଜୁଆର ବିକାଶ ଫଳରେ ଗଢ଼ି ଉଠିଛି ବିରାଟ ବିରାଟ ସହର ଏବଂ ଏହା ଜନ୍ମ ଦେଇଛି ବିଶାଳ ଶ୍ରମଜୀବି ମଣିଷକୁ । ଆଘାତ ହାଣିବାକୁ ପଡ଼ିବ ଶତ୍ରୁ ଉପରେ, ସୀମାନ୍ତରେ ହିଁ ଗଢ଼ିବାକୁ ହେବ ସରକାର । ଚୀନା ଚାଷୀ ହେବ ତାର ଆଗ ଛାମୁଆ । ତେଣେ ବିଶାଳ ଚୀନା ସର୍ବହରା ଗଢ଼ି ତୋଳିବ ସହରମାନଙ୍କରେ ବ୍ୟାପକ ଜନ ଆନ୍ଦୋଳନ ଏବଂ ହାତରେ ଧରିବ ହତିଆର । ଚାଲ, ଉଠ, ଜାଗ । ମାଓ ଏବଂ ଚୁଙ୍କ ନେତୃତ୍ୱରେ ଚାଲିଲେ ଲକ୍ଷାଧିକ ଜନତା ଦକ୍ଷିଣ ଚୀନରୁ ଉତ୍ତରକୁ । ଆଗରେ ରହିଛି କୋଡ଼ିଏରୁ ଅଧିକ ବିଶାଳ ବିଶାଳ ଖରସ୍ରୋତା ନଦୀ, ରହିଛି ଦୁରାରୋଧ ସତରଟି ପର୍ବତମାଳା । ଦୁଇ ହଜାରରୁ ଉର୍ଦ୍ଧ୍ୱ କିଲୋମିଟର ରାସ୍ତା । ସେ ଯାତ୍ରାର ପଟାନ୍ତର ପୃଥିବୀ ଇତିହାସରେ ନାହିଁ । 'ଲଙ୍ଗ ମାର୍ଚ୍ଚ' ନାମରେ ତାହା ଖ୍ୟାତ । ଏହା ହିଁ

ଆଣିଦେଲା ଚୁଟେଙ୍କୁ ଆନ୍ତର୍ଜାତିକ ଖ୍ୟାତି । ପୃଥିବୀ ତଟସ୍ଥ ହୋଇ ଦେଖୁଥିଲା ଏହି ବିରାଟ ଅଭିଯାତ୍ରୀ ଦଳକୁ । ସେମାନେ ଚାଲିଛନ୍ତି । ଶ୍ରତ୍ରୁ ସୈନ୍ୟମାନଙ୍କର ଅବରୋଧ କରି, ଶତ୍ରୁ ସୈନ୍ୟର ଆକ୍ରମଣକୁ ପ୍ରତିହତ କରି କରି ସେମାନେ ଚାଲିଛନ୍ତି, ସେଇଥିରେ ପାଠପଢ଼ା ଚାଲିଛି, ଚାଲିଛି ତାତ୍ତ୍ୱିକ ତାଲିମ । ଗୁଲିଖିଆ ଚୁଟେ ଶିଖିଛନ୍ତି ରଣକୌଶଳ । ପାକଳ ହୋଇଛି ଆପଣାର ସାମରିକ ବୁଦ୍ଧି ଏବଂ ପାରଦର୍ଶିତା । ଚୁ ଆପଣାର ପୁତ୍ରକୁ ଛାଡ଼ି ଚାଲି ଯାଇଛନ୍ତି । କେଉଁଠି ହଜିଗଲା ତାଙ୍କର ବିଶିକେମନ ସେଇ ଜନ ସମୁଦ୍ର ଭିତରେ, ସେଇ ଯୁଦ୍ଧ କ୍ଷେତ୍ର ଭିତରେ । ପଛକୁ ଫେରିବାର ବାଟ ନାହିଁ । ଆଗକୁ ଯିବାକୁ ହେବ । ଚାଲ, ଚାଲ, ଚରୈବତି, ଚରୈବତି, ଚରୈବତି ।

ପରିଶେଷରେ, ଯେଉଁମାନେ ବଞ୍ଚିଲେ ସେମାନେ ପହଞ୍ଚିଲେ ୟେନାନ୍ ପ୍ରଦେଶରେ । ସେଇଠି 'ଚାରିକଣିଆ ରାଷ୍ଟ୍ର' (Four cornered State) ତିଆରି ହେଲା । ଏଇଠି ନୂଆ ରାଷ୍ଟ୍ରର ମୂଳଦୁଆଁ ପଡ଼ିଲା । ଏଇଠି ତିଆରି ହେଲା ମୁକ୍ତି ସଂଗ୍ରାମ ପାଇଁ ନୂତନ ରଣସଜ୍ଜା । ଏହାକୁ ଦେଖିବାକୁ ଆସିଲେ ଦେଶ ବିଦେଶରୁ ବହୁ ବ୍ୟକ୍ତି । ସେମାନଙ୍କ ଭିତରେ ଯେଉଁ ମାର୍କିନ ଯୁକ୍ତରାଷ୍ଟ୍ରର ବିରୁଦ୍ଧରେ ସଂଗ୍ରାମ ଚାଲିଥିଲା, ସେଇ ମାର୍କିନ୍ ଯୁକ୍ତରାଷ୍ଟ୍ରର ଆନା ଲୁଇ ଷ୍ଟ୍ରଙ୍ଗ, ଏଡ଼ଗାର ସ୍ନୋ, ଆଇ. ଇପିଷ୍ଟିକ । ଏଇ ନୂତନ ପରୀକ୍ଷା ଉପରେ ସେମାନଙ୍କର ପୁସ୍ତକାବଳୀ ଆଣିଦେଲା ମାଓ ଚୁ କୁ ଆନ୍ତର୍ଜାତିକ ଖ୍ୟାତି ଓ ସ୍ୱୀକୃତି ।

ଆରମ୍ଭ ହେଲା ଜାପାନ ଆକ୍ରମଣ ବିରୁଦ୍ଧରେ ଚୀନା ଜନତାର ମିଳିତ ସଂଗ୍ରାମ । ଫାସିବାଦୀ ଜାପାନ ଚାହୁଁଥିଲା ସମଗ୍ର ଏସିଆ ଉପରେ କର୍ତ୍ତୃତ୍ୱ ଜାହିର କରିବା ପାଇଁ । ପୃଥିବୀକୁ ସାମ୍ରାଜ୍ୟବାଦୀମାନେ ବାଣ୍ଟି ନେଇଥିଲେ । ବର୍ତ୍ତମାନ ଫାସିବାଦୀ ମାନେ ତାକୁ ଆଉଥରେ ବଣ୍ଟୁଆରା କରିବାକୁ ଚାହାନ୍ତି । ଫାସିବାଦ ସାମ୍ରାଜ୍ୟବାଦ ଠାରୁ ବେଶୀ ଭୟାନକ । ତେଣୁ ଫାସିବାଦୀ ବିରୁଦ୍ଧରେ ସଂଗ୍ରାମ ପାଇଁ ସାମ୍ରାଜ୍ୟବାଦୀ ମାନଙ୍କ ସହ ମିଳିତ ହେବା ସଠିକ୍ ନୀତି । ତାହାରି ଭିତରେ ଗଢ଼ି ଉଠିବ ସାମ୍ୟବାଦୀ ଶ୍ରମଜୀବି ମଣିଷର ନିଜସ୍ୱ ଶକ୍ତି । ସାମ୍ରାଜ୍ୟବାଦୀମାନେ ତାକୁ ବନ୍ଦ କରି ପାରିବେ ନାହିଁ ।

ଆରମ୍ଭ ହେଲା ଫାସିବାଦୀ ଜାପାନ ବିରୁଦ୍ଧରେ ମିଳିତ ସଂଗ୍ରାମ । ଏବଂ ସେଇ ଭିତରେ ଗଢ଼ି ଉଠିଲା ପ୍ରସିଦ୍ଧ ଏଇଟଥ୍ ରୁଟ୍ ଆର୍ମି (Eighth Rout Army) ଯାହା ପରବର୍ତ୍ତୀ କାଳରେ ପିପୁଲସ୍ ଲିବରେସନ ଆର୍ମିରେ ପରିଣତ ହେଲା । ଦୁର୍ଦ୍ଧର୍ଷ ସଂଗ୍ରାମରେ ଲୁହା ଇସ୍ପାତ୍‌ରେ ପରିଣତ ହେଲା । ଚୁ ଧୀରେ ଧୀରେ ପ୍ରବାଦ ପୁରୁଷରେ ପରିଣତ ହେଲେଣି । ସେ ବର୍ତ୍ତମାନ କୁଶଳୀ ସେନାଧ୍ୟକ୍ଷ । କୌଣସି ସାମରିକ କଲେଜରେ ଟ୍ରେନିଂ ନେଇ ନାହାନ୍ତି । ଜୀବନର ଅଭିଜ୍ଞତାରୁ ସେ ସଂଗ୍ରହ କରିଛନ୍ତି ଆପଣାର ରଣ କୌଶଳ, ରଣନୀତି ।

ଜାପାନ ପରାସ୍ତ ହୋଇଛି । କିନ୍ତୁ ଚୀନା ଜନତାର ସଂଗ୍ରାମ ସରିନାହିଁ । ବର୍ତ୍ତମାନ ଶତ୍ରୁ ଉପରେ ଶେଷ ଆଘାତ ହାଣିବାକୁ ହେବ । ଚୁ ପ୍ରସ୍ତୁତ କଲେ ଆପଣାର ରଣନୀତି ଓ ରଣକୌଶଳ । ଆର ପଟରେ ଚ୍ୟାଂ କାଇଶେକ । ସମଗ୍ର ପୃଥିବୀ ପ୍ରତିକ୍ରିୟା ତା ହାତରେ ଟେକି ଦେଇଛି ଅସୁମାରି ଆଧୁନିକ ଯୁଦ୍ଧ ସରଞ୍ଜାମ । ଆଉ ଚୁ ଙ୍କ ହାତରେ ? କିଛି ବିବ୍ରତ

ହେବାର ନାହିଁ, ତମର ଅସ୍ତ୍ର ରହିଛି ସେଇ ଶତ୍ରୁ ଶିବିରରେ । ତାକୁ ଦଖଲ କର ଏବଂ ଅସ୍ତ୍ର ସଂଗ୍ରହ କର । ଚୀନମୁକ୍ତି ବାହିନୀ ମାଡ଼ି ଚାଲିଛନ୍ତି । ସହର ପରେ ସହର, ଗ୍ରାମ ପରେ ଗ୍ରାମ ଭୁଷୁଡ଼ି ପଡୁଚି ଶତ୍ରୁ ହାତରୁ । ମୁକ୍ତ ଅଞ୍ଚଳରେ ତୁରନ୍ତ ନୂତନ ସମାଜର ପରୀକ୍ଷା ଆରମ୍ଭ ହୋଇଛି । ଏହା କରିବା ପାଇଁ ବିଶ୍ୱ ବିଦ୍ୟାଳୟ ଛାଡ଼ି ଆସିଛନ୍ତି ତରୁଣ ତରୁଣୀ ଦଳ, ଆସିଛନ୍ତି ବିଭିନ୍ନ ଦେଶରୁ ।

ମଇ ୧୦ ତାରିଖ ପୂର୍ବରୁ (୧୯୪୯) ନାନ୍‌କିଂ (ଚୀନର ତତ୍‌କାଳୀନ ରାଜଧାନୀ) ମୁକ୍ତ ହେବ । ଚୀନା ଜନତା ଏଇ ବଜ୍ର ଶପଥ ନେଇଛି । ଅନ୍ୟ ଦିଗରେ ଚ୍ୟାଂ କାଇଶେକ୍ ଏବଂ ତାର ସୈନ୍ୟ ବାହିନୀର ପ୍ରତିଜ୍ଞା ଏହାକୁ ଭଣ୍ଡୁର କରିବା ପାଇଁ । ସବୁ ନଦୀ ପୋଲକୁ ଉଡ଼ାଇ ଦିଆ ଯାଇଛି । କିନ୍ତୁ ଦେଶ ପ୍ରେମ ଆଗରେ ସବୁ ହାର ମାନିଛି । ଚୀନା ଯୁବକ ଯୁବତୀ ମାନେ ନିଜେ ଖୁଣ୍ଟ ହୋଇ ଛିଡ଼ା ହୋଇ ଯାଇଛନ୍ତି ୟାଙ୍ଗ ସି ବକ୍ଷରେ । ତାଙ୍କ ଉପରେ ଚଢ଼ି ଚାଲିଛି ଟ୍ୟାଙ୍କ ବାହିନୀ, କମାଣ ବାହିନୀ । ୟାଂସି ପାଣି ରକ୍ତାକ୍ତ ହୋଇଛି । ସେଥିକି ଫେରି ଅନେଇବାକୁ ସମୟ ନାହିଁ । ମନ୍ତ୍ର ବା ସାଧୟେତ୍, ଶରୀରଂ ବା ପାତୟେତ୍ । ସମଗ୍ର ପୃଥିବୀ ସ୍ତମ୍ଭିତ ହୋଇ ଅନେଇଛି ।

ଚୀନା ଭୂଖଣ୍ଡ ମୁକ୍ତ ହୋଇଛି । ସାଂଘାଇ ହେଉଛି ଶତ୍ରୁ ପକ୍ଷର ଶେଷ ଘାଟି । ଏଇଠି ମାର୍ଶାଲ ଚୁଟେଙ୍କର ରଣ କୌଶଳର ଅପୂର୍ବ ପରାକାଷ୍ଠା । ସାଂଘାଇକୁ ଘେରିଯାଅ ଚାରିପଟରୁ । ତାପରେ ଷଣ୍ଢଆସି ଆକ୍ରମଣ କର । ବିଜୟ ସୁନିଶ୍ଚିତ ।

ଚୀନା ଆକାଶରେ ବଜ୍ର ଭଳି ପ୍ରଭାତର ଉଦୟ ହୋଇଛି । ଚୁ ବର୍ତ୍ତମାନ ବ୍ୟାପୃତ ଆପଣାର ସେନା ବାହିନୀକୁ ସଂଗଠିତ କରିବାରେ ଲୋକ ହିତକର ଦଳ କଲ୍ୟାଣ କାର୍ଯ୍ୟରେ ।

ଚୀନା ଆକାଶରେ ପୁଣି ଘୋଟିଛି କୁଜ୍ଝଟିକା । ସାଂସ୍କୃତିକ ବିପ୍ଳବ । ଚୁ ଙ୍କର ବୟସ ହୋଇ ଯାଇଛି । ଆଉ ଶାରୀରିକ ଶକ୍ତି ନାହିଁ । ଅପମାନ ସହ୍ୟ କରି ଯାଉଛନ୍ତି ସେ ଏଇ କୁଜ୍ଝଟିକା ସାମୟିକ । ଏହା ଅପସରି ଯିବ । ଆସିବ ପୁଣି ସେଇ ସକାଳ, ଯାହାର ଆଗମନ ପାଇଁ ସେ ଆପଣାର ଜୀବନକୁ ତିଳତିଳ କରି ସାରିଛନ୍ତି ଏବଂ ପାଲଟି ଯାଇଛନ୍ତି ଇତିହାସ ହୋଇ ।



# ମଥୁରାନନ୍ଦ ସାହୁଙ୍କ ମହାପ୍ରୟାଣ

ମଥୁରାନନ୍ଦ ବାବୁ ଚାଲିଗଲେ । ଯିବାକୁ ତ ହେବ ସମସ୍ତଙ୍କୁ ଦିନେ ଏହି ଧରା ପୃଷ୍ଠରୁ । ଏହା ହେଉଛି ବିଧିର ବିଧାନ । ସେଥିରେ ବୈଚିତ୍ର୍ୟ କଣ ? କିନ୍ତୁ ପ୍ରତ୍ୟେକ ମୃତ୍ୟୁର ବୈଚିତ୍ର୍ୟ ଅଛି, ଯଦିଓ ସାଧାରଣ ଭାବେ ମୃତ୍ୟୁର ପ୍ରବାହ ଚିରନ୍ତନ । ମଥୁରାନନ୍ଦ ସାହୁଙ୍କ ବୟସ ୭୮ ବର୍ଷ ହୋଇଥିଲା । ସମସାମୟିକ ଅନେକ ହଜି ଗଲେଣି । ଯେଉଁମାନେ ଅଛନ୍ତି ପ୍ରାୟ ସମସ୍ତେ ଅଚଳ ଅବସ୍ଥାରେ, ବାଡ଼ି ଧରି, ନଚେତ ହାତ ଧରି ଯିବାର ଅବସ୍ଥା । ସେ ଆଉ ରହନ୍ତେ କାହିଁକି ?

ମଥୁରାନନ୍ଦ ସାହୁ ଖୋଦ୍ କଟକୀ । ଅଲିସା ବଜାରରେ ଘର । ହାମ୍ ବସ୍ତିର ଲୋକ । ପିଲାଦିନେ କୁସ୍ତି ଯୁଦ୍ଧରେ ପ୍ରବୀଣ ଥିଲେ । ବଳିଷ୍ଠ ମାଂସପେଶୀ, ଟାଣ ଦିହ । ସେଇ ଯୋଗୁଁ ପୁଲିସର ଲାଠି ମାଡ଼କୁ ସେ ଅକ୍ଳେଶରେ ସହି ନେଉଥିଲେ । ନେତାମାନଙ୍କର ପ୍ରତିରକ୍ଷା ଦାୟିତ୍ୱ ଥିଲା ତାଙ୍କ ଉପରେ । ସେ ନିର୍ଭୀକ ଭାବରେ ତୁଲାଇଛନ୍ତି ତାକୁ ।

ଇମିତି ଅନେକ ଲୋକ ଅଛନ୍ତି ଯେଉଁମାନେ ଜୀବନ ଯାକ ସିଡ଼ି ହୋଇଛନ୍ତି । ସେମାନଙ୍କୁ ସିଡ଼ି କରି ଅନ୍ୟମାନେ ଉପରକୁ ଉଠିଛନ୍ତି । କିନ୍ତୁ ସିଡ଼ି ରହି ଯାଇଛି ସେଇପରି । ସେମାନଙ୍କର ନାମ ପ୍ରତିଷ୍ଠା, ସମ୍ମାନ, ଭୂଷଣର ଖତିଆନରେ ରହିନାହିଁ । କିନ୍ତୁ ସେମାନେ ତାକୁ ଖାତିର କରି ନାହାନ୍ତି । ଲଢ଼ିବା ଆମର ଧର୍ମ, ଆମେ ଲଢ଼ି ଚାଲିଥିଲୁ । ଚାଲିବୁ । କିଏ କ'ଣ ହେଲା, ନ ହେଲା ସେଥିପାଇଁ ଆମର ଖାତିର ନାହିଁ, କି ଈର୍ଷା ନାହିଁ । ମଥୁରାନନ୍ଦ ବାବୁ ସେମାନଙ୍କ ମଧ୍ୟରୁ ଜଣେ ।

ସେଇଯୋଗୁଁ ତାଙ୍କର ସ୍ମୃତି ପଖାଳି ବାଷ୍ପରୁଦ୍ଧ କଣ୍ଠରେ ତାଙ୍କର ଅନ୍ୟତମ ସହଯୋଦ୍ଧା ଏବଂ ନେତା ବିଶ୍ୱନାଥ ପଣ୍ଡିତଙ୍କୁ କହିବାର ଶୁଣାଗଲା । "ମଥୁରି, ତୁ ଆଜି ଚାଲିଗଲୁ । ତୋ ପାଇଁ ନେତା ହେଲେ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ନିଶାମଣି ଖୁଣ୍ଟିଆ, ବାଙ୍କ ବିହାରୀ ଦାସ ଏବଂ ବିଶ୍ୱନାଥ ପଣ୍ଡିତ ତଥା ଆହୁରି ଅନେକ । କିନ୍ତୁ ପ୍ରତିବଦଳରେ ତୁ କଣ ପାଇଲୁ ?"

ରେଭେନ୍ସା କଲେଜରେ ଛାତ୍ର ଥିବା ବେଳେ ମଥୁରି ସାହୁ କର୍ଣ୍ଣରେ, ବୁକୁରେ ନିନାଦିତ ହୋଇଥିଲା ମୁକ୍ତି ସଂଗ୍ରାମର ଦୁନ୍ଦୁଭି । ଗୁପ୍ତରେ ସଂଗଠନ କରିବା ଥିଲା ତାଙ୍କର ସଉକ । ନିଜର ପବ୍ଲିସିଟି ଓ ପ୍ରଚାର ତାଙ୍କର ସ୍ୱାଭାବିକ ମତ ବିରୁଦ୍ଧରେ ଥିଲା । ସେ କଦାପି ତାହା ଲୋଡ଼ି ନାହାନ୍ତି ।

୧୯୪୨ ମସିହାରେ ଭାରତ ଛାଡ଼ ଆନ୍ଦୋଳନ ସମୟରେ ସେ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କୁ ତାଙ୍କର ଅଲିଶାବଜାର ଘରେ ଆଶ୍ରୟ ଦେଇଥିଲେ । ଅଲିଶା ବଜାରର ସେଇ

ଅମୁହାଁ ଗଳି ମୁଣ୍ଡରେ ଏକ ନାଲି ରଙ୍ଗର ଘର । ପଳାତକ ସୁରେନ୍ଦ୍ର  ନାଥ ଦ୍ୱିବେଦୀ ସେଇ ଘରେ ସେଇଠାରୁ ପ୍ରଚାର ପତ୍ର ପ୍ରସ୍ତୁତ କରୁଥିଲେ ଏବଂ ତାହା ବଣ୍ଟନ କରାଯାଉଥିଲା ବିଭିନ୍ନ ସ୍ଥାନରେ,  ଏକ ଜନ ଆନ୍ଦୋଳନ ଗଢ଼ି ତୋଳିବା ପାଇଁ । ମଥୁରାନନ୍ଦ ନିଶାମଣି ଖୁଣ୍ଟିଆ, ବିଶ୍ୱନାଥ ପଣ୍ଡିତ ଏବଂ ବାଙ୍କ ବିହାରୀ ଦାସ ପ୍ରମୁଖଙ୍କ ସହିତ ଏହାର ଦାୟିତ୍ୱ ବହନ କରିଥିଲେ । ଏକ ବିଶାଳ ଗଣ ଭିତ୍ତି ବିନା ଏହି କାର୍ଯ୍ୟ ବେଶୀ ଦିନ ଚାଲି ପାରି ନ ଥିଲା ।  ସୁରେନ୍ଦ୍ର ନାଥ ଦ୍ୱିବେଦୀ ଅକ୍ଟୋବର ୧ ୧ ତାରିଖରେ ଗିରଫ ହୁଅନ୍ତି ଏବଂ ତା ପରଦିନ ମଥୁରାନନ୍ଦ ଓ ତାଙ୍କ ବାପାଙ୍କୁ ଗିରଫ କରି ନିଆଯାଏ ।

ମଥୁରାନନ୍ଦ ବେଶ୍ ବଳଶାଳୀ ବ୍ୟକ୍ତିଥିଲେ । କଟକ ଜେଲରେ ବନ୍ଦୀ ପ୍ରଖ୍ୟାତ ନାରୀ ନେତ୍ରୀ ମାଳତୀ ଚୌଧୁରୀଙ୍କୁ ରକ୍ଷା କରିବାକୁ ଯାଇ ସେ ୱାର୍ଡରକୁ ମାରି ଖଣ୍ଡେ ଦୂରକୁ ଫିଙ୍ଗି ଦେଇଥିଲେ । ଏଥିପାଇଁ ତାଙ୍କୁ  କଠୋର ଦଣ୍ଡ ଭୋଗ କରିବାକୁ ପଡ଼ିଥିଲା ।

ତା ପରେ ବ୍ରହ୍ମପୁର ଜେଲ୍ । ଜେଲ ଭିତରେ ସାଧାରଣତନ୍ତ୍ର ଦିବସ ପାଳନ କରାଯିବ ଏବଂ ଜାତୀୟ ପତାକାକୁ ଉଡ଼ାଯିବ । ପତାକାକୁ ଓହ୍ଲାଇ ଦେବା ପାଇଁ ହିଂସ୍ର  ୱାର୍ଡରମାନେ ଚେଷ୍ଟା କରିବେ । କିନ୍ତୁ ପତାକାକୁ ରକ୍ଷା କରାଯିବ,  ଯେ କୌଣସି ମୂଲ୍ୟ ଦେଇ । ପତାକାକୁ ରକ୍ଷା କରିବାର ଦାୟିତ୍ୱ ପଡ଼ିଥିଲା ମଥୁରାନନ୍ଦଙ୍କ ଉପରେ । ପ୍ରଚଣ୍ଡ ଲାଠିମାଡ଼କୁ ଉପେକ୍ଷା କରି ପତାକାକୁ ଉତ୍ତୋଳିତ କରି ରଖିଲେ ସେ । ଲାଠିମାଡ଼ରେ ମୁଣ୍ଡ ଫାଟିଗଲା, ସେ ଅଚେତ ହୋଇଗଲେ ବହୁ  ଦିନ ଧରି । ନେତାମାନଙ୍କୁ ସୁରକ୍ଷା  ଦେବାର ଦାୟିତ୍ୱକୁ ମଥୁରାନନ୍ଦ ଏଇଥର ନୁହେଁ, ବହୁବାର ନେଇଛନ୍ତି । ସବୁ ଅତ୍ୟାଚାର ବିରୁଦ୍ଧରେ ସେ ଠିଆ ହୋଇଥିଲେ ମହାମେରୁ ପରି ।

ପରିଶେଷରେ ସେ ଜେଲରୁ ଖଲାସ ହେଲେ । ଭାରତ ବି ସ୍ୱାଧୀନ ହେଲା, କିନ୍ତୁ ମଥୁରାନନ୍ଦ ? ସେ ଆଉ ଟିକଟ ପାଇଁ ଭତ୍ତା ପାଇଁ ଚାଲିଥିବା ହିଂସ୍ର ପ୍ରତିଯୋଗିତାରୁ ଦୂରେଇ ଗଲେ । ପରେ ସୋସାଲିଷ୍ଟ ପାର୍ଟିରେ ସେ ଯୋଗ ଦିଅନ୍ତି । କିନ୍ତୁ ରହିଯାଆନ୍ତି ସେଇଠି, ନିରଳସ କର୍ମୀ ପରି । ନେତୃତ୍ୱ ପାଇଁ ଯୁଦ୍ଧରେ ମଧ ସେ ଯୋଗ ଦେଇ ନାହାନ୍ତି ।

ଏଇ ଭଳି ଏକ ମଣିଷ ବିଦାୟ ନେଇଛନ୍ତି ଆମ ଭିତରୁ । ଇତିହାସ କେବଳ ସେନାପତି ମାନଙ୍କୁ, ରାଜା ମାନଙ୍କୁ ମନେ ରଖେ, ସୈନିକଙ୍କୁ ନୁହେଁ । କିନ୍ତୁ ସୈନିକ ବିନା ସେନାପତି ଶକ୍ତିହୀନ । ଏକଥା କିଏ ମନେ ରଖିବ ? ବିଜୟୀର ରଥଚକ୍ର ଧାବିତ ହୋଇଛି ଅଗଣିତ ନିଷ୍ଠାପର ସୈନିକ ମାନଙ୍କର ଶବ ଉପରେ ।

ମଧୁରାନନ୍ଦ ସାହୁ ଆଉ ନାହାନ୍ତି  ।



# ଅସ୍ତାଚଳରେ ସର୍ବୋଦୟ ନେତା

**ବି**ଶିଷ୍ଟ ଶିକ୍ଷାବିତ୍, ଗାନ୍ଧିବାଦୀ, ସର୍ବୋଦୟ ନେତା ମଦନମୋହନ ସାହୁ ଆଉ ନାହାନ୍ତି । ତାଙ୍କର ନୂତନ ବାସସ୍ଥାନ ଶାସନ ଗାଁରେ ନିଜର ଉଦ୍ୟାନ କୁଟୀରରେ ୮୫ ବର୍ଷ ବୟସରେ ଫେବୃଆରୀ ୮, ୧୯୯୮ରେ ତାଙ୍କର ପରଲୋକ ହୋଇଯାଇଛି । ମାତ୍ର ଦୁଇ ତିନିଦିନ ତଳେ ଆପଣାର ନାତୁଣୀର ବିବାହ ଉତ୍ସବରେ ଯୋଗ ଦେବା ପାଇଁ ସେ ସମ୍ବଲପୁର ଯାଇଥିଲେ । ସବୁ ଅସୁସ୍ଥତା ସତ୍ତ୍ୱେ, ସବୁ ବାରଣ ସତ୍ତ୍ୱେ । ସେଠାରୁ ଫେରିବା ପରେ ତାଙ୍କର ଅସୁସ୍ଥତା ବଢ଼ିଗଲା ଏବଂ ସବୁ ଚେଷ୍ଟା ସତ୍ତ୍ୱେ ତାଙ୍କର ପରଲୋକ ହୋଇଗଲା । ଗଲା ଏକ ବର୍ଷ ଧରି ସେ ପ୍ରାୟ ଶଯ୍ୟାଶାୟୀ ଥିଲେ । କିମିତି ଗଲେ ସେ ନାତୁଣୀର ବିବାହକୁ ? କିଏ କହିବ ? ଏହା ଅଭିପ୍ରେତ ନା ଆକସ୍ମିକ ?

'ଉଦ୍ୟାନ କୁଟୀର'ର ବିସ୍ତୀର୍ଣ୍ଣ ପରିସର ଭିତରେ ତାଙ୍କର ଶେଷକ୍ରିୟା ସମ୍ପନ୍ନ ହୋଇଯାଇଛି । ମଦନ ମୋହନ ବାବୁଙ୍କ ସହିତ ମୋର ପରିଚୟ ଅନେକ ଦିନର । ଦଳ, ମତ, ଗୋଷ୍ଠୀଗତ ବିଭେଦର ଅନେକ ଉର୍ଦ୍ଧ୍ୱକୁ ସେ ଚାଲି ଯାଇଥିଲେ । ଯଦିଓ ଭାରତୀୟ ଜାତୀୟ କଂଗ୍ରେସର ସକ୍ରିୟ ସଭ୍ୟ ଭାବରେ ତାଙ୍କର ରାଜନୈତିକ ପ୍ରବେଶ ।

ବରଗଡ଼ ଜିଲ୍ଲାରେ ଭଟଲି ବେଶ୍ ଏକ ପ୍ରସିଦ୍ଧ ସ୍ଥାନ । ସେଇ ଥାନାର ସୁକୁଡ଼ା ଗ୍ରାମରେ ତାଙ୍କର ଜନ୍ମ । ବରଗଡ଼ ଜର୍ଜ ହାଇସ୍କୁଲରୁ ମାଟ୍ରିକ ପାଶ କରିବା ପରେ ସେ କଟକରେ ସି.ଟି.ପାଶ୍ କରନ୍ତି ଏବଂ ପରେ ଘରୋଇ ଛାତ୍ର ଭାବରେ ଆଇ.ଏ.ପାଶ କରନ୍ତି । ଶିକ୍ଷକତାର ଜୀବନ ଆରମ୍ଭ ହୁଏ ।

କିନ୍ତୁ ଛାତ୍ରାବସ୍ଥାରୁ ତାଙ୍କ ଭିତରେ ସ୍ୱାଧୀନତା ପାଇଁ ସଂଗ୍ରାମର ଉଦ୍‌ବେଳନ ଦେଖା ଦେଇଥିଲା । ୧୯୪୩ ମସିହାରେ ସେ ଶିକ୍ଷକତା ସତ୍ତ୍ୱେ ସ୍ୱାଧୀନତା ଆନ୍ଦୋଳନ ପାଇଁ ଗୁପ୍ତରେ କାର୍ଯ୍ୟ କରିଥିଲେ । ଖୋଲାଖୋଲି କାମ କରିବା ଅପେକ୍ଷା ଗୁପ୍ତରେ କାମ କରିବା ଆହୁରି କଠିନ । ସେଇ ଦାୟିତ୍ୱ ସେ ସଫଳତାର ସହିତ ତୁଲାଇଥିଲେ ଏବଂ ବହୁ ସ୍ୱାଧୀନତା ସଂଗ୍ରାମୀ ମାନଙ୍କର ସାନ୍ନିଧ ଏବଂ ସହଯୋଦ୍ଧୃତ୍ୱ ଲାଭ କରିଥିଲେ ।

ଶିକ୍ଷକତାର ଜୀବନ ସରି ଆସିଥିଲା । ୧୯୪୯ ରେ ସେ ସେବାଗ୍ରାମରେ 'ନଈ ତାଲିମ' ନିଅନ୍ତି । ୧୯୫୨ରେ ସେ ଅମ୍ବାଭୋନା ନିର୍ବାଚନ ମଣ୍ଡଳୀରୁ ଭାରତୀୟ ଜାତୀୟ କଂଗ୍ରେସର ପ୍ରାର୍ଥୀ ହୋଇ ମାତ୍ର ୪୦ଟି ଭୋଟରେ ପରାଜିତ ହୁଅନ୍ତି । ବିଜୟ ଲାଭ କରିଥିଲେ ହୁଏତ ତାଙ୍କର ଜୀବନ ଅନ୍ୟ ଦିଗରେ ଗତି କରିଥାଆନ୍ତା । ଯଦିଓ ସେ ନିର୍ବାଚନ ପରେ କିଛି ସମୟ କଂଗ୍ରେସ କମିଟିର ଅଫିସ ସଂପାଦକ ହୋଇଥିଲେ, ତାଙ୍କର ନିର୍ବାଚନ ଉପରୁ ମୋହ ତୁଟି

ଯାଇଥିଲା । ୧୯୫୪ ମସିହାରେ ଭୂଦାନ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରନ୍ତି ଏବଂ ଓଡ଼ିଶା ଭୂଦାନ ସମିତିର ସଂପାଦକ ହୁଅନ୍ତି ।

ଜରୋରୀ କାଳୀନ ପରିସ୍ଥିତି ଘୋଷଣା ପରେ ଭୂଦାନ ଆନ୍ଦୋଳନ ଦୁଇ ଭାଗ ହୋଇଯାଏ । ବିନୋବା ବାଭେଙ୍କ ନେତୃତ୍ୱରେ ଏକ ଗୋଷ୍ଠୀ ଜରୋରୀକାଳୀନ ପରିସ୍ଥିତିକୁ ଅନୁଶାସନ ପର୍ବ ବୋଲି ଘୋଷଣା କରି ଇନ୍ଦିରା ଗାନ୍ଧୀଙ୍କୁ ସମର୍ଥନ କରନ୍ତି । ଜୟପ୍ରକାଶଙ୍କ ନେତୃତ୍ୱରେ ଅନ୍ୟ ଗୋଷ୍ଠୀ ଏହାର ବିରୋଧ କରି କାରାବରଣ କରନ୍ତି । ମଦନ ମୋହନ ସାହୁ ଶେଷୋକ୍ତ ଗୋଷ୍ଠୀରେ ସାମିଲ ହୋଇ ୧୯ ମାସ କାଳ କାରାରୁଦ୍ଧ ହୁଅନ୍ତି । ୧୯୮୧ ମସିହାରେ କଳାହାଣ୍ଡି, ସମ୍ବଲପୁର ପ୍ରଭୃତି ଜିଲ୍ଲାରେ ଗଢ଼ି ଉଠିଥିବା ନିର୍ଦ୍ଦଳୀୟ କୃଷକ ଆନ୍ଦୋଳନରେ ସ୍ରକିୟ ଅଂଶ ଗ୍ରହଣ କରନ୍ତି ।

ମଦନମୋହନ ସାହୁଙ୍କର କର୍ମ ପରିବ୍ୟାପ୍ତ ହୋଇଥିଲା ବିଭିନ୍ନ ବିଭାବକୁ । ଗନ୍ଧମାର୍ଦ୍ଦନ ପର୍ବତର ବକ୍ସାଇଟ ଖୋଳି ଉକ୍ତ ମୂଲ୍ୟବାନ ପର୍ବତ ଏବଂ ତାର ମୂଲ୍ୟବାନ ବୃକ୍ଷଲତାର ବିଲୋପ ପାଇଁ ଯୋଜନାର ବିରୋଧରେ ଗଢ଼ି ଉଠିଥିବ ଜନ ଆନ୍ଦୋଳନର ସେ ନେତୃତ୍ୱ ନେଇଥିଲେ ।

ସାହିତ୍ୟର ବିକାଶ ପ୍ରତି ମଧ୍ୟ ତାଙ୍କର ଅବଦାନ ଉଲ୍ଲେଖଯୋଗ୍ୟ । ଚିନ୍ତାମଣି ମିଶ୍ରଙ୍କ ସମ୍ପାଦନାରେ ପ୍ରକାଶିତ ନବଜୀବନର ସେ ଥିଲେ ନିୟମିତ ପ୍ରାବନ୍ଧିକ । 'ସର୍ବୋଦୟ' ପତ୍ରିକାର ସଂପାଦନା ମଣ୍ଡଳୀର ମଧ୍ୟ ସେ ସଦସ୍ୟ ଥିଲେ । 'ଅଗ୍ନିଶିଖା' ନାମକ ପତ୍ରିକାର ସେ ଥିଲେ ମୁଖ୍ୟ ସଂପାଦକ । 'ଡାକରା' ନାମ ପତ୍ରିକାର ସଂପାଦନା ସହିତ ମଧ୍ୟ ସେ ସଂପୃକ୍ତ ଥିଲେ । 'ଗଣ ଇସ୍ତାହାର'ର ପ୍ରାବନ୍ଧିକ ଭାବରେ ମଧ୍ୟ ସେ କାର୍ଯ୍ୟ କରିଛନ୍ତି ।

ତାଙ୍କର ତିନିପୁଅ ମିହିର, ରହିମ ଏବଂ ମନୋରଞ୍ଜନଙ୍କ ସହିତ ଅଗଣିତ ବନ୍ଧୁଙ୍କୁ ସେ ଛାଡ଼ି ଚାଲିଯାଇଛନ୍ତି । ବୟସ ଅତିକ୍ରାନ୍ତ ହୋଇଥିଲା । ସବୁ ଦଳ ମତ ଗୋଷ୍ଠୀର ସେ ଶ୍ରଦ୍ଧା ଓ ସମ୍ମାନର ପାତ୍ର ହୋଇଥିଲେ । ଜୀବନର ସ୍ୱତନ୍ତ୍ର ସ୍ୱାଦ ଥିଲା ତାଙ୍କ ପାଇଁ ।

ତାଙ୍କର ଆତ୍ମଜୀବନୀ ଏବଂ ଅନେକ ପୁସ୍ତକର ପାଣ୍ଡୁଲିପି ପଡ଼ି ରହିଛି ପ୍ରକାଶନର ଅପେକ୍ଷାରେ । ଓଡ଼ିଶା ସାହିତ୍ୟ ଏକାଡ଼େମୀ ତାଙ୍କର ଅପ୍ରକାଶିତ ପାଣ୍ଡୁଲିପି ଗୁଡ଼ିକୁ ପ୍ରକାଶ କରିବା ଉଚିତ ହେବ । କନ୍ତୁ ମଦନ ମୋହନ ସାହୁଙ୍କର ତ କୌଣସି ଲବି ବା ପ୍ରେସର ଗ୍ରୁପ ନ ଥିଲା । ବୋଧହୁଏ ତାହା ସମ୍ଭବ ହେବ ନାହିଁ । ତେଣୁ ଏହାର ଦାୟିତ୍ୱ ଜନସାଧାରଣ ଏବଂ ତାଙ୍କର ପରିବାରର ସଭ୍ୟମାନଙ୍କୁ ହିଁ ନେବାକୁ ପଡ଼ିବ ।

ମଦନ ମୋହନ ସାହୁ ଆଉ ନାହାନ୍ତି । ମୂଲ୍ୟବୋଧର ଅବକ୍ଷୟ ଘଟୁଛି ଦ୍ରୁତ ଗତିରେ । ତାର ଶେଷ ସନ୍ତକମାନଙ୍କ ମଧ୍ୟରୁ ସେ ଜଣେ ।



# ମରଣକୁ ଯିଏ କରିଛି ଜୟ
# ଜୀବନ ଦୀପ୍ତିମୟ

ଦୁଇଟି ମାଆ ମୃତ୍ୟୁରେ ଏକତ୍ରିତ ହୋଇଗଲେ ବିଧିର ବିଚିତ୍ର ନିୟମରେ - ମଦର ଟେରେସା ଓ ରାଜକୁମାରୀ ଡାୟନା । ଜଣେ ଧରଣୀର କୃଷ୍ଣସାର ଏବଂ ଅନ୍ୟ ଜଣେ ଆକାଶର ଇଗଲ । ତଥାପି ମଦର ଟେରେସାଙ୍କ ପ୍ରତି ଅସୀମ ଅନୁରାଗ ଥିଲା । ସାଧାରଣ ମଣିଷଠାରୁ ରାଜକୁମାରୀଙ୍କ ପର୍ଯ୍ୟନ୍ତ । ତାଙ୍କୁ ଦେଖି ମୁଁ ଗଭୀର ଉନ୍ମାଦନା ଲାଭ କରିଛି, ଲାଭ କରିଛି, ଅସୀମ ପ୍ରେରଣା... ମଣିଷ ପାଇଁ, ମଣିଷ ସେବା ପାଇଁ । ମଦର ଟେରେସାଙ୍କ ଉପରେ ମତ ଦିଅନ୍ତି ରାଜକୁମାରୀ ଡାଏନା । ମଦର ଟେରେସା ହିଁ ତାଙ୍କୁ ଅନୁପ୍ରାଣିତ କରନ୍ତି ଆଙ୍ଗୋଲା ଠାରୁ ବସନିଆ ଭୂମିତଳ ବୋମା ଆଚ୍ଛାଦିତ ଭୂଇଁରେ ବୁଲିବା ପାଇଁ, ବୋମା ଆଘାତରେ ପଂଗୁ ହୋଇଯାଇଥିବା ଶିଶୁମାନଙ୍କର ସାହାଯ୍ୟ ପାଇଁ, କୁଷ୍ଠ, କ୍ୟାନସର, ଏଡସ୍ ରୋଗାକ୍ରାନ୍ତ ମଣିଷର ସେବା ପାଇଁ ।

ସେପ୍ଟେମ୍ବର ୫ , ୧ ୯ ୯ ୭ ମସିହାର ରାତି ନଅଟା ତିରିଶ , ମଦର ଟେରେସା ସବୁଦିନ ପରି ରାତ୍ରି ଭୋଜନ ଓ ପ୍ରାର୍ଥନା ସାରି ବିଶ୍ରାମ ନେବାକୁ ଯାଉଥିଲେ । ହଠାତ୍ ସେ ଯନ୍ତ୍ରଣା ଅନୁଭବ କଲେ ପିଠିରେ । ଆଗରୁ ଅନେକ ଥର ଇମିତି ଯନ୍ତ୍ରଣା ହୋଇଛି । ପାଖ ଘରେ ଡାକ୍ତର ଆଲଫ୍ରେଡ୍ ଉଡ୍ଉଆର୍ଡ ସେଥିପାଇଁ ପ୍ରସ୍ତୁତ ଅଛନ୍ତି, କାଳେ କେତେବେଳେ ଜରୋରୀ ଦରକାର ପଡ଼ିବ । "ମୁଁ ଆଉ ନିଃଶ୍ୱାସ ନେଇ ପାରୁନାହିଁ " ଏଇ ଥିଲା ମଦର୍ଙ୍କର ଅନ୍ତିମ କଥା । ଡାକ୍ତର ଆସିଲେ । କିନ୍ତୁ ସେତେବେଳକୁ ସବୁ ସରି ଯାଇଥିଲା । ଇତିହାସର ସ୍ରଷ୍ଟା ନିଜେ ଇତିହାସ ପାଲଟି ଯାଇଥିଲେ । ରାଜକୁମାରୀ ଡାଏନାଙ୍କର ଶବ ସଂସ୍କାରରେ ଯୋଗ ଦେବା ପାଇଁ ତାଙ୍କୁ ନିମନ୍ତ୍ରଣ ଆସି ଥିଲା । ମଦରଙ୍କର ମଧ୍ୟ ଇଚ୍ଛା ଥିଲା । କିନ୍ତୁ ସ୍ୱାସ୍ଥ୍ୟଗତ କାରଣରୁ ସେ ଯାଇ ପାରିନ ଥିଲେ । ଅନ୍ୟତ୍ର ଦେଖା ହେବାର କଥା ଥିବାରୁ ସେ ଗଲେ ନାହିଁକି ? କିଏ କହିବ ?

"ମରଣ ହେଉଛି ସୁନ୍ଦର । ତାହା ହେଉଛି ଘର ବାହୁଡ଼ା ଭଳି" ଜୀବନରେ ସେ ଶାନ୍ତ, ପ୍ରଶାନ୍ତ ଏବଂ ପବିତ୍ର ଦେଖାଯାଉଥିଲେ ଆଜି ଠିକ୍ ସେଇପରି ଦେଖାଯାଉଛନ୍ତି ମରଣରେ । ମୁଖରେ କୌଣସି ବିବର୍ଣ୍ଣତା ନାହିଁ, ନିଃଶ୍ୱାସ ନ ନେଇ ପାରିବାର କ୍ଷଣିକ ଯନ୍ତ୍ରଣା ଅପସରି ଯାଇଛି ମୁଖମଣ୍ଡଳରୁ । ମଥା ଉପରେ ଝୁଲୁଛି ଫଳକ "ମା ତୁମକୁ ସବୁବେଳେ ଭଲ ପାଇବେ ।"

ଗାନ୍ଧିଜୀ ଥରେ କହିଥିଲେ, ଯେଉଁ ଲୋକ ଯନ୍ତ୍ରଣା ଭୋଗୁଛି ତମେ ତା ପାଖକୁ ଯାଅ । ଠିଆ ହୁଅ ତା ପାଖରେ । ଆଉଁସି ଦିଅ ତାର ପିଠି । ଦେଖିବ ଅଧା ଯନ୍ତ୍ରଣା ତାର ଉପଶମ ହୋଇ ଯାଇଛି ।

ମଦର ଟେରେସାଙ୍କ ସହିତ ମୋର ଏକ ସଂକ୍ଷିପ୍ତ ସାକ୍ଷାତ କଲିକତାରେ । ମରଣ ଯଦି ସୁନ୍ଦର, ତା ହେଲେ ଆମେ ସମସ୍ତେ ଆତ୍ମହତ୍ୟା କରିଦେବା ଉଚିତ ବା ତୁରନ୍ତ ମୃତ୍ୟୁର ସମ୍ମୁଖୀନ ହେବା ଉଚିତ ।

"ମୁଁ ବା ତମେ କିଏ, ଜୀବନ ନେବା ପାଇଁ ? ଜୀବନ ଯିଏ ଦେଇ ପାରିବ ନାହିଁ, ନେବାର ଅଧିକାର ତାର ଆସିବ କେଉଁଠୁ ? ସବୁ ତାର ଇଚ୍ଛା, ମୁଁ ନିମିତ୍ତ ମାତ୍ର ।"

ମୁଁ ନିମିତ୍ତ ମାତ୍ର । ସବ୍ୟସାଚୀ ପାର୍ଥଙ୍କୁ ଠିକ୍ ଏହି କଥା କହିଥିଲେ ଶ୍ରୀକୃଷ୍ଣ ! ତା ହେଲେ ? ମଦର ଟେରେସା ଆସିଥିଲେ ଯୁଗୋସ୍ଲୋଭିଆ ରାଜ୍ୟରୁ । ଇଉରୋପ ଭୂଖଣ୍ଡରେ ଯୁଗୋସ୍ଲୋଭିଆ ଇତିହାସରେ ବାତଚକ୍ରରେ ବହୁକାଳ ଦୁରାରୋଧ ହୋଇ ରହି ଆସିଛି । ମଦର ଟେରେସା ଆସିଥିଲେ ସତେ ଯେପରି ଅଭିପ୍ରେତ ହୋଇ ।

ଆସିଥିଲେ ଲୋରେଟୋ କନଭେଣ୍ଟରେ ଶିକ୍ଷୟିତ୍ରୀ ହୋଇ । କଲିକତା ଓ ଦାର୍ଜିଲିଂରେ ସଂକ୍ଷିପ୍ତ ସମୟ ଶିକ୍ଷୟିତ୍ରୀର ଜୀବନ । ଅଭିଜାତ ବଂଶର ଛାତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ ସ୍କୁଲ୍‌ର ଠିକ୍ ଆର ପଟରେ ବସ୍ତି । ଦାରିଦ୍ର୍ୟ, ରୋଗ, ଅଭିଶାପ ଯେଉଁଠି ବସା ବାନ୍ଧେ, ଶିଶୁ ଯେଉଁଠି ଝରିପଡ଼େ ଅନାହାରରେ, ରୋଗରେ, ଅବହେଳାରେ । ମଦର ଟେରେସା ଛାଡ଼ନ୍ତି ସ୍କୁଲ । ଡାକରା ଆସିଛି । ଏଇ ଡାକରା ଆସିଛି ଅନ୍ତରର ଗର୍ଭରୁ । ତା'ର ଡାକରା ଦୁର୍ବାର । କିନ୍ତୁ ତାହା ହିଁ ତାଙ୍କୁ ଘେନିଯିବ ସାରା ବିଶ୍ୱର ନିରନ୍ନ କୁଟୀରକୁ, ଭିଟାହରା କୁଳବାଳା ପାଖକୁ । କେବଳ ସେତିକି ନୁହେଁ, ତାହାହିଁ ଆଣିଦେବ ତାଙ୍କୁ ବିଶ୍ୱବ୍ୟାପୀ ସ୍ୱୀକୃତି, ଆଣିଦେବ ପ୍ରତିଷ୍ଠା, ସମ୍ମାନ ।

ମଦର ଟେରେସାଙ୍କୁ ପୃଥିବୀର ସବୁ ପ୍ରକାର ଶେଷ୍ଠ ସମ୍ମାନ ମିଳିଛି । ପଦ୍ମଶ୍ରୀ, ଭାରତ ରତ୍ନ, ମାଗାସେସ୍ ଆୱାର୍ଡ, ନୋବେଲ ପ୍ରାଇଜ, ମାର୍କିନ ଯୁକ୍ତରାଷ୍ଟ୍ରର ନାଗରିକତ୍ୱ, ପୋପ୍ ଜନ୍ ଆଓ୍ୟାର୍ଡ XXIII ଜେସେଫ କେନେଡି ଜୁଲିଅର ଆୱାର୍ଡ ଭଳି ବହୁ ସମ୍ମାନରେ ଭୂଷିତ ହୋଇଛନ୍ତି ମଦର ଟେରେସା । ସତ କହିଲେ ମଦର ଟେରେସାଙ୍କ ନାମ ସହିତ ଜଡ଼ିତ ହୋଇ ଏଇ ସବୁ ପୁରସ୍କାର ନିଜେ ସମ୍ମାନିତ ହୋଇଛନ୍ତି । ତାଙ୍କ ସମ୍ମାନାର୍ଥେ ଏକ ଡାକଟିକେଟ ପ୍ରଚଳିତ ହୋଇଛି । ମଦର ଟେରେସାଙ୍କୁ ବିଭିନ୍ନ ବିମାନ ସଂସ୍ଥା ଫ୍ରି ଟିକେଟ୍ ଦେଇଛନ୍ତି । ବିଭିନ୍ନ ଦେଶ ତାଙ୍କ ପାଇଁ ଭିସା ବ୍ୟବସ୍ଥା ଉଠାଇ ଦେଇଛନ୍ତି । ସାରା ପୃଥିବୀର କ୍ୟାଥଲିକ ପ୍ରେସ ତାଙ୍କୁ ଦେଇଛି ପବ୍ଲିସିଟି । ଫଳରେ ମଦର ଟେରେସା ବିଶ୍ୱ ମାତୃତ୍ୱର ସ୍ଥାନକୁ ଉନ୍ନୀତ ହୋଇଛନ୍ତି । ମଦର ଟେରେସା ଭାରତର ନାଗରିକତ୍ୱ ଗ୍ରହଣ କରିଛନ୍ତି । ଏଇ ମାଟି ପାଇଁ ତାଙ୍କର ସ୍ନେହ , ମମତା, ଆବେଗ ଏହା କରାଇଛି ।

"ଯେଉଁ ମୁହୂର୍ତ୍ତରେ ତମେ ତାଙ୍କୁ ଭେଟିବ ସେଇ ମୁହୂର୍ତ୍ତରେ ତାଙ୍କର କାର୍ଯ୍ୟ ପାଇଁ ତମର ସାହାଯ୍ୟ ହାତ ସମ୍ପ୍ରସାରିତ ହୋଇଯିବ । ତମ ଭିତରେ ଯାହା କିଛି ସବୁଠାରୁ ମହନୀୟ

ତାଙ୍କର କାଉଁରୀ ସ୍ପର୍ଶରେ ତାହା ମୁକୁଳିତ ହୋଇଯିବାକୁ ବାଧ...." ଏଇଥିଲା ତାଙ୍କ ଉପରେ କୌଣସି ନାରୀର ଉକ୍ତି । ମଦର ଟେରେସାଙ୍କ ବାବା ମାଆ ଆଲବେନିଆ ରାଜ୍ୟର । କିନ୍ତୁ ଏଇ କନ୍ୟା ଜନ୍ମ ହୋଇଥିଲା ଯୁଗୋସ୍ଲାଭିଆରେ ୧୯୧୦ ଅଗଷ୍ଟ ୨୭ ତାରିଖରେ । ଏଇ କନ୍ୟା ପାଇଁ ମଣିଷ ମଣିଷ ଭିତରେ ପ୍ରାଚୀର, ଦେଶ ଦେଶ ଭିତରେ ପ୍ରାଚୀର ଭାଙ୍ଗି ପଡିବ, ସେବା କରୁଣାର ମହାମନ୍ତ୍ରରେ ସେ ସମଗ୍ର ମଣିଷ ସମାଜକୁ ଅନୁପ୍ରାଣିତ କରିଯିବ, ଏକଥା କିଏ ଜାଣିଥିଲା ?

ଯୁଗୋସ୍ଲାଭିଆରୁ ଝିଅଟି ଯାଏ ଆୟାରଲାଣ୍ଡକୁ । ମାତ୍ର ଛଅ ସପ୍ତାହ ପରେ ସେ କନ୍ୟାଟି । ସେ ଭାରତକୁ ସମୁଦ୍ର ବକ୍ଷରେ ଜହାଜରେ । ଚିନ୍ତା, ମଣିଷ ସମାଜର ଚିନ୍ତା ତାକୁ ସେତିକିବେଳୁ ଘାରେ ।

ଛଅ ଜାନୁଆରୀ, ୧୯ ଏବଂ ୧୮ ଅଗଷ୍ଟ ୧୯୪୮, ଏଇ ସମୟ କାଳ ଭିତରେ ସେ ପଢ଼ାନ୍ତି କନ୍‌ଭେଣ୍ଟ ଲରେଟୋରେ । କଲିକତା ଓ ଦାର୍ଜିଲିଂରେ । ୧୯୩୧ ମସିହା ମଇ ମାସ ୨୪ ତାରିଖରେ ସେ ତାଙ୍କର "ପବିତ୍ର ଶପଥ" ନିଅନ୍ତି ଏବଂ ଆଶ୍ଚର୍ଯ୍ୟର କଥା , ଠିକ୍ ସେଇ ମଇ ୨୪ ତାରିଖ ୧୯୩୭ରେ ତାଙ୍କର ଚୂଡ଼ାନ୍ତ 'ପବିତ୍ର ଶପଥ' ନିଅନ୍ତି । ୧୯୪୬ ସେପ୍ଟେମ୍ବର ୧୦ ତାରିଖରେ ସେ ଈଶ୍ୱରଙ୍କ ବାଣୀ ଶୁଣି ପାରନ୍ତି ଟ୍ରେନ୍‌ରେ, କଲିକତାରୁ ଦାର୍ଜିଲିଂ ଯିବା ବାଟରେ ।

ସ୍କୁଲ ପାଖରେ ଥିବା ବସ୍ତି ବା ସ୍ଲମରେ ରହୁଥିବା ଶିଶୁ ଓ ନାରୀ ହେଲେ ତାଙ୍କର ପ୍ରଥମ ଲକ୍ଷ୍ୟ । ତାଙ୍କର ଏହି କାର୍ଯ୍ୟ ପୋପ୍ ପଲଙ୍କ ଦୃଷ୍ଟି ଆକର୍ଷଣ କରେ । ସାଧାରଣତଃ ଏଭଳି କାର୍ଯ୍ୟ ପାଇଁ ପୋପ୍ ଆନୁଷ୍ଠାନିକ ସ୍ୱୀକୃତି ଦିଅନ୍ତି ନାହିଁ । କିନ୍ତୁ ଏହା ମିଳିଥିଲା । "ମିଶନାରୀ ଅଫ୍ ଚାରିଟିଜ୍" ଗଢ଼ା ହେଲା ୧୯୫୦ ମସିହାରେ । ସିଷ୍ଟର ଟେରେସା ମଦର ଟେରେସାରେ ରୂପାନ୍ତରିତ ହୋଇଛନ୍ତି । ବର୍ତ୍ତମାନ ଏହି ଅନୁଷ୍ଠାନ ଦ୍ୱାରା ୧୬୦ରୁ ଊର୍ଦ୍ଧ୍ୱ କେନ୍ଦ୍ର ପରିଚାଳିତ କେବଳ ଭାରତବର୍ଷରେ । ଯକ୍ଷ୍ମା ଠାରୁ କୁଷ୍ଠ, କ୍ୟାନସର, ଠାରୁ ଏଡସ୍ ଶିଶୁମାନଙ୍କ ପାଇଁ ଅନାଥାଶ୍ରମ ଠାରୁ ଆରମ୍ଭ କରି ନିରାଶ୍ରୟା ନାରୀ ପାଇଁ ଆଶ୍ରୟ ସ୍ଥଳ ଏଥିରେ ଅନ୍ତର୍ଭୁକ୍ତ । ଏହାର କେନ୍ଦ୍ର ହେଉଛି 'ନିର୍ମଳ ହୃଦୟ ଯାହା ମଦରଙ୍କ ଘର ନାମରେ ପରିଚିତ ।'

ସେଇଠି ଚିରଦିନ ପାଇଁ ବିଶ୍ରାମ ନେବେ ମଦର ଟେରେସା । ସାରା ପୃଥିବୀରୁ ଶୋକବାର୍ତ୍ତାର ସୁଅ ଛୁଟିଛି, ମଣିଷର ସୁଅ ଛୁଟିଛି ସେଣ୍ଟ ଥମାସ ଚର୍ଚ୍ଚକୁ ଯେଉଁଠି ମଦରଙ୍କ ମର ଦେହକୁ ରଖାଯାଇଛି ଜନସାଧାରଣଙ୍କ ଦର୍ଶନ ପାଇଁ । ପୃଥିବୀ ମୂହ୍ୟମାନ ହୋଇ ଠିଆ ହୋଇଛି । ଡାୟନାଙ୍କ ଅକାଳ ପରଲୋକରେ ଉଦ୍‌ବେଳିତ ହୋଇ ଥିଲା ଜନମାନସ ସାର ପୃଥିବୀରେ । ଡ଼ାୟନାଙ୍କର ବ୍ୟକ୍ତିଗତ ଜୀବନ ବକିଙ୍ଗହାମ୍ ରାଜପ୍ରାସାଦରୁ କିଛି ସମୟ ପାଇଁ ଦ୍ୱିଧାଗ୍ରସ୍ତ କରି ପାରିଥାଏ କିନ୍ତୁ ସାରା ପୃଥିବୀ ଉଦ୍‌ବେଳିତ ହୋଇଥିଲା ଏଇ ନାରୀ ପାଇଁ ଯେ ଆପଣାର ଅପୂର୍ବ ସୌନ୍ଦର୍ଯ୍ୟ, ରାଜପ୍ରାସାଦର ବୈଭବର ଶିଖରରୁ ଓହ୍ଲାଇ ଆସିଥିଲେ ସାଧାରଣ ମଣିଷର ଦୁଃଖ ଓ ବେଦନା ପ୍ରତି ସହାନୁଭୂତି ଜଣାଇ । ମଦର ଟେରେସାଙ୍କ ମୃତ୍ୟୁ ଯେ କୌଣସି ମୁହୂର୍ତ୍ତରେ ଆସିପାରେ ଏକଥା ଜଣାଥିଲା । ମୃତ୍ୟୁ ତାକୁ ନେଇ, ନେଇ ପାରି

ନାହିଁ ଅନେକ ଥର । ତାହା ହିଁ ମଣିଷ ଜାତି ପାଇଁ କଲ୍ୟାଣମୟ ଶୁଭଙ୍କର । ମୃତ୍ୟୁ ସମ୍ବାଦକୁ ସମସ୍ତେ ଶୁଣି ଥିର ହୋଇ ଯାଇଠିଆ ହୋଇଛନ୍ତି । କିମିତି ଗୋଟାଏ ଶୀତଳ ନୀରବତା, ମୃତ୍ୟୁର ହାତ ପରି ପୃଥିବୀକୁ ଛାଇ ଯାଉଛି ।

କିନ୍ତୁ ସେ କ'ଣ ମରିପାରେ ? ତାର ମୃତ୍ୟୁ କାହିଁ ? ଯେ ଭୂମା ହୋଇ ନିବେଦିତ ହୋଇ ଯାଇଛି ପ୍ରତ୍ୟେକ ରେଣୁରେ ତାର ବିଲୟ କାହିଁ ? ମୃତ୍ୟୁ ତ ସେଠି ପରାଜିତ ।

ପତାକା ଅର୍ଦ୍ଧନମିତ ହୋଇ ଯାଉଛି । ଏ ପତାକା ଖାଲି ଭାରତର ନୁହେଁ, ମାନବ ଜାତିର । ସେମାନେ ଆସିଛନ୍ତି , ଆସିବେ । ଭାରତ ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ଆମେରିକାର ରାଷ୍ଟ୍ରପତିଙ୍କ ସହଧର୍ମିଣୀ, ବିଭିନ୍ନ ରାଷ୍ଟ୍ରର ପ୍ରତିନିଧି । ତାଠାରୁ ବେଶୀ ଆସିବେ କୁଲିବସ୍ତି ଭଂଗା ଟିଣ ଘରେ ରହୁଥିବା ଶହ ଶହ ମଣିଷ, ଯେଉଁମାନଙ୍କର ନାମ ଭୋଟର ତାଲିକାରେ ନାହିଁ, ଯେଉଁମାନେ ରାଜନୀତି ପଶାପାଲିର ନୀରିହ, ନୀରବ ଗୋଟି ସେମାନଙ୍କର ଜାତି ନାହିଁ, ଧର୍ମ ନାହିଁ, ସେମାନେ ଦରିଦ୍ର, ଅସହାୟ, ଦରିଦ୍ରର ଜାତି କାହିଁ, ଧର୍ମ କାହିଁ । ମଦର ଟେରେସାଙ୍କ ପାଇଁ ସେଇମାନେ ହେଉଛନ୍ତି ନରରୂପୀ ନାରାୟଣ । ଠିକ୍ ଏଇ ବାଣୀ ଦିନେ ଉଚ୍ଚାରିତ ହୋଇଥିଲା ବିବେକାନନ୍ଦଙ୍କ କଣ୍ଠରୁ, ଯେ ମଠ ଛାଡ଼ି ମିଶନ ଗଢ଼ିଥିଲେ । ମଦର୍ ଚର୍ଚ୍ଚ ଛାଡ଼ି "ସିଷ୍ଟର ଅଫ ଚାରିଟି" ଗଢ଼ିଥିଲେ । ଶୃଙ୍ଖଳା କଠୋର । ପ୍ରତ୍ୟେକଙ୍କର ମାତ୍ର ଦୁଇଟି ଡ୍ରେସ୍, ଶାଢ଼ୀ ହେଉ ବା ପ୍ୟାଣ୍ଟ ହେଉ । ସେତିକିରେ ମଧ ଜଣେ ପରିଷ୍କାର ରହିପାରେ ତାହା ନିଜେ କରି ଦେଖାଇଦିଅ ବସ୍ତି ବାଲାଙ୍କୁ ଯେ ଦୁଇଟି ଲୁଗାରେ ମଧ ଜଣେ ପରିଷ୍କାର ରହିପାରେ । ଯାହା କହୁଚ କରି ଦେଖାଇଦିଅ ।

ନିନ୍ଦା, ସମାଲୋଚନା ମଦରଙ୍କୁ ମଧ ଛାଡ଼ି ନାହିଁ । ତାଙ୍କ କାର୍ଯ୍ୟର ନିନ୍ଦା କରି ପୁସ୍ତକ ପ୍ରକାଶ ପାଇଛି । କାହା ପାଖରେ ତମେ ହାତ ପାତୁଛ ମଦର, କାହା ପାଇଁ ? ଯାହା ପାଖରେ ହାତ ପାତୁଛ ତାହାରି ହାତରେ ପରା ରକ୍ତ ଲାଗିଛି, ସେଇ ମଣିଷର ଯାହା ପାଇଁ ତମେ ହାତ ପାତୁଛ, ଏକଥା କ'ଣ ତମେ ଭୁଲି ଯାଇଚ ମଦର୍ ? ପ୍ରସିଦ୍ଧ ଉଗ୍ରବାମପନ୍ଥୀ ତାରେକ ଅଲ୍ଲି ଏଇ ପ୍ରଶ୍ନ ପଚାରିଛନ୍ତି ତାଙ୍କ ପୁସ୍ତକରେ ।

ଆପଣଙ୍କ ନାଁରେ ଯେତେ ଅର୍ଥ ଆଦାୟ ହେଉଛି, ତା'ର ହିସାବ କିଏ ରଖୁଚି ମଦର ? ସିଙ୍ଗାପୁର ଅଞ୍ଚଳରେ ଆପଣଙ୍କ ନାମରେ ଲକ୍ଷ ଲକ୍ଷ ଡ଼ଲାର ଆଦାୟ ହୋଇଛି ଯାହା ଆପଣଙ୍କ ପାଖରେ ପଇଠ ହୋଇନାହିଁ, ଏକଥା ଆପଣ ଜାଣନ୍ତି ? ଆପଣଙ୍କ ଅନୁଷ୍ଠାନକୁ ଦାନ ଆୟକର ରିହାତି ମୁକ୍ତ, ଏହାର ସୁବିଧା ନେଇ କଳା ମୁଦ୍ରା ଧଳାରେ ପରିଣତ ହେଉଛି । ଏକଥା ଆପଣ ଜାଣନ୍ତି ନା ନାହିଁ ?

ଆପଣଙ୍କର ନାମରେ ଚଳଚ୍ଚିତ୍ର ତିଆରି ହେଉଛି, ବିବାଦମାନ ଚଳଚ୍ଚିତ୍ର । ଆପଣ ତାକୁ ଅନୁମତି ଦେଇଛନ୍ତି, ଚଳଚ୍ଚିତ୍ର ପ୍ରସ୍ତୁତ କରି ଆପଣଙ୍କର ପବ୍ଲିସିଟି ବଢ଼ାଇବା ପାଇଁ , ଆପଣ ଏହାର ଖିଆଲ କରିଛନ୍ତି ।

ମୁଁ କାହାକୁ ମୋ ନାମରେ ବହି ପ୍ରକାଶ କରିବାକୁ ଅନୁମତି ଦେଇ ନାହିଁ ।

ମୁଁ ଲାପିଏରଙ୍କୁ ଦେଇଥିବା ତଥାକଥିତ ଅନୁମତିକୁ ପ୍ରତ୍ୟାହାର କରି ନେଇଛି, ମୋ

ନାମରେ ବା ମୋ ଅନୁଷ୍ଠାନ ନାମରେ ଅର୍ଥ ଆଦାୟ କରିବାକୁ ମୁଁ ଅନୁମତି ଦେଇନାହିଁ ।

ମୁଁ ତାଙ୍କର ସେବକ । ସେ ମୋତେ ଯେଉଁଭଳି ପରିଚାଳନା କରିବେ ମୁଁ ସେଇପରି ପରିଚାଳି ହେବି । ତାଙ୍କର ଇଚ୍ଛାକୁ ମୁଁ ଅନ୍ୟଥା କରି ପାରିବି ନାହିଁ । ମୋର କର୍ତ୍ତବ୍ୟ ସୀମିତ । ମୁଁ ତାଙ୍କରି ନାଁ ରେ ଟିକିଏ 'ଆହା' ଜଣାଇବାକୁ ଚାହେଁ ରୁଗ୍ଣ ଦୁସ୍ଥ ମଣିଷକୁ । ମୁଁ ଜରାକୁ ରୋଧ କରି ପାରେନା, ମୁଁ ମୃତ୍ୟୁକୁ ରୋଧ କରି ପାରେନା, ମୁଁ କେବଳ ପ୍ରଭୁଙ୍କର କରୁଣାକୁ ଲେପି ଦେବାକୁ ଚାହେଁ ମଣିଷ ଦେହରେ । ମଦରଙ୍କର ଏଇ ହେଉଛି ବିନମ୍ର, କରୁଣାସିକ୍ତ ନିବେଦନ ।

"ମୁଁ କ୍ଷୁଦ୍ର.....ମୁଁ ବଡ଼ ନୁହେଁ " ଜୀବନରେ ଏଇ ବ୍ରତର ରୂପାୟନ ହୋଇ ସେ ହୋଇ ଯାଇଛନ୍ତି ଆକାଶଠୁ ବଡ଼ ।

ସେଇ ମଦର ଟେରେସା ଆଉ ନାହାନ୍ତି । ସେପ୍ଟେମ୍ବର ୧୩ ୧୯୯୭, ସାରା ପୃଥିବୀ ମଥାବନତ କରି ଠିଆ ହୋଇଛି । ମଦରଙ୍କ ମର ଦେହକୁ ଓହ୍ଲାଇ ଦିଆଯାଉଛି । 'ନିର୍ମଳ ହୃଦୟ'ରେ ଖୋଦିତ ତାଙ୍କର ସମାଧି ଭିତରକୁ ।

ଇତିହାସ ପୃଷ୍ଠା ଓଲଟାଇ ଦେଉଛି । ମହାକାଳର ଝଡ଼ ମଥା ପିଟୁଛି । ମଦର ଟେରେସା ପାଲଟି ଯାଇଛନ୍ତି ଇତିହାସ, ତ୍ୟାଗ କରୁଣାର ଇତିହାସ ।



# ଶତାବ୍ଦୀର ଶେଷ ଦୁନ୍ଦୁଭି ନୀରବିତ

**ମ**ଣିଷ ସମାଜର ଇତିହାସରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଶତାବ୍ଦୀ ହେଉଛି ଏଇ ବିଂଶ ଶତାବ୍ଦୀ । ଭାରତବର୍ଷ ପାଇଁ ମଧ୍ୟ ଏଇ ଶତାବ୍ଦୀ ହେଉଛି ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଏଇ ଶତାବ୍ଦୀ ଆରମ୍ଭ ବେଳକୁ ଦେଶ ବୁଡ଼ିଯାଇଥିଲା ଗଭୀର ଅନ୍ଧକାରରେ । ତିକ୍ତ, ଆଇଁସିଆ, ନିରନ୍ଧ୍ର ଅନ୍ଧକାର । କେବଳ ସେତିକି ନୁହେଁ, ଏଇ ଅଂଧକାରକୁ ଦୂର କରିବା ପାଇଁ ଦଳେ ଦଳେ ମଣିଷ ଆପଣାର ଜୀବନକୁ ବାଜି ରଖିଥିଲେ ଏବଂ ମୁକତିର ଦିହୁଡ଼ି ଜାଳିଥିଲେ ।

ମୁକ୍ତିର ଶେଷ ଦିହୁଡ଼ି, ଶତାବ୍ଦୀର ଶେଷ ଦୁନ୍ଦୁଭି ଆଜି ନୀରବିତ । ମାର୍ଚ୍ଚ ୧୫ ତାରିଖ, ୧୯୯୮ ମସିହା । ସକାଳର ସୂର୍ଯ୍ୟ ଉଇଁବା ସାଂଗକୁ ହଠାତ୍ ସେହି ଦୁନ୍ଦୁଭି ନୀରବିତ ହୋଇଯାଇଛି । ମାଳତୀ ଚୌଧୁରୀ ଆଉ ନାହାନ୍ତି । ପ୍ରାୟ ୯୪ ବର୍ଷ ବୟସରେ ଆପଣାର 'ବାଜି ରାଉତ ' ଛାତ୍ରାବାସ, ଅନୁଗୋଳରେ ତାଙ୍କର ପରଲୋକ ହୋଇଯାଇଛି । ସେଇ ଦିହୁଡ଼ି ନିର୍ବାପିତ, ସେଇ ଦୁନ୍ଦୁଭି ନୀରବିତ । ଇତିହାସର ଏକ ଅଧ୍ୟାୟର ପରିସମାପ୍ତି ଘଟିଛି ।

ମାଳତୀ ଦେବୀ ବଂଗଳାର ଝିଅ ହୋଇ ଜନ୍ମ ହୋଇଥିଲେ ଏଇ ଶତାବ୍ଦୀର ପ୍ରାରମ୍ଭ କାଳରେ । ପିତା ମୁକୁନ୍ଦ ବନ୍ଧୁ ସେନଙ୍କର ଅଲିଅଳ କନ୍ୟା । ମାଟ୍ରିକ ପାଶ କରନ୍ତି, ୧୯୨୪ ମସିହାରେ । ସେଇଠି ଦେଖାହୁଏ ଓଡ଼ିଶାର ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ, ସମାଜବାଦୀ ଚିନ୍ତକ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସହିତ । ମାଳତୀ ଦେବୀଙ୍କ ରକ୍ତରେ ମୁକ୍ତି ଆନ୍ଦୋଳନର ଚମକ ଥିଲା । କାରଣ ମୁଁ ଜାଣିବାରେ ତାଙ୍କର ସମ୍ପର୍କୀୟ ଭାଇ ହେଉଛନ୍ତି ପ୍ରଖ୍ୟାତ କମ୍ୟୁନିଷ୍ଟ ନେତା ଶ୍ରୀ ଇନ୍ଦ୍ରଜିତ ଗୁପ୍ତ । ପରସ୍ପର ଭିତରେ ଥିବା ଯାଦୁକାରୀ ଶକ୍ତି ଥିଲା ନବ ବାବୁ ଓ ମାଳତୀ ଦେବୀଙ୍କ ଭିତରେ ସମ୍ପର୍କର କାରଣ । ଦୁହେଁ ବିବାହ କରିବାକୁ ସ୍ଥିର କଲେ କିନ୍ତୁ ଜମିଦାର ପିତା ଏଥିରେ ରାଜି ହେଲେ ନାହିଁ । ମାଳତୀ ଦେବୀଙ୍କୁ ପ୍ରଥମ ଅଗ୍ନି ପରୀକ୍ଷାରୁ ଉତ୍ତୀର୍ଣ୍ଣ ହେବାକୁ ପଡ଼ିଲା, ସମୟ ଲାଗିଲା । ମାଳତୀ ଦେବୀ ବିବାହ କଲେ ଜମିଦାର ପୁତ୍ର, କିନ୍ତୁ ସ୍ୱାଧୀନତା ସଂଗ୍ରାମୀ ନବକୃଷ୍ଣ ଚୌଧୁରୀଙ୍କୁ । ନବ ବାବୁ ସ୍ୱାଧୀନତା ସଂଗ୍ରାମୀ ପାଲଟିଲେ ଏବଂ ମାଳତୀ ଦେବୀ ମଧ୍ୟ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ । ବର୍ତ୍ତମାନ ଯୁଗରେ ବହୁ ପତ୍ନୀ ରାତାରାତି ରାଜନୀତିଜ୍ଞ ପାଲଟି ଯାଉଛନ୍ତି, ସ୍ୱାମୀମାନଙ୍କର ଅନୁଗ୍ରହରୁ । ମାଳତୀ ଦେବୀଙ୍କ ପ୍ରତି ସେ ଅଭିଯୋଗ କେବେ ଉଠିନାହିଁ । ସେ ବଢ଼ିଛନ୍ତି ସଂପୂର୍ଣ୍ଣ ଭାବରେ ଆପଣାର ଶକ୍ତିରେ, ସାମର୍ଥ୍ୟରେ ।

କଂଗ୍ରେସ କର୍ମୀ ଭାବରେ ଜୀବନ । ଖଦଡ଼ ପିନ୍ଧିବା, ଗ୍ରାମେ ଗ୍ରାମେ କଂଗ୍ରେସର ବାର୍ତ୍ତା ପ୍ରଚାର କରିବା, ଜନ ସାଧାରଣଙ୍କୁ ସଂଗଠିତ କରିବାରେ ସମୟ କଟିଛି । ମାତୃଭାଷା ବଂଗଳା,

ଭାଷା ଏକ ବିରାଟ ପ୍ରତିବନ୍ଧକ ।  ମାଳତୀ ଦେବୀ ତାକୁ ଅତିକ୍ରମ କରିଗଲେ ।  ସମ୍ଭ୍ରାନ୍ତ, ବଂଗଳା ପରିବାରର ମଣିଷ ଓହ୍ଲାଇଗଲା ମାଟିକୁ, ଓଡ଼ିଶାର ମାଟିକୁ ।

ମାଳତୀଦେବୀଙ୍କୁ  ଭୟ ଛୁଇଁ ନାହିଁ । ସେ ସରକାରଙ୍କୁ ଯେପରି ଭୟ କରି ନାହାନ୍ତି, କୌଣସି କୁସଂସ୍କାର ତାଙ୍କୁ  ସ୍ପର୍ଶ କରିନାହିଁ । ନ୍ୟାୟ ପାଇଁ, ଯାହା ଠିକ୍ ଭାବିଛନ୍ତି ତାହା କରିବା ପାଇଁ, କହିବା ପାଇଁ ସେ କଦାପି ଭୟ କରି ନାହାନ୍ତି । ସ୍ୱାମୀ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ବିରୁଦ୍ଧରେ ଜନ ସମ୍ମୁଖରେ କହିବା ପାଇଁ ସେ ପଛାଇ ନାହାନ୍ତି । ତାଙ୍କର ଜୀବନ ସେଇଯୋଗୁଁ ସ୍ୱତନ୍ତ୍ର, ସଂପୂର୍ଣ୍ଣ ସ୍ୱତନ୍ତ୍ର । କାହାର ସ୍ତ୍ରୀ, କାହାର କନ୍ୟା, କାହାର ବୋହୂ  । ସେ ପ୍ରକାର ବିଶେଷଣରେ ସେ କେବେ ହେଲେ ଭୂଷିତ ହୋଇ ନାହାନ୍ତି । ମାଳତୀ ଦେବୀ ସେ ଦୃଷ୍ଟିରୁ ଅନନ୍ୟ ସାଧାରଣ ।

୧୯୩୦ରେ ଇଞ୍ଚୁଡ଼ି ସତ୍ୟାଗ୍ରହ ଆନ୍ଦୋଳନ ତାହା ପ୍ରମାଣ କରିଦେଲା । ବଂଗୀୟ ଯୁବତୀଙ୍କ କଣ୍ଠରେ ନିନାଦିତ ହେଲା ସଂଗୀତ, ନିନାଦିତ ହେଲା ଜ୍ୱାଳାମୟୀ ଭାଷଣ । ମାଳତୀ ଦେବୀଙ୍କ ନାମ ଓଡ଼ିଶାର ପୁରପଲ୍ଲୀରେ ଚହଟି ଗଲା । କିଏ ଏହି ନାରୀ ?

୧୯୩୬ ମସିହାରେ ମାଳତୀ ଦେବୀ ଝାସ ଦେଲେ କୃଷକ ଆନ୍ଦୋଳନରେ । ଚାଷୀ ହେଉଛି ଦେଶର ମାନଦଣ୍ଡ । ତାର ସଂଗ୍ରାମ କେବଳ ବ୍ରିଟିଶ ସରକାରଙ୍କ  ବିରୁଦ୍ଧରେ ନୁହେଁ , ଦେଶର ଜମିଦାରକୁଳ  ବିରୁଦ୍ଧରେ ମଧ୍ୟ । ଜମିଦାର ଘରର ବୋହୂ  - ରାଜା-ଜମିଦାର ଅତ୍ୟାଚାର ବିରୁଦ୍ଧରେ ଖଡ୍ଗ ଉତ୍ତୋଳନ କରିବ ? ସେ ଯୁଦ୍ଧର ମହାରଥୀମାନଙ୍କ ଭିତରୁ ବୋଧହୁଏ ଶ୍ରୀ ଗୁରୁଚରଣ ପଟ୍ଟନାୟକ ଓ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ  ବ୍ୟତୀତ ଅନ୍ୟ କେହି ଜୀବିତ ନାହାନ୍ତି ।

ଚାଷୀ ଆନ୍ଦୋଳନରୁ ଗଡ଼ଜାତ ପ୍ରଜାମଣ୍ଡଳ ଆନ୍ଦୋଳନ  ।  ମାଳତୀ ଦେବୀ ଝାସ ଦେଲେ ଢେଙ୍କାନାଳ ଓ ତାଳଚେର ପ୍ରଜାମଣ୍ଡଳ ଆନ୍ଦୋଳନ ଭିତରକୁ । ଢେଙ୍କାନାଳରେ ସେତେବେଳକୁ ଶଙ୍କର ପ୍ରତାପଙ୍କ ରାଜୁତି । ଆପଣାର ପାଶବିକ ଅତ୍ୟାଚାର  ପାଇଁ ସେ ସେତେବେଳକୁ ଭାରତ ପ୍ରସିଦ୍ଧ । ଢେଙ୍କାନାଳରେ ଗଭୀର ଅଂଧାରି ଶାସନର ରାଜୁତି । ମହାତ୍ମା ଗାନ୍ଧିଙ୍କୁ ମଧ୍ୟ ତାହା ବିବ୍ରତ କରିଛି । ମାଳତୀ ଦେବୀ ସେଇ ରାଜୁତ୍ୱ  ଶାସନ ଆନ୍ଦୋଳନ ଭିତରକୁ ଝାସ ଦିଅନ୍ତି  । ସେଇ ସମୟର ଏକ ରାତିରେ ଢେଙ୍କାନାଳ ରାଜ ପ୍ରାସାଦକୁ ହଜାର ହଜାର ଲଙ୍ଗୁଆ ମଣିଷ ଘେରାଉ କରନ୍ତି ମାଳତୀ ଦେବୀଙ୍କ  ନେତୃତ୍ୱରେ । ଇତିହାସ ସୃଷ୍ଟି ହୁଏ । ବାଜି ରାଉତ ଆପଣାର ପ୍ରାଣ ବଳି ଦେଇ ମାଳତୀ ଦେବୀ ଡ. ନବକୃଷ୍ଣ ଚୌଧୁରୀଙ୍କ ମନ ଭିତରେ ଏକ  ସ୍ପନ୍ଦନ ସୃଷ୍ଟି କରେ ଓ ଯାହା ପରବର୍ତ୍ତୀ କାଳରେ ତାଙ୍କର ରହଣୀ ସ୍ଥାନକୁ ବାଜିରାଉ ଛାତ୍ରାବାସ ନାମରେ ନାମିତ  କରିବାରେ କାରଣ ହୁଏ । ହଜାର ହଜାର ତାଳଚେରବାସୀ ଢେଙ୍କାନାଳବସୀ ରାଜ ଅତ୍ୟାଚାର ବିରୋଧରେ ଶରଣାର୍ଥୀ ହୁଅନ୍ତି ମୋଗଲବନ୍ଦୀ ଅଞ୍ଚଳ ଅନୁଗୋଳରେ । ଅନୁଗୋଳ ପାଲଟିଯାଏ ନବବାବୁ ଓ ମାଳତୀ ଦେବୀଙ୍କ ସ୍ଥାୟୀ କର୍ମକ୍ଷେତ୍ର । ବଂଧୁ ସହଯୋଦ୍ଧା ଅନୁଗୋଳର ଏମ୍.ଏଲ୍.ଏ ଗିରିଜା ଭୂଷଣ ଦତ୍ତଙ୍କର ଜମି ଉପରେ ବାଜିରାଉତ ଛାତ୍ରାବାସ ଗଢ଼ିଉଠେ ।

୧୯୪୨ ମସିହା ଅଗଷ୍ଟ ୯ ତାରିଖ । ଭାରତ ଛାଡ଼ ଆନ୍ଦୋଳନ , ସ୍ୱାମୀ ସ୍ତ୍ରୀ ଉଭୟେ ଝାସ ଦିଅନ୍ତି ଏଇ ଆନ୍ଦୋଳନରେ ଏବଂ ୧୯୪୫ ମସିହା ପର୍ଯ୍ୟନ୍ତ କାରାରୁଦ୍ଧ ହୁଅନ୍ତି ।

କ୍ଷମତାର ଲାଳସା ତାଙ୍କୁ କଦାପି ଘୋଟିନାହିଁ । ଯଦିଓ ସେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି ହୋଇଛନ୍ତି ଏବଂ ଓଡ଼ିଶାର ସଂଗ୍ରାମୀ ନେତୃବୃନ୍ଦଙ୍କ ଭିତରେ ସେ ଅନ୍ୟତମ ଅଗ୍ରଗଣ୍ୟ ।

୧୯୩୯ ମସିହା ଗଡ଼ଜାତ ଆନ୍ଦୋଳନ ଭିତରେ ବୀର ବୈଷ୍ଣବ ପଟ୍ଟନାୟକଙ୍କ ବୀରତ୍ୱ -ତାଙ୍କୁ ଯେପରି ମାଳତୀ ଦେବୀ ଓ ନବକୃଷ୍ଣଙ୍କ ନିକଟତର କରିଛି ଠିକ୍ ସେଇପରି ଶ୍ରୀ ଗୋବିନ୍ଦ ଚନ୍ଦ୍ର ମହାନ୍ତି, ଶ୍ରୀ ରବୀନ୍ଦ୍ର ମୋହନ ଦାସ ତାଙ୍କର ଖୁବ୍ ଆପଣାର ହୋଇଛନ୍ତି । ପରବର୍ତ୍ତୀ କାଳର ରାଜନୈତିକ ମତଭେଦ ସେ ଆତ୍ମୀୟତାକୁ କ୍ଷୁର୍ଣ୍ଣ କରିନାହିଁ । ସ୍ୱାଧୀନତା ଆସିଛି ସତ୍ୟ, କିନ୍ତୁ ଏ ସ୍ୱାଧୀନତା କାହା ପାଇଁ, ମାଳତୀ ଦେବୀଙ୍କୁ ଏହା ଘାରିଛି । ନବବାବୁ ବିଧାନସଭାର ସଦସ୍ୟ । ରାଜସ୍ୱ ମନ୍ତ୍ରୀ ମୁଖ୍ୟମନ୍ତ୍ରୀ ହେବା ସତ୍ତ୍ୱେ ମାଳତୀ ଦେବୀଙ୍କୁ କ୍ଷମତାଲିପ୍‌ସା ଛୁଇଁନାହିଁ । ମାଳତୀ ଦେବୀ ଅନନ୍ୟା ।

ତଥାକଥିତ 'ପପୁଲିଜମ୍' ମଧ ତାଙ୍କୁ ଭୀତ କରିନାହିଁ । ୧୯୫୦ ମସିହା କଥା , ରନ୍ତଲେଇ ବାବାଙ୍କ ପ୍ରଭାବରେ ଲକ୍ଷ ଲକ୍ଷ ଲୋକ ଧାଇଁଲେ ଅନୁଗୋଳର ରନ୍ତଲେଇ ଗ୍ରାମକୁ । ଅନେକ ବହୁ ବହୁ ବିଶିଷ୍ଟ ବ୍ୟକ୍ତି ମଧ ସେ ଅଂଧ ବିଶ୍ୱାସର ଶିକାର ହେଲେ । କିନ୍ତୁ ମାଳତୀ ଦେବୀ ନୁହନ୍ତି । ସେ ପ୍ରକାଶ୍ୟରେ ହଜାର ହଜାର ଭକ୍ତଙ୍କ ସାମନାରେ ଚଟକଣି ପକାଇଲେ ରନ୍ତଲେଇ ବାବାଙ୍କୁ । ପରବର୍ତ୍ତୀ କାଳର ବିଭୀଷିକା ପ୍ରମାଣ କଲା ତାଙ୍କର ଦୃଷ୍ଟିକୋଣକୁ ।

ଠିକ୍ ସେଇପରି ୧୯୫୬ ମସିହାରେ ସୀମା ଆନ୍ଦୋଳନର ସମୟ । ସୁନୀଲ ଦେ ବର୍ତ୍ତମାନ ମଧୁପୁର ହାଉସ (ପୁରୁଣା ଆକାଶବାଣୀ କେନ୍ଦ୍ର) ସାମନାରେ ସହିଦ ହୋଇ ସାରିଛନ୍ତି । ଚାରିଆଡ଼େ ଉତ୍ୟକ୍ତ ଜନତା, ହିଂସ୍ରମୁଖୀ ହୋଇଛନ୍ତି । ମାଳତୀ ଦେବୀଙ୍କର କଣ୍ଠରୁ ନିନାଦିତ ହେଲା — ମୁଁ ଆପଣମାନଙ୍କ ପାଖରେ । ଏ ସରକାରର ମତିଭ୍ରମ ଘଟିଛି । ଚାଲନ୍ତୁ ମୁଁ ଯିବି ଅନୁସନ୍ଧାନ କରିବା ପାଇଁ ଯେ ଘର ଭିତରେ ଆଉ କାହାରି ଶବ ଅଛି କି ନାହିଁ । ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ । ଆଜି ବି ତାହା ଧ୍ୱନିତ ହୁଏ ଆକାଶରେ । ସେ ଧ୍ୱନି ଖୋଜେ ଆଉ ଏପରି ଏକ ମଣିଷ ପାଇବା ପାଇଁ ।

ମାଳତୀ ଦେବୀ କେବେବେଳେ ହେଲେ ନିର୍ବାଚନ ଲଢ଼ିବାକୁ ଆଗ୍ରହ ପ୍ରକାଶ କରିନାହାନ୍ତି । କିନ୍ତୁ ପରବର୍ତ୍ତୀ କାଳରେ ପରିଣତ ବୟସରେ ସେ ଜରୋରୀ କାଳୀନ ପରିସ୍ଥିତିର ବିରୋଧରେ ପ୍ରତିବାଦର ସ୍ୱର ଜଣାଇବା ପାଇଁ ଠିଆ ହୋଇଛନ୍ତି ନିର୍ବାଚନରେ । ହାରିବା ବା ଜିତିବା ତାଙ୍କୁ ଛୁଇଁ ନାହିଁ । ମୁଁ ହେଉଛି ପ୍ରତିବାଦର ପ୍ରତୀକ - ତାହାହିଁ ଯଥେଷ୍ଟ ମୋ ପାଇଁ ।

ମାଳତୀ ଦେବୀ ପ୍ରଭୃତି ଆବାହନ କରି ଆଣିଥିଲେ ଭୂଦାନ ଆନ୍ଦୋଳନକୁ ଓଡ଼ିଶାକୁ । ଦିନେ ସ୍ୱାଧୀନତା ସଂଗ୍ରାମରେ ଯେପରି ବୁଲୁଥିଲେ ଗ୍ରାମେ ଗ୍ରାମେ, ଭୂଦାନ, ଗ୍ରାମଦାନ ପାଇଁ ସେ ମଧ ବୁଲିଲେ ଠିକ୍ ସେଇପରି ଗାଁ ଗାଁରେ । କୋରାପୁଟରୁ ମୟୂରଭଞ୍ଜ ।

କ୍ଷମତାର ଲୋଭରେ ଘାରି ନ ହୋଇ ସେ ନବଜୀବନ ଟ୍ରଷ୍ଟର ସଭାନେତ୍ରୀ ହେଲେ । ମହିଳା, ଦୁସ୍ଥ ମହିଳା ମାନଙ୍କର ଜୀବିକା ପାଇଁ ତାଲିମ ଆରମ୍ଭ କଲେ ଆପଣାର ବାଜି ରାଉତ ଛାତ୍ରାବାସରେ, ଯାହା ମାଳତୀ 'ଆଶ୍ରମ ନାମରେ ଅନୁଗୋଳ 'ଅଞ୍ଚଳରେ ଖ୍ୟାତ । ୧୯୪୮ ମସିହାରେ ସେ ଆପଣାର ଏକମାତ୍ର ପୁତ୍ର ବୁଲୁକୁ ହରାଇ ବସନ୍ତି । ପରବର୍ତ୍ତୀ କାଳରେ ସେ ଆପଣାର କନ୍ୟା ବୁବୁଲୁ ହରାନ୍ତି । ସ୍ୱାମୀ ନବକୃଷ୍ଣ ଚୌଧୁରୀ ମଧ୍ୟ ତାଙ୍କୁ ଛାଡ଼ି ଚାଲି ଯାଆନ୍ତି । ନାତିଟିଏ ମଧ୍ୟ ପରଲୋକ ହୋଇଯାଏ ମୋଟର ଦୁର୍ଘଟଣାରେ । ମାଳତୀ ଦେବୀ ପଥର ନୁହେଁ, ଇସ୍ପାତ ହୋଇ ଯାଆନ୍ତି । ଯମୁନାଲାଲ ବଜାଜ୍ ଆୱାର୍ଡ, ବିଶ୍ୱ ଭାରତୀର ସମ୍ମାନ ସବୁ ମିଳିଛି । ସରକାରୀ ଓ ବେସରକାରୀ । ସେଥିରୁ କେତେକ ସେ ପରବର୍ତ୍ତୀ କାଳରେ ପ୍ରତିବାଦ କରି ଫେରାଇ ଦେଇଛନ୍ତି । ଗାନ୍ଧୀବାଦର ବାବଦୂକ ମାଳତୀ ଚୌଧୁରୀଙ୍କୁ ନକ୍ସଲବାଦୀ ଆନ୍ଦୋଳନ ପ୍ରଭାବିତ କରିଛି । ନକ୍ସଲବାଦୀ ଆନ୍ଦୋଳନର ନେତା ନାଗଭୂଷଣ ପଟ୍ଟନାୟକଙ୍କୁ ଫାଶିକାଠରୁ ମୁକ୍ତ କରିବା ପାଇଁ, ଜେଲ୍‌ଖାନାରେ ବନ୍ଦୀ ଥିବାବେଳେ ଶ୍ୱାସରୋଗରେ ଆକ୍ରାନ୍ତ ନାଗ ଭୂଷଣଙ୍କ ଚିକିତ୍ସା ପାଇଁ ସେ ମାଆ ଭଳି ନିବେଦନ କରିଛନ୍ତି । ମୋ ସ୍ତ୍ରୀ କମଳକୁମାରୀ ପଟ୍ଟନାୟକ ଶ୍ୱାସ ରୋଗ ପାଇଁ ଔଷଧ ଦେଉଛନ୍ତି ଜାଣି ପହଞ୍ଚନ୍ତି ଆମ ଘରେ ଅଚାନକ, ନାଗଭୂଷଣଙ୍କ ପାଇଁ ଔଷଧ ସକାଶେ ।

ଭୂଦାନୀ, ଜୀବନଦାନୀ ମାଳତୀ ଦେବୀ ବିନୋବାଙ୍କୁ ପରିତ୍ୟାଗ କଲେ ଜରୋରୀ କାଳୀନ ପରିସ୍ଥିତି ସମୟରେ । ବିନୋବା ଜରୋରୀ କାଳୀନ ପରିସ୍ଥିତିକୁ ଅନୁଶାସନ ପର୍ବ ବୋଲି କହି ସ୍ୱାଗତ କରନ୍ତି । ଜୟପ୍ରକାଶ, ନବକୃଷ୍ଣ, ମାଳତୀ ପ୍ରଭୃତି ତାହାର ବିରୋଧ କରନ୍ତି । ସେଇ ରାତି, ମାଳତୀ ଦେବୀଙ୍କ ଦେହରେ ୧୦୫ ଡିଗ୍ରୀ ଉତ୍ତାପ । ପୁଲିସ ତାଙ୍କୁ ଗିରଫ କରିବାକୁ ଯାଇ ପହଞ୍ଚିଲା ଥୋରିଆ ସାହି ବାସଭବନରେ । ସେମାନେ ଗାଡ଼ି ନନେବା ପାଇଁ ଉପରୁ ନିର୍ଦ୍ଦେଶ ଥିଲା । ଚଲାଇ କରି ଆଣିବେ ପୁଲିସ ତାଙ୍କୁ ଜେଲ ପର୍ଯ୍ୟନ୍ତ ସେଇ ଜ୍ୱରରେ, ମାଳତୀ ଦେବୀ ଫୋନ କଲେ କଟକ ଜେଲର ଜେଲରଙ୍କୁ । ଜେଲର ତାଙ୍କର ବନ୍ଧୁପୁତ୍ର । ଆଶ୍ଚର୍ଯ୍ୟାନ୍ୱିତ ଜେଲର ଜେଲ୍‌ଭ୍ୟାନ ନେଇ ପହଞ୍ଚିଥିଲେ 'ନୁମା'ଙ୍କୁ ଆଣିବା ପାଇଁ । ପରବର୍ତ୍ତୀ କାଳରେ ସେ ସସ୍‌ପେଣ୍ଡ ହେଲେ କିନ୍ତୁ କୈଫିୟତ ଦେଲେ ଯେ ଏହା କରିବା ଛଡ଼ା ମୋ ପାଇଁ ଆଉ କୌଣସି ଉପାୟ ନ ଥିଲା । ତତ୍‌କାଳୀନ କଟକ କଲେକ୍ଟର ସତ୍ୟରଂଜନ ପାଲ ତାର ସାକ୍ଷୀ ।

ମାଳତୀ ଦେବୀଙ୍କ ବୟସ ଅତିକ୍ରାନ୍ତ ହୋଇଥିଲା । ସେ ବାଜି ରାଉତ ଛାତ୍ରାବାସରେ ହିଁ ସମୟ କାଟିଲେ । ଥରେ ତତ୍‌କାଳୀନ ରେଭିନ୍ୟୁ ବୋର୍ଡ ସଦସ୍ୟ ଶ୍ରୀ ବିଘ୍ନରାଜ ପଟେଲ ଏବଂ ମୁଁ ଯାଇଥିଲୁ ତାଙ୍କ ଆଶ୍ରମକୁ । ସାଂଗରେ ଏସ୍.ଡି.ଓ. ତହସିଲଦାର ପ୍ରଭୃତି ଥିଲେ । ମାଳତୀ ଦେବୀ ବିନମ୍ରତାର ସହିତ କହିଲେ ଯେ ଯାହା ହେଉ ବିଘ୍ନରାଜ,ତମେ ଆସିଥିବାରୁ ଏଇ ସବୁ ଅଫିସରମାନଙ୍କ ସହିତ ସାକ୍ଷାତ ହେଲା । ନଚେତ୍ ସେମାନଙ୍କୁ ଡାକିଲେ ବି ଆସୁନାହାନ୍ତି । ଚକିତ ଏବଂ ଦୁଃଖିତ ବିଘ୍ନରାଜ ଆଦେଶ ଦେଇଥିଲେ ଅଫିସରମାନେ ମାଳତୀ ଦେବୀଙ୍କୁ ପ୍ରତି ସପ୍ତାହରେ ଦେଖା କରିବେ । ତାହା କେତେ କାର୍ଯ୍ୟକାରୀ ହେଲା କହି ପାରିବି ନାହିଁ ।

ମାଳତୀ ଦେବୀ ଏବଂ ନବବାବୁଙ୍କ ଭିତରେ ସମ୍ପର୍କ ଥିଲା ବିଚିତ୍ର । ପ୍ରତି କଥାରେ ଦୁଇ ଦୁହିଁଙ୍କ ମଧ୍ୟରେ ଝଗଡ଼ା ଏବଂ ମତଭେଦ ଦେଖିଲେ ମନେ ହେବ, ଏ କି ପ୍ରକାର ଦମ୍ପତି ? କିନ୍ତୁ ଦୁହିଁଙ୍କ ମଧ୍ୟରେ ନିବିଡ଼ତା ଏତେ ପ୍ରଗାଢ଼ ଯେ ତାହା କହିବା କଷ୍ଟକର । ମାଳତୀ ଦେବୀ ବେମାର ଥିବାର ମିଥ୍ୟା ଖବର ପାଇ ନବବାବୁ ଦ୍ରୁତଗାମୀ କାରରେ ଯାଇ ଦୁର୍ଘଟଣାର ସମ୍ମୁଖୀନ ହୋଇଥିଲେ । ଯେପରି ନବବାବୁ ହଠାତ୍ କୁଆଡ଼େ ବୁଲିଯାଇ ଠିକ୍ ସମୟରେ ନ ଫେରିଲେ ମାଳତୀ ଦେବୀଙ୍କର ବ୍ୟଗ୍ରତା ଏବଂ ଉଦ୍‌ବେଗ ମୋ ଭଳି ବହୁ ବ୍ୟକ୍ତିଙ୍କୁ ଉଦ୍‌ବେଗ ଏବଂ ଅନୁପ୍ରାଣିତ କରିଛି । ଅଥଚ ପର ମୁହୂର୍ତ୍ତରେ ପୁଣି ସେଇ ଝଗଡ଼ା, ଦେଶର ସମସ୍ୟା, ଆନ୍ତର୍ଜାତିକ ସମସ୍ୟା ସବୁ ଉପରେ ।

ଅନୁଗୋଳରେ ସବୁ ପଳାତକ ଝିଅମାନଙ୍କର ଆଶ୍ରୟସ୍ଥଳୀ ଭାବରେ ମାଳତୀ ଆଶ୍ରମ ସୁବିଦିତ । କିନ୍ତୁ ମାଳତୀ ଦେବୀ ଭୀଷଣ ଶୃଙ୍ଖଳାପ୍ରିୟ । ସାମାନ୍ୟ ବିଚ୍ୟୁତିକୁ ମଧ୍ୟ ସେ ସହ୍ୟ କରିବାକୁ ନାରାଜ । ଚଳଚ୍ଚିତ୍ର ଦେଖୁଥିବା ବେଳେ ଚଳଚ୍ଚିତ୍ରର ଟିକିଏ ଯୌନ ବିଷୟ ଦର୍ଶିତ ହେଲେ ସେ ଚଳଚ୍ଚିତ୍ରକୁ ବନ୍ଦ କରିଦେବେ ନିଶ୍ଚିତ ଭାବରେ । ନବବାବୁ କିନ୍ତୁ ଠିକ୍ ଓଲଟା । ଭେଲବନ ଜାଣିଲେ ଲୋକେ କିମିତି ଭଲ କୁ ଜାଣିବେ ? ନବବାବୁଙ୍କ ସାଙ୍ଗରେ ତାଙ୍କର ପ୍ରତି ମୁହୂର୍ତ୍ତରେ ଝଗଡ଼ା । କିନ୍ତୁ ଦମ୍ପତି ସଂପୂର୍ଣ୍ଣ ଆଦର୍ଶ ସ୍ଥାନୀୟ, ମାନବିକତାରେ ଉଦ୍‌ବୁଦ୍ଧ । ଗାନ୍ଧୀ ଆଦର୍ଶରେ ଅନୁପ୍ରାଣିତ ଆଶ୍ରମ । କିନ୍ତୁ ଫଟୋ ଝୁଲୁଛି, ହୋ-ଚି-ମିନ୍ ଏବଂ ମାଓ-ସେ-ତୁଂଙ୍କର ।

ଏଇଭଳି ଏକ ବର୍ଣ୍ଣାଢ଼୍ୟ ମହାନାୟକଙ୍କର ମହାଯାତ୍ରା । ଯେଉଁଠି ସାଥୀ ସହଯୋଦ୍ଧା ନବ ବାବୁଙ୍କର ସମାଧି ଗଢ଼ା ହୋଇଛି ଠିକ୍ ତାରି ପାଖରେ ଜଳୁଛି, ମାଳତୀ ଦେବୀଙ୍କର ଚିତା । ସେ ସମସ୍ତଙ୍କର 'ନୁମା' ଥିଲେ । ସେଇ 'ନୁମା' ଆଉ ନାହାନ୍ତି । ଇତିହାସ ସେଇ ଦୁନ୍ଦୁଭି ନୀରବିତ ଏବଂ ତାର ସମ୍ମାନରେ ବାଜୁଛି ପୁଲିସର ଅନ୍ତିମ ବିଗୁଲ 'ଲାଷ୍ଟ ପୋଷ୍ଟ' ।

ନୁମା ଆପଣ ଆଉ ନାହାନ୍ତି ।



# ଉଜ୍ଜ୍ୱଳ ପରମ୍ପରାର ମହାଯାତ୍ରା

ପରମ୍ପରା ଭାଙ୍ଗି ଯାଉଛି । ପରମ୍ପରାର ସୃଷ୍ଟି ହେଉଛି । ସ୍ଥାନ ଅଜୟ ଭବନ, ନୂଆଦିଲ୍ଲୀ । ଭାରତୀୟ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ର ଅଫିସ । ଛୋଟିଆ ମଣିଷଟିଏ ଶୋଇ ଯାଇଛି ମହାନିଦ୍ରାରେ । କୌଣସି ପଦବୀ ଲୋଡ଼ିନାହିଁ, କୌଣସି ନିର୍ବାଚନରେ ଠିଆ ହୋଇନାହିଁ । କୌଣସି ଆୱାର୍ଡ ମିଳିନାହିଁ ଓ ସେଇ ମଣିଷଟି ପ୍ରତି ଶ୍ରଦ୍ଧାଞ୍ଜଳି ଦେବାକୁ ଆସିଛନ୍ତି ଭାରତର ରାଷ୍ଟ୍ରପତି, ଭାରତର ପ୍ରଧାନମନ୍ତ୍ରୀ ପୁଣି ଆପଣାର ତୀବ୍ର ରାଜନୈତିକ ବିରୋଧୀ କଂଗ୍ରେସ ସଭାପତି ସୀତାରାମ କେଶରୀ । ପ୍ରୋଟୋକଲର ନିୟମ ଭାଂଗି ପଡ଼ୁଛି ତ୍ୟାଗ ଆଗରେ ନିଷ୍ଠା ଆଗରେ ନୀତି ପ୍ରତି ଆନୁଗତ୍ୟ ଆଗରେ ।

ପ୍ରବୁଦ୍ଧ ସ୍ୱାଧୀନତା ସଂଗ୍ରାମୀ, ମାର୍କ୍ସବାଦୀ ଏମ୍.ଫରୁକ୍ କିଙ୍କର ହଠାତ୍ ପରଲୋକ ହୋଇଯାଇଛି । କିଛି ସୂଚନା ନ ଥିଲା । ୭୭ ବର୍ଷ ବୟସ୍କ ଫରୁକି ବେଶ୍ ସୁସ୍ଥ ଥିଲେ ବୟସ ତୁଳନାରେ । ରାଜୀବ ଗାନ୍ଧୀ ଫାଉଣ୍ଡେସନ୍ ଦ୍ୱାରା ଆୟୋଜିତ ଏକ ସେମିନାରରେ ସେ ଏଇମାତ୍ର ଆପଣାର ବକ୍ତବ୍ୟ ସାରିଛନ୍ତି । ବିଷୟବସ୍ତୁ ଥିଲା 'ଭାରତବର୍ଷରେ କୋଅଲିସନ୍ ବା ବୁଝାମଣା ସରକାର ।' ଫରୁକି ମିଷ୍ଟଭାଷୀ , ବନ୍ଧୁବସଳ । କିନ୍ତୁ ନିଜର ମତ ପ୍ରକାଶ କଲାବେଳେ ସେ ମଧୁର ଭାଷାରେ ବେଶ୍ କଠୋର ଭାଷା କହିପାରନ୍ତି ।

ରାଜନୀତିରେ ମୂଲ୍ୟବୋଧର ଅବକ୍ଷୟ ଦ୍ରୁତ ଗତିରେ ଘଟୁଛି । ତାଙ୍କର ନିଜ ଦଳ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ସେଥିରୁ ମୁକ୍ତ ନୁହେଁ । ସରଳ, ବାଙ୍ଗରା ମଣିଷଟିଏ । ପରିଧାନ, ପରିଚ୍ଛଦ ଖୁବ ସରଳ । ଘରେ ସ୍ତ୍ରୀ ବିମଳା ନିଜେ କମ୍ୟୁନିଷ୍ଟ ପାର୍ଟିର ଅନ୍ୟତମ ନେତ୍ରୀ । ପୁଅ ଅମର ଫାରୁକି ଦିଲ୍ଲୀର କୌଣସି ଏକ କଲେଜରେ ଅଧ୍ୟାପନା କରେ ଆସଫ ଅଲ୍ଲି ରୋଡ଼ର ଏକ ଛୋଟିଆ ଘରେ ତାଙ୍କର ଜୀବନ କଟିଯାଏ । ଦ୍ରୁତ ଅବକ୍ଷୟ ଭିତରେ ଯେଉଁମାନେ ଉଜ୍ଜଳି ରହିଛନ୍ତି, ଯେଉଁମାନେ ଆଦର୍ଶକୁ ଅପଣାର ଜୀନର ପାଥେୟ ଭାବରେ ଗ୍ରହଣ କରି ନେଇଛନ୍ତି ସେମାନଙ୍କ ଭିତରେ ଫରୁକି ଅନ୍ୟତମ ।

ଉତ୍ତର ପ୍ରେଦେଶର ସାହାରାନପୁରରେ ତାଙ୍କର ଜନ୍ମ ୧୯୨୦ ମସିହାରେ । ୧୯୩୦ ମସିହାରେ ସେ ଦିଲ୍ଲୀ ଆସନ୍ତି ଉଚ୍ଚତର ଅଧ୍ୟୟନ ପାଇଁ ଏବଂ ଏଇ ସହରରେ ରହି ଯାଆନ୍ତି ସବୁ ଦିନ ପାଇଁ । ଦିଲ୍ଲୀ ତାଙ୍କର କର୍ମକେନ୍ଦ୍ର ହୋଇଯାଏ । ପ୍ରସିଦ୍ଧ ସେଣ୍ଟ ଷ୍ଟିଫେନ୍ସ କଲେଜରେ

ପାଠ ପଢୁଥିଲାବେଳେ ସେ ସକ୍ରିୟ ରାଜନୀତିରେ ଝାସ ଦିଅନ୍ତି । ଆଉ ପଛକୁ ଫେରି ଅନେଇ ନାହାନ୍ତି । ଜବାହାର ଲାଲ ନେହେରୁଙ୍କର ଗିରଫଦାରୀ ଓ ରାଜନୈତିକ ବନ୍ଦୀ ମାନଙ୍କ ଉପରେ ଅତ୍ୟାଚାର ପ୍ରତିବାଦରେ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଛାତ୍ର ଧର୍ମଘଟ ଆୟୋଜନ କରିଥିବା ଅପରାଧରେ ଫରୁଖିଙ୍କୁ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଗୋରା କୁଳପତି ସାର୍ ମରିସ୍ ଗୟର୍, ବିଶ୍ୱବିଦ୍ୟାଳୟରୁ ବହିଷ୍କାର କରନ୍ତି । ତାଙ୍କ ଏମ୍.ଏ. ଡିଗ୍ରୀକୁ ପ୍ରତ୍ୟାହାର କରି ନିଆଯାଏ ଏବଂ ସେ ଡିଗ୍ରୀ ସେ ଫେରି ପାଆନ୍ତି ସମ୍ମାନର ସହିତ ୧୯୮୯ ମସିହାରେ । ଜୀବନର ମ୍ଳାନ ଅପରାହ୍ନରେ । ଦିଲ୍ଲୀର ସେଣ୍ଟ ଷ୍ଟିଫେନ୍ସ କଲେଜ । ସମ୍ଭ୍ରାନ୍ତ କଲେଜ । ସମ୍ଭ୍ରାନ୍ତ ବଂଶୀୟମାନଙ୍କର ସେଠାରେ ରାଜକୀୟ ଭିଡ଼ । ଫରୁଖି କିନ୍ତୁ ସେଇ କଲେଜ ୟୁନିୟନର ସଭାପତି ନିର୍ବାଚିତ ହୁଅନ୍ତି । କଲେଜ ୟୁନିୟନରେ ସଭାପତି ହେବାରେ ସେ ପ୍ରଥମ ଭାରତୀୟ । ନୂଆ ପରମ୍ପରା । ପୁଣି ଥରେ ସେ ନିର୍ବାଚିତ ହୁଅନ୍ତି କଲେଜ ୟୁନିୟନ୍‌ର ସଭାପତି ଭାବରେ । ନୂଆ ପରମ୍ପରା ସୃଷ୍ଟି ଫରୁଖି ଜୀବନରେ ଯେପରି କରି ଯାଇଛନ୍ତି ମରଣରେ ବି ସେଇପରି କରିଗଲେ ।

ଫରୁଖି ସମାଜବାଦ ପ୍ରତି ଆକୃଷ୍ଟ ହୋଇଥିଲେ । ବହୁ ବାମପନ୍ଥୀଙ୍କ ପରି ଅକ୍ଟୋବର ବିପ୍ଳବ ତାଙ୍କ ଉପରେ ପ୍ରବଳ ପ୍ରଭାବ ବିସ୍ତାର କରିଥିଲା । ସୋଭିଏଟ୍ ୟୁନିୟନରେ ସମାଜବାଦୀ ପରୀକ୍ଷାରେ ବିଫଳତା ତାଙ୍କୁ ବାଧିଥିଲା । କିନ୍ତୁ ସେ ନିରାଶ ହୋଇ ନ ଥିଲେ । ସମାଜବାଦ ଏକ ବିଜ୍ଞାନ ପ୍ରସୂତ ସାମାଜିକ ଚିନ୍ତାଧାରା । ତାହା ବ୍ୟର୍ଥ ହୋଇ ନ ପାରେ, ଏଇ ଥିଲା ଫରୁଖିଙ୍କର ବିଶ୍ୱାସ ।

ଫରୁଖି ୧୯୪୦ ମସିହାରେ ନିଖିଳ ଭାରତ ଛାତ୍ର ସଂଘର ସଭାପତି । ଠିକ୍ ସେତିକିବେଳେ ତାଙ୍କ ନେତୃତ୍ୱରେ ପଂଜାବ ରାଜ୍ୟ ଛାତ୍ର ସଂଘର ସଂପାଦକ ଶ୍ରୀ ଇନ୍ଦର କୁମାର ଗୁଜରାଲ । ସମୟ ଅତିକ୍ରାନ୍ତ ହୋଇଛି । ରାଜନୈତିକ ବିପର୍ଯ୍ୟୟ ଭିତରେ ଇନ୍ଦର ଗୁଜରାଲ ସାମ୍ୟବାଦ ଦଳରୁ କଂଗ୍ରେସ ଦଳକୁ ଯାଇଛନ୍ତି । ଇନ୍ଦିରା ଗାନ୍ଧୀଙ୍କର ଜରୋରୀ କାଳୀନ ଶାସନର ବାବଦୂକ ପାଲଟିଛନ୍ତି । ପରେ ପୁତ୍ର ସଂଜୟ ସହିତ ହୋଇଛି ମତଭେଦ । ରାଜନୈତିକ ଘାତଚକ୍ରରେ ସେ ଭାରତର ପ୍ରଧାନମନ୍ତ୍ରୀ ହୋଇଛନ୍ତି ନିଜର ନିର୍ବାଚନ ମଣ୍ଡଳୀ ନ ଥାଇ । ଦୁହିଁଙ୍କ ଭିତରେ ବନ୍ଧୁତା ଅତୁଟ ରହିଚି । ଯଦିଓ ଫରୁଖିଙ୍କର ମତରେ "କଂଗ୍ରେସ ପୁଣି ଥରେ ଗାଦୀକୁ ନିକଟରେ ଫେରିବା ଦିବାସ୍ୱପ୍ନ, ଖୁବ୍ ବେଶୀ ହେଲେ ଏହାର ପୁନର୍ଗଠନ ପଡୁଖା ନେତା ମାନଙ୍କୁ କିଛି ଆଶ୍ୱାସନା ଆଣିଦେବ" । ଫରୁଖିଙ୍କ ଭଳି ନେତାମାନେ ସ୍ୱାଧୀନତା ଆନ୍ଦୋଳନ ଓ ବର୍ତ୍ତମାନ ରାଜନୀତି ଭିତରେ ପୋଲ ପରି । ରାଜନୈତିକ ଧୂସର ଦିଗ୍ ବଳୟରେ ନୀତି ବା ଆଦର୍ଶ ପ୍ରତି ଆନୁଗତ୍ୟର ଭିତରେ ଏଇ ବାଂଗରା ଟିକି ମଣିଷକୁ ଦେଖିଲେ ମନେହୁଏ ଯେ ସବୁ କିଛି ଲୋପ ପାଇଯାଇ ନାହିଁ ।

ସେ କେବେ ନିର୍ବାଚନରେ ଠିଆ ହେବା ପାଇଁ ଆଗ୍ରହ ମଧ୍ୟ ପ୍ରକାଶ କରି ନାହାନ୍ତି । ଦଳ, ଦଳର ବିଭିନ୍ନ ସଂଗଠନରେ କାମ ହିଁ ତାଙ୍କ ପାଇଁ ଆଣି ଦେଇଛି ତୃପ୍ତି । କୌଣସି ଉପାଧି

ବା ଆୱାର୍ଡ ତାଙ୍କୁ ଭୂଷିତ କରିନାହିଁ । ସେ ରହିଯାଇଛନ୍ତି ସେଇପରି ସରଳ, ନିର୍ଭୀକ, ସଚ୍ଚୋଟ ସେନାନୀ ହୋଇ ।

ତିନିଥର କାରାବାସ ଭୋଗ କରିବାକୁ ପଡ଼ିଛି । ଭାରତଛାଡ଼ ଆନ୍ଦୋଳନରେ କାରାବରଣ କରିଛନ୍ତି । କମ୍ୟୁନିଷ୍ଟ ପାର୍ଟିର ସେନାନୀ ଭାବରେ କାରାବରଣ କରିବାକୁ ପଡ଼ିଛି । ସେ ଶାଣିତ ହୋଇଛନ୍ତି , ଲୁହା ଇସ୍ପାତରେ ପରିଣତ ହୋଇଚି ।

କମ୍ୟୁନିଷ୍ଟ ପାର୍ଟିରେ ସେ ଯୋଗଦେଇଥିଲେ ୧୯୪୦ ମସିହାରେ । ଘାତ ପ୍ରତିଘାତ, ଉତ୍ଥାନପତନ, ବିକାଶ ବିଭାଜନ, ଭିତରେ ସେ ରହିଛନ୍ତି ଅନମନୀୟ ଯୋଦ୍ଧା ଭାବରେ । ଆପଣାର ଅଙ୍ଗୀକାର, ଆପଣାର ବିଶ୍ୱାସ ଉପରେ ଅବିଚଳ ଏଇ ମହାରଥୀ ବିଲୁପ୍ତ ହୋଇ ଯାଉଥିବା ଏକ ଗୋଷ୍ଠୀର ଉଜ୍ଜ୍ୱଳ ସନ୍ତକ । ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଜାତୀୟ କାଉନ୍‌ସିଲର ସଂପାଦକ, ବିଶ୍ୱ ଶାନ୍ତି ଓ ମୈତ୍ରୀ ଆନ୍ଦୋଳନର ମହାରଥୀ, ଦେଶପ୍ରେମର ଉଜ୍ଜ୍ୱଳ ଧ୍ୱଜାଧାରୀ ଏଇ ମହାରଥୀ, ସ୍ମୃତ ହେଇ ରହିବେ ବହୁକାଳ ଧରି ।



# କବିର ମହାଯାତ୍ରା

ଯତୀନ୍ଦ୍ର ନାଥ ଦାସ ପଟ୍ଟନାୟକଙ୍କର ପରିଚିତ ମୁହଁ ଆଉ ସଭାସମିତିରେ ଦେଖିବାକୁ ମିଳିବ ନାହିଁ । ସେଇ ପରିଚିତ ପ୍ରାଣବନ୍ତ ମୁହଁ ଗଲା କେତେ ଦିନ ହେଲା ବିରଳ ହୋଇ ଯାଇଥିଲା । ଅସୁସ୍ଥ ଯତୀନ୍ଦ୍ରନାଥ ଫେରି ଯାଇଥିଲେ ବାଲେଶ୍ୱର ଜିଲ୍ଲା ଆପଣାର ଗ୍ରାମ ବରୁଣସିଂ ଗ୍ରାମକୁ । ସେଇଠି ସେ ବିଦାୟ ନେବେ ପୃଥିବୀରୁ । ଯେଉଁ ମାଟିରେ ସେ ଜନ୍ମ ଗ୍ରହଣ କରିଥିଲେ ୧୯୧୧ ମସିହା ନଭେମ୍ବର ୧୧ ତାରିଖରେ ସେଇଠି ସେ ବିଦାୟ ନେଲେ ଅକ୍ଟୋବର ୨୩ ତାରିଖ ୧୯୯୭ ମସିହାରେ ମାଟିର ମଣିଷ ମାଟିରେ ମିଶିଗଲା ।

ଯତୀନ୍ଦ୍ରନାଥ ଜନ୍ମ ହୋଇଥିଲେ ଏକ ଆଭିଜାତ୍ୟ ପରିବାରରେ । କିନ୍ତୁ ଜାତୀୟତାବାଦ ଆସିଥିଲା ତାଙ୍କର ରକ୍ତରେ । ୧୯୨୧ ମସିହାର କଥା । ଯତୀନ୍ଦ୍ରନାଥ ସାନ୍ନିଧ ଲାଭ କରିଥିଲେ ଗାନ୍ଧିଜୀଙ୍କର, ଭଦ୍ରଖ ସହରରେ । କିଶୋର ଯତୀନ୍ଦ୍ରନାଥ ଗାନ୍ଧିଜୀଙ୍କ ବାଣୀରେ ଉଦ୍‌ବୁଦ୍ଧ ହୋଇଥିଲେ । ପୋଲିସ ରେକର୍ଡରେ ତାଙ୍କର ନାମ ଥିଲା କିନ୍ତୁ ଶଚ୍ଚିଦାନନ୍ଦ । ଶଚ୍ଚିଦାନନ୍ଦ ନାମରେ ଯତୀନ୍ଦ୍ରନାଥ କାରାବରଣ କରିଛନ୍ତି ବହୁବାର । ୧୯୨୭ ମସିହାରେ ମହାତ୍ମା ଗାନ୍ଧୀଙ୍କ ବାଲେଶ୍ୱର ଗସ୍ତ ସମୟରେ ସେ ଗାନ୍ଧିଜୀଙ୍କର ନିବିଡ଼ ସଂପର୍କରେ ଆସିଥିଲେ । ୧୯୩୦ ମସିହାରେ ଐତିହାସିକ ଇଞ୍ଚୁଡ଼ି ଲବଣ ସତ୍ୟାଗ୍ରହ । ପୁଲିସର ନିର୍ମମ ଲାଠି ପ୍ରହାର ଖାଇବା ଦ୍ୱାରା ଦୁଇଟିଯାକ ଗୋଡ଼ ଭାଙ୍ଗିଯାଏ ଯତୀନ୍ଦ୍ରନାଥଙ୍କର । ଜୀବନର ଅପରାହ୍ନ ସମୟରେ ସେଇ ପୁରୁଣା କ୍ଷତ ଓ ଯନ୍ତ୍ରଣା ତାଙ୍କୁ ମନେ ପକାଇଛି ଅତୀତ ଦିନର କଥା । ପୁଲିସର ଘନ ଘନ ଚଢ଼ାଉ ଓ ଗିରଫଦାରୀ ପରବାନା ହେତୁ ଯତୀନ୍ଦ୍ରନାଥ ସାଜନ୍ତି ପଳାତକ । ରହନ୍ତି ଅଜ୍ଞାତ ବାସରେ । ପରି ଶେଷରେ ଆନ୍ଦୋଳନ ଧିମେଇ ଗଲା ପରେ ନିଜ ମାମୁଁ ଘର ମେଦିନୀପୁର ଜିଲ୍ଲା ବାଲିସାହି ସ୍କୁଲରୁ ମାଇନର, କଣ୍ଟାଇ ହାଇସ୍କୁଲରୁ ମାଟ୍ରିକ ପାସ କରନ୍ତି । ପରେ କଲିକତା ବିଶ୍ୱବିଦ୍ୟାଳୟରୁ ଆଇ.ଏ.ପାସ କରନ୍ତି । ଯତୀନ୍ଦ୍ରନାଥ ।

ସମୟ ଅତିକ୍ରାନ୍ତ ହୋଇଛି । ଜମିଦାରୀ ଉଚ୍ଛେଦ ହୋଇଛି । ବଂଶାନୁକ୍ରମିକ ଖାନଦାନୀ କମି ଯାଇଛି । ଯତୀନ୍ଦ୍ରନାଥ ପରିବାର ପୋଷଣ ପାଇଁ ଚାକିରି ଆରମ୍ଭ କରନ୍ତି ଅବକାରୀ ବିଭାଗରେ ଏବଂ ସେଇ ବିଭାଗର ଇନ୍ସପେକ୍ଟର ଭାବରେ ଅବସର ଗ୍ରହଣ କରନ୍ତି । ଅବକାରୀ ବିଭାଗରେ ଚାକିରି ଜୀବନ କଟିଗଲା । କିନ୍ତୁ ମଦ, ମାଂସ, ବିଡ଼ି, ସିଗାରେଟ, ପାନ, ଏଭଳି କି ତାହା ମଧ୍ୟ ସେ ସ୍ପର୍ଶ କରି ନାହାନ୍ତି ଜୀବନରେ ।

ଜଗନ୍ନାଥ ତାଙ୍କ ପାଇଁ ଉତ୍କଳୀୟ ଧର୍ମ ଏବଂ ସଂସ୍କୃତି ଉଭୟର ପ୍ରତୀକ । ଜଗନ୍ନାଥ ଧର୍ମ ଓ ଦର୍ଶନ ପ୍ରଚାର ତାଙ୍କ ଜୀବନବ୍ୟାପୀ ସାଧନା । ଜୀବନର ଅନେକ ବର୍ଷ କଟିଛି

କୋରାପୁଟ ଆଦିବାସୀ ମାନଙ୍କ ଗହଣରେ । ବୁନ୍ଦା ପ୍ରକୃତି, ତୀଖ ପାହାଡ଼, ଟିପିଟିପି ପଡୁଥିବା କାକର, ମହୁଆ କୁରେହିଁ ଫୁଲର ଗନ୍ଧ, ପାହାଡ଼ ଖୋଲ ଏବଂ ସର୍ବୋପରି ଆଦିବାସୀର ସରଳ ଜୀବନ ତାଙ୍କୁ ମତୁଆଲା କରିଥିଲା । ତାଙ୍କର ଲେଖନୀରୁ ଝରିଥିଲା ବହୁ କବିତା । ପୁରସ୍କୃତ ହୋଇଥିଲେ ସେ ଜୟପୁର ରାଜଦରବାରରେ । କବି ଶେଖର ଉପାଧି ମିଳିଥିଲା । ମିଳିଥିଲା, ତାମ୍ରଫଳକ । ଚାକିରି ଜୀବନ ତାଙ୍କୁ ନେଇ ଯାଇଥିଲା ଓଡ଼ିଶାର ବିଭିନ୍ନ ଜିଲ୍ଲାକୁ । ଉତ୍କଳର ପ୍ରକୃତି ସମ୍ପଦ ତାଙ୍କୁ ମୁଗ୍ଧ କରିଥିଲା । ସେ ଲେଖିଥିଲେ ଆପଣାର କାବ୍ୟ 'ଭୂସ୍ୱର୍ଗ ଉତ୍କଳ' ଏବଂ ପୁରସ୍କୃତ ହୋଇଥିଲେ ଡକ୍ଟର ହରେକୃଷ୍ଣ ମହତାବଙ୍କ ଦ୍ୱାରା ।

ଜୀବନରେ ସେ ବହୁ ଜନ କଲ୍ୟାଣ କାର୍ଯ୍ୟରେ ଆପଣାକୁ ନିବେଦିତ କରିଯାଇଛନ୍ତି । ନୀଳଗିରି ରୋଡ଼ ଉଚ୍ଚ ବିଦ୍ୟାଳୟ, ନିଜ ଗ୍ରାମରେ ଜଗନ୍ନାଥ ମହାବିଦ୍ୟାଳୟ, ନାରୀ ଶିକ୍ଷା ପାଇଁ ଆଦର୍ଶ ବାଳିକା ବିଦ୍ୟାଳୟ, ବହୁ ଅଞ୍ଚଳରେ ଦେବାଦେବୀ ମନ୍ଦିର ସ୍ଥାପନ, ତାଙ୍କର ଆଲେଖ୍ୟ ବହନ କରେ ।

ସାହିତ୍ୟ ଥିଲା ତାଙ୍କର ନିଶା । ପରିଣତ ବୟସରେ ମଧ ସେ କବି ସମ୍ମିଳନୀ ମାନଙ୍କରେ ବହୁ ସମୟ ଧରି ଯୋଗ ଦେଉଥିଲେ । ବାଲେଶ୍ୱର ବ୍ୟାସକବି ସ୍ମୃତି ସଂସଦର ସଭାପତି ଭାବରେ ଉତ୍ତର ଓଡ଼ିଶା ସାଂସ୍କୃତିକ ସମ୍ମିଳନୀର ବରିଷ୍ଠ ସଭ୍ୟ ଭାବରେ ଦୀନକୃଷ୍ଣ ସାହିତ୍ୟ ପରିଷଦର ସଭ୍ୟ ଭାବରେ ଏବଂ ଉତ୍କଳ ସାହିତ୍ୟ ସମାଜର ଆଜୀବନ ସଭ୍ୟ ଭାବରେ ତାଙ୍କର ଅବଦାନ ସ୍ମୃତ ହୋଇ ରହିବ ।

ଯତୀନ୍ଦ୍ରନାଥ ଓଡ଼ିଆ, ବଂଗଳା, ଇଂରାଜୀରେ ଅନେକ ପୁସ୍ତକ ରଚନା କରି ଯାଇଛନ୍ତି । କଟକ ସହରରେ ସେ ବାସିନ୍ଦା ହୋଇଥିଲେ କିନ୍ତୁ ନିଜ ଗାଁକୁ ଭୁଲି ନ ଥିଲେ । ଜୀବନର ଅନ୍ତିମ ଦିନ ଗୁଡ଼ିକୁ ସେଇଠି କଟାଇବା ପାଇଁ ସେ ଫେରି ଯାଇଥିଲେ ଗାଁକୁ ଏବଂ ସେଇଠି ହିଁ ଏଇ କବିପ୍ରାଣ ସୁନ୍ଦର ମଣିଷଟିର ଦେହ ମିଶିଗଲା ପଞ୍ଚଭୂତରେ ।

ବୟସ ତାଙ୍କ ଆଗରେ ହାର ମାନିଥିଲା । ଦେହ ଅବଶ ହୋଇଯାଇଥିଲା । କିନ୍ତୁ ମନୋବଳ ଥିଲା ଅପରିସୀମ । ତାଙ୍କ କାବ୍ୟରୁ ଝରୁଥିଲା ଏକ ଦୁର୍ବାର ଅଭିଳିପ୍‌ସାର ଜୟଧ୍ୱନି । ସେ ଆଉ ନାହାନ୍ତି । ରହିବେ ତ ନାହିଁ କେହି ସବୁଦିନ ପାଇଁ । କିନ୍ତୁ ସେ ସ୍ମୃତ ହୋଇ ରହିବେ ଆପଣାର ମାଟିର ମଣିଷର ସ୍ମୃତିରେ ।



# ଶ୍ରମଜୀବି ଜନତାର ହେ ବେପଥୁ ସଂଗ୍ରାମୀ ସାରଥି

ଜାନୁଆରୀ ୨୨, ୧୯୯୮ ମସିହା । ସକାଳ ତଥାପି ହୋଇ ନାହିଁ । କା'ରାବ ଶୁଭିନାହିଁ ସେ ପର୍ଯ୍ୟନ୍ତ । ସୁରନନ୍ଦିନୀ ଉଷା ରୂପସୀର ଉଜ୍ଜ୍ୱଳ ହେବ ରେଖା କଜ୍ଜ୍ୱଳ ନିଭ ରାତ୍ରିର ନିକଷାରେ ସେ ପର୍ଯ୍ୟନ୍ତ ଲେଖା ହୋଇନାହିଁ ।

ଫୋନ ବାଜୁଛି ତୁହାକୁ ତୁହା । ମୁଁ ପ୍ରସ୍ତୁତ ହେଉଛି ଯିବା ପାଇଁ ରାୟଗଡ଼ା । ଫୋନ ଉଠାଇ ଯେଉଁ ସଂବାଦ ପାଇଲି ତାହା ମୁଁ ହଠାତ୍ ଗ୍ରହଣ କରି ପାରିଲି ନାହିଁ । ଯେଉଁ ମଣିଷ ଦୀର୍ଘଦିନ ବ୍ୟାପୀ କଠୋର ସଂଗ୍ରାମରେ ରଣକ୍ଳାନ୍ତ ହୋଇ ନ ଥିଲା ସେ କିପରି କ୍ଳାନ୍ତ ହୋଇ ଶୋଇଗଲା ମୃତ୍ୟୁ ସହିତ ସଂଗ୍ରାମରେ ଏଡ଼େ ସହଜରେ ।

ଶ୍ରମଜୀବି ଜନତାର ସଂଗ୍ରାମୀ ସାରଥି ଯଦୁନନ୍ଦନ ବିଶ୍ୱାଳ ଆଉ ନାହାନ୍ତି । କାଲି ରାତିର ବିଳମ୍ବିତ ପ୍ରହରରେ ତାଙ୍କୁ ଡାକ୍ତରଖାନା ନେବା ବାଟରେ ସେ ଆମକୁ ଛାଡି ଚାଲି ଯାଇଛନ୍ତି ।

ଏଇମାତ୍ର ଦୁଇ ସପ୍ତାହ ତଳେ ତାଙ୍କ ସାଙ୍ଗରେ ଦେଖା ହୋଇଥିଲା । ସେ ଆସିଥିଲେ ବୁଧବାର ଦିନ ୟୁନିଭର୍ସରେ ଅନୁଷ୍ଠିତ ହେଉଥିବା ବୟସ୍କ ଲୋକମାନଙ୍କ ପାଇଁ କାର୍ଯ୍ୟକ୍ରମରେ । ହାତରେ ଯଷ୍ଟିଟିଏ । ବୟସ ଦାଉ ସାଧୁଚି । ତାଙ୍କୁ ଦେଖି ଜଣେ କନିଷ୍ଠା କମ ବୟସର ଝିଅ ମୋତେ ପଚାରିଲା ଆମ ସମସ୍ତଙ୍କୁ ଇମିତି ଦିନେ ହେବାକୁ ପଡ଼ିବ ନାହିଁ ? ଏ'ତ ସେହି ପ୍ରଶ୍ନ । ଯାହା ଦିନେ ଶୁଦ୍ଧୋଧନ ପୁତ୍ର ରାଜକୁମାର ଗୌତମକୁ ଘାରିଥିଲା ଏବଂ ସେ ପାଲଟିଥିଲେ ବୁଦ୍ଧ । ଯଦୁନନ୍ଦନ ବିଶ୍ୱାଳ ସେଇପରି ଠିଆ ହୋଇ ମୋତେ ପଚାରିଲେ,ସାଥୀ, ଏ ନିର୍ବାଚନରେ କ'ଣ ସବୁ ହେଉଚି ? ତା ପରେ ପଚାରିଲେ ଇସରାଏଲ ଓ ଆରବ ଦେଶର ସମ୍ପର୍କ ବିଷୟରେ । ତାଙ୍କର ସର୍ବଶେଷ ପ୍ରଶ୍ନ ଥିଲା ତାଙ୍କର ପ୍ରିୟ ସୋଭିଏତ୍ ୟୁନିଅନ ଉପରେ । ଶ୍ରେଣୀ ସଂଗ୍ରାମର ତତ୍ତ୍ୱ, ଦ୍ୱନ୍ଦମୂଳକ ବସ୍ତୁବାଦର ନିୟମକୁ ଭୁଲିଯିବା ହେତୁ ସେମାନେ ପଥଭ୍ରଷ୍ଟ ହୋଇଥିଲେ, ବୋଧହୁଏ ଫେରୁଛନ୍ତି ବାଟକୁ ।

ଦେଖିବା, କିପରି ଫେରିବେ ନାହିଁ ? ମେହନତୀ ମଣିଷର ଶ୍ରମ ବୃଥା ହୁଏନା । ଯଦୁନନ୍ଦନଙ୍କ ଉତ୍ତୋଳିତ ବଦ୍ଧମୁଷ୍ଟି ଆକାଶ ଦିହରେ ଆଘାତ ହାଣୁଚି । ଝିଅଟିକୁ ଅନେଇ ଦେଖିଲି ତା ମୁହଁ ଉପରୁ ନିର୍ବାଣର ମଳିନତା ଉଭେଇ ଯାଇଛି । ମୁହଁରେ ଦେଖା ଦେଇଛି ଏକ ଲୋହିତ ଆଭା ।

ସେ କ'ଣ ଜଣେ ଅବସରପ୍ରାପ୍ତ ଅଧ୍ୟାପକ ? ଝିଅଟିର ପ୍ରଶ୍ନ । ସେ ଜଣେ ଶ୍ରମିକ ମାତ୍ର । କିନ୍ତୁ ଏତିକି କଥା ଜାଣିଲେ କିପରି ? ବିସ୍ମୟର ଚିହ୍ନ ଉକୁଟିଥିଲା ଝିଅଟିର ମୁହଁରେ ।

ପ୍ରଶ୍ନର ଉତ୍ତର ଦେବାକୁ ଯାଇ ମୋ ନିଜ ମନ ପହଁରି ଯାଇଥିଲା ଦୂର ଅତୀତକୁ । କମ୍ୟୁନିଷ୍ଟ ପାର୍ଟି ଶ୍ରମଜୀବି ମଣିଷ ଦର୍ଶନ ଉପରେ ଗଠିତ । କିନ୍ତୁ ଏହାର ନେତାମାନଙ୍କ ଭିତରେ

ପ୍ରାୟ ସମସ୍ତେ ହେଉଛନ୍ତି ମଧ୍ୟବିତ୍ତ ବା ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର । ଶ୍ରମଜୀବି ମଣିଷର ଦର୍ଶନରେ ଶ୍ରମଜୀବି ମଣିଷକୁ ଦୀକ୍ଷିତ କରିବା ଗୋଟାଏ କଥା, ସେ ନିଜେ ନେତୃତ୍ୱକୁ ଯିବା ସଂପୂର୍ଣ୍ଣ ଅଲଗା କଥା । ଇଉରୋପରେ ତାହା ହୋଇଛି । ମୋଚି ପାଲଟିଛି ଷ୍ଟାଲିନ ହୋଇ, କୋଇଲା ଖଣିର ଶ୍ରମିକ ହୋଇଛି ପ୍ରବାଦ ପୁରୁଷ ଥୋରେ, ଡକ୍ ଶ୍ରମିକ ହୋଇଛି ହାରି ପଲିଟ୍ । କିନ୍ତୁ ଭାରତବର୍ଷରେ ତାହା ସମ୍ଭବ ହୋଇ ପାରିନାହିଁ ।

ଏହାର ବ୍ୟତିକ୍ରମ ଅବଶ୍ୟ ଅଛି । ସେଇ ଭଳି ବ୍ୟତିକ୍ରମର ଅନ୍ୟତମ ସନ୍ତକ ହେଉଛନ୍ତି ଯଦୁନନ୍ଦନ ବିଶ୍ୱାଳ ।

ଯଦୁନନ୍ଦନଙ୍କ ଘର ତୁଳସୀପୁରରେ । ସେ ଜନ୍ମ ହେଲା ବେଳକୁ ତୁଳସୀପୁର ଥିଲା ଏକ ଜନପଦ । ୮୨ ବର୍ଷ ତଳେ ଜନ୍ମ ଗ୍ରହଣ କରିଥିବା ଯଦୁନନ୍ଦନ ପ୍ରେସ ଶ୍ରମିକ ଭାବରେ ଜୀବିକା ଅର୍ଜନ କଲେ । କିନ୍ତୁ ଯେ ଏକ ସୁଦୂର ପ୍ରସାରୀ ଲକ୍ଷ୍ୟ ସାଧନ ପାଇଁ ଅଭିପ୍ରେତ ସେ ଗୋଟିଏ ପ୍ରେସ ଛାପାରେ ସୀମିତ ରହିଥାନ୍ତେ କିପରି ? ମଣିଷ ସମାଜର ଜୀବନକୁ ନୂତନ ଚିନ୍ତାଧାରରେ କମ୍ପୋଜ କରିବା ଯାହା ପାଇଁ ଅଭିପ୍ସିତ ସେ କିମିତି ବନ୍ଧା ରହନ୍ତା ଗୋଟିଏ ପ୍ରେସରେ ?

ମେହନତୀ ମଣିଷର ସଂଗ୍ରାମରେ ନିବେଦିତ ହେଲେ ସେ । କଟକରେ ଗଠିତ ହେଲା ଶକ୍ତିଶାଳୀ ପ୍ରେସ ଶ୍ରମିକ ୟୁନିୟନ । ସେତେବେଳେ ଓଡ଼ିଶାରେ ଶିଳ୍ପ ଥିଲା କ୍ୱଚିତ୍ । ପ୍ରେସ ଶ୍ରମିକ ୟୁନିୟନ କେବଳ ନିଜର ଦାବି ପାଇଁ ସଂଗ୍ରାମ କଲା ନାହିଁ । ସବୁ ସଂଗ୍ରାମରେ ଆଗଛାମୁଆ ହେଲା । ଶ୍ରମଜୀବୀ ମଣିଷ ଯେ ମଣିଷ ସମାଜର ଭାନର୍ଗା ବା ନେତା ଏକଥା ପ୍ରମାଣିତ ହେଲା । ଯଦୁନନ୍ଦନ ଖାଲି ପ୍ରେସରେ ଅକ୍ଷର କମ୍ପୋଜି କଲେ ନାହିଁ, ସେ ପଢ଼ିଲେ । ପଢ଼ିଲେ ଭାରତୀୟ ଦର୍ଶନ, ପଢ଼ିଲେ ମାର୍କ୍ସବାଦ ଲେନିନ୍‌ବାଦ, ପଢ଼ିଲେ ମଣିଷ ସମାଜର ଇତିହାସ । ଯଦୁନନ୍ଦନ ଶାଣିତ ହେଲେ ପକ୍ୱ ହେଲେ ।

ଯଦୁନନ୍ଦନ ରୂପାନ୍ତରିତ ହେଲେ ଶ୍ରମିକ ୟୁନିୟନର ନେତା ଭାବରେ । ଓଡ଼ିଶାରେ ଭାରତୀୟ ଟ୍ରେଡ଼ ୟୁନିୟନ କଂଗ୍ରେସ ପ୍ରତିଷ୍ଠା ହେଲା । ଡକ୍ଟର ରାଧାନାଥ ରଥ, ଦୁର୍ଗାଚରଣ ମହାନ୍ତି, ଗୋବିନ୍ଦ୍ର ଚନ୍ଦ୍ର ମହାନ୍ତି, ବିଶ୍ୱନାଥ ପଣ୍ଡିତ, ଶ୍ୟାମସୁନ୍ଦର ମିଶ୍ରଙ୍କ ସହିତ ଯଦୁନନ୍ଦନ ଥିଲେ ପ୍ରତିଷ୍ଠାତା ମାନଙ୍କ ମଧ୍ୟରେ ଅନ୍ୟତମ ।

ଯଦୁନନ୍ଦନ ଥିଲେ ଐତିହାସିକ ପ୍ରେସ ଶ୍ରମିକ ଧର୍ମଘଟର ଅନ୍ୟତମ ନାୟକ । ଏହି ଧର୍ମଘଟ ସେ ଦିନ ୧୯୪୮ ମସିହାରେ ଚମକ ସୃଷ୍ଟି କରିଥିଲା । କେବଳ ସେତିକି ନୁହେଁ ତାଙ୍କରି ନେତୃତ୍ୱରେ ପ୍ରେସ ଶ୍ରମିକ ମାନେ ୧୯୪୬ ନିର୍ବାଚନରେ ଶ୍ରମିକ ମାନଙ୍କର ପ୍ରାର୍ଥୀ ବୈଦ୍ୟନାଥ ରଥଙ୍କୁ ଜୟଯୁକ୍ତ କରାଇଥିଲେ ବିଧାନସଭାକୁ । ମୁକ୍ତି ଯୁଦ୍ଧ କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର ପ୍ରକାଶ ପାଉଥିଲା ହାତଲେଖା କାଗଜରେ । ପରେ ସାଧାରଣ କାଗଜରେ ଛପା ହେଲା । କାଗଜ ତିଆରି କର, ଛାପ ଏବଂ ବିକ୍ରିକର । ଯେଉଁମାନେ ଏହା କରୁଥିଲେ ସେମାନଙ୍କ ଭିତରେ ଥିଲେ ଯଦୁନନ୍ଦନ । ମିସ୍ତ୍ରୀ ବୁଢ଼ା, ଘନଶ୍ୟାମ ଖଣ୍ଡୁଆଳ ସମସ୍ତେ ବାହୁଡ଼ିଲେଣି । ନୂଆ ଦୁନିଆ, ସଂଧାନ ଗୋଟିଏ ପତ୍ରିକା ବେଆଇନ ହେଲା ପରେ ଆଉ ଗୋଟିଏ । ବିକ୍ରି କରନ୍ତି ଅଧ୍ୟାପକ, ଛାତ୍ର ଓକିଲ, ନାରୀ , ପୁରୁଷ ସମସ୍ତେ । ଏକ ଅଭିନବ ରୋମାଞ୍ଚକାରୀ ଦୃଶ୍ୟ । ଡାକ୍ତର

ନିରୂପମା ରଥ, ନନ୍ଦିନୀ ଶତପଥୀ, ୰ ସାବିତ୍ରୀ ଆଚାର୍ଯ୍ୟ । ପୁଣି ଦୁର୍ଗାଚରଣ ମହାନ୍ତି, ରାମଚନ୍ଦ୍ର ମିଶ୍ର, ରାମଚନ୍ଦ୍ର ରାମ, ଗଂଗାଧର ରଥ, ଗୁରୁଚରଣ ପଟ୍ଟନାୟକ ସମସ୍ତେ । ରାଜନୀତିର ଇତିହାସରେ ଏଭଳି ଦୃଶ୍ୟପଟ ଦେଖିବାକୁ ଆଉ ମିଳିବ ନାହିଁ । ସମୟ ବଦଳି ଯାଇଛି ।

ସ୍ୱାଧୀନତା ଆସିଲା । କିନ୍ତୁ ଏ ସ୍ୱାଧୀନତା କାହା ପାଇଁ ? ଶ୍ରମିକ ଶ୍ରେଣୀ ପାଇଁ ତ ନୁହେଁ । ତେବେ ? ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମର ଡାକରା ଆସିଛି । ଯଦୁନନ୍ଦନ କାରାଗାର ବରଣ କଲେ ଏବଂ କଟକ ଜେଲରେ ଐତିହାସିକ ୪୮ ଦିନିଆ ଅନଶନରେ ବି ଅଂଶ ଗ୍ରହଣ କଲେ । ଯଦୁବାବୁ ଜେଲଖାନାରେ ରହିଲେ ୧୯୫୧ ମସିହା ପର୍ଯ୍ୟନ୍ତ ।

ଯଦୁବାବୁ କଳାକାର ଥିଲେ, ଥିଲେ ଲେଖକ । ତବଲା ବଜାଉଥିଲେ । କବିତା ଲେଖୁଥିଲେ । ସାମ୍ପ୍ରଦାୟିକତା ତାଙ୍କୁ ଛୁଇଁ ନ ଥିଲା । ସେଇଯୋଗୁଁ ତାଙ୍କ ଏକ କବିତା ବହିର ନାମ ହେଉଛି 'ଶ୍ରମିକର ଆଜାନ୍' ।

ଯଦୁନନ୍ଦନ ଫେରି କମ୍ୟୁନିଷ୍ଟ ପାର୍ଟି ପ୍ରେସରେ କାମ କଲେ । ଶ୍ରମିକ ପତ୍ରିକା ପ୍ରକାଶ କଲେ । ଘରେ ଖାଇବାକୁ ନାହିଁ କିନ୍ତୁ ଯାହା ପଇସା ଅଛି ପାଖରେ ତାହା ବିନିଯୋଗ ହୋଇ ଯାଉଛି 'ଶ୍ରମିକ' ପ୍ରକାଶନରେ । ଇତିହାସରେ ତାହାର ପଟାନ୍ତର ନାହିଁ । ଧୀରେ ଧୀରେ କମ୍ୟୁନିଷ୍ଟ ପାର୍ଟି କାର୍ଯ୍ୟ ହୋଇଗଲା ଶିଥିଳ । ଯଦୁନନ୍ଦନ ଜୀବିକା ପାଇଁ ଯୋଗ ଦେଲେ କଳିଙ୍ଗ ପ୍ରେସରେ । ସେ ଥିଲା ଜୀବିକା, କିନ୍ତୁ ତାଙ୍କର ନିଶା ଅଲଗା । ଶ୍ରମିକ ପତ୍ରିକା ପ୍ରକାଶ କରିବା, ଶ୍ରମିକ ସଂଗଠନ କରିବା ଥିଲା ତାଙ୍କର ବ୍ରତ ।

ସମୟ ଅତିକ୍ରାନ୍ତ ହୋଇଛି । ବୟସ ବଢ଼ିଯାଇଛି ଦାରିଦ୍ର୍ୟ ଭିତରେ । ଜୀବନରେ ବହୁ ପରୀକ୍ଷା ଭିତର ଦେଇ ସେ ଯାଇଛନ୍ତି । କଳିଙ୍ଗ ପ୍ରେସ ଭାଙ୍ଗିଯିବା ପରେ ସେ ସ୍ୱାଧୀନ ଭାବରେ ଜୀବିକା ଅର୍ଜନ କରିବାକୁ ଚେଷ୍ଟା କରିଛନ୍ତି । କିନ୍ତୁ ବ୍ୟବସାୟର ଫିକର ସେ ଯେମିତି ଜାଣି ନାହାନ୍ତି, ଠିକ୍ ସେଇପରି ଜାଣି ନାହାନ୍ତି ରାଜନୀତିର ନୂତନ ଫିକର । ଯଦୁନନ୍ଦନ ଫେରି ଯାଇଛନ୍ତି ଆଉ ଗୋଟିଏ ସ୍ତରକୁ । ବୟସ୍କ ଲୋକମାନଙ୍କୁ ଏକାଠି କରିବା, ସେମାନଙ୍କର ସୁଖଦୁଃଖ ବୁଝିବା, ବେଳେ ବେଳେ ବହି ଲେଖିବା ତାଙ୍କର କାର୍ଯ୍ୟ ହୋଇଛି । କ୍ରମଶଃ ସେ ଦୁର୍ବଳ ଅସୁସ୍ଥ ହୋଇ ପଡୁଥିଲେ । ଦାରିଦ୍ର୍ୟ ଛଡ଼ା ପାରିବାରିକ ସ୍ତରରେ ନାନା ବିପର୍ଯ୍ୟୟ ସହିତ ରାଜନୀତିରେ ମୂଲ୍ୟବୋଧର ଅବକ୍ଷୟ ତାଙ୍କୁ ଟାଣି ନେଉଥିଲା ଜୀବନର ଅନ୍ତିମକୁ ।

ଭୋଟିଏ ହେଲେ ସେ ଆସନ୍ତି । କିଛି ହାନିଲାଭ ହେଲେ ଆସନ୍ତି । ବହି ଖଣ୍ଡିଏ ଲେଖି ପ୍ରକାଶ କଲେ ଆସନ୍ତି । ଆସନ୍ତି ବୁଧବାର ଦିନ ବୟସ୍କ ମାନଙ୍କ ପାଇଁ ଚିକିତ୍ସାକେନ୍ଦ୍ରକୁ । ଦେଖାହୁଏ, ପୁରୁଣା ସ୍ମୃତିକୁ ପଖାଳନ୍ତି । ଯେଉଁମାନେ ହଜି ଗଲେଣି ସେମାଙ୍କର ମଧୁର ସ୍ମୃତିକୁ ଆଉଡ଼ାନ୍ତି ।

ତାପରେ ଆସେ ସେଇଦିନ । ଯଦୁନନ୍ଦନ ପାଲଟି ଯାଆନ୍ତି ଇତିହାସ । ସହଯୋଦ୍ଧା, ଶ୍ରମଜୀବି ମଣିଷର ନେତା ମାନଙ୍କର ଗହଣରେ ତାଙ୍କର ଜୟଧ୍ୱନି ଶୁଭେ । ଜୟଧ୍ୱନିର ପ୍ରତିଧ୍ୱନି ଶୁଭେ । ଆମର ବିଜୟ, ଶ୍ରମଜୀବି ମଣିଷଣ ବିଜୟ ସୁନିଶ୍ଚିତ ।

ସେ କିନ୍ତୁ ଆଉ ନାହାନ୍ତି ।



# ଅଜାତଶତ୍ରୁର ଆକସ୍ମିକ ବିଦାୟ

**ଶା**ନ୍ତ, ଶିଷ୍ଟ, ମଧୁର ସ୍ୱଭାବର ମଣିଷ ଥିଲେ ସେ । ରାଗିବା ତାଙ୍କୁ ମୁଁ କେବେ ଦେଖିନାହିଁ । ଯେଉଁଭଳି ମଣିଷ ଠିକ୍ ସେଇଭଳି ସେ ଚାଲିଗଲେ । କାହାକୁ ଯନ୍ତ୍ରଣା ଦେଇନାହାନ୍ତି, କଷ୍ଟ ଦେଇ ନାହାନ୍ତି । ନିଜେ ରୋଗ, କଷ୍ଟ କିଛି ଭୋଗି ନାହାନ୍ତି । କିଛିବର୍ଷ ତଳେ ତାଙ୍କୁ ଛାଡି ତାଙ୍କର ପତ୍ନୀ ଚାଲିଯାଇଥିଲେ । ସେ ଦୁଃଖରେ ସେ ଭାଙ୍ଗି ପଡ଼ି ନ ଥିଲେ । ବରଂ ସ୍ତ୍ରୀଙ୍କର ସ୍ମୃତିକୁ ଜାଗରୁକ କରି ରଖିବା ପାଇଁ କଲ୍ୟାଣକର କାମରେ ଆପଣାକୁ ନିବେଦିତ କଲେ । ଜୀବନର ଅବଶିଷ୍ଟ ସମୟକୁ ସମୂହର କଲ୍ୟାଣ ପାଇଁ ନିବେଦିତ କରିଗଲେ । 'ଖବର ବିଚାର' ପତ୍ରିକା ପ୍ରକାଶନ କଲେ । କୌଣସି ଅନୁରୋଧକୁ ନାହିଁ କରି ନାହାନ୍ତି । ଜଷ୍ଟିସ ହରିହର ମହାପାତ୍ର, ଡକ୍ଟର ସଦାଶିବ ମିଶ୍ର, ବାରିଷ୍ଟର ରଣଜିତ ମହାନ୍ତି, ଜଷ୍ଟିସ ରାଜକିଶୋର ଦାସ, ଅଧ୍ୟାପକ ଶ୍ରୀ ରାମଚନ୍ଦ୍ର ଦାଶଙ୍କ ପରେ ସଭାମାନଙ୍କ ପାଇଁ ସଭାପତି, ମୁଖ୍ୟବକ୍ତା, ମୁଖ୍ୟ ଅତିଥି ଖୋଜିଲେ ଲୋକେ ତାଙ୍କୁ ହିଁ ଖୋଜନ୍ତି । ସେଇଯୋଗୁଁ ତାଙ୍କର ଚାହିଦା ଖୁବ୍ ବଢ଼ି ଯାଇଥିଲା । ସେତ କାହାକୁ ନାହିଁ କରନ୍ତି ନାହିଁ । ସେଇପରି ଏକ ଅନୁରୋଧ ରକ୍ଷା କରି ସେ ଯାଇଥିଲେ ବାଲେଶ୍ୱର ଧଉଳି ଏକ୍ସପ୍ରେସରେ । ଏଇ ଯାତ୍ରା ଯେ ମହାଯାତ୍ରା ହୋଇଯିବ ଏକଥା ଜାଣିଥିଲା କିଏ ?

ଜଷ୍ଟିସ ଯୁଗଳ କିଶୋର ମହାନ୍ତି ଆଇନଜୀବୀ, ବିଚାରପତି, ସିକିମ ହାଇକୋର୍ଟର ମୁଖ୍ୟ ବିଚାରପତି ହୋଇଥିଲେ । ୧୯୨୭ ମସିହା ଏପ୍ରିଲ ପାଞ୍ଚ ତାରିଖରେ ଜନ୍ମ ଯୁଗଳକିଶୋର ୧୯୯୮ ମସିହା ମାର୍ଚ୍ଚ ୧୯ ତାରିଖ ଅପରାହ୍ନରେ ବିଦାୟ ନେଇ ଚାଲିଗଲେ ସଂସାରରୁ ।

ଯାଜପୁର ରୋଡ଼ରେ ଯନ୍ତ୍ରଣା ଏବଂ ଭଦ୍ରକ ଷ୍ଟେସନ ବେଳକୁ ସେ ଆଉ ନାହାନ୍ତି । ବହୁ ସଭାର ସଭାପତି, ମୁଖ୍ୟବକ୍ତା, ମୁଖ୍ୟ ଅତିଥିଙ୍କ ମରଦେହ ପଡି ରହିଲା ଭଦ୍ରକ ଷ୍ଟେସନ ପ୍ଲାଟଫର୍ମରେ, ଚିହ୍ନଟ ନ ହେବା ପର୍ଯ୍ୟନ୍ତ । ଠିକ୍ ଏଇପରି ଘଟିଥିଲା ପ୍ରସିଦ୍ଧ ସାମ୍ବାଦିକ ଚନ୍ଦ୍ରପତି ରାଓଙ୍କ କ୍ଷେତ୍ରରେ । ସେ ମଧ୍ୟ ସେଇପରି ଚିହ୍ନଟ ନ ହୋଇ ପାରି ପଡ଼ିରହି ଥିଲେ କିଛି ଦିନ ପାଇଁ "ମୋର୍ଗ" (Morgue) ରେ ।

ଜଷ୍ଟିସ ଯୁଗଳକିଶୋର ମହାନ୍ତି ଜୀବନରେ ବିଭିନ୍ନ ବିଭାବକୁ ଶ୍ରୀମଣ୍ଡିତ କରି ଯାଇଛନ୍ତି । ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ସ୍ମୃତି କମିଟିରୁ ଆରମ୍ଭ କରି ନାଗରିକ ଅଧିକାର କମିଟି ପର୍ଯ୍ୟନ୍ତ ସବୁ ଦଳ, ସବୁ ମତ, ସବୁ ଗୋଷ୍ଠୀଙ୍କ ଭିତରେ ସେ ଜନପ୍ରିୟ ଥିଲେ । କାରଣ ସବୁ ବିପଦ, ମତଭେଦ ଭିତରେ ସାଲିସର ସାଧାରଣ ସୂତ୍ର ଥିଲେ ସେ । ଏଭଳି ମଣିଷଟିଏ ହଜିଗଲେ

ହଠାତ୍ । ଦେଶର ଜନଜୀବନରେ ତାଙ୍କର ଅଭାବ ଅନୁଭୂତ ହେବ ବହୁଦିନ ଧରି । କାରଣ ଏଭଳି ମଣିଷଟିଏ ପାଇବା କଠିନ । ଦେଶ ଯେତେବେଳେ ଏକ ଅଭିଭାବକ ଖୋଜୁଛି, ଖୋଜୁଛି ଏଭଳି ମଣିଷଟିଏ ଯେ ରହିବ ସମସ୍ତଙ୍କ ସହିତ କିନ୍ତୁ ସମସ୍ତଙ୍କ ଊର୍ଦ୍ଧ୍ୱରେ ସେତେବେଳେ ଖୋଜିବେ ସେମାନେ ଏଇଭଳି ମଣିଷକୁ ।

ଜଣେ ଆଇନଜୀବୀ, ବିଚାରପତି ଭାବରେ ତାଙ୍କ କାର୍ଯ୍ୟର ସମୀକ୍ଷା କରିବେ ଅନ୍ୟମାନେ । କିନ୍ତୁ ମୋ ଭଳି ମଣିଷ ତାଙ୍କୁ ହେରିବେ ଏକ ମୁରବୀ ଭାବରେ, ଏକ ସାମାଜିକ ମଣିଷ ଭାବରେ, ଯେଉଁଭଳି ମଣିଷ ପାଇବା ଏଇନା କଠିନ ।

ଏଇମାତ୍ର କିଛିଦିନ ତଳେ ଆମେ ସାଙ୍ଗ ହୋଇ ଯାଇଥିଲୁ କେନ୍ଦ୍ରାପଡ଼ା । ସେ କଲେଜ ୟୁନିୟନ ସଭାପତି ଏବଂ ପ୍ରିନ୍‌ସିପାଲଙ୍କ ନାମ ଟିପୁଥିଲେ । କାରଣ ପଚାରିବାରୁ ସେ କହିଲେ ନିଜେ କେତେବେଳେ ହଜିଯିବ ତ କହିହେବ ନାହିଁ, ଯେଉଁମାନେ ମନେ ରଖି ଡାକିଛନ୍ତି ସେମାନଙ୍କୁ ହେଜିବା ତ ଉଚିତ ହେବ, ନୁହେଁ ?

ସେଇ ମଣିଷଟି ଆଜି ହଜି ଯାଇଛି ମହାକାଳ ଗର୍ଭରେ ।



# ରକ୍ରୁମିଆଁ

**ତା**ଙ୍କ ସାଂଗରେ ମୋର ପ୍ରଥମ ଦେଖା । ୰ ଭୈରବଚନ୍ଦ୍ର ମହାନ୍ତି ଓ ୰ ବିନୋଦ କାନୁନ୍‌ଗୋଙ୍କ ସାଂଗରେ । ତାଙ୍କୁ ଦେଖି ମୋର ଏକ ବାଲ୍ୟସ୍ମୃତି ଜାଗରୂକ ହୋଇଥିଲା । ମୋ ବାପା ଥାଆନ୍ତି ରେଗାଂଲିରେ ଫରେଷ୍ଟ ଅଫିସର । ସେଇଠି ଥିଲେ ରେଲବାଇ ଷ୍ଟେସନ ମାଷ୍ଟର ୰ ଫନିଭୂଷଣ ସାନ୍ୟାଲ । ସେମାନେ ମିଶି ଦୁର୍ଗାପୂଜାର ଆୟୋଜନ କରନ୍ତି । ସେଇଟା ଥିଲା ଏ ଦେଶର ଏକ ଗଭୀର ସଂକଟର ସମୟ । ସମଗ୍ର ଦେଶରେ ସାମ୍ପ୍ରଦାୟିକ ଦଂଗା । ଭାରତ ବିଭାଜନ ହେବାର ଉପକଣ୍ଠରେ । ନାନା ପ୍ରକାର ଗୁଜବ ସୃଷ୍ଟି କରାଯାଉଥିଲା, ଉତ୍ତେଜନା ସୃଷ୍ଟି ପାଇଁ । ହଜାର ହଜାର ଲୋକ କଲିକତା ଛାଡ଼ି ପଳାଇ ଆସୁଥିଲେ । ସ୍ୱାଭାବିକ ଭାବରେ ସମ୍ବଲପୁର ଝାରସୁଗୁଡ଼ା ପ୍ରଭୃତି ସ୍ଥାନରେ ସେମାନଙ୍କ ମଧ୍ୟରୁ ଅନେକ ଆଶ୍ରୟ ନେଇଥିଲେ ବିଭିନ୍ନ ବନ୍ଧୁ ବାନ୍ଧବଙ୍କ ଘରେ । ସେଇ ସମୟରେ ଦୁର୍ଗା ପୂଜାର ଆୟୋଜନ ହୁଏ ରେଗାଂଲିରେ । ସେଠାକାର ଲମ୍ବରଦାର ଶ୍ରୀ ଦାଶରଥି ପଟ୍ଟନାୟକ ତାର ସଂପାଦକ । କିନ୍ତୁ ତାର ସଭାପତି ଜଣେ ମୁସଲମାନ । ସେଠାରେ ତଲେଇର କଣ୍ଟ୍ରାକ୍ଟର । ମୋର ମନେ ପଡୁନାହିଁ ତାଙ୍କର ପୂରାନାମ । ତେବେ ହବିବ୍ କି ହମିଦ୍ ଏଇପରି ନାଁ ଥିଲା ତାଙ୍କର ବୋଲି ମନେ ପଡୁଛି । ସେ ଆସନ୍ତି ପୂଜା ମଣ୍ଡପକୁ । ବସନ୍ତି ପଦ୍ମାସନରେ ଆଉ ଦେଖନ୍ତି ପୂଜା । ତାଙ୍କୁ ଦେଖିଲେ କିନ୍ତୁ ପୁରୋହିତ ମହାଶୟଙ୍କର ଆତଙ୍କ ହୋଇଯାଏ । କାରଣ ଟିକିଏ କେଉଁଠି ଭୁଲ୍ ହେଲେ ସେ ସଂଗେ ସଂଗେ ପଚାରନ୍ତି ପଣ୍ଡିତ ମହାଶୟ, ବୋଧହୁଏ ମୁଁ ସ୍ତୋତ୍ରଟି ଠିକ୍ ବୁଝି ପାରିଲି ନାହିଁ । ପଢ଼ିଲେ ଆଉଥରେ । ପୁରୋହିତ ପଢ଼ନ୍ତି । ଯଦି ପୁଣି ଭୁଲ୍ ହେଲା, ଜନାବ ମିଆଁ ସେପଟରୁ କହନ୍ତି, ମହାଶୟ, ଆପଣ ପଣ୍ଡିତ ଲୋକ । କିନ୍ତୁ ମୋର ମନେ ହୁଏ ସ୍ତୋତ୍ରଟିର ଠିକ୍ ରୂପ ଏଇପରି ।

ଜନାବ ରକ୍ରୁ ମିଆଁଙ୍କୁ ଦେଖି ମୋର ସ୍ମୃତିରେ ସେଇ ଦୃଶ୍ୟ ମନେପଡ଼ିଲା । କ'ଣ ଗୋଟାଏ ହନୁମାନ ପୂଜା ସଂପର୍କରେ ସେ କଥା ହେଉଥିଲେ ଭୈରବ ବାବୁଙ୍କ ସହିତ । ବିନୋଦବାବୁ ବସିଥିଲେ ।

ଧାରେ ଶ୍ୟାମସୁନ୍ଦର ପୁର ଗ୍ରାମ । ପ୍ରତିଭା ପ୍ରସବିନୀ ମାହାଙ୍ଗାର ଏଇ ଅଂଚଳ । ଅଦୂରରେ ମାଳିସାହି ଶ୍ମଶାନର ସେଇ କଦମ୍ବ ଗଛ ଯାହାର ଛାଇରେ ବସି ବୈଷ୍ଣବ ପାଣି ରଚନା କରିଥିଲେ ନାଟକ । ଇନ୍ଦ୍ରଜିତ ବଧ । ଚତୁର୍ଦ୍ଦିଗରେ ଗାଁ ପରେ ଗାଁ । ପାଚିଲାଧାନ କ୍ଷେତରେ ଘେରା ଏଇ ଗ୍ରାମ ମାନଙ୍କରେ ସଂଧ୍ୟା ନଇଁ ଆସେ ଆମ୍ବ ଗଛର ଛାଇ ଭିତର ଦେଇ । ପଲ୍ଲୀବଧୂ ଦୀପ ଜଳାଏ ଚଉରା ପାଖରେ । ଶିଳ୍ପୀ ବିଦ୍ୟାଧର ବର୍ମା ତାଙ୍କର ଅମର ତୂଳିରେ ଆଙ୍କନ୍ତି 'ପଲ୍ଲୀବଧୂ' ।

ଏଇ ଅଂଚଳରେ ପଡ଼ିଆଜମି ପ୍ରାୟ ମିଳେ ନାହିଁ । ଉର୍ବରା ଭୂଇଁ, ନଈ ଓ କେନାଲ ଉଭୟ ଦ୍ୱାରା ସେବିତ ଏଇ ଅଞ୍ଚଳ । ଚାଷଜମି, ନଚେତ୍ ଆମ୍ବ ତୋଟା । ପ୍ରାଣକୃଷ୍ଣ ସାମଲ, କିଶୋରୀ ଚରଣ ଦାସଙ୍କର କଲମର ପ୍ରେରଣା ଭୂଇଁ । ପ୍ରକୃତି ମତୁଆଲା ହୁଏ ... ପାଚିଲା କ୍ଷେତ, ନଚେତ୍ ସହକାରର ପତ୍ର ଦେଇ ସେ ଛନ୍ଦ ସୃଷ୍ଟି କରେ । ଏଇ ଛନ୍ଦ ଦିଏ ପ୍ରେରଣା । ନର୍ତ୍ତକୀ କୁମକୁମ୍ ମହାନ୍ତିଙ୍କୁ । ପ୍ରକୃତିର ଏଇ ଛନ୍ଦ ଯେପରି ତାଙ୍କର 'ଜିନ୍'ରେ ଆସିଯାଇଚି । ସେଇଠି ରକୁ ମିଆଁ ଜନ୍ମ ହୋଇଥିଲେ ୧୯୧୮ ମସିହାରେ । ଅଦୂରରେ ଲଳିତଗରି, ଉଦୟଗିରି, ରତ୍ନଗିରି । ବ୍ରାହ୍ମଣବାଦର ଅଭ୍ୟୁଦୟ ପରେ ଅନେକ ବୌଦ୍ଧ ଆତ୍ମରକ୍ଷା ପାଇଁ ଇସଲାମ ଧର୍ମ ଗ୍ରହଣ କଲେ । ଚାରିନଙ୍ଗଳ ଗ୍ରାମ ସେଇ ମୁସଲମାନଙ୍କ ଅଂଚଳ । କିନ୍ତୁ ରକୁ ମିଆଁଙ୍କ ପୂର୍ବପୁରୁଷ ସେ ଗୋଷ୍ଠୀର ନୁହଁନ୍ତି ବା ସେମାନେ ହାଇଦ୍ରାବାଦୀ ମୁସଲିମ ମଧ୍ୟ ନୁହଁନ୍ତି । ଶୁଣାଯାଏ ଯେ ସେମାନଙ୍କ ମଧ୍ୟରୁ କେତେକ ହୁଏତ ଆସିଥିଲେ ମୋଗଲ ଶାସନ ବେଳେ । ହୁଏତ ତକିଖାଁ ଙ୍କ ସମୟରେ । କିମ୍ବା ପ୍ରସିଦ୍ଧ ସନ୍ ସେଟ୍ ଲ (Sun set Law) ବଳରେ ଜମିଦାରୀ କିଣିଥିବା ବଙ୍ଗବାସୀମାନଙ୍କ ମଧ୍ୟରୁ । ଅଦୂରରେ ଶାହାଜାହାନଙ୍କ କନ୍ୟାଙ୍କ ସମାଧି ନାମରେ କଥିତ ସମାଧି ତାହାର ଏକ ପ୍ରମାଣ ।

ରକୁ ମିଆଁ ଜମିଦାର । କିନ୍ତୁ ତାଙ୍କର ଅଧିକାଂଶ ଚାଷୀ ହେଉଛନ୍ତି ହିନ୍ଦୁ । ତାଙ୍କର ବିଶାଳ ଭୂସଂପତ୍ତିର ମାଲିକାନା ଧୀରେ ଧୀରେ ସେଇ ପ୍ରଜାମାନଙ୍କ ହାତକୁ ଚାଲିଯାଇଛି । ଖାଲି ଜମିଦାରୀ ଉଚ୍ଛେଦ ବଳରେ ନୁହେଁ । ରକୁ ମିଆଁଙ୍କ ସ୍ୱଇଚ୍ଛାରେ । ରକୁ ମିଆଁଙ୍କର ବାପାଙ୍କର ପରଲୋକ ହୋଇଯାଇଥିଲା ମାତ୍ର ଚାଳିଶ ବର୍ଷ ବୟସରେ । ମାତ୍ର ରକୁ ମିଆଁଙ୍କ ଦକ୍ଷ, ସଂସ୍କୃତି ସମ୍ପନ୍ନ ମାଆଙ୍କ ଯୋଗୁଁ ପରିବାରର ବିଶେଷ କିଛି କ୍ଷତି ହୋଇ ନ ଥିଲା । ସେ ସମ୍ଭାଳି ନେଇଥିଲେ ଏବଂ ପୁଅକୁ ଦୂର ଦୃଷ୍ଟି ସମ୍ପନ୍ନ ହେବା ପାଇଁ ପ୍ରେରଣା ଦେଇଥିଲେ । ଆଜି ମଧ୍ୟ ଲୋକେ ସ୍ମରଣ କରନ୍ତି ଦ୍ରୁତଗାମୀ ଧଳା ଘୋଡ଼ା ଉପରେ ରକୁ ମିଆଁଙ୍କର ଦୈନନ୍ଦିନ ଯାତ୍ରାକୁ । ରକୁ ମିଆଁ ଏବଂ ତାଙ୍କର ଦ୍ରୁତଗାମୀ ଅଶ୍ୱ ଥିଲା ବହୁଦିନ ଧରି ଅବିଚ୍ଛିନ୍ନ । କାଳିଅଣ୍ଡି, ବାଗସରପୁର, ମୋଗଲପାଟଣା, ମାଳିହତା, ଚାୟାଁପାଳ, ଅଦମ୍ବ, ଶ୍ରୀକୃଷ୍ଣପୁର, କୁଆଁପାଳରେ ତାଙ୍କର ଜମିଦାରୀ । ହିନ୍ଦୁ ଓ ମୁସଲମାନ ଉଭୟ ସଂପ୍ରଦାୟର ଚାଷୀ, କିନ୍ତୁ ସମସ୍ତେ ମିଳିମିଶି ଏକାଠି, ଯାନିଯାତ୍ରା, ମେଳା ମହୋତ୍ସବ, ସବୁ ମିଳିମିଶି କରନ୍ତି ।

୧୯୧୮ ମସିହା । ପ୍ରଥମ ମହାଯୁଦ୍ଧ ସରି ସରି ଆସୁଥାଏ । ଜନାବ ସେକ୍ ଜାକର ଅଲ୍ଲୀଙ୍କର ସନ୍ତାନଟିଏ ଜନ୍ମ ହେଲା । ପିଲାଟିକୁ ସମସ୍ତେ ଡାକିଲେ ରକୁ ନାମରେ । ପାଠ ପଢ଼ାରେ ଝୁଙ୍କ୍ ଥିଲା ପିଲାଟିଦିନରୁ । ସ୍କୁଲରେ ନାଁ ଲେଖାଇଥିଲେ । କିନ୍ତୁ ବାପା ଶେକ୍ ଜାକର ଅଲ୍ଲୀଙ୍କର ପରଲୋକ ହୋଇଯାଏ ମାତ୍ର ୪୦ ବର୍ଷ ବୟସରେ । ହଠାତ୍ ବଜ୍ରପାତ ଭଳି ମନେ ହେଲା । କିନ୍ତୁ ମା' ନିୟାମତ୍ ବେଗମ୍‌ଙ୍କର ଥିଲା ବିଚକ୍ଷଣ ବୁଦ୍ଧି । ପାଠପଢ଼ା ସହିତ ଜମିଦାରୀ ବୁଝିବା ମଧ୍ୟ ରକୁ ମିଆଁଙ୍କ ପାଇଁ ସମ୍ଭବ ହୋଇଥିଲା । ୧୯୩୮ ମସିହାରେ ଜମିଦାର ତଥା ବ୍ୟବସାୟୀ ରିଜନ୍ ଖାଁଙ୍କର ଜ୍ୟେଷ୍ଠାକନ୍ୟା ମରିୟମ ସୁଲତାନଙ୍କ ସହିତ ବିବାହ ହୁଏ । ଗୋଟିଏ ସନ୍ତାନ ଜନ୍ମ କରି ସେ ଇହଧାମ ପରିତ୍ୟାଗ କରନ୍ତି । ସେଇ ପୁତ୍ରଟି ପରବର୍ତ୍ତୀ କାଳରେ

ରାଜନୀତି କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରେ । ଶେଖ୍ ମତଲୁବ ଅଲ୍ଲୀଙ୍କୁ ସମସ୍ତେ ଜାଣନ୍ତି । ପରେ ରକ୍କୁ ମିଆଁଙ୍କ ଘରକୁ ଆସନ୍ତି ସହଧର୍ମିଣୀ ହୋଇ କବିରନ୍ ବିବି । ପାରିବାରିକ ଜୀବନ ବିତିଯାଏ ସ୍ୱାଭାବିକ ଭାବରେ ।

ରକ୍କୁ ମିଆଁ ଘୋଡ଼ାରେ ଯିବାଆସିବା କରନ୍ତି । ଏଇ ପରି ଏକ ସମୟରେ ସେ କଟକର ଏକ ପ୍ରଦର୍ଶନୀରେ ଦେଖିଲେ ଏକ ଧାନକଳ । ଗାଁରେ କୁଟୁଣୀ ମିଳୁ ନାହାନ୍ତି ଧାନ କୁଟିବାକୁ । ରକ୍କୁ ମିଆଁ ଧାନକଳଟିକୁ ନେଇ ବସାଇଲେ ଚାନ୍ଦୋଳ ଗାଁରେ । ଶହ ଶହ ଲୋକ ଜମା ହେଲେ କଳ କିମିତି ଧାନ କୁଟୁଚି ଦେଖିବାକୁ । ସେ ଅଞ୍ଚଳରେ ଏହା ଥିଲା ପ୍ରଥମ ଧାନକଳ । ରକ୍କୁ ମିଆଁଙ୍କର ସଉକ ଥିଲା ବହୁତ ଦିଗରେ । ଉନ୍ନତ ବିହନ, ଔଷଧି ବୃକ୍ଷଲତା ପ୍ରଭୃତି ତାଙ୍କର ସଉକ ଥିଲା । ଜମିଦାରୀ ପ୍ରଥା ଉଚ୍ଛେଦ ପରେ ସେ ଅନ୍ୟ ଜମିଦାର ମାନଙ୍କ ପରି ଗଛ କାଟିଲେ ନାହିଁ । କି ତୋଟାକୁ ଚାଷ ଜମିରେ ପରିଣତ କଲେ ନାହିଁ । ଯାହା ଯାହା ଆଉ ମୋର ନୁହେଁ ତାକୁ ମୁଁ କାଟିବାକୁ କିଏ ? ସେ ଯାହା ପାଖକୁ ଯିବ ଯତ୍ନରେ ରକ୍ଷଣାବେକ୍ଷଣ କରିବା ହେଉଛି ତାହାର ଦାୟିତ୍ୱ, ରକ୍କୁ ମିଆଁଙ୍କ ଉତ୍ତର । ପାଠାଗାର ପ୍ରତିଷ୍ଠା କରିବା, ଯାତ୍ରା ଦଳରେ ପୃଷ୍ଠପୋଷକତା କରିବା ଥିଲା ତାଙ୍କର ସଉକ । ମାହାଙ୍ଗା ଏକ ବରପୁତ୍ର ପ୍ରସବିନୀ ଅଞ୍ଚଳ । କବି ପ୍ରାଣକୃଷ୍ଣ ସାମଲ, ଶିଳ୍ପୀ ବିଦ୍ୟାଧର ବର୍ମା, ଗଣକବି ବୈଷ୍ଣବ ପାଣି ସବୁ ଏଇ ଅଞ୍ଚଳର । ସେମାନଙ୍କ ସହିତ ପ୍ରଗାଢ଼ ବନ୍ଧୁତା ଥିଲା ରକ୍କୁ ମିଆଁଙ୍କର । ହିନ୍ଦୁ ମୁସଲମାନ ଐକ୍ୟ ଥିଲା ତାଙ୍କର ବିଶ୍ୱାସ । ମନ୍ଦିର, ମସ୍‌ଜିଦ୍ ତାଙ୍କ ପାଇଁ ଥିଲା ସମାନ । ଉଭୟର ବିକାଶ ଥିଲା ତାଙ୍କର ବ୍ରତ । ପଣ୍ଡିତ ନେହେରୁ କେତେଥର ଆସିଛନ୍ତି ଏଇ ଅଞ୍ଚଳକୁ । ଜନାବ ରକ୍କୁ ମିଆଁ ନିଶ୍ଚୟ ଉପସ୍ଥିତ ରହିବେ ସନ୍ଥ ବିନୋବା ଭାବେଙ୍କ ପଦଯାତ୍ରାରେ ରକ୍କୁ ମିଆଁଙ୍କୁ ଦେଖାଯାଏ ଆଗରେ ଏବଂ ଜମିଦାନ କରିବାରେ ଅଗ୍ରଣୀ ଭାବରେ ମଧ୍ୟ । ସ୍ୱାଧୀନତା ସଂଗ୍ରାମୀ ସୁରେନ୍ଦ୍ର ନାଥ ପଟ୍ଟନାୟକ, ବିନୋଦ କାନୁନ୍‌ଗୋ, ଭୈରବଚନ୍ଦ୍ର ମହାନ୍ତିଙ୍କ ଠାରୁ ଆରମ୍ଭ କରି କାହ୍ନୁ ଚରଣ ଲେଙ୍କା, ପ୍ରଦ୍ୟୁମ୍ନ ବଳଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ସହିତ ତାଙ୍କର ବନ୍ଧୁତା ପ୍ରଗାଢ଼ ଏବଂ ଅତୁଟ । ନୀଳଗିରି ପ୍ରଜାମଣ୍ଡଳ ଆନ୍ଦୋଳନର ମହାରଥୀ ଗିରିଧାରୀ ପଣ୍ଡାଙ୍କ ଠାରୁ ଆରମ୍ଭ କରି ଅଧ୍ୟାପକ ବାମାଚରଣ ଦାସ, ଡକ୍ଟର, ରେବତୀକାନ୍ତ ଦାସଙ୍କ ସହିତ ତାଙ୍କର ବନ୍ଧୁତା ପ୍ରସାରିତ ।

ହିନ୍ଦୁ ମୁସଲମାନ ଭାଇ ଭାଇ, ଦଂଗାକେ ପିଛେ ଦୁସମନ୍ ହେ ଏଇ ସ୍ଲୋଗାନ୍ ଥିଲା ତାଙ୍କର ଜୀବନାର୍ଶ । ଏଇଭଳି ଏକ ବିରଳ ବ୍ୟକ୍ତିତ୍ୱ ଜୀବନର ଦୃଶ୍ୟପଟରୁ ଅପସରି ଯିବା ଦୁଃଖଦାୟକ ଘଟଣା, ଠିକ୍ ଯେତିକିବେଳେ ସାମ୍ପ୍ରଦାୟିକ ବିଦ୍ୱେଷ ବିଷ ବୁଣିବାକୁ ଦଳେ ତିଆର ହୋଇ ରହିଛନ୍ତି ।

କିନ୍ତୁ ଏହା ମଧ୍ୟ ସତ୍ୟ ଯେ ଯେଉଁ ସମ୍ପ୍ରଦାୟିକ ପ୍ରୀତି ବୁଣି ଯାଇଛନ୍ତି ତାକୁ ନଷ୍ଟ କରିବା ସହଜ ନୁହେଁ । ସେଇ ହେଉଛି ତାଙ୍କର ଜୀବନର ସାର୍ଥକତା । କେହି ରହିବେ ନାହିଁ ,କିନ୍ତୁ ଯାଇ ମଧ୍ୟ ଯିଏ ଜନମାନସରେ ଜୀବିତ ରହେ ସେଇ ତ ଧନ୍ୟ ।



# ଗଣିତର ଜଟିଳ ସୂତ୍ର ଓ ତବଲାର ଠୁକ୍ ଠୁକ୍ ଧ୍ୱନିର ସମନ୍ୱୟ

ପ୍ରସିଦ୍ଧ ଗାଣିତିକ ଅଧ୍ୟାପକ ଡକ୍ଟର ରମାନାଥ ମହାନ୍ତିଙ୍କର ପରିଣତ ବୟସରେ ଅଗଷ୍ଟ ୨୩ ତାରିଖ ୧୯୯୮ରେ ପରଲୋକ ହୋଇ ଯାଇଚି ତାଙ୍କର ଏକମାତ୍ର ପୁତ୍ର ବରିଷ୍ଠ ପ୍ରଶାସକ, ପୂର୍ବତନ କ୍ରିକେଟ୍ ଖେଳାଳୀ ମଦନ ମୋହନ ମହାନ୍ତିଙ୍କ ଭୁବନେଶ୍ୱର ସରକାରୀ ବାସଭବନରେ । ଖବର ପାଇଲା ବେଳକୁ ତାଙ୍କର ମର ଦେହ ସ୍ୱର୍ଗଦ୍ୱାରରେ ଚିତାଗ୍ନିରେ ପୋଡ଼ି ପାଉଁଶ ହୋଇ ଯାଇଛି । ବୟସ ହୋଇଥିଲା, ଦୁର୍ବଳ , ଅବଶ ହୋଇଯାଇଥିଲେ ସେ କ୍ରମଶଃ । ଘରୁ ଆଉ ବାହାରକୁ ବାହାରୁ ନ ଥିଲେ । କିଛି ଦିନ ତଳେ ଗୋଡ଼ ଭାଂଗି ଯାଇଥିଲା । ତାହାହିଁ ତାଙ୍କୁ ଟାଣି ନେଲା ମୃତ୍ୟୁ ମୁହଁକୁ ।

ଡକ୍ଟର ରମାନାଥ ମହାନ୍ତି ରେଭେନ୍ସା କଲେଜର ଗଣିତ ବିଭାଗର ଅଧ୍ୟାପନା କରୁଥିଲେ ଏବଂ ଗବେଷଣା କରୁଥିଲେ । ପରେ ସେ ରେଭେନ୍ସା କଲେଜର ଅଧକ୍ଷ, ରାଜ୍ୟ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ । ତାଙ୍କର ସ୍ୱୀକୃତି ଏତିକିରେ ସୀମିତ ନ ଥିଲା । ସେ ଜଣେ ଜଣାଶୁଣା ତବଲା ବାଦକ ଥିଲେ । ଗଣିତ କଷନ୍ତି ନଚେତ୍ ତବଲା ବଜାନ୍ତି । ଗଣିତର ଜଟିଳ ସୂତ୍ରକୁ ସେ ଯେପରି ସହଜରେ ସମାଧାନ କରି ପାରୁଥିଲେ ଠିକ୍ ସେଇପରି ତବଲାରେ ମଧ ସେ ସହଜରେ ହସ୍ତଚାଳନା କରି ନୂତନ ନୂତନ ରାଗ ସୃଷ୍ଟି କରିପାରୁଥିଲେ । ସେଇ ଆଙ୍ଗୁଠି ଚକ୍ ଖଡ଼ି ଧରି ଯେପରି ନୂତନ ଗାଣିତିକ ସୂତ୍ରର ରୂପ ଦେଇ ପାରୁଥିଲା ଠିକ୍ ସେଇପରି ସୃଷ୍ଟି କରି ପାରୁଥିଲା ତବଲାର ଧ୍ୱନି । ଏଇପରି ଏକ ବିଚିତ୍ର ସମନ୍ୱୟର ମଣିଷ ଥିଲେ ଅଧ୍ୟାପକ ରମାନାଥ ମହାନ୍ତି ।

ଶାନ୍ତ, ଧୀର ସ୍ୱଭାବର ମଣିଷ । ବେଶୀ କଥା କହନ୍ତି ନାହିଁ । କାହାରି ସହିତ ଉଚ୍ଚ ବାଚ ନାହିଁ, କି ଝଗଡ଼ା ନାହିଁ । ପାଠ ପଢ଼ାଇବେ, ଘରକୁ ଆସିବେ ଅଙ୍କ କଷିବେ ନଚେତ୍ ତବଲା ବଜାଇବେ । ଚାଲି କରି ଯିବେ ଧୀରେ ଧୀରେ, ଗାଡ଼ି ମଧ ଚଲାଇବେ ଧୀରେ ଧୀରେ କୋଡ଼ିଏ ତିରିଶ କିଲୋମିଟରରୁ ବେଶୀ ନୁହେଁ । ଏଇପରି ଏକ ମଣିଷ , ଚାଲି ଯିବା ବାଟରେ ଦୁବ ଘାସଟିଏ ମଧ ମରିବ ନାହିଁ ।

ଡକ୍ଟର ମହାନ୍ତି ଶୁଦ୍ଧ ଗଣିତରେ ପିଏଚ୍.ଡି. କରିଥିଲେ ଏବଂ ତାଙ୍କର ସନ୍ଦର୍ଭ ଖୁବ୍ ସୃଜନଶୀଳ ହୋଇଥିଲା ବୋଲି ଗାଣିତିକମାନେ କୁହନ୍ତି । ସେତେବେଳେ ଶୁଦ୍ଧ ଗଣିତରେ ଗବେଷଣା କରିବା ମଣିଷ ସଂଖ୍ୟା ଭାରତବର୍ଷରେ ବହୁତ କମ । ତାଙ୍କର ସନ୍ଦର୍ଭ ଆଣିଦେଇଥିଲା ଆନ୍ତର୍ଜାତିକ ଖ୍ୟାତି ଏବଂ ଭବିଷ୍ୟତକୁ ସୁନ୍ଦର କରିବା ପାଇଁ ମିଳିଥିଲା । ବହୁ ସୁଯୋଗ ଏବଂ ଅଫର, କିନ୍ତୁ ସେ ଫେରିଥିଲେ ଆପଣାର ମାତୃଭୂମିକୁ ଏବଂ ଏଇଠି ହିଁ କଟି ଯାଇଥିଲା ସାରା ଜୀବନ ।

କାହାକୁ କିଛି ପାଇଁ ଅନୁରୋଧ କରି ନାହାନ୍ତି । କାହାରି ଦୁଆରେ ଛିଡ଼ା ହୋଇ ହାତ ପାତି ନାହାନ୍ତି । ନିଜର ପବ୍ଲିସିଟି ପାଇଁ ଉଦ୍ୟମ କରି ନାହାନ୍ତି । ଯାହା ଆସିଛି ତାକୁଇ ଗ୍ରହଣ କରି ନେଇଛନ୍ତି ସେ ନିର୍ବିକାରରେ । ଗଣିତର ଏଇ ବିଶାଳ ପ୍ରତିଭା ଧରା ପୃଷ୍ଠରୁ ବିଦାୟ ନେଇଛନ୍ତି ସେଇପରି, ଯେଉଁଭଳି ସେ ସାରା ଜୀବନ କଟାଇ ଯାଇଛନ୍ତି ।



# ଦଧୀଚିର ଶେଷଯାତ୍ରା

ତୁମେ କେତେ ଜଣ, ଜୀବନକୁ ପାଣି
ଛଡ଼ାଇ ନ ଦେଲେ ଚଳିବ କି ?
ଦଧୀଚିର ହାଡ଼ ଉଜାଡ଼ି ନ ଦେଲେ,
ଏ ଦେଶର ଭାଗ୍ୟ ଫେରିବ କି ?

ରାଧାନାଥ ବାବୁ ଆଖି ବୁଜିଦେଲେ ଫେବୃଆରୀ ମାସ ୧୧ ତାରିଖ ରାତି ଗୋଟାଏରେ । ଇତିହାସର ଗୋଟାଏ ଯୁଗର ସମାପ୍ତି ଘଟିଛି । ଆରମ୍ଭ ହୋଇଛି ପୋଷ୍ଟ - ରାଧାନାଥ ବା ରାଧାନାଥ ପରବର୍ତ୍ତୀ ଯୁଗ । ଅସୁମାରି ମଣିଷର ଭିଡ଼ ତାଙ୍କୁ ଶ୍ରଦ୍ଧାଞ୍ଜଳି ଦେବାପାଇଁ । ମନେ ହେଉଛି ଯେପରି ମହାକାଳ ବି ଆଖି ପୋଛୁଚି । ମାଟି ଓ ମଣିଷର ଚିର ସ୍ତନନ୍ଧୟ ଜୀବନକାଳ ବ୍ୟାପୀ ଏଇ ମାଟି ଆଉ ମଣିଷର ଜୟଗାନ କରି ଆସିଛି । ନିବେଦିତ ହୋଇଛି ତାରି ପୂଜାବେଦୀରେ । ଜନ୍ମିଥିଲା ସାଧାରଣ ଶିଶୁ ହୋଇ । କିନ୍ତୁ ବିଦାୟ ନେଲା ମହାପୁରୁଷ ହୋଇ ।

ମହାକାଳର ବିଜୟ ଦୁନ୍ଦୁଭି । ବିଂଶ ଶତାବ୍ଦୀର ଶତାବ୍ଦୀ ପୁରୁଷ, କୁଳବୃଦ୍ଧ ରାଧାନାଥ ରଥ ଆଉ ନାହାନ୍ତି । ତାଙ୍କର ପରଲୋକ ପରେ ମହାକାଳ ଯେପରି ଫାଟି ଦୁଇପାଳ ହୋଇଯାଇଛି । କାଳ କାଳ ଦିଗନ୍ତ ମହାକାଳର ବର୍ତ୍ତମାନ ସମୟଠାରୁ ରାଧାନାଥ ପରବର୍ତ୍ତୀ ଯୁଗର ସଂକେତ ବହନ କରିବ । ସମୟର ଚିରନ୍ତନ ପ୍ରବାହ ମଧ୍ୟରେ ରାଧାନାଥ ରଥ ରହିଯିବେ ଏକ ମାଇଲ ଖୁଣ୍ଟ ହୋଇ । ଏଇ ମାଇଲ ଖୁଣ୍ଟ ପରବର୍ତ୍ତୀ ଯୁଗକୁ ଯେପରି ରାଧାନାଥ ଯୁଗର ସମୟ ବୋଲି ବିବେଚିତ ହେବ ଠିକ୍ ସେହିପରି ପରବର୍ତ୍ତୀ ପୀଢ଼ି ମଧ୍ୟ ହେଜିବ ଏଇ ମାଇଲ ଖୁଣ୍ଟକୁ ଆପଣାର ଚିରନ୍ତନ ଗତିପଥରେ । ରହ ମହାକାଳ ସମୟ, ହେ ସମୟର ଉଦ୍ଧବ, ରଥ ଅଟକାଅ । ଫେରି ଚାହିଁ ସେହି ଶତାବ୍ଦୀ ପୁରୁଷକୁ । ଯେଉଁ ମଣିଷଟି ଜୀବନର ବହୁ ବିଭାବକୁ କେବଳ ଛୁଇଁ ନାଇଁ, ସବୁ ବିଭାବକୁ ଆପଣାର କାଉଁରୀ ସ୍ପର୍ଶରେ ରସାଣିତ, ଭୁଦ୍ଧିମନ୍ତ କରି ଯାଇଛି, ତାକୁ ଫେରି ଅନାଅ । ହେଜ ତାରି ଆଲେଖ୍ୟକୁ ସମୟର ଦର୍ପଣରେ ।

ଇତିହାସକୁ ଫେରି ଅନାଅ ମହାକାଳ, ଫେରି ଚାହିଁ । ଆଜିଠାରୁ ପ୍ରାୟ ୧୦୨ ବର୍ଷ ତଳେ ତତ୍‌କାଳୀନ ଗଡ଼ଜାତ ଆଠଗଡ଼ରେ ଜନ୍ମ ହୋଇଥିବା ଶିଶୁ କିଭଳି ଜୀବନର ବହୁ ବିଭାବରେ ଆପଣାର ଆଲେଖ୍ୟ ରଖିଯାଇଛି, ତାକୁ ଦେଖ ମହାକାଳ ସମୟ, ଥରେ ଦେଖ ।

ଏହି ଯେଉଁ ଶୀର୍ଣ୍ଣକାୟ ଅଥଚ ଦୀର୍ଘ ମଣିଷଟି ଆଜି ଶୋଇଯାଇଛି ଶାନ୍ତ ଭାବରେ, ଆପଣାର ପାରଂପରିକ ଶଯ୍ୟାରେ, ଏକ ତକ୍ତପୋଷ ଉପରେ, ତାକୁ ଫେରିଚାହଁ ମହାକାଳ ।

ପାଠ ପଢ଼ିଛି ମାତ୍ର ମାଟ୍ରିକୁଲେଶନ ପର୍ଯ୍ୟନ୍ତ । ଜୀବିକା ଆରମ୍ଭ କରିଥିଲା ସିଂହଭୂମିରେ ବନ୍ୟ ବିଭାଗର ଏକ କିରାଣୀ ଭାବରେ । କିନ୍ତୁ ସେ ବୋଧହୁଏ ଅଭିପ୍ରେତ ଥିଲେ ଏକ ଯୁଗାନ୍ତକାରୀ ଭୂମିକା ଗ୍ରହଣ କରିବା ପାଇଁ । ସେଦିନ ଦେଶରେ ହିଂସ୍ର ରାଜୁତି ଚାଲିଥିଲା । ପଶୁ ମହାବଳର ଶାସନ । ହିଂସ୍ର, ରକ୍ତମୁଖା ହୋଇଥିଲା ସେଦିନର ଶାସନ ମୁକ୍ତିକାମୀ ଜନତା ବିରୋଧରେ । ଶୁଣ ମହାକାଳ ସେଇ ପଦଧ୍ୱନି । ଆଜି ବି ତ ତାହା ଶୁଭୁଚି ତମର ବକ୍ଷରେ । ସେଦିନ ଦେଶର ଯୁବକ ଯୁବତୀ ମତୁଆଲା ହୋଇଥିଲେ । ମୁକ୍ତିର ନିଶା ତାଙ୍କର ରକ୍ତରେ ଚମକ ଆଣିଥିଲା । ସେମାନେ ଜୀବନକୁ ବାନ୍ଧି ରଖି ଝାସ ଦେଇଥିଲେ ମୁକ୍ତିର ସଂଗ୍ରାମରେ । ବନ୍ୟ ବିଭାଗର ଏକ ସାମାନ୍ୟ କିରାନୀ ଯେ ଦିନେ ଇତିହାସର ନିୟାମକ ହେବ ଏକଥା କିଏ ଜାଣିଥିଲା ? ମତୁଆଲା ଯୁବକ ଝାସ ଦେଉଥିଲା ମୁକ୍ତି ସଂଗ୍ରାମରେ । ଓଡ଼ିଶାରେ ନୂଆ ଯୁଗର ପ୍ରବର୍ତ୍ତକ ପଣ୍ଡିତ ଗୋପବନ୍ଧୁ ଦାସଙ୍କର କାଉଁରୀ ସ୍ପର୍ଶରେ ଦିଗ୍‌ବଳୟରେ ନୂତନ ସଂଭାବନାର ସଂକେତ ବହନ କରୁଛି । ରାଧାନାଥ ବାନ୍ଧିଲେ ପୋଥି କିରାନୀ ଜୀବନର ।

ରାଧାନାଥଙ୍କ ପାଇଁ ମୁକ୍ତି ସଂଗ୍ରାମ ଦୁଇ ଭାଗରେ ବିଭକ୍ତ ଥିଲା । ମୁକ୍ତି ବ୍ରିଟିଶ ସାମ୍ରାଜ୍ୟବାଦର ନାଗଫାଶରୁ ପୁଣି ମୁକ୍ତି ପଡ଼ୋଶୀ ରାଜ୍ୟମାନଙ୍କର ଓଡ଼ିଆ ଭାଷା ଉପରେ ଆକ୍ରମଣରୁ । ଆସ ଯେ ଯେଉଁଠି ଅଛି ଯେତେ ମୁକ୍ତିକାମୀ ଦଳ, ରୁଣ୍ଡ ହୁଅ ସର୍ବେ ଆଜି ମାତୃମଣ୍ଡପରେ । ଯେଉଁ ମାତୃଭାଷା ମୋ ମାଆ ଭଳି, ସେହି ମାତୃଭାଷାକୁ ରକ୍ଷା କରିବା ପାଇଁ ଏକାଠି ହୁଅ, ଦଳମତ ଗୋଷ୍ଠୀ ନିର୍ବିଶେଷରେ ।

ଶୁଣ ଶୁଣ ମହାକାଳ, ତା'ର ଗତିପଥରେ ତାହାରି ଜୟଧ୍ୱନି । ମହାଯଜ୍ଞରେ ବଳିର ପ୍ରୟୋଜନ । ସେଇଯୋଗୁଁ ଲୋଡ଼ା ହୁଏ ବହୁ ବଳି, ଦେଶର ଯଜ୍ଞ ସଂପୂର୍ଣ୍ଣ କରିବା ପାଇଁ । ମହାକାଳ, ଶୁଣ, ଶୁଣ, ସେଇ ଯାତ୍ରାର ଶଂଖଧ୍ୱନି । ନେଇତ ଗଲ ଆଜି ତାକୁ ତୁମର କୋଳକୁ । ସେ ତ ଶୋଇଯାଇଛନ୍ତି ମହାନିଦ୍ରାରେ । ସେଠାରୁ କେହି କେବେ ଫେରିନାହିଁ । ସେ ଚାଲି ଯାଇଛନ୍ତି ମହାନିଦ୍ରାକୁ ଧୀରେ ଧୀରେ । ଦେଖ ଦେଖ ବାପା ବେଳ ଚାଲିଗଲା, ଯାମିନୀ କିପରି ଜାଗେ । ଏହିପରି ସିନା ଜୀବ ଚାଲିଗଲେ ତେବେ ସିନା ଭଲ ଲାଗେ ।

ନିଃଶବ୍ଦରେ, ଯନ୍ତ୍ରଣାରେ ଆକୁଳ ଚିତ୍କାର ଭିତରେ ନୁହେଁ, ଏକ ସଫଳ ଦୀର୍ଘ ଯାତ୍ରାର ଶେଷରେ, ଏକ ସଫଳ ଦୀର୍ଘ ଯାତ୍ରାର ସମାପ୍ତିର ଶେଷ ମାଇଲ ଖୁଣ୍ଟକୁ ସେ ଟପି ଯାଇଛନ୍ତି ଧୀରେ ଧୀରେ, ଶରତର କ୍ଳାନ୍ତ ଅପରାହ୍ନ ସନ୍ଧ୍ୟାର ଧୂଷରତା ଭିତରେ ଲିଭିଯିବା ପରି ।

ମହାକାଳ ସ୍ତବ୍ଧ ହୁଅ । ଦେଖ, ଶୋଇଛି ସେଇ ମଣିଷ ଯାହାର ସାଫଲ୍ୟ ଆପଣାର କଠୋର, ଦୀର୍ଘ ସାଧନାରେ ମହିମାନ୍ୱିତ । ଓଡ଼ିଶାର ଗାଁ ଗଣ୍ଡାରେ ମହାମାରୀ ଦେଖାଯାଏ, ବନ୍ୟାର କରାଳ ଘୂର୍ଣ୍ଣିରେ, କୁଳବାଳାର ଶୋକରେ ଆକାଶ ଥରିଉଠେ । ଶିଶୁର କାନ୍ଦଣାରେ

କ୍ରନ୍ଦସୀ ପ୍ରକମ୍ପିତ ହୁଏ । ରାଧାନାଥ ରଥ ଆପଣାର ନେତା ଗୋପବନ୍ଧୁ ଦାସଙ୍କ ପରି ଝାସ ଦିଅନ୍ତି ରିଲିଫ କାର୍ଯ୍ୟରେ । ଦଳମତ ଗୋଷ୍ଠୀର ପ୍ରାଚୀର ଭାଙ୍ଗିପଡ଼େ । ଭାଙ୍ଗିପଡ଼େ ସବୁ ସଂକୀର୍ଣ୍ଣତାର ଅର୍ଗଳି । ନିପୀଡ଼ିତ ମଣିଷର ଓଠରେ ହସର କ୍ଷୀଣରେଖା ଦେଖାଦିଏ । କ୍ଷୁଧାର୍ତ୍ତର ପେଟରେ ଖାଦ୍ୟ ପଡିବ ତାକୁ ଜୀବନ୍ୟାସ ଦିଏ ନୂତନ ଜୀବନର । ଗଭୀର ମାନବିକତାରେ ଉଦ୍‌ବୁଦ୍ଧ ରାଧାନାଥ ତୃପ୍ତ ହୁଅନ୍ତି । ସେବା ହିଁ ଧର୍ମ, ସେବା ହିଁ ତୃପ୍ତି । ମହାମାନବର ସାଗର ତୀରରେ ତାଙ୍କର ନୌକା ପାଲ ଭିଡ଼େ । ରାଧାନାଥ ରଥ ରୂପାନ୍ତରିତ ହୋଇଯାଆନ୍ତି, ମହାମାନବର ସୁରଭିରେ ସେ ରଂଜିତ ହୁଅନ୍ତି ।

ଆଜି ସେ ମିଶି ଯାଇଛନ୍ତି ତମରି ବକ୍ଷରେ । ତାଙ୍କୁ ପାଇ ମହାକାଳ, ତମର ଲାଭ କ'ଣ ହେଲା ? କିନ୍ତୁ ଆମର କ୍ଷତିକୁ ତମେ ହିସାବକୁ ନେଲ ନାହିଁ ମହାକାଳ !

*ମିଶିଯାଏ ଯଥା ପ୍ରଭାତୀ ତାରା ରବି କିରଣେ*

*ମିଶିଯାଏ ଯଥା ଜୀବାତ୍ମା, ପରମାତ୍ମା ଚରଣେ ।*

ଠିକ୍ ସେହିପରି ସେ ଧୀରେ ମିଶିଗଲେ ମହାବ୍ରହ୍ମରେ ।

ଡାକୁଚି ଓଡ଼ିଶା ମାଟି । ଡାକୁଚି ତାଙ୍କର ନନ୍ଦନ କାନନ । ଡାକୁଚି ଗୋପବନ୍ଧୁ ଭବନ । ବାହାରେ ଭିଡ଼ ଜମିଛି ଅସୁମାରି ମଣିଷର । ପିଲା ବୁଢ଼ା ଭେଣ୍ଡା । ସେମାନେ ସମସ୍ତେ ପ୍ରଣାମ କରୁଛନ୍ତି ସାଶ୍ରୁଳ ନୟନରେ । ମହାକାଳ ଦେଖୁଛି, ଥରେ ଫେରିଚାହିଁ ମହାକାଳ ।

ଏହି ଗୋପବନ୍ଧୁ ଭବନ । କେତେ ରୋଗୀ ଆସି ନାହାନ୍ତି, ଏହି ସ୍ଥାନକୁ ସାହାଯ୍ୟପାଇଁ ରୋଗର ଚିକିତ୍ସା ସକାଶେ । ଆସି ନାହାନ୍ତି କେତେ ଛାତ୍ର ଯେଉଁ ମାନଙ୍କର ବସ୍ତାନି ବନ୍ଧା ହୋଇଛି, ଦାରିଦ୍ର୍ୟର କଷାଘାତରେ, କେତେ ଦରିଦ୍ର, ନିରିମାଖୀ ଆସିଁନାହାନ୍ତି ସାହାଯ୍ୟ ପାଇଁ, ଆଶ୍ୱାସନା ପାଇଁ, କେତେ ନେତା, କେତେ ଦଳର ତୁଙ୍ଗ ମହାରଥୀ ଆସିନାହାନ୍ତି ଆଶୀର୍ବାଦ ପାଇଁ, ଶୁଭେଚ୍ଛା ପାଇଁ । ସମସ୍ତେ ପାଇଛନ୍ତି ଆଶ୍ୱାସନା, ଆଶୀର୍ବାଦ, ସାହାଯ୍ୟ । ମହାମାନବିକତାରେ ଉଦ୍‌ବୁଦ୍ଧ ହୋଇଛି ସେହି ମଣିଷ ।

ସବୁ ରହିଯାଇଛି ପଛରେ, ତୁଠ ପଥର ପରି । ସେ ଚାଲିଛି ଆଗକୁ । ଦୂରରେ ବହୁ ଦୂରରେ ଏକ ନୂତନ ପୃଥିବୀ ତାକୁ ଡାକୁଛି । ଡାକୁଛି କଠୋର କର୍ତ୍ତବ୍ୟ । ସେ ବାକି ସବୁ ବନ୍ଧନକୁ ଭୁଲିଯାଇଛି ।

ସେ ଇତିହାସର ସାକ୍ଷୀ ପାଲଟିଛି । ସେ ହୋଇଛି ସମୟର ଆହ୍ୱାନ । ଓଡ଼ିଶାର ସାହିତ୍ୟ, ସଂସ୍କୃତି, ଐତିହ୍ୟ ପରିଚିତି ଲାଭ କରିଛି ଦେଶ ବିଦେଶରେ । ଐତିହାସିକ ଏ.ଏଲ.ବାସମ୍ ଅଷ୍ଟ୍ରେଲିଆରେ ଯେପିର ତାଙ୍କର ଗୁଣଗାନ କରିଛନ୍ତି, ଠିକ୍ ସେହିପିର ମୃତ୍ୟୁ ପୂର୍ବରୁ ଓଡ଼ିଆ ଜାତିର ଜର୍ମାନ ତନୟା କୁମାରୀ ଏସ୍‌ମାନ୍ ଖୋଜିଛି ତାକୁ । ନରୱେର ଲୋକସଂଗୀତ ଇନ୍‌ଷ୍ଟିଚ୍ୟୁଟ୍‌ରେ ଶୁଭିଛି ଓଡ଼ିଶାର ଲୋକସଂଗୀତ, ଚେକୋସ୍ଲୋଭାକିଆର, ଜର୍ମାନୀର, ଜାପାନର ପ୍ରତିନିଧିମାନେ ଗାଇଛନ୍ତି ତାଙ୍କରି ବନ୍ଦନା, ଫିନ୍‌ଲାଣ୍ଡର ତୁଷାରମଣ୍ଡିତ ରାଜ୍ୟରେ ଶୁଭିଛି ତାଙ୍କର ବାଣୀ । ରାଧାନାଥ ରଥ ପାଲଟି ଯାଇଛନ୍ତି ଆନ୍ତର୍ଜାତିକ ।

ସମସ୍ତଙ୍କୁ ଦିନେ ଯିବାକୁ ହେବ । ଜନ୍ମିଲେ ମରଣ ସତ୍ୟ, ନୁହେଁ ଖଣ୍ଡିବାର । ୧୦୨ ବର୍ଷ ତଳେ ହୃଦୟର ଯେଉଁ ଯନ୍ତ୍ର ଚାଲିଥିଲା ଅବିରତ, ଅବିଶ୍ରାନ୍ତ ଭାବରେ, ସେହି ହୃଦୟ ଯନ୍ତ୍ର ଆଜି କ୍ଲାନ୍ତ ହୋଇ ବିଶ୍ରାମ ନେଇଛି ।

ଇତିହାସର ସ୍ରଷ୍ଟା ଆଜି ନିଜେ ଇତିହାସ ।

ସମୟର ବାଲିରେ ସବୁ ହଜିଯିବ ଦିନେ । କିନ୍ତୁ ଆଜିଠାରୁ ବହୁଯୁଗ ପର୍ଯ୍ୟନ୍ତ ଯେତେବେଳେ ଦେଖାଦେବ ବାତ୍ୟା, ବନ୍ୟା, ମରୁଡି ସେତେବେଳେ ଦୁଃଖକ୍ଲାନ୍ତ ମଣିଷ ଖୋଜିବ ସେଇ ମଣିଷକୁ - ରାଧାନାଥ ହେବେ ସେହି ଆଲୋକର ରେଖା, ଯାହା ଦେବ ଆଲୋକର ସନ୍ଧାନ ।

ସେହି ରାଧାନାଥ ରଥ ପ୍ରତି ଏ ଜାତିର ଶ୍ରଦ୍ଧାଞ୍ଜଳି, ଗଭୀର ଶ୍ରଦ୍ଧାଞ୍ଜଳି, ଏ ଜାତିର ପ୍ରଣିପାତ ।



# ରାଧାନାଥବାବୁ

ଏବେ ଦିନେ ଜଣେ ବିଶିଷ୍ଟ ବ୍ୟକ୍ତିଙ୍କ ଘରକୁ ଯାଇଥିଲି; ତାଙ୍କୁ ଭେଟିବା ପାଇଁ । ବଡ଼ଲୋକଙ୍କ ଘରକୁ ଗଲେ ଯାହା ହୁଏ । ପ୍ରବଳ ଭିଡ଼ । ତେବେ ଲାଭ ଗୋଟାଏ ହେଲା । ସେଇଠି ବିଭିନ୍ନ ପ୍ରକାର ବ୍ୟକ୍ତିଙ୍କ ସହ ସାକ୍ଷାତ ହେଲା । ମୋ ଭଳି ବହୁତ ମଣିଷ ସେଠି ପହଞ୍ଚିଲେ ବିଭିନ୍ନ କାମରେ । ସେଇଠି ଅନେକ ପ୍ରକାରର କାର୍ଯ୍ୟକ୍ରମ ବି ହେଉଥିଲା ପୁସ୍ତକ ଉନ୍ମୋଚନ, କବିତାପାଠ, ଗୋଟାଏ କ'ଣ ଯାତ୍ରାର ଶୁଭାରମ୍ଭ, ସଙ୍ଗୀତ ଉତ୍ସବ । ତେଣୁ ବହୁ ପ୍ରକାର ବ୍ୟକ୍ତି ସେଇଠି ଉପସ୍ଥିତ ଥିଲେ । ସାକ୍ଷାତର ସମୟ ଗଡ଼ିଯାଉଛି । ଭିଡ଼ ଭାଙ୍ଗିଲେ ଦେଖା ମିଳିବ । ତେଣୁ କଥାବାର୍ତ୍ତାରେ ସମୟ କାଟିବାକୁ ସୁବିଧା ମିଳିଲା ।

ହଠାତ୍ ଜଣେ ଭଦ୍ରଲୋକ ପ୍ରଶ୍ନ ପଚାରିଲେ - ଆଚ୍ଛା । ଗୋଟାଏ କଥା ପଚାରିବି ପଚାରିବି ବୋଲି ଭାବୁଚି, ପଚାରିବି ନା ନାଇଁ ? ମୁଁ ସ୍ୱାଭାବିକ ଭାବରେ ଭାବିଲି ଯେ ସେ ବୋଧହୁଏ ମୋ ବିଷୟରେ କିଛି ପଚାରିବେ । ମୁଁ ତାଙ୍କୁ କହିଲି, ପଚାରୁନାହାନ୍ତି, ସଙ୍କୋଚ କାହିଁକି ? ମୋ ଜୀବନତ ଗୋଟାଏ ଖୋଲା ଖାତା । ସେ ବାଧାଦେଇ କହିଲେ ଯେ - ନା, ନା ଆପଣଙ୍କ ବିଷୟରେ ନୁହେଁ, ରାଧାନାଥବାବୁଙ୍କ ବିଷୟରେ ।

ରାଧାନାଥ ବାବୁ ଅଛନ୍ତି, ଜୀବିତ ଅଛନ୍ତି । ବେଳେବେଳେ ସବୁ ମନେପକାଇ ପାରୁଛନ୍ତି । ପରମୁହୂର୍ତ୍ତରେ ସବୁ ହଜିଯାଉଛି । ସେ ଅଛନ୍ତି, କିନ୍ତୁ କିଛି କହିବା ପାଇଁ କ୍ଷମ ନୁହଁନ୍ତି ।

ମୋର ଏଇ ଉକ୍ତି ଶୁଣି ସେ ଟିକିଏ ଦବିଗଲେ । ତାପରେ ପଚାରିଲେ "ଏହା କ'ଣ ସତ୍ୟ ଯେ ସେ 'ସମାଜ' ଅଫିସର୍ ଲୁହାବାକ୍ସ ଭାଙ୍ଗି ତିନିଲକ୍ଷରୁ ଊର୍ଦ୍ଧ୍ୱ ଟଙ୍କା ନେଇଯାଇଛନ୍ତି ।" ମୋତେ ଆକାଶରୁ ପଡ଼ିବା ପରି ଲାଗିଲା । 'ସମାଜ' ଅନୁଷ୍ଠାନକୁ ମୋର ଯିବାଆସିବା ଆଉ ବେଶୀ ନାହିଁ । ଯହା କାମ ଥିଲା, ଥିଲା ରାଧାନାଥବାବୁଙ୍କ ସାଙ୍ଗରେ । କୋଡ଼ିଏରୁ ପଚିଶବର୍ଷ କାଳ ତାଙ୍କ ସାହଚର୍ଯ୍ୟରେ କଟିଚି । ଅନେକେ ଈର୍ଷାନ୍ୱିତ ହୋଇଛନ୍ତି 'ସମାଜ' କାଗଜ ଭିତରେ 'ସମାଜ' କାଗଜ ବାହାରେ । ରାଧାନାଥବାବୁ ଜଣେ ବ୍ରାହ୍ମଣ । ହେଲେ ସେ କିମିତି ଏଇ କରଣଟାକୁ ଏତେ ବିଶ୍ୱାସ କରୁଛନ୍ତି ? ଆଶ୍ଚର୍ଯ୍ୟର କଥା ଏଇଭଳି ଉକ୍ତି ତାଙ୍କ ନିକଟ ଲୋକମାନଙ୍କ ଠାରୁ ଶୁଣିଚି । ରାଧାନାଥ ବାବୁ ବ୍ରାହ୍ମଣ, କିନ୍ତୁ ମୋର ଜାତି ନାହିଁ କି ଧର୍ମ ନାହିଁ । ମୁଁ ଓଡ଼ିଆ, ମୁଁ ଭାରତୀୟ । ଜନ୍ମରେ ଜାତି କ'ଣ ଥିଲା ତାହା ଦୈବର ଅଧୀନ; କିନ୍ତୁ ମୋର କର୍ମ ମୋର ରୂପାନ୍ତର କରିଦେଇଛି । ଏ କଥା ରାଧାନାଥବାବୁ ଜାଣନ୍ତି । କାରଣ ଏହା ମୁଁ ଗୁପ୍ତ ରଖିନାହିଁ । ରାଧାନାଥବାବୁ ଅସୁସ୍ଥ ହୋଇଗଲା ପରେ, କର୍ମକ୍ଷମତା ହଜାଇଦେଇ ସାରିଲା ପରେ କେବଳ ଯାଏ ତାଙ୍କୁ ଭେଟିବାକୁ । କୌଣସି କାମ, କୌଣସି ଦାୟିତ୍ୱ, କୌଣସି

କାର୍ଯ୍ୟକ୍ରମ ତାଙ୍କ ଉପରେ ଲଦିବା ପାଇଁ ନୁହେଁ । କାରଣ ଖବରକାଗଜରେ ଫଟୋ ବାହାରିବା ସଉକ ମୋର ପିଲାଦିନେ ବି ନ ଥିଲା ।

ରାଧାନାଥ ବାବୁ ଆସ୍ତିକ । ବାଟଯାକ ସବୁ ରୋଡ଼୍‌ସାଇଡ଼ ଭଗବାନମାନଙ୍କୁ ସେ ମୁଣ୍ଡିଆ ମାରି ମାରି ଯାଆନ୍ତି । ମୁଁ ନାସ୍ତିକ । ମୁଣ୍ଡିଆ ମାରେ ନାହିଁ । ସେ ପଚାରନ୍ତି, "ଆପଣ କେବେହେଲେ ଏଭଳି ଏକ ଅଶରୀରୀ, ଐଶ୍ୱରିକ ଶକ୍ତି ବିଷୟରେ ଅନୁଭବ କରିନାହାନ୍ତି ?"

" ଭୟରୁ ଭଗବାନଙ୍କ ସୃଷ୍ଟି, ମୋର ସେ ଭୟ ଏ ପର୍ଯ୍ୟନ୍ତ ହୋଇନାହିଁ । ଭଗବାନଙ୍କ ସାଙ୍ଗରେ ମୋର ଦେଖା ହୋଇନାହିଁ ଯଦି କେବେ ଦେଖାହୁଏ (ସେ ଯଦି ଥାଆନ୍ତି) ସେ ମୋ ଉପରେ ଖୁସି ହେବେ ?" ରାଧାନାଥବାବୁ ହସି ହସି ପଚାରନ୍ତି, "କାହିଁକି ଖୁସି ହେବେ" ? "କାରଣ ମୁଁ ତାଙ୍କୁ ପ୍ରତି ମୁହୂର୍ତ୍ତରେ ଡିଷ୍ଟର୍ବ କରି ନାହିଁ । ସେ ଭାବିବେ ମୋର ଏହି ସୃଷ୍ଟିକୁ ମୁଁ ଆଖି,କାନ, ମସ୍ତିଷ, ବୁଦ୍ଧି ସବୁ ଦେଇଥିଲି ପ୍ରୟୋଗ କରିବା ପାଇଁ । ସେ ତାକୁ ପ୍ରୟୋଗ କରିଛି । ମୋର ଦାନ୍ତ ବିନ୍ଧିଲେ, କୋଷ୍ଠକାଠିନ୍ୟ ହେଲେ ପୁଅର ପରୀକ୍ଷାବେଳେ ସବୁ କଥାରେ ମୋତେ- ହେ ଭଗବାନ, ହେ ଭଗବାନ ବୋଲି ଡାକିନାହିଁ । ଆଉ ସାର୍ ଆମେ, ଅଭିଯୋଗ କରିବୁ ଯେ ଓଡ଼ିଶାର ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଦେଶର ସବୁ ନାଗରିକଙ୍କ କଥା ବୁଝିପାରୁ ନାହାନ୍ତି । ସାରା ବିଶ୍ୱର ସବୁ ମଣିଷ, ଗାଈ, ପୋକ, ଜନ୍ତୁଜନ୍ତା - ସମସ୍ତଙ୍କର ପ୍ରତ୍ୟେକ ମୁହୂର୍ତ୍ତରେ ଖବର ସେ କିମିତି ବୁଝିବେ ?" ଭାବିଚି, ରାଧାନାଥ ରଥ ବିଗିଡ଼ିବେ । ଆସିଗଲା କୁଆଖାଇ ପୋଲ । ଆରପଟରେ ଏକ ଭଗବାନ ରାସ୍ତା କଡ଼ରେ । ପାଣି ଉବୁଟୁବୁ ହେଲାଣି, ପ୍ରବଳ ବନ୍ୟା ମାଡ଼ିଆସୁଚି । ଅଧ୍ୟାପକ କୁଲ୍‌କେଙ୍କୁ ଭୁବନେଶ୍ୱରରେ ଛାଡ଼ି ଆସିଲାବେଳକୁ 'ଭଗବାନ' ବୁଡ଼ି ଯାଇସାରିଲେଣି ପାଣି ଭିତରେ । ରାଧାନାଥବାବୁ ହାତଟେକି କହୁଛନ୍ତି - ହେ ଭଗବାନ ! ଆପଣ ବି ଜଳଶାୟୀ ହୋଇଗଲେ । ମୁଁ ଟିକିଏ ମଜା ଦେଖିବାକୁ କହିଲି, "ଆଜ୍ଞା ! ଖାଲି କ'ଣ ଜଳ ! ସବୁ ନର୍ଦ୍ଦମା ପାଣି, ବିଷ୍ଠା, ଖତ ସବୁପରା ଢେଉ ଖାଉଚି 'ଭଗବାନଙ୍କ' ଚାରିପଟରେ ।"—

"ଆପଣ ସତରେ ନାସ୍ତିକ, କିନ୍ତୁ ଭଗବାନଙ୍କର ଆପଣ ଖୁବ୍ ନିକଟ । ଯେପରି ଥିଲା ରାବଣ ।"

ରାଧାନାଥବାବୁଙ୍କ ସହିତ ସମ୍ପର୍କର ନିବିଡ଼ତା ଏଇପରି ଥିଲା । ଯେପରି ମନେହେଉଥିଲା ଆଣ୍ଟି-ପୋଲସ୍ ଆଟ୍ରାକ୍ଟ । ବିପରୀତଧର୍ମୀ ଚୁମ୍ବକର ମେରୁ ଆକର୍ଷିତ ହୁଏ ପରସ୍ପର ପ୍ରତି ।

ରାଧାନାଥବାବୁଙ୍କର ସବୁ ଗୁଣ ଭଲ ବୋଲି ମୁଁ କେବେ କହିନାହିଁ କି ଲେଖିନାହିଁ, କିନ୍ତୁ ପଇସା ହିସାବ ରଖିବାରେ ସେ ଏକଦମ୍ ମଖିଚୋଷ । ସବୁ ପଇସାର ଟିକିନିଖି ହିସାବ ରଖିବେ ଓ ଅନ୍ୟମାନଙ୍କୁ ରଖିବାକୁ ମଧ୍ୟ କହିବେ । ଜଷ୍ଟିସ୍ ହରିହର ମହାପାତ୍ରଙ୍କୁ ଥରେ ମୁଁ ପଚାରିଥିଲି, "ଏଇ 'ସମାଜ' ଆଗରେ ବହୁ ଦନ୍ତାବଳ ଥିଲେ । ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ, ଲିଙ୍ଗରାଜ-କେତେ ମହାରଥୀ । ରାଧାନାଥବାବୁ ଜଣେ ମାତ୍ର ମାଟ୍ରିକ୍ୟୁଲେଟ୍, ବନ୍ୟ ବିଭାଗରେ କିରାଣୀ ପଦରୁ ଆସିଥିଲେ । ସେ କିମିତି ତିଷ୍ଠି ରହିଲେ, 'ସମାଜ'ରେ, ଆଉ ଅନ୍ୟମାନେ ରହିପାରିଲେ ନାହିଁ ?"

ସେ କହିଲେ— ଧାରାବାହିକ ପରିଶ୍ରମ ଓ ସାଧୁତା । ବାଡ଼ି ପକେଇ ସେ ଜଗିରହିଲେ ସମାଜକୁ । ସେ ସଫଳ ହେବେ ନାହିଁ ? ଦେଖୁନ ? କେଡ଼େ ଟିକିଏ ଅନୁଷ୍ଠାନରୁ ଏହା ବର୍ତ୍ତମାନ କେତେ ବଡ଼ ହେଲାଣି ।

ତେଣୁ ସେଦିନ ଯେତେବେଳେ ଏଇଭଳି ଏକ ଅଭିଯୋଗ ମୁଁ ଶୁଣିଲି, ମୋତେ ଚମକ ଲାଗିଲା କାରଣ ଏଭଳି ଏକ ଘଟଣା ସମ୍ପର୍କରେ ମୁଁ ଅବହିତ ମଧ୍ୟ ନ ଥିଲି । କୌଣସି କାରଣରୁ ଏଭଳି ସମ୍ବାଦ ମୋ ଆଖିରୁ ଏଡ଼ାଇ ଯାଇଥିଲା ।

ସ୍ୱାଭାବିକ କାରଣରୁ ମୁଁ ପଚାରିଲି, "ଏ ସମ୍ପର୍କରେ 'ସମାଜ' କାଗଜରେ ତ କିଛି ପ୍ରକାଶ ପାଇନାହିଁ ?" ସେମାନେ ଏକା ସ୍ୱରରେ ହସିଉଠିଲେ — "ସବୁ କାଗଜରେ ପ୍ରକାଶ ପାଇଲା, କିନ୍ତୁ 'ସମାଜ' ପ୍ରକାଶ ପାଇଲା ନାହିଁ । କିମିତି ପ୍ରକାଶ ପାଇବ । ପୁଲିସ୍ ଆସିଲା, ଚୋରର ସନ୍ଧାନ ମିଳିଲା । କିନ୍ତୁ ସମାଜ କାଗଜବାଲା ଚୋରକୁ ଧରିବା ପାଇଁ ରାଜି ନୁହଁନ୍ତି । କିମିତି ରାଜି ହେବେ କହିଲେ ଦେଖି ?"

କିମିତି ରୁନ୍ଧାରୁନ୍ଧା ମନେହେଲା "ରାଧାନାଥବାବୁ ଚାହିଁଥିଲେ 'ସମାଜ' କାଗଜଟାକୁ ଚୋରି କରି ପାରିଥାନ୍ତେ, ଚାହିଁଥିଲେ ଲକ୍ଷ ଲକ୍ଷ ଟଙ୍କା ନେଇପାରିଥାନ୍ତେ । ଆଜି ତ ସେ ନେବା ଦେବା ଅବସ୍ଥାରେ ନାହାନ୍ତି । ନେବେ କିମିତି ଅବା । ଲୁହାବାକ୍ସ ତାଙ୍କ ଉପର ଘରୁ ଗଲା କିମିତି, ଭାଙ୍ଗିଲା କିଏ ?"

ଏକ ଦୂରନ୍ତ ହସ ଉଚ୍ଛୁଳି ପଡ଼ିଲା - "ସେ ଭାଙ୍ଗିବା କ'ଣ ଦରକାର ? ଚାହିଁଲେ କ'ଣ ଭଙ୍ଗା ହେଇପାରିବ ନାହିଁ ? ଏ ସବୁ ପରିବାରର କାରସାଦି । ପରିବାରର ଲୋଭ । ବୁଝିଲେ ?"

ଜୀବନମରଣ ର ସନ୍ଧିକ୍ଷଣରେ ପହଂଚି ଯାଇଥିବା ରାଧାନାଥ ବାବୁ ଆଉ ବଞ୍ଚୁଛନ୍ତି କାହିଁକି ? ଏଇକଥା ଶୁଣିବା ପାଇଁ ? ଆଖିରୁ ଲୁହ ଖସିପଡ଼ିଲା ।

- ହଉ, ଆମେ ଯାଉଛୁ । ଆପଣ ତ ରାଧାନାଥବାବୁଙ୍କ ନିକଟର ଲୋକ । ଆପଣଙ୍କୁ ହୁଏତ ବାଧୁଛି । କିଛି ମନେକରିବେ ନାହିଁ । ସଂଗୀତ ଉତ୍ସବର କାର୍ଯ୍ୟକ୍ରମ ଆରମ୍ଭ ହୋଇଯାଇଛି ।

ରାଧାନାଥବାବୁ ଅଛନ୍ତି । ସକ୍ ହୋଇଗଲେ ସେ ପ୍ରକୃତିସ୍ଥ ହୋଇଯାଉଛନ୍ତି । ସେ ଦିନ ବିଜୁବାବୁ ପରଲୋକ ଦିନ । ଦୂରଦର୍ଶନ ଟିମ୍ ଆସିଥିଲେ ରେକର୍ଡ଼ କରିବା ପାଇଁ । ମୋର ନିଜର ଭୟ ହୋଇଥିଲା । ରାଧାନାଥ ବାବୁ କ'ଣ ସତରେ କିଛି କହିପାରିବେ ? କିନ୍ତୁ ସମସ୍ତଙ୍କୁ ବିସ୍ମୟାଭିଭୂତ କରି ସେଦିନ ସେ କହିଲେ, ଖୁବ୍ ଭଲ କହିଲେ । ସେଦିନ ଚନ୍ଦ୍ର ଶେଖର ତାଙ୍କୁ କହିଲେ, "ଆପଣ ବେଶ୍ ଭଲ ଅଛନ୍ତି ।" ରାଧାନାଥବାବୁ ବୁଝିପାରିଲେ କି ନାହିଁ କେଜାଣି ଖାଲି ହାତଯୋଡ଼ି ନମସ୍କାର କଲେ । ସେ ତ ସିମିତି ହାତ ଯୋଡ଼ି ଆସିଛନ୍ତି ଅନେକ ଦିନ ଧରି । ସାନ ବଡ଼ ସମସ୍ତଙ୍କୁ ହାତଯୋଡ଼ିବା ତାଙ୍କର ବିନୟତାର, ବିନମ୍ରତାର ଏକ ଅଂଶ ।

ରାଧାନାଥ ବାବୁ କ'ଣ ସତରେ ଧୃତରାଷ୍ଟ୍ର ହୋଇଗଲେଣି ? ସେ ତାଙ୍କ ଆଖି ଆଗରେ ଦେଖିଯିବେ ସବୁ ଅବକ୍ଷୟ, ସବୁ ଶିରି, ସମ୍ମାନର ବିଲୋପ । 'ସମାଜ' କେବଳ ଏକ ଖବର କାଗଜ ନ ଥିଲା । ଏହା ଥିଲା ଏକ ଆନ୍ତର୍ଜାତିକ ସାରସ୍ୱତ ପୀଠ । କିଏ ନ ଆସିଛି 'ସମାଜ'କୁ ?

କେଉଁ ଧର୍ମର ଲୋକ, କେଉଁ ଜାତିର ଲୋକ, କେଉଁ ଦଳ, କେଉଁ ଦେଶର ଲୋକ ଆସିନାହାନ୍ତି 'ସମାଜ'କୁ । 'ସମାଜ' କ'ଣ ଏକ ଖବରକାଗଜ ଥିଲା, ନା ଥିଲା ଏ ଦେଶର ହୃଦସ୍ପନ୍ଦନ ? ସମସ୍ତଙ୍କର ଦୁଃଖ-ସୁଖ ଆଶା ନିରାଶା, ସ୍ୱପ୍ନ ଓ ସାଧନା ସବୁ ରୂପ ପାଉଥିଲା 'ସମାଜ'ରେ । 'ସମାଜ' କ'ଣ ଏକ ଖବରକାଗଜ ବ୍ୟବସାୟୀ ଅନୁଷ୍ଠାନ ? ନା 'ସମାଜ' ହେଉଛି ଏ ଜାତିର ଉଦ୍‌ବେଳନର ପୀଠ । 'ସମାଜ' ହେଉଛି ଦୁଃଖରେ ସହଯୋଦ୍ଧୃତ୍ୱର ପୀଠ । ତାହାର ନାୟକ ହେଉଛନ୍ତି ମହାନାୟକ ରାଧାନାଥ ରଥ ।

ସବୁ ଧର୍ମ, ସବୁ ମତ, ସବୁ ଦଳର ସମନ୍ୱୟର ପୀଠ । ଜାତୀୟ ଆକାଂକ୍ଷା ଜାତୀୟ ସ୍ୱପ୍ନର ଆଧାର ।

ବଦଳି ଯାଉଛି ସବୁ ବଦଳି ଯାଉଛି । ଯେଉଁ ମୂଲ୍ୟବୋଧ ପାଇଁ ସାରା ଜୀବନ ସଂଗ୍ରାମ କରିଆସିଥିଲେ, ସେ ମୂଲ୍ୟବୋଧ ହଜି ଯାଉଛି । ବ୍ୟକ୍ତିଗତ ଜୀବନରେ ସ୍ତ୍ରୀ, ପୁଅ, ଜ୍ୱାଇଁ ବାହୁଡ଼ି ଯାଇଛନ୍ତି । ଦେଶରୁ ସମାଜରୁ ମୂଲ୍ୟବୋଧ ବାହୁଡ଼ି ଯାଉଛି । ଦିନେ ଫେରିବ, ଫେରିବ ନିଶ୍ଚୟ । ସେଥିପାଇଁ ଭୂମିକମ୍ପ ହେବ, ମେଦିନୀ ଫାଟିବ, ଜନତା ଜନାର୍ଦ୍ଦନ ଠିଆ ହେବ ସହସ୍ରଭୂଜା, ଅସ୍ତ୍ରଧାରିଣୀ ହୋଇ । କିନ୍ତୁ ସେତେବେଳକୁ ତ ସମୟ ଅତିକ୍ରାନ୍ତ ହୋଇଯାଇଥିବ । ସେ ଆଉ ନ ଥିବେ । କାରଣ ମଦମତ୍ତ ଏ ସମାଜକୁ ପୁଣି ଢଂରେ ବାଟକୁ ଆସିବା ପାଇଁ ସମୟ ଲାଗିବ । ବର୍ତ୍ତମାନ ଭୋଗର ଯୁଗ ଚାଲିଛି । ବୃଦ୍ଧ ଯୁବକୁ ସମସ୍ତେ ଉଚ୍ଛିଷ୍ଟ ପଛରେ ଧାଇଁଛନ୍ତି । ଲାଇସେନ୍‌ସ, କୋଟା, ପରମିଟ୍, କୋଠା, ସମ୍ପତ୍ତି, ଆୱାର୍ଡ, ଉପାଧି, ପୁରସ୍କାର ମଣିଷକୁ ପାଗଳ କରିଛି, କିନ୍ତୁ କେତେଦିନ ଇମିତି ଚାଲିବ ? ଏହା ଚାଲିପାରେନା ।

ସେ ଯେଉଁ ପ୍ରଳୟଙ୍କାରୀ ଅଭ୍ୟୁତ୍ଥାନ ହେବ, ତାକୁ ଦେଖିବା ପାଇଁ ତ ସେ ରହିବେ ନାହିଁ । ଆଜି କାହିଁକି ଦେଖିବେ ଚତୁର୍ଦ୍ଦିଗରେ ଅବକ୍ଷୟ, ଘରେ ବାହାରେ ସବୁଠାରେ ? କାହିଁକି ଶୁଣିବେ ଅପବାଦ, ଜୀବନର ସନ୍ଧ୍ୟାରେ ।

ଆଜି ତେଣୁ ତାଙ୍କର ଜନ୍ମ ଦିବସରେ ମୋର କାମନା, ସତରେ ମୋର କାମନା, ସେ କିପରି ଆଉ କିଛି ଶୁଣିବା ପୂର୍ବରୁ ସଂସାରରୁ ବିଦାୟ ନିଅନ୍ତୁ । ସେ ଆଉ ରହିବାର କୌଣସି ଯଥାର୍ଥତା ନାହିଁ ।

ତା ପରେ ଯାହା ହେବ, ତାହ ହୁଏତ ଜଣା ସମସ୍ତଙ୍କୁ, କିନ୍ତୁ ସେଥିପାଇଁ ସେ କାହିଁକି ଦାୟୀ ହେବେ ?

ଫେରିଆସିଚି ମୋର ଉପସଂହାରକୁ । ମୋର ଭଗବାନ ବିଶ୍ୱାସ ନାହିଁ । କିନ୍ତୁ ଆଜି ଯଦି ଦେଖାହୁଏ ତାଙ୍କ ସହିତ ଏବଂ ସେ ଯଦି ଥାଆନ୍ତି, ତାଙ୍କୁ ପଚାରିବି, "କାହିଁକି ରଖିଛ ତମେ ଆଉ ରାଧାନାଥବାବୁଙ୍କୁ ଏଇ ସଂସାରରେ ? ସେ ଆଉ କ'ଣ ଶୁଣିଲେ ତମେ ସନ୍ତୁଷ୍ଟ ହେବ ଭଗବାନ ।"

ରାଧାନାଥବାବୁ ଆଉ ଅଧିକ ଦିନ ଏପରି ଅବସ୍ଥାରେ ରୁହନ୍ତୁ, ତାହା ମୁଁ ଚାହେଁ ନାହିଁ । ଅନ୍ୟମାନେ ଚାହିଁବେ ହୁଏତ ; କିନ୍ତୁ ସେମାନେ ଛାତିରେ ହାତଦେଇ କୁହନ୍ତୁ ତ -ଏଭଳି ବଞ୍ଚିବା ସେମାନେ ଚାହାନ୍ତି ତ ?



# ଚିର ବସନ୍ତର ବିଦାୟ

ଅଧ୍ୟାପକ ରାଜକିଶୋର ରାୟ ଆଉ ନାହାନ୍ତି । ୮୫ ବର୍ଷ ବୟସରେ ଅଗଷ୍ଟ ୧୧ ତାରିଖରେ ସେ ତାଙ୍କର ପୁରୀ ବାସଭବନରେ ଶେଷ ନିଃଶ୍ୱାସ ତ୍ୟାଗ କରିଛନ୍ତି । ଅଧ୍ୟାପକ ରାୟ ୧୯୧୪ ମସିହା ନଭେମ୍ବର ୩ ତାରିଖରେ ଖୋର୍ଦ୍ଧା ପାଖ ଛତାବର ଗାଁରେ ଜନ୍ମ ଗ୍ରହଣ କରିଥିଲେ । ବୟସ ତାଙ୍କ ପାଖରେ ହାର ମାନିଥିଲା । ବୟସ ହୋଇଛି କିନ୍ତୁ ସେ ବୃଦ୍ଧ ହୋଇନାହାନ୍ତି । ରୋମାଣ୍ଟିକ୍ ରାଜ କିଶୋର ରାୟ ଜୀବନର ସବୁ ବିଭାବରେ ରୋମାଣ୍ଟିକ ଥିଲେ । ମୋଟର ଦୁର୍ଘଟଣାରେ ଆହତ ହୋଇ ଡାକ୍ତରଖାନାରେ ଶଯ୍ୟା ଉପରେ ଶୋଇ ରହିବା ତାଙ୍କୁ ଆଦୌ ଶୋଭା ପାଉ ନ ଥିଲା । ଛଳ ଛଳ ଜୀବନର ଉଦ୍ଦାମତା, ଖିଲିଖିଲି ପବନର ବସନ୍ତ ତାଙ୍କୁ ସର୍ବଦା ନାଟକୀୟ କରି ରଖିଥିଲା । ସେ ତାହା ନିଜେ ମୁକ୍ତ କଣ୍ଠରେ ସ୍ୱୀକାର କରିଯାଇଛନ୍ତି 'ଆକାଶବାଣୀ'ରେ ନିଜର ଜୀବନ କାହାଣୀ କହିବାକୁ ଯାଇ ସେ କହିଛନ୍ତି ଯେ ମୋ ପାଇଁ ସମଗ୍ର ପୃଥିବୀ ପ୍ରେମମୟ ଏବଂ ନାରୀ ହେଉଛି ସେଇ ପ୍ରେମର ଉତ୍ସ । ନାରୀ ମୋ ପାଇଁ ପ୍ରେରଣା ଦେଇଛି ସର୍ବଦା, ଜୀବନ ସାରା ଏବଂ ଦେଇ ବି ଆସିବ ଭାବୁଚି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ।

ସାର୍ ମୋର ସ୍କୁଲ ଶିକ୍ଷକ ଥିଲେ ଇଂରାଜୀ ସାହିତ୍ୟରେ । ଚଳିତ ଶତାବ୍ଦୀର ଚତୁର୍ଥ ଦଶନ୍ଧିର କଥା । ଇଂରାଜୀରେ ଏମ୍.ଏ.ପାଶ କରି ସେ ସମ୍ବଲପୁର ଜିଲ୍ଲା ସ୍କୁଲରେ ଶିକ୍ଷକତା ଆରମ୍ଭ କରନ୍ତି ଏବଂ ମୋର ଏ ପର୍ଯ୍ୟନ୍ତ ତାଙ୍କର ପ୍ରଥମ କ୍ଲାସ କଥା ସ୍ପଷ୍ଟ ମନେ ପଡୁ ଛି । ସେ ନାଟକୀୟ ଢଙ୍ଗରେ ଚାଲନ୍ତି । କଥାବାର୍ତ୍ତା କରନ୍ତି । ତାଙ୍କର କ୍ଲାସରେ ମନେହୁଏ ଯେପରି ଏକ ଏକାଙ୍କିକାର ନାଟକ ଚାଲିଛି । ସମସ୍ତେ ତନ୍ମୟ ହୋଇ ଶୁଣନ୍ତି । ଏ ପର୍ଯ୍ୟନ୍ତ ମନେ ପଡୁଛି "Send salary with the cook in an Envelope" and "Send salary in an Envelope with the cook" ଦୁଇ ବାକ୍ୟ ଭିତରେ ପ୍ରଭେଦ । ମୋର ଇଂରାଜୀ ଲେଖିବାରେ ଭୁଲ୍ ସଂଶୋଧନ କରି ସେ ଏଇ ଉକ୍ତିଟି କହି ଜୀବନରେ ସବୁବେଳେ ଏହା ମନେ ରଖିବାକୁ କହିଲେ ଏବଂ ତାହା ସହିତ ଆମ କ୍ଲାସରେ ପଢୁଥିବା ସୁନ୍ଦରୀ ଝିଅ ମାୟାରାଣୀ ଦାସ (ରୋଜି) କୁ ମଧ୍ୟ ଲକ୍ଷ୍ୟ କରି କହିଥିଲେ ଯେ ଆପଣାର ଭାବୀ ସ୍ୱାମୀକୁ ଚିଠି ଲେଖିଲା ବେଳେ ଏହି ପ୍ରଭେଦକୁ ଯେପରି ସେ ମନେ ରଖେ । କ୍ଲାସରେ ହସ ଉଚ୍ଛୁଳି ଥିଲା । ଆଜି ତାଙ୍କର ମୃତ୍ୟୁ ସଂବାଦ ଶୁଣି ସେଇ ହସର ପ୍ରତିଧ୍ୱନି ବାଜିଲା କାନରେ । ବହୁ ବର୍ଷ ପରେ ।

ସାର୍ ମୃତ୍ୟୁକୁ ବି ରୋମାଣ୍ଟିସାଇଜ୍ କରି ପାରନ୍ତି । ସହକର୍ମୀ ଶୀତିକଣ୍ଠର ମୃତ୍ୟୁ ହୋଇଯାଏ ପୋଖରୀରୁ ପଦ୍ମ ତୋଳିବାକୁ ଯାଇ । ସାର୍ ସେ ଦିନ କାନ୍ଦୁଥିଲେ ଏବଂ କହୁଥିଲେ

ନାଟକୀୟ ଢଂଗରେ କମଳ ପ୍ରତି ଶୀତିକଣ୍ଠର ଦରଦ କଥା । ସେ ବର୍ଷର ପ୍ରଶ୍ନ ପତ୍ରରେ ମଧ୍ୟ ସେ ଅନୁବାଦ କରିବାକୁ ଦେଇଥିଲେ ସେଇ କଥା । ମୃତ୍ୟୁ ତାଙ୍କୁ ନେଇଗଲା ବେଳେ ତ ନିଶ୍ଚୟ ଚମକି ପଡ଼ିଥିବ ପଡ଼ିବା ଉଚିତ । ମୃତ୍ୟୁ ଦେହରେ ଯୌବନର କାଉଁରୀ ସ୍ପର୍ଶ କ'ଣ ଲାଗିନ ଥିବ ?

ଛତାବର ଗାଁରେ ଆଜି ବି ତାଙ୍କର ସମସାମୟିକ ମଣିଷ ଅଛନ୍ତି, ଯେଉଁମାନେ ତାଙ୍କର ପିଲାବେଳ କଥା ସ୍ମରଣ କରନ୍ତି । ଯୌବନ ତାଙ୍କୁ ଛୁଇଁଥିଲା କୈଶୋର ସମୟରୁ । ସେ ଯୌବନ, ସେ ରୋମାଞ୍ଚବାଦ ତାଙ୍କୁ ଆଉ ଛାଡ଼ି ଯାଇପାରି ନାହିଁ ।

ଅଧ୍ୟାପକ ରାଜକିଶୋର ରାୟ ଏମ.ଏ. ପରୀକ୍ଷା ଦିଅନ୍ତି ଓଡ଼ିଆ ସାହିତ୍ୟରେ । ସାହିତ୍ୟ ମଧ୍ୟ ତାଙ୍କୁ ଛୁଇଁଥିଲା ପିଲାଦିନରୁ । ଗାଁ ଛତାବର ଠାରୁ ଆରମ୍ଭ କରି କଟକ ସହର ପର୍ଯ୍ୟନ୍ତ, ସ୍କୁଲ ମଂଚ ଠାରୁ ରେଭେନ୍ସା କଲେଜ ରଂଗମଂଚ ପର୍ଯ୍ୟନ୍ତ ସବୁଠାରେ ସେ ଅଭିନୟ କରିଛନ୍ତି । ପରିଣତ ବୟସରେ ସେ ଏକ କୁମାର ପୂର୍ଣ୍ଣମୀ ଉତ୍ସବରେ ଗୀତିନାଟ୍ୟ ପରିବେଷଣ ସମସ୍ତଙ୍କ ଭିତରେ ଆନନ୍ଦର ହିଲ୍ଲୋଳ ସୃଷ୍ଟି କରିଥିଲା । ସାଂଗରେ ଥିଲେ ପ୍ରସିଦ୍ଧ କ୍ରୀଡ଼ାବିତ୍ ନନ୍ଦକୃଷ୍ଣ ଦାସ । ରେଭେନ୍ସା କଲେଜର ବାର୍ଷିକ ଡ୍ରାମାରେ ଅଭିନୀତ, ହେଉଥାଏ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ 'ଅଭିଯାନ' ନାଟକ । ପୁରୁଷୋତ୍ତମ ଦେବ ଭୂମିକାରେ ଅବତୀର୍ଣ୍ଣ ଅଧ୍ୟାପକ ରାଜ କିଶୋର ରାୟ । ତୁମର ସେ ଦୁଇଟି ନୀଳ ନୀଳ ଆଖି ପଦ୍ମା ଏ ପର୍ଯ୍ୟନ୍ତ ମୋର ହେତୁ ଅଛି ।

କିନ୍ତୁ ସେଇ ନାଟକ ପରେ ଅଧ୍ୟାପକ ରାୟ ବିଦାୟ ନେଇଥିଲେ ରେଭେନ୍ସା କଲେଜରୁ । ଆଉ ସେଠାକୁ ଫେରି ନାହାନ୍ତି । ୧୯୫୬ ମସିହାରେ ଦିନେ କଲେଜ ଛକର ଜେ.ବି.ଠକ୍କର ଦୋକାନରେ ଥରେ ଅକସ୍ମାତ ଦେଖାହୁଏ ତାଙ୍କ ସହିତ । ସାଙ୍ଗରେ ଥିଲେ ଶ୍ରୀ ବିପିନ ବିହାରୀ ଖମାରୀ । ଖେଦୋକ୍ତି କରି ଅଧ୍ୟାପକ ରାୟ ସେଦିନ କହିଥିଲେ ଯେ ତମର ଅଧ୍ୟାପକମାନଙ୍କୁ ମୋର ସୁଦୂରର ନମସ୍କାର ଜଣାଇ ଦେବ ।

ଅଧ୍ୟାପକ ରାୟ ଅଭିନୟ କରନ୍ତି, ଗଳ୍ପ ଲେଖନ୍ତି, ନିକଟରେ ସେ ନିଜର ଜୀବନ ସ୍ମୃତି ଲେଖୁଥିଲେ ଧାରାବାହିକ ଭାବରେ 'ସମୟ'ଖବର କାଗଜରେ ।

ଅଧ୍ୟାପକ ରାଜ କିଶୋର ରାୟ ନିଶ୍ଚିତ ଭାବରେ ଏକ ବିବାଦମାନ ବ୍ୟକ୍ତି ଥିଲେ । ବିବାଦକୁ ସେ ବରଂ ବରଣ କରନ୍ତି ଏବଂ ସେଥିରୁ ହିଁ ସେ ଯେପରି ଉନ୍ମାଦନା ପାଆନ୍ତି । ଜୀବନଟାକୁ ଏକ ଧମାଧରା ବା ଷ୍ଟେଲ ଅବସ୍ଥାରେ ଦେଖିବା ଥିଲା ତାଙ୍କର ନୀତି ବିରୁଦ୍ଧ । ରୋମାଣ୍ଟିକ୍ ରାଜ କିଶୋର ପ୍ରତ୍ୟେକ ପଦକ୍ଷେପରେ ତାଙ୍କର ରୋମାନ୍ସକୁ ଛାଡ଼ି ଯାଇଛନ୍ତି, ପାଠକ ପାଇଁ, ଦର୍ଶକ ପାଇଁ । 'ଆଚାର୍ଯ୍ୟ ଥିଲେ ବୋଲି' ଗଳ୍ପ ମୋତେ ବା ମୋଭଳି ପାଠକମାନଙ୍କୁ ମୁଗ୍ଧ କରିଛି ଖାଲି ଆଚାର୍ଯ୍ୟଙ୍କ ପାଇଁ ନୁହେଁ, ସେଇ ଝିଅଟି ପାଇଁ ଯାହାର କମ୍ର କୋଳରେ ପଡ଼ିଥିବା ଖାତାଟି ଉପରେ ଅସ୍ତଗାମୀ ରବିଙ୍କର କନକ କିରଣ ପଡ଼ିଥିବା ଅବସ୍ଥାରେ ଗଳ୍ପଟି ଶେଷ ହୋଇଛି ।

ତାଙ୍କର ନାଟକୀୟତା ମୁଗ୍ଧ କରିଛି ଦର୍ଶକମାନଙ୍କୁ । ସେଦିନ ସଂନ୍ଧ୍ୟାରେ ମହାଶ୍ୱେତା ଓ ମାଳବିକା 'ମୋ ଅଭିନୟ ମୋ ଜୀବନ' କାହାଣୀ ୟୁନିଭର୍ସରେ କହିଲାବେଳେ ତନ୍ମୟ

ଶ୍ରୋତା ମାନେ ଶୁଣୁଥିଲେ । ମୋ କାନରେ ଯେପିର ଧ୍ୱନିତ ହେଉଥିଲା ପିତାଙ୍କର କଣ୍ଠସ୍ୱର । ଏ ଧ୍ୱନି ପିଲାଦିନୁ ମୋତେ ଏବଂ ମୋ ପୀଢ଼ିର ବହୁ ଲୋକଙ୍କୁ ମୁଗ୍ଧ କରିଛି ।

ରାଜକିଶୋର ରାୟଙ୍କର ଗଳ୍ପ 'କଳିଙ୍ଗ ଶିଳ୍ପୀ' ଗଳ୍ପ ପାଇଁ ସେ ଯେତିକି ପ୍ରସିଦ୍ଧି ଲାଭ କରିଛନ୍ତି, ସେତିକି ବିବାଦର ସମ୍ମୁଖୀନ ହୋଇଛନ୍ତି । କିନ୍ତୁ ରାଜକିଶୋର ରାୟ ବଂଚି ରହିବେ ଅନେକ କାଳ ତାଙ୍କର ଚିର ଯୌବନର ଜୀବନ ପାଇଁ । ଯୌବନ ବୟସ ଭାରାରେ ଭାରାକ୍ରାନ୍ତ ହୋଇନାହିଁ । ନଦୀର କୁଳୁକୁଳୁ ଧ୍ୱନି ପରି ସେ ଛଳ ଛଳ ରହିଛନ୍ତି ସାରା ଜୀବନ । ଯଉବନ, ଯଉବନ କଣ୍ଠ ତଟେ ଭରିଦିଅ ଗୀତ । ସେଇ ଯୌବନର, ରୋମାଞ୍ଚବାଦର ମଣିଷ ରାଜ କିଶୋର ରାୟ ଆଉ ନାହାନ୍ତି । ସ୍ୱର୍ଗ ଦ୍ୱାରରେ ତାଙ୍କର ଚିତା ଜଳୁଛି । ମର ଦେହକୁ ସିନା ଧ୍ୱଂସ କରିଦେବ କିନ୍ତୁ ଯୌବନର ମହା ସଂଗୀତରେ ସେ ଧ୍ୱନିତ ହୋଇ ରହିବେ ମହାକାଳ ବକ୍ଷରେ ।



# ଅନନ୍ୟ ସାଧାରଣ ମଣିଷର ମହାଯାତ୍ରା

ସକାଳୁ ନରେନ୍ଦ୍ର (ପ୍ରସାଦ ଦାସ) ଖବର ଦେଲେ, ରାଜକିଶୋର ପଟ୍ଟନାୟକ ଆଉ ନାହାନ୍ତି । କାଲି ରାତିରେ ବିଳମ୍ବିତ ପ୍ରହରରେ 'ପଂଝୁରୀ ପକ୍ଷୀ' ପଂଝୁରୀ ଛାଡ଼ି ଉଡ଼ିଯାଇଛି । ମାତ୍ର ବିଗତ ସପ୍ତାହରେ ସାହିତ୍ୟ ଏକାଡ଼େମୀ ତାଙ୍କୁ ସମ୍ମାନିତ କରିଥିଲା ବହୁ ବିଳମ୍ବରେ । ରାଜକିଶୋର 'ଜୀବନସଂନ୍ଧ୍ୟା'ରେ ପହଞ୍ଚି ସାରିଥିଲେ । ବୟସ ୮୦ ବର୍ଷ ହୋଇଥିଲା । ଗଲା କେତେ ବର୍ଷ ହେଁଲା ସେ ଆଉ କଲମ ଧରି ପାରୁ ନ ଥିଲେ । ଜୀବନ ବ୍ୟାପୀ ସେ ଥିଲେ ଆଙ୍ଗ୍ରୀ ୟଙ୍ଗ ମ୍ୟାନ୍ । ବୟସ ତାଙ୍କ ପାଖରେ ହାର ମାନିଥିଲା । ଚିରକାଳ ସେ ରହିଗଲେ ସେଇପରି ଅବିନୀତ, କ୍ରୁଦ୍ଧ ଏବଂ ଉଦାର । ବାପା ଶ୍ରୀବସ୍ତ ପଟ୍ଟନାୟକ ଆସିଥିଲେ ରସେଲକୁଣ୍ଡା ( ବର୍ତ୍ତମାନ ଭଂଜନଗର) ପାଖ ନୂଆଗାଁରୁ । ନଅ ଭାଇଙ୍କ ମଧ୍ୟରୁ ଲକ୍ଷ୍ମୀ ନାରାୟଣ (ଡାକ୍ତର ଜର୍ଜ ପଟ୍ଟନାୟକ ଓ ବିଜୁ ପଟ୍ଟନାୟକଙ୍କ ବାପା) କଟକରେ ବସତି ସ୍ଥାପନ କରିଥିଲେ । ଶ୍ରୀବସ୍ତ ପଟ୍ଟନାୟକ ପେଶାରେ ଇଂଜିନିୟର କିନ୍ତୁ ନିଶା ଥିଲା ବଗିଚା କରିବା । ଆଜି ମଧ୍ୟ ବିରିବାଟୀ ପାଖରେ ତାଙ୍କର ବଗିଚା ହତଶ୍ରୀ ଅବସ୍ଥାରେ ରହିଛି । ତାଙ୍କୁ ଦେଖି ଲୋକେ ସମୟ କଳନା କରୁଥିଲେ । ପଟ୍ଟନାୟକଙ୍କ ସାଇକେଲ ଦେଖା ଗଲାଣି.... । ତାହେଲେ ଚାରିଟା ବାଜିଲା । ଲକ୍ଷ୍ମୀନାରାୟଣ ବ୍ରାହ୍ମ ହୋଇ ଯାଇଥିଲେ ହେଁ ଶ୍ରୀବସ୍ତ ସେଥିରୁ ଆପଣାକୁ ମୁକ୍ତ ରଖିଥିଲେ । କିନ୍ତୁ ପର ପୀଢ଼ିରେ କୃଷ୍ଣମୂର୍ତ୍ତିଙ୍କର ଦର୍ଶନ ଓ ଚିନ୍ତାଧାରା ଏଇ ପରିବାରକୁ ସମ୍ମୋହିତ କଲା । ରାଜକିଶୋର ପଟ୍ଟନାୟକ କିନ୍ତୁ କୌଣସି ଧାରାରେ ପଡ଼ିବାକୁ ପ୍ରସ୍ତୁତ ନୁହନ୍ତି । ତାଙ୍କର 'ଚଲାବାଟ' ସ୍ୱତନ୍ତ୍ର ଏବଂ ଅନନ୍ୟ ସାଧାରଣ । ଲେଖା ମଧ୍ୟ ଠିକ୍ ସେଇପରି । ସେ ବାଟରେ ନ ଥିଲା ପ୍ରିୟାପ୍ରୀତି ତୋଷଣ । ନ ଥିଲା କୁର୍ଣ୍ଣିସର ମଧୁର ଆସ୍ୱାଦନ । ଥିଲା ଦୁର୍ବଳ ଆହ୍ୱାନ । ସାହିତ୍ୟ ଏକାଡ଼େମୀକୁ ମୋର ଆହ୍ୱାନ ଯଦି ସେମାନେ ଆଗାମୀ ଦଶନ୍ଧିରେ ଏଇଭଳି ଖଣ୍ଡିଏ ପୁସ୍ତକ ପ୍ରକାଶନ କରି ପାରିବେ ଏଇ ଥିଲା ନିଜର କୌଣସି ଏକ ବହିର ମୁଖବନ୍ଧରେ ତାଙ୍କର ଆହ୍ୱାନ । ଏ ତ ଖାଲି ସାହିତ୍ୟ ଏକାଡେମୀ ପ୍ରତି ଆହ୍ୱାନ ନୁହେଁ, ଏ ଆହ୍ୱାନ ସମଗ୍ର ଜାତିକୁ ।

ରାଜ କିଶୋର ପାଠ ପଢ଼ିଥିଲେ ବିଜ୍ଞାନରେ । ପରେ ଆଇନରେ ସେ ସ୍ନାତକ ହୋଇ ସେ ହେଲେ ଆଡ଼ଭୋକେଟ ଆଇନ ବ୍ୟବସାୟ ଥିଲା ତାଙ୍କର ପେଶା ଲେଖିବା ଥିଲା ନିଶା । କାହାରି ଉପରେ ନିର୍ଭର କରିବେ ନାହିଁ, କାହାରିକୁ ଖୋସାମଦ୍ କରିବେ ନାହିଁ, ପୁରସ୍କାରଟିଏ ପାଇଁ, ଉଷଧିଟିଏ ପାଇଁ କାହାରି ଖିଜମଦ୍ କରିବେ ନାହିଁ । ସେଇ ଯୋଗୁଁ ଓକିଲାତି କଲେ । ଦୁର୍ବିନୀତ ହୋଇ ରହିବା ପାଇଁ ସେ ଅନେକ ଦିନ ଧରି ବିବାହ ମଧ୍ୟ କରି ନ ଥିଲେ । ପରିଣତ ବୟସରେ ସେ ଶୈଳବାଳା ଦେବୀଙ୍କୁ ବିବାହ କଲେ । କିନ୍ତୁ ରାଜ କିଶୋର ତ କାହାକୁ ଛାଡ଼ିବାକୁ

ପ୍ରସ୍ତୁତ ନୁହନ୍ତି । ସେମାନେ ଗାଁ ମଣିଷ ହୋଇଥିଲେ ଓଢ଼ଣା ଦେଉଥାନ୍ତେ କିନ୍ତୁ ସେ ତ ସଭ୍ୟ ଲୋକ । ସେ ଓଢ଼ଣା ଦିଅନ୍ତି ନାହିଁ । ସେମାନେ ଗୋଡ଼ ଦୁଇଟିକୁ ରୁମାଲରେ ଘୋଡ଼ାଇ ଦିଅନ୍ତି । ରାଜ କିଶୋରଙ୍କ କଳ୍ପନାର ଫୁଲ ଫୁଟିନାହିଁ ସାଧାରଣ ଭାବରେ, ପଥର ଢିମା ଉପର ଦେଇ ତାଙ୍କ ଜୀବନର ହାଟ ସଉଦା ଚାଲିଥିଲା ।

ଏଇ କିଛି ବର୍ଷ ତଳର କଥା । ରାଜ କିଶୋର ଖବରକାଗଜରେ ଏକ ବିବୃତ୍ତି ଦେଲେ । ସେ ଖଣ୍ଡିଏ ବହି ଛପାଇବାକୁ ଚାହାନ୍ତି । କିନ୍ତୁ ଆର୍ଥିକ ସମ୍ବଳ ନାହିଁ । ଶୁଭେଚ୍ଛୁ ମାନଙ୍କ ସାହାଯ୍ୟ ଲୋଡ଼ିଥିଲେ । ଯେଉଁମାନେ ସାହାଯ୍ୟ ଦେଇଥିଲେ ସେମାନଙ୍କ ଭିତରେ ମୋ ପରିବାର ଅନ୍ୟତମ । କିନ୍ତୁ ସେ ଅର୍ଥ ଫେରିଆସିଲା । ଧନ୍ୟବାଦ, ଦାନ ଅର୍ଥ କୁଳାନ ହେଲା ନାହିଁ । ଆର୍ଥିକ ସାହାଯ୍ୟ ଆବଶ୍ୟକ ପଡ଼ିଲା ନାହିଁ । ସେ ଅର୍ଥ ଫେରାଇ ଦେଇଥିଲେ ସମସ୍ତଙ୍କୁ । ପୁଣି ମନିଅର୍ଡର ଖର୍ଚ୍ଚ କରି । ଅସରନ୍ତି ସେ କାହାଣୀ । ତାଙ୍କର 'ସପନ କୁହୁଡ଼ି' 'ଉଡାମେଘ' ପରି ଭାସି ଚାଲିଲା ଜୀନର କାହାଣୀ ।

ଭଉଣୀ ବସନ୍ତ କୁମାରୀ ମଧ ଲେଖିକା । ଗାର୍ହିକ ଭାବରେ ମମତା ଖୁବ୍ । କିନ୍ତୁ ସମସ୍ତଙ୍କ ଠାରୁ ସେ ଡିଟାଚଡ୍ ଏକାକୀ, ନିଃସଙ୍ଗ । ସ୍ତ୍ରୀକୁ 'ବିରହିଣୀ' ହେବାକୁ ହୁଏତ ଦେଇ ନାହାନ୍ତି କିନ୍ତୁ ୫୦ ରୁ ଉର୍ଦ୍ଧ୍ୱ ବହିର ଲେଖକ ଅନନ୍ୟ ସାଧାରଣ ହୋଇ ରହି ଯାଇଛନ୍ତି ସେ ଚିରକାଳ ।

ସମୟ ଅତିକ୍ରାନ୍ତ ହୋଇଛି, ରାଜ କିଶୋର ପାସୋରହୋଇ ଯାଇଛନ୍ତି ସମସାମୟିକ ପୀଢ଼ିରୁ । କିନ୍ତୁ ସେ ସମ୍ମାନର ପାତ୍ର ହୋଇଛନ୍ତି ବହୁ ଲେଖକଙ୍କର । ସେଇ ଯୋଗୁଁ ତାଙ୍କର ମୃତ୍ୟୁରେ ଖାଲି ଶୋକ ପ୍ରକାଶ କରି ନାହାନ୍ତି ଲୁହ ଢାଳିଛନ୍ତି ରବି ମହାପାତ୍ର, ରବି ସିଂ, ମନୋରମା ମହାପାତ୍ର ପ୍ରଭୃତି ।

ରାଜକିଶୋରଙ୍କର ପରଲୋକ ହୋଇ ଯାଇଛି ସଜ୍ଞାନରେ । ମୃତ୍ୟୁ ଆସିଛି ଧୀରେ ଧୀରେ ଏବଂ ସେ ଆଖି ବୁଜି ଦେଇଛନ୍ତି 'କଳା ପରଦା' ନଇଁ ଆସିଛି । ରାଜ କିଶୋର ଅନେକ ସ୍ମୃତିର ମଶାଣି । ସେ ଅଧାୟର ଶେଷ ଯବନିକା ପଡ଼ି ଯାଇଛି । ସେ ପାଲଟି ଯାଇଛନ୍ତି ଇତିହାସ, ଆମର ଉଜ୍ଜ୍ୱଳ ପରମ୍ପରା ହୋଇ ।



# ଚିରନ୍ତନ ବିପ୍ଳବର ସେନାପତି

ଭାରତବର୍ଷର ମାରବାଡ଼ିମାନେ ବ୍ୟବସାୟୀ ଭାବରେ ପରିଚିତ । ବ୍ୟବସାୟର ପରିସର ଭିତରୁ ବାହାରକୁ ସେମାନେ ପ୍ରାୟ ଯାଆନ୍ତି ନାହିଁ ।

ଏହାର ଏକ ବ୍ୟତିକ୍ରମ ହେଉଛନ୍ତି ଡକ୍ଟର ରାମମନୋହର ଲୋହିଆ । ଅନେକ ତାଙ୍କୁ ମାରବାଡ଼ି ବୋଲି ଜାଣନ୍ତି ନାହିଁ । କାରଣ ସେ ସବୁ ନିୟମକୁ ପରିତ୍ୟାଗ କରିଥିଲେ । ଜାତି, ଧର୍ମ,ବର୍ଣ୍ଣ ତାଙ୍କରି କିଛି ନ ଥିଲା ।

ମାରବାଡ଼ିମାନେ ପ୍ରାୟ ଧନାଢ଼୍ୟ ବ୍ୟକ୍ତି ବୋଲି ପରିଚିତ ।

ଏହାର ବ୍ୟତିକ୍ରମ ହେଉଛନ୍ତି ରାମ ମନୋହର ଲୋହିଆ ।

ସେ ଥିଲେ ସୋସାଲିଷ୍ଟ । ସାମ୍ୟବାଦ ଥିଲା ତାଙ୍କର ବିଶ୍ୱାସ । ସେଥିରେ କୌଣସି ସାଲିସ କରିବାକୁ ସେ ପ୍ରସ୍ତୁତ ନ ଥିଲେ । ସାଲିସ ତାଙ୍କର ଜାତକରେ ନ ଥିଲା ।

ତଥାପି ସମଗ୍ର ମାରବାଡି ସମ୍ପ୍ରଦାୟ ତାଙ୍କୁ ଗର୍ବର ସହିତ ସ୍ମରଣ କରନ୍ତି । ନିଜ ସମ୍ପ୍ରଦାୟର ଜଣେ ବ୍ୟକ୍ତି ବ୍ୟତିକ୍ରମର ପାହାଚରେ ଏତେ ଉପରକୁ ଉଠି ପାରିଚି, ଏହା ସେମାନଙ୍କ ପାଇଁ ଥିଲା ଗର୍ବର ବସ୍ତୁ ।

ଲୋହିଆ ଏକ ବ୍ୟତିକ୍ରମ - ଜୀବନର ସବୁ ବିଭାବରେ ।

ପଣ୍ଡିତ ଜବାହାରଲାଲ ନେହେରୁ ଥିଲେ ଷ୍ଟେଟ ପିପୁଲସ୍ କନଫରେନ୍ସର ସଭାପତି । ଭାରତବର୍ଷର ସବୁ ଗଡ଼ଜାତ ମାନଙ୍କରେ ଚାଲିଥିବା ଜନ ଆନ୍ଦୋଳନ ଚାଲିଥିଲା ଏହାରି ନେତୃତ୍ୱରେ । ଆଜି ହୁଏତ ସମସ୍ତେ ମନେ ପକେଇବେ ନାହିଁ । କିନ୍ତୁ ଭାରତବର୍ଷର ଗଡ଼ଜାତ ମାନଙ୍କରେ ଚାଲିଥିବା ଆନ୍ଦୋଳନ, ଭାରତୀୟ ଜାତୀୟ କଂଗ୍ରେସର ଏକ ବିରାଟ ଶକ୍ତି ଥିଲା ।

ସେତେବେଳେ ତାଙ୍କର ଥିଲେ ତିନିଜଣ ସେକ୍ରେଟାରୀ । ଡକ୍ଟର ରାମ ମନୋହର ଲୋହିଆ, ଡକ୍ଟର ଜେଡ୍.ଏ.ଅହମ୍ମଦ , ଡକ୍ଟର ଏମ.ଏ.ଆସରଫ । ଡକ୍ଟର ଲୋହିଆ ପରବର୍ତ୍ତୀ କାଳରେ ଭାରତୀୟ ସୋସାଲିଷ୍ଟ ପାର୍ଟିର ନେତା ହେଲେ । ସୋସାଲିଷ୍ଟ ଆନ୍ଦୋଳନର ତ୍ରିମୂର୍ତ୍ତିଙ୍କ ମଧ୍ୟରେ ଜୟ ପ୍ରକାଶ, ଅରୁଣା ଆସଫ୍ ଅଲ୍ଲି ଏବଂ ରାମ ମନୋହାର ଲୋହିଆ ଅନ୍ତର୍ଭୁକ୍ତ । ଏଇ ତିନିଜଣ କର୍ମୀମାନଙ୍କ ମଧ୍ୟରେ ଏବଂ ଜନସାଧାରଣଙ୍କ ଭିତରେ ବେଶୀ ପରିଚିତ ଥିଲେ । ଯଦିଓ ସୋସାଲିଷ୍ଟ ଚିନ୍ତାଧାରାର ଚିନ୍ତକ ଭାବରେ ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଅଚ୍ୟୁତ ପଟ୍ଟ ବର୍ଦ୍ଧନ, ତରୁଣ ପ୍ରେମ ଭାସିନ୍ ମଧୁ ଲିମାଇ ପ୍ରଭୃତି ସୋସାଲିଷ୍ଟ ଆନ୍ଦୋଳନର ଅଗ୍ରଭାଗରେ ଥିଲେ ।

ଡକ୍ଟର ଲୋହିଆଙ୍କ ସହକର୍ମୀ ଡକ୍ଟର ଜେଡ୍ .ଏ.ଅହମ୍ମଦ ପରବର୍ତ୍ତୀ କାଳରେ କମ୍ୟୁନିଷ୍ଟ ପାର୍ଟିର ନେତା ଥିଲେ । ଏବଂ ଜୀବନର ଅପରାହ୍ନରେ ହଠାତ୍ ଦଳ ଛାଡ଼ି ମୁଲାୟମ ସିଂ ଯାଦବଙ୍କ

ସମାଜବାଦୀ ଦଳରେ ଯୋଗଦେଲେ । ସେଠାରୁ ମଧ୍ୟ ସେ ହଜିଗଲେ ଏବଂ ସେ ଜୀବିତ ଥିଲେ ମଧ୍ୟ ତାଙ୍କର ରାଜନୈତିକ ଅସ୍ତିତ୍ୱ ନାହିଁ । ଅନ୍ୟତମ ସହକର୍ମୀ ଡକ୍ଟର ଏମ.ଏ.ଆସରଫ୍ ମଧ୍ୟ ଭାରତୀୟ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇ ନେତୃତ୍ୱକୁ ଯାଇଥିଲେ । ସ୍ତ୍ରୀ ଏବଂ ପାର୍ଟି ସହିତ ମତଭେଦ ହୋଇ ସେ ଚାଲିଗଲେ ଜର୍ମାନୀ । ସେଇଠି ସେ ଐତିହାସିକ ଗବେଷଣାରେ ମଗ୍ନ ଥିଲେ ଏବଂ ଆପଣା ବୟସଠାରୁ ଖୁବ୍ କମ ବର୍ଷର ଜଣେ ମହିଳାକୁ ବିବାହ କରିଥିଲେ । ସେଇଠି ତାଙ୍କର ପରଲୋକ ହୋଇଯାଏ ।

ଲୋହିଆ ଜର୍ମାନୀରୁ ଡକ୍ଟରେଟ ଉପାଧି ଲାଭ କରିଥିଲେ । ସେତିକିବେଳୁ ସେ ଇଉରୋପୀୟ ସମାଜବାଦୀ ଆନ୍ଦୋଳନ ସହିତ ଜଡ଼ିତ ହୋଇଥିଲେ । ଭାରତକୁ ଫେରି ସେ ଯୋଗଦେଲେ ଜାତୀୟ ଆନ୍ଦୋଳନରେ । ଲୋହିଆଙ୍କର ବ୍ୟକ୍ତିଗତ କରିସ୍ମା ଥିଲା ଅଦ୍ଭୁତ । ସେ ଯୁବକ ଯୁବତୀମାନଙ୍କୁ ଆକୃଷ୍ଟ କରି ପାରୁଥିଲେ ସହଜରେ । ଆପଣାର ଅଣପାରମ୍ପରିକ ଚିନ୍ତାଧାରା ଯୁବକ ଯୁବତୀ ମାନଙ୍କୁ ଆକୃଷ୍ଟ କରି ପାରୁଥିଲା ।

ସେତେବେଳେ କମ୍ୟୁନିଷ୍ଟ ଓ ସୋସାଲିଷ୍ଟ ମାନେ କଂଗ୍ରେସ ଭିତରେ ରହି କାର୍ଯ୍ୟ କରୁଥିଲେ । ଭାରତୀୟ ଜାତୀୟ କଂଗ୍ରେସର ଲକ୍ଷ୍ୟ ଥିଲା ସ୍ୱାଧୀନତା କିନ୍ତୁ ସ୍ୱାଧୀନତାର କୌଣସି ସଂଜ୍ଞା ସେମାନେ ନିରୂପିତ କରି ପାରି ନ ଥିଲେ । ବ୍ରିଟିଶ ଶାସନର ଅବସାନ ହିଁ ତାଙ୍କର ଏକମାତ୍ର ଲକ୍ଷ୍ୟ ଥିଲା । ଭାରତୀୟ ଜାତୀୟ କଂଗ୍ରେସ ଥିଲା ଏକ ପ୍ରବାହ । ଏହି ପ୍ରବାହରେ ବହୁ ପରସ୍ପର ବିରୋଧୀ ଶକ୍ତି ସାମିଲ ହୋଇଥିଲେ । ଉଦାହରଣ ସ୍ୱରୂପ ଶେଠ ଘନଶ୍ୟାମ ଦାସ ବିରଳା ଯେପରି ଏହି ପ୍ରବାହର ଥିଲେ ତାଙ୍କ ଗୋଷ୍ଠୀର ଶିଳ୍ପ ସାମ୍ରାଜ୍ୟର ବହୁ ଶ୍ରମିକ ମଧ୍ୟ ସେଇପରି ଅନ୍ତର୍ଭୁକ୍ତ ଥିଲେ । ଉଦାରମନା ବହୁ ଜମିଦାର ଯେପରି କଂଗ୍ରେସ ଦଳରେ ଥିଲେ, ଜମିଦାରମାନଙ୍କର ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମୀ କୃଷକ, ଜମିଦାରୀ ପ୍ରଥାର ବିଲୋପ ପାଇଁ ଯୁଦ୍ଧରତ କୃଷକ ମଧ୍ୟ ସେଥିରେ ଅନ୍ତର୍ଭୁକ୍ତ ଥିଲା ।

ସୋସାଲିଷ୍ଟ ଏବଂ କମ୍ୟୁନିଷ୍ଟ ମାନେ ସ୍ୱାଧୀନତାର ପ୍ରକୃତ ଅର୍ଥନୈତିକ ରୂପରେଖ ପ୍ରଦାନ କରି ଶ୍ରମିକ, କୃଷକମାନଙ୍କୁ ସେଇ ବୟାନ ପ୍ରତି ଆକୃଷ୍ଟ କରାଉଥିଲେ । ସେମାନଙ୍କର ଏକ ଯଥାର୍ଥ ଆଶଙ୍କା ଥିଲା ଯେ ସ୍ୱାଧୀନତାର ଅର୍ଥନୈତିକ ବୟାନର ପତାକା ତଳେ ଶ୍ରମିକ କୃଷକ ବୁଦ୍ଧିଜୀବୀମାନଙ୍କୁ ଏକାଠି କଲେ ହିଁ, ପ୍ରକୃତ ସ୍ୱାଧୀନତା ପାଇହେବ । ନଚେତ୍ ଏହା ହଜିଯିବ ଏକ ମରୁ ପ୍ରାନ୍ତରରେ । ସେମାନେ ସେଇଯୋଗୁଁ ଭାରତୀୟ ଜାତୀୟ କଂଗ୍ରେସ ଭିତରେ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନର ନେତୃତ୍ୱ ନେବା ସହିତ ଶ୍ରମିକ ଓ ଚାଷୀମାନଙ୍କର ସ୍ୱତନ୍ତ୍ର ସଂଗଠନ ଗଢ଼ି ଅର୍ଥନୈତିକ ଦାବି ଉପରେ ସେମାନଙ୍କୁ ଏକତ୍ରିତ କରିବା ଏବଂ ସଂଗ୍ରାମ କରିବା ପାଇଁ ବ୍ୟାପୃତ ଥିଲେ । ସେମାନଙ୍କ ମଧ୍ୟରେ ଡକ୍ଟର ରାମ ମନୋହର ଲୋହିଆ ଅନ୍ୟତମ ।

ପରେ ଭାରତୀୟ ଜାତୀୟ କଂଗ୍ରେସ ଭିତରେ ସୋସାଲିଷ୍ଟ ପାର୍ଟି ଗଠିତ ହୁଏ । ଜବାହାରଲାଲ ନେହେରୁ ଏହାର ଅନ୍ୟତମ ନେତା ହୁଅନ୍ତି । ଜବାହାରଲାଲ ନେହେରୁଙ୍କର ଏକଦା ଘନିଷ୍ଠ ସହଯୋଗୀ ରାମମନୋହର ଲୋହିଆଙ୍କ ସହିତ ମତଭେଦ ସେଇଦିନରୁ ଆରମ୍ଭ ହୋଇଥିଲା । ପରବର୍ତ୍ତୀ କାଳରେ ଏହା ଅଧିକ ତିକ୍ତ ହେବାକୁ ଲାଗଲା ଏବଂ ରାମ ମନୋହର

ଜବାହାରଲାଲ ପରିବାରର ତୀବ୍ର ବିରୋଧୀରେ ପରିଣତ ହେଲେ । ଏହି ତୀବ୍ର ମତଭେଦର ଶରବ୍ୟ କେବଳ ଜବାହାରଲାଲ ନୁହନ୍ତି, ତାଙ୍କର କନ୍ୟା ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ସମେତ ତାଙ୍କ ପରିବାରର ଅନ୍ୟ ସମସ୍ତେ ହୋଇଗଲେ । ବ୍ୟକ୍ତିଗତ ଆକ୍ଷେପରେ ସିଦ୍ଧହସ୍ତ ରାମ ମନୋହରଙ୍କର ଏପରି କୌଣସି ଦିନ ଥିଲା ନାହିଁ ଯେଉଁଦିନ ସେ ଜବାହାରଲାଲ ଓ ତାଙ୍କର ପରିବାରକୁ ଆକ୍ରମଣ କରିନାହାନ୍ତି ।

ଜବାହାରଲାଲ ଥିଲେ ରୋମାଣ୍ଟିକ ସୋସାଲିଷ୍ଟ । ସମାଜବାଦର ଭାବ ତାଙ୍କୁ ଅନୁପ୍ରାଣିତ କରିଥିଲା କିନ୍ତୁ ତାକୁ କାର୍ଯ୍ୟକାରୀ କରିବା ପାଇଁ ଯେଉଁ ଦୃଢ଼ ପଦକ୍ଷେପ ଆବଶ୍ୟକ ତାହା ନେବା ପାଇଁ ସେ ସକ୍ଷମ ନ ଥିଲେ ।

ରାମ ମନୋହର ଲୋହିଆ ଇଉରୋପ ସମାଜବାଦୀ ମାନଙ୍କର ପ୍ରଭାବରେ ଆସିଥିଲେ । ଦ୍ୱିତୀୟ ସମାଜବାଦୀ ଇଣ୍ଟରନେସନାଲରେ, କମ୍ୟୁନିଷ୍ଟ ଓ ସୋସାଲିଷ୍ଟ ମାନଙ୍କ ଭିତରେ ତୀବ୍ର ସଂଘର୍ଷ ହୋଇଥିଲା । ସୋସାଲିଷ୍ଟ ମାନଙ୍କର ବିଜୟ ହୋଇଥିଲା । ସେଥିରେ ରାମମନୋହର ସେଇ ଦ୍ୱିତୀୟ ଇଣ୍ଟରନେସନାଲର ଅନ୍ତର୍ଭୁକ୍ତ ହୋଇଥିଲେ ।

ତୃତୀୟ ଇଣ୍ଟରନେସନାଲ ଥିଲା କମ୍ୟୁନିଷ୍ଟ ମାନଙ୍କର ।

ଦ୍ୱିତୀୟ ଓ ତୃତୀୟ ଇଣ୍ଟରନାସନାଲ କମ୍ୟୁନିଷ୍ଟ ଓ ସୋସାଲିଷ୍ଟ ମାନଙ୍କର ମଧ୍ୟରେ ତିକ୍ତତା ରାଜନୈତିକ ଆଦର୍ଶବାଦରୁ ସାମୂହିକ ତଥା ବ୍ୟକ୍ତିଗତ ଶତ୍ରୁତାକୁ ଓହ୍ଲାଇ ଯାଇଥିଲା । ସେମାନଙ୍କ ଭିତରେ ବୈରତା ଯୋଗୁଁ ଜର୍ମାନୀରେ ଫାସିବାଦର ବିଜୟ ପାଇଁ ପଥ ସୁଗମ ହେଲା । ଫ୍ରାନ୍ସ ଓ ଇଟାଲୀରେ ପପୁଲାର ଫ୍ରଣ୍ଟ - ଫାସିବାଦ ବିରୁଦ୍ଧରେ ପପୁଲାର ଫ୍ରଣ୍ଟ - ସରକାର ଗଢ଼ିବାକୁ ସମର୍ଥ ହେଲା ନାହିଁ । ପୂର୍ବ ଇଉରୋପ, ସ୍ପେନରେ ଅବସ୍ଥା ସଂଘାତିକ ହେଲା । ତଥାପି ସେମାନଙ୍କର ଭିତରେ ବେରତା କମିଲା ନାହିଁ । ଏକ ଦିଗରେ ସୋସାଲିଷ୍ଟ ମାନଙ୍କର ନରମ ଓ ସାଲିସ ମନୋଭାବ ଓ ଅନ୍ୟ ଦିଗରେ କମ୍ୟୁନିଷ୍ଟ ମାନଙ୍କର ସେକ୍ଟାରିଆନ ଏବଂ ଏକା ଲଢ଼ିବାର ସଂଗ୍ରାମୀ ନୀତି ଏଇ ସମାଜବାଦୀ ମାନଙ୍କୁ ସ୍ୱତନ୍ତ୍ର ଶିବିରରେ ରଖିଦେଲା ।

ଭାରତବର୍ଷରେ ମଧ୍ୟ ସେଇ ପରିସ୍ଥିତି ଦେଖାଦେଲା ଏବଂ ତା ଫଳଭୋଗ କରିବାକୁ ପଡୁଛି ସାରା ଦେଶକୁ ।

ରାମ ମନୋହର ସେଥିରୁ ମୁକ୍ତ ନଥିଲେ । ଆଚାର୍ଯ୍ୟ ନରେନ୍ଦ୍ର ଦେବ ଅଧିକ କାଳ ବଂଚିଥିଲେ କଣ ହୋଇଥାଆନ୍ତା କହିହେବ ନାହିଁ ଆଜି ।

ସୋସାଲିଷ୍ଟ ମାନେ କଂଗ୍ରେସରୁ ଅଲଗା ହୋଇ ସୋସାଲିଷ୍ଟ ପାର୍ଟି ଗଠନ କଲେ । ଭାରତୀୟ ଜନତା ଭିତରେ ସେମାନଙ୍କର ପ୍ରଭାବ ଥିଲା ଆଗରୁ । ଫଳରେ ସୋସାଲିଷ୍ଟ ପାର୍ଟି ବେଶ୍ ସାଫଲ୍ୟ ଲାଭ କଲା କିଛି କାଳ । କିନ୍ତୁ ସୋସାଲିଷ୍ଟ ପାର୍ଟିରେ ମଧ୍ୟ ବିଭେଦ ଦେଖାଦେଲା । ରାମମନୋହର ନିଜର ଦଳ ଗଠନ କଲେ ସତ୍ୟ କିନ୍ତୁ ତାହାର ପ୍ରଭାବ ବିଶେଷ ଅନୁଭୂତ ହେଲା ନାହିଁ ।

ରାମମନୋହର ଏକ ଦିଗରେ ଜବାହାରଲାଲ ଏବଂ କଂଗ୍ରେସର ଯେପରି ବିରୋଧୀ ହୋଇ ଉଠିଲେ ଅନ୍ୟ ଦିଗରେ କମ୍ୟୁନିଷ୍ଟ ମାନଙ୍କ ସମେତ ତାଙ୍କର ପୂର୍ବତନ ବନ୍ଧୁମାନଙ୍କର ମଧ୍ୟ ସେଇପରି ବିରୋଧୀ ହୋଇ ଉଠିଲେ ।

ରାମମନୋହର ପାର୍ଲାମେଣ୍ଟକୁ ନିର୍ବାଚିତ ହୋଇଛନ୍ତି । ଆପଣାର ମତକୁ ସେ ଦୃଢ଼ ଭାବେ ଉପସ୍ଥାପିତ କରିଛନ୍ତି । ପାର୍ଲାମେଣ୍ଟାରିଆନ ଭାବରେ ତାଙ୍କର ଖ୍ୟାତି ବିପୁଳ । କିନ୍ତୁ ତାହା ବହୁ ସମୟରେ ବ୍ୟକ୍ତିଗତ ହୋଇ ଯାଇଛି । ଜବାହାରଲାଲଙ୍କ ବ୍ୟକ୍ତିଗତ ଖର୍ଚ୍ଚ କେତେ ଠାରୁ ଆରମ୍ଭ କରି ଅନେକ ବ୍ୟକ୍ତିଗତ ଆକ୍ରମଣ ତାଙ୍କର ବକ୍ତବ୍ୟର ତାତ୍ତ୍ୱିକ ଦିଗକୁ ଘୋଡ଼ାଇ ପକାଇଛି ।

ସତ୍ୟାଗ୍ରହ କରି ଜେଲ ଯାଇଛନ୍ତି । ସେ ଆମ୍ବ ଖାଇବାକୁ ଭଲ ପାଆନ୍ତି । ପ୍ରଧାନମନ୍ତ୍ରୀ ଜବାହାରଲାଲ ଆପଣାର ଜେଲରେ ବନ୍ଦୀ ଥିବା ରାମ ମନୋହରଙ୍କ ପାଖକୁ ଆମ୍ବ ପଠାଇଛନ୍ତି ।

ରାମ ମନୋହର ବିବାହକୁ ସାମନ୍ତବାଦୀ ଦାସତ୍ୱ ବୋଲି ଅଭିହିତ କରନ୍ତି । ଫ୍ରି-ଲଭ ବା ଉନ୍ମୁକ୍ତ ପ୍ରେମ ତାଙ୍କର ବିଶ୍ୱାସ । ଯୁବକ ଯୁବତୀଙ୍କୁ ଏହା ଆକର୍ଷଣ କରିଥିଲା ବହୁଳ ଭାବରେ । ରାମ ମନୋହର ବିବାହ କରି ନ ଥିଲେ । କାହାକୁ ସେ ବିବାହ କରିବାକୁ ଚାହିଁଥିଲେ ଏବଂ ବିବାହ ହୋଇ ପାରି ନଥିବାରୁ ତାଙ୍କର ମନସ୍ତାତ୍ତ୍ୱିକ ବିଭ୍ରାଟ ଘଟିଛି ବୋଲି ଅଭିଯୋଗ ହୋଇଛି । ସେ ନିନ୍ଦା ଅପବାଦକୁ ଖାତିର କରି ନାହାନ୍ତି । ଯାହା ଠିକ୍ ବୋଲି ଭାବିଛନ୍ତି ସ୍ପଷ୍ଟ ଭାଷାରେ, ନିର୍ଭୀକ ଭାବରେ କହିଛନ୍ତି । ସେ ବେଶ୍ ହ୍ୟୁମରସ୍ ମଧ୍ୟ ଥିଲେ । ଷ୍ଟାଲିନଙ୍କ ଝିଅର ଏକ ଭାରତୀୟ ଯୁବକ ସହିତ ବିବାହ ଜନିତ ସମସ୍ୟା ଓ ଷ୍ଟାଲିନ୍ କନ୍ୟା ଶ୍ୱେତଲାନାଙ୍କ ଭାରତବର୍ଷରୁ ବିଦାୟ ଉପରେ ପାର୍ଲାମେଣ୍ଟରେ ବିତର୍କ ହେଉଥାଏ । ରାମ ମନୋହର ଶ୍ୱେତଲାନାଙ୍କ ପ୍ରେମରେ ବିଚ୍ଛେଦ ଆଣି ତାଙ୍କୁ ଭାରତବର୍ଷରୁ ବିଦା କରିଦେବା ଘଟଣାରେ ଶ୍ୱେତଲାନାଙ୍କ ପକ୍ଷ ସମର୍ଥନ କରି ଭାରତ ସରକାରଙ୍କ ନୀତିର ତୀବ୍ର ସମାଲୋଚନା କଲାବେଳେ ହଠାତ୍ ଜଣେ ମହିଳା ସଭ୍ୟ ଉଠି କହିଲେ, ରାମ ମନୋହର ବିଦେଶୀ ନାରୀଙ୍କ ହୃଦୟର ସ୍ପନ୍ଦନ ଶୁଣିବା ପାଇଁ ଆଗ୍ରହ କାହିଁକି ? ସଙ୍ଗେ ସଙ୍ଗେ ରାମମନୋହର ତାଙ୍କର ସ୍ୱଭାବ ସୁଲଭ ଢ଼ଂଗରେ ଉକ୍ତ ସୁନ୍ଦରୀ ମହିଳା ସଭ୍ୟଙ୍କ ପ୍ରତି ଲକ୍ଷ୍ୟ କରି କହିଲେ ଯେ ମୋତେ ଦେଶୀ ମହିଳାଙ୍କର ହୃଦୟର ସ୍ପନ୍ଦନ ଶୁଣିବା ପାଇଁ ମାନ୍ୟବର ସଭ୍ୟା ସୁଯୋଗ ଦେଲେ ମୁଁ ଶୁଣିବାକୁ ପ୍ରସ୍ତୁତ । କିନ୍ତୁ ସେ ସୁଯୋଗ ମିଳୁଛି କେଉଁଠୁ ? ପାର୍ଲାମେଣ୍ଟରେ ହସର ରୋଳ ।

ଲୋହିଆ ଅସୁସ୍ଥ ହୋଇ ଡାକ୍ତରଖାନାରେ ମୃତ୍ୟୁ ସହିତ ସଂଗ୍ରାମ କରୁଛନ୍ତି । ତାଙ୍କୁ ଦେଖିବାକୁ ଯାଇଛନ୍ତି ଶ୍ରୀମତୀ ଇନ୍ଦିରା ଗାନ୍ଧି । ସେ ତ ବହୁଦିନ ଧରି ଲୋହିଆଙ୍କ ଶରବ୍ୟ । ତାଙ୍କୁ ଦେଖି ସେଦିନ ବିସ୍ମିତ ଲୋହିଆ ଅବିଭୂତ ହୋଇ କହିଲେ ଯେ ଆରେ, ଇନ୍ଦୁ ଆସିଛି । ତାଙ୍କୁ ବସିବାକୁ ଦିଅ । ଖାଇବାକୁ ଦିଅ ।

ରାମମନୋହର ନାରୀମାନଙ୍କୁ ଖୁବ୍ ଶୀଘ୍ର ଆକୃଷ୍ଟ କରି ପାରନ୍ତି । ତାଙ୍କର କହିବାର ଶୈଳୀ ସ୍ୱତନ୍ତ୍ର । ସେ ବସିକରି କହନ୍ତି । ସେ ଆପଣାର କନିଷ୍ଠ ମାନଙ୍କୁ ବହୁତ ପ୍ରଭାବିତ କରି ପାରନ୍ତି । ସଂପୂର୍ଣ୍ଣ ଅଣ ପାରମ୍ପରିକ ଲୋହିଆ ସବୁ ପୁରାତନ ଉପରେ ବିଦ୍ରୋହର ଗୈରିକ ପତାକା ଉତ୍ତୋଳନ କରି ସଂସାରରୁ ବିଦାୟ ନେଇ ଯାଇଛନ୍ତି । ଇତିହାସର ଏକ ଅଧ୍ୟାୟର ସମାପ୍ତି ଘଟିଛି ।



# ଯାହାଙ୍କ କଣ୍ଠରୁ ଅଗ୍ନି ବର୍ଷୁଥିଲା

ରାଜକୃଷ୍ଣ ବୋଷ ଆଉ ନାହାନ୍ତି । ୧୯୨୦ ମସିହାର ସ୍ୱାଧୀନତା ସଂଗ୍ରାମୀ ମାନେ ଧୀରେ ଧୀରେ ହଜି ଯାଉଛନ୍ତି ମହାକାଳର ଗର୍ଭରେ । ସେମାନଙ୍କର ସ୍ମୃତି ସମୟ ଓ ଶାସନ ଉଭୟର ଚୋରା ବାଲିରେ ହଜିଯିବା ସ୍ୱାଭାବିକ । ମୁଁ ସ୍ମରଣ କଲାବେଳେ ରାଜକୃଷ୍ଣ ମନ୍ତ୍ରୀ ବା ସମ୍ବିଧାନ ପ୍ରଣୟନ ସଭାର ସଭ୍ୟ ଭାବରେ ପଡୁନାହାନ୍ତି । ମନେପଡୁଛି ତାଙ୍କର ସେଇ କଣ୍ଠ, କାନରେ ଆଜିବି ପ୍ରତିଧ୍ୱନିତ ହେଉଛି ସେଇ କଣ୍ଠର ଆବାଜ । ସେ ତ କଣ୍ଠ ନୁହେଁ, ମନେହୁଏ ଯେପରି ଏକ ହୋସ୍ ପାଇପ । ହୋସ୍ ପାଇପରୁ ପାଣି ବାହାରି ଯେପରି ଆଚ୍ଛାଦିତ କରିଯାଏ ସମସ୍ତଙ୍କୁ ଠିକ୍ ସେଇପରି ତାଙ୍କର କଣ୍ଠରୁ ନିର୍ଗତ ବାଣୀ, ଉଦାତ୍ତ ବାଣୀ ଗ୍ରାସ କରିଯାଏ ସମସ୍ତଙ୍କୁ । ସେତେବେଳେ ମାଇକ୍ ନ ଥିଲା । ମାଇକ୍‌ର ଯୁଗ ଆରମ୍ଭ ହୋଇ ନାହିଁ । ୧୯୨୦-୨୧ ମସିହା କଥା । ହଜାର ହଜାର ଲୋକଙ୍କର ସମାଗମ ହୁଏ । ମୁକ୍ତି ସଂଗ୍ରାମର ଉଦ୍‌ବେଳନ ସାରା ଭାରତର ପୁରପଲ୍ଲୀରେ । ଅସହଯୋଗ ଆନ୍ଦୋଳନର ଡାକରା ଶୁଭୁଚି । ସେ ଡାକରା ଶୁଭିଥିଲା ତତ୍‌କାଳୀନ କଟକ ମେଡ଼ିକାଲ ସ୍କୁଲର ଛାତ୍ର ରାଜକୃଷ୍ଣ ବୋଷଙ୍କ କାନରେ । ଡ଼ାକ୍ତରୀ ପାଠରେ ଡୋରି ବନ୍ଧା ହୋଇଥିଲା, ସେ ଛିଟିକି ଯାଇଥିଲେ ରାଜପଥକୁ । ଆଉ ଫେରି ଅନାଇ ନାହାନ୍ତି । ଦେଶର ମୁକ୍ତି ପାଇଁ କାର୍ଯ୍ୟ ସକାଶେ ଯେ ଅଭିପ୍‌ସିତ, ସେ ଆଉ ଗୋଟିଏ ରୋଗୀର ରୋଗରୁ ମୁକ୍ତିର ଶିକୁଳିରେ ବନ୍ଧାହୋଇ ରହି ପାରନ୍ତା କିପରି ? ପୁଲିସ ଅଫିସର ଲକ୍ଷ୍ମୀନାରାୟଣ ବୋଷଙ୍କ ପୁଅ ରାଜକୃଷ୍ଣ ପାଲଟିଲେ ସ୍ୱାଧୀନତା ସଂଗ୍ରାମୀ, ସେତେବେଳେ ଏପରି ହେଉଥିଲା । । ବ୍ରିଟିଶ ଅନୁଗତ ପିତାମାନଙ୍କର ପୁତ୍ର କନ୍ୟାମାନେ ବିଦ୍ରୋହୀ ପାଲଟୁଥିଲେ । ବର୍ତ୍ତମାନ କିନ୍ତୁ ଭ୍ରଷ୍ଟାଚାରୀ ପିତାମାନଙ୍କର ପଟ୍ଟଶିଷ୍ୟମାନେ ପାଲଟୁଛନ୍ତି ପୁତ୍ର କନ୍ୟାମାନେ । ପୁତ୍ର କନ୍ୟାମାନେ ପିତାଙ୍କର ପଥକୁ କେବଳ ଅନୁସରଣ କରୁନାହାନ୍ତି, ସେଥିରେ ବଳେଇ ଯାଉଛନ୍ତି । ସେତେବେଳେ କିନ୍ତୁ ସମୟ ସେପରି ନ ଥିଲା । ୧୮୯୮ ମସିହା ଡିସେମ୍ବର ୧୭ ତାରିଖରେ କଟକ ଜିଲ୍ଲା କିଶନ ନଗର ଥାନା, ରାମଚନ୍ଦ୍ର ପୁର ଗ୍ରାମରେ ରାଜକୃଷ୍ଣ ଜନ୍ମ ଗ୍ରହଣ କରିଥିଲେ । ଗ୍ରାମ୍ୟ ଚାହାଳୀରୁ ପାଠ ସମାପ୍ତ କରି କଟକ ଆସିଥିଲେ ଉଚ୍ଚ ଶିକ୍ଷାଲାଭ ଆଶାରେ । କଟକ ପ୍ୟାରୀମୋହନ ଏକାଡ଼େମୀରୁ ମାଟ୍ରିକ ପାଶ କରି ସେ ମେଡ଼ିକାଲ ସ୍କୁଲରେ ନାମ ଲେଖାନ୍ତି ଡାକ୍ତର ହେବା ପାଇଁ । କଟକରେ ବ୍ୟାପିଥିଲା ମହାମାରୀ । ଲୋକେ ମରୁଥିଲେ ପୋକ ମାଛି ପରି । କାୟସ୍ଥ ବୋର୍ଡିଂରେ ରହୁଥିବା ରାଜକୃଷ୍ଣ ଆସନ୍ତି

କର୍ମବୀର ଗୌରୀଶଙ୍କରଙ୍କର ସଂସ୍ପର୍ଶରେ । ମହାମାରୀରେ ପଡ଼ିଥିବା ରୋଗୀ ମାନଙ୍କ ସେବା ପାଇଁ ଆପଣାକୁ ବିନିଯୋଗ କରିବାକୁ ଯାଇ ତାଙ୍କୁ କାୟସ୍ଥ ବୋର୍ଡିଂ ଛାଡ଼ିବାକୁ ପଡ଼େ ।

ତାପରେ ମେଡିକାଲ ସ୍କୁଲ । ତାଙ୍କର ଭାଷଣ ଦେବାର ଦକ୍ଷତା ସଂପର୍କରେ ଜଣା ନାହିଁ । କିନ୍ତୁ 'ମୂକଂ କରୋତି ବାଚାଳଂ' ନ୍ୟାୟରେ ତାଙ୍କର ପାଟି ଫିଟିଗଲା । ୧୯୨୧ ମସିହା ଅସହଯୋଗ ଆନ୍ଦୋଳନରେ ତାଙ୍କର ଅଗ୍ନିମୁଖୀ ଭାଷଣ ତାଙ୍କୁ ପରିଚିତ କରାଇଦେଲା ସାରା ଓଡ଼ିଶାରେ ।

କାଠଯୋଡ଼ୀ ନଦୀର ବାଲି ଦୁଲୁକିଲା । ଦୁଲୁକିଲା ବ୍ରିଟିଶ ସାମ୍ରାଜ୍ୟବାଦ । ଗାନ୍ଧିଜୀଙ୍କ ସହିତ ପଦଯାତ୍ରା ଏବଂ ଅଗ୍ନିବର୍ଷୀ ଭାଷଣ ରାଜକୃଷ୍ଣ ବୋଷଙ୍କୁ ଅପରିହାର୍ଯ୍ୟ କରିଦେଲା ସ୍ୱାଧୀନତା ଆନ୍ଦୋଳନରେ । ବାଧହୋଇ ପୁଲିସ ତାଙ୍କୁ ଗରିଫ କଲା ଯାଜପୁରର ଏକ ସଭାରୁ । ଗିରଫ ତ ଖାଲି କଲା ନାହିଁ, ଗିରଫ କରି ପାଦରେ ଚଲାଇ ଚଲାଇ ତାଙ୍କୁ ଅଣାଗଲା କଟକ ଜେଲକୁ । ଭାରତମଣି ଗୋପବନ୍ଧୁ ଦାସ ସେଦିନ 'ସମାଜ' କାଗଜରେ ଅଗ୍ରଲେଖାରେ ଲେଖିଲେ ଯେ 'ଆଜି କଟକ ଜେଲଖାନା ଓଡ଼ିଶାର ପ୍ରଥମ ରାଜନୈତିକ ବନ୍ଦୀଙ୍କୁ ପାଇ ପବିତ୍ର ହୋଇଗଲା ।'

ରାଜକୃଷ୍ଣ ବୋଷ ଆଉ ପଛକୁ ଫେରି ଅନାଇ ନାହାନ୍ତି । ୧୯୨୧ରୁ ୧୯୪୫ ମସିହାର ଶେଷକାଳ ପର୍ଯ୍ୟନ୍ତ ତାଙ୍କୁ ବହୁବାର କାରାବରଣ କରିବାକୁ ପଡ଼ିଛି । ଗୋପବନ୍ଧୁ ଦାସ କଂଗ୍ରେସ ସଭାପତି ଥିଲାବେଳେ ସେ ତାଙ୍କର ଯୁଗ୍ମ ସଂପାଦକ ଭାବରେ କାମ କରିଛନ୍ତି, ତାଙ୍କ ସାଂଗରେ ମିଶି ଉତ୍କଳ ସମ୍ମିଳନୀ ପାଇଁ, ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକାଠି କରି ଓଡ଼ିଆ ପ୍ରଦେଶ ଗଠନ ପାଇଁ ସେଇପରି କାର୍ଯ୍ୟ କରିଛନ୍ତି ।

ତାଙ୍କର ଶେଷ କାରାବାସ ଆରମ୍ଭ ହୁଏ ୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନରେ । ବ୍ରହ୍ମପୁର ଜେଲ୍‌ରେ ବନ୍ଦୀ ରାଜକୃଷ୍ଣ ବୋଷ ହୁଅନ୍ତି 'ମନିଟର' ବନ୍ଦୀମାନଙ୍କର । ସେମାନଙ୍କ ଭିତରେ ଥାଆନ୍ତି ବିଭିନ୍ନ ମତବାଦର ବନ୍ଦୀ ।

ରାଜକୃଷ୍ଣ ବୋଷ ୧୯୩୦ ମସିହାରେ ସ୍ୱରାଜ୍ୟ ନାମକ ପତ୍ରିକା ପ୍ରକାଶନ କରୁଥିଲେ । ମୁକ୍ତି ଓ ସ୍ୱରାଜ୍ୟର ବାର୍ତ୍ତା ପହଞ୍ଚାଇବା ପାଇଁ ଲୋକଙ୍କ ପାଖରେ । ୧୯୩୬ ମସିହାରେ ସେ ବାଙ୍କୀ ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ଭାବରେ ନିର୍ବାଚିତ ହୁଅନ୍ତି ଏବଂ ବିଶ୍ୱନାଥ ଦାସ ମନ୍ତ୍ରିମଣ୍ଡଳରେ ପାର୍ଲାମେଣ୍ଟାରୀ ସେକ୍ରେଟେରୀ ହୁଅନ୍ତି । କିନ୍ତୁ ସେ ଜନ ଆନ୍ଦୋଳନ ହେଉ ବା ବିଧାନସଭାର ବିତର୍କ ହେଉ ରାମକୃଷ୍ଣ ବୋଷଙ୍କର ଅଗ୍ନିବର୍ଷୀ ଭାଷଣ ଚମକ ସୃଷ୍ଟି କରୁଥିଲା ଦେଶରେ । କୁହାଯାଏ ଯେ ରାଜକୃଷ୍ଣ ବୋଷ ଏବଂ ଯଦୁମଣି ମଙ୍ଗରାଜ ହେଉଛନ୍ତି ଏଇ ସମୟର ସ୍ୱାଧୀନତା ଆନ୍ଦୋଳନର ମୁଖ୍ୟ ପ୍ରବକ୍ତା ।

ସ୍ୱାଧୀନତା ଆସୁଛି । ଦେଶରେ ଏକ ସଂବିଧାନ ପ୍ରସ୍ତୁତ ହେବ । ସେ ହେବ ସ୍ୱାଧୀନ ଭାରତର 'ଗୀତା' ରାଜକୃଷ୍ଣ ସଂବିଧାନ ପ୍ରଣୟନ ସଭାକୁ ନିର୍ବାଚିତ ହୁଅନ୍ତି ।

ଖଦୀବୋର୍ଡ଼ର ଅଧ୍ୟକ୍ଷ, ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି, ହରିଜନ ଆନ୍ଦୋଳନର ନେତୃତ୍ୱ ଓ ବହୁ ପଦବୀ, ତାଙ୍କର କାର୍ଯ୍ୟ ଆଲେଖ୍ୟ ବହନ କରିଛି । ୧୯୩୬ରେ ବାଙ୍କୀ, ୧୯୪୬ରେ ପାଟକୁରା ଏବଂ ୧୯୫୨ରେ କିଶନ ନଗର ବିଧାନସଭା ମଣ୍ଡଳୀରୁ ସେ ନିର୍ବାଚିତ ହୁଅନ୍ତି ବିଧାନ ସଭାକୁ ।

ତାପରେ ମନ୍ତ୍ରୀ, ପୂର୍ତ୍ତ ବିଭାଗର । କ୍ଷମତା, ଶାସନ, ପ୍ରଶଂସା, ଅପମାନ ସେ ସବୁ କ୍ଷଣକାଳ ପାଇଁ ଏବଂ ପରିଶେଷରେ ମୃତ୍ୟୁ । ଅତ୍ୟନ୍ତ ଏକାକୀ, ନିଃସଙ୍ଗ ଭାବରେ । ସବୁବେଳେ ଯିଏ ମଣିଷକୁ ଟାଣି ଆଣୁଥିଲା ପାଖକୁ, ସେ ଭଳି ମଣିଷର ନିଃସଙ୍ଗ । ଇତିହାସର ଏହା ହେଉଛି କ୍ରୁର ପରିହାସ ।

ରାଜକୃଷ୍ଣ ବୋଷ ଏ ଜାତିର ମୁକ୍ତି ସଂଗ୍ରାମର ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟର ସୁଦକ୍ଷ ସେନାପତି, ଶକ୍ତିଶାଳୀ ବାବଦୂକ । ତାଙ୍କରି କଣ୍ଠର ବଜ୍ର ନିର୍ଘୋଷ ଏ ପର୍ଯ୍ୟନ୍ତ ମଧ୍ୟ ସାଗରେ ଭୂଧରେ ପ୍ରତିଧ୍ୱନିତ । ସେଇତ ହିଁ ତାଙ୍କ ଜୀବନର ସାର୍ଥକତା ।



# ବିଶ୍ୱବିହାରୀଙ୍କ ପାଖରେ ବିଲୟ

ଗାଁଳାକାଲି ୨୮.୧୦.୯୪ ତାରିଖରେ ରାମକୃଷ୍ଣ ନନ୍ଦଙ୍କର ପରଲୋକ ହୋଇଗଲା । ଅନେକ ବ୍ୟକ୍ତି ଆସିଥିଲେ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଜଣାଇବା ପାଇଁ, ବହୁ ବିଭାବର ମଣିଷ, ତିନିଚାରି ପୀଢ଼ିର ମଣିଷ । ରାମକୃଷ୍ଣ ନନ୍ଦଙ୍କର ଜନ୍ମ ୧୫.୨.୧୯୦୬ ମସିହାରେ । ଯିବାକୁ ତ ହେବ ସମସ୍ତଙ୍କୁ । ରାମକୃଷ୍ଣ ବାବୁ ସେଇ ଡାକରାକୁ ତ ଏଡ଼ିଦେଇ ପାରନ୍ତେ ନାହିଁ ।

ରାମକୃଷ୍ଣ ନନ୍ଦ କିଏ ? ଏ ପ୍ରଶ୍ନର ଉତ୍ତର ଦେବା ବଡ଼ କଠିନ । କାରଣ ଜୀବନର ବହୁ ଘାତ ପ୍ରତିଘାତ ଭିତରେ ସେ ବଢ଼ିଛନ୍ତି ।, ଶିକ୍ଷକ ଓ ଶିକ୍ଷା, ପୁସ୍ତକ ଲେଖନ ଓ ପ୍ରକାଶନ , ଅସହଯୋଗ ଆନ୍ଦୋଳନ ଠାରୁ ବ୍ୟବସାୟ ପର୍ଯ୍ୟନ୍ତ ବହୁ ବିଭାବକୁ ସେ ସ୍ପର୍ଶ କରି ଯାଇଛନ୍ତି ଏବଂ ଆପଣାର ଆଲେଖ୍ୟ ରଖିଯାଇଛନ୍ତି ।

ଜଣେ ନିଜ ହାତରେ ନିଜେ ଗଢ଼ା ଏଇ ମଣିଷଟି ଆପଣାର ଜ୍ଞାନ, ନିଷ୍ଠା, ସାଧୁତା ଏବଂ ସାରଲ୍ୟର ଯେପରି ଏକ ମୂର୍ତ୍ତିମନ୍ତ ପ୍ରତୀକ ଭାବରେ ବହୁ ମଣିଷକୁ ପ୍ରଭାବିତ କରିଛନ୍ତି, ପ୍ରେରଣା ଦେଇଛନ୍ତି ।

ପୁରୀ ଜିଲ୍ଲାର ବାଇରୋଇ ଗ୍ରାମରେ ଜନ୍ମ । ୧୪ବର୍ଷ ବୟସରେ ପିତୃହୀନ । ବାପା ମାଙ୍କର ଏକମାତ୍ର ପୁତ୍ର । ତେଣୁ ମାଆଙ୍କ ସ୍ନେହର ପଣତରେ ଏବଂ ପିତାମହ ବୃନ୍ଦାବନ ନନ୍ଦଙ୍କର ଅଭିଭାବକରେ ପରିବର୍ଦ୍ଧିତ । । ନିମାପଡ଼ା ମାଇନର ସ୍କୁଲରେ ପଢ଼ିବା ସମୟରେ ନାଟକରେ ଅଂଶ ଗ୍ରହଣ ତାଙ୍କର ପ୍ରତିଭାର ପ୍ରଥମ ସ୍ଫୁରଣ । 'ଶୈବ୍ୟା' ନାମକ ଏକ କବିତା ତାଙ୍କର ପ୍ରଥମ କବିତା, ରେଭେନ୍ସା କଲେଜିଏଟରେ ପାଠ ପଢ଼ିବା ସମୟରେ ହିଁ ପ୍ରକାଶିତ । ଭଲ ପାଠ ପଢୁଥିଲେ, ପ୍ରଥମ ହେଉଥିଲେ । ବୃତ୍ତି ମିଳୁଥିବା ଟଙ୍କାରେ ଚଳି ଯାଉଥିଲେ ।

ଗୋପବନ୍ଧୁ ଦାସଙ୍କର ଓଜସ୍ୱିନୀ ଭାଷଣରେ ଅନୁପ୍ରାଣିତ ହୋଇ ରାମକୃଷ୍ଣ ନନ୍ଦ ଯୋଗ ଦିଅନ୍ତି ସ୍ୱାଧୀନତା ଆନ୍ଦୋଳନରେ । ପାଠପଢ଼ା ଛାଡ଼ି ବଡ଼ ଘୁମୁରି ବଡ଼ଚଣା ପାଖ ଗ୍ରାମରେ ରହି ଅସହଯୋଗର ବାର୍ତ୍ତା ପ୍ରଚାର , 'ସମାଜ' 'ବସୁମତୀ' କାଗଜ ବିକ୍ରୀ ଏବଂ ଅରଟରେ ସୂତା କଟା ଏବଂ ତନ୍ତରେ ଲୁଗାବୁଣା ଶିଖିବା କାର୍ଯ୍ୟରେ ସେ ସମୟ କାଟୁଥିଲେ ।

ମହାତ୍ମା ଗାନ୍ଧୀ ଏବଂ ରାମକୃଷ୍ଣ ପରମହଂସ ତାଙ୍କର ଗୁରୁ ଏବଂ ସେ ଗୁରୁ ଭକ୍ତି ତାଙ୍କର ଅତୁଟ ରହିଛି ମୃତ୍ୟୁ ପର୍ଯ୍ୟନ୍ତ । ରାମକୃଷ୍ଣ ନନ୍ଦଙ୍କୁ ଚଳିତ ସମୟରେ କିଏ ନ ଜାଣିଛି ଓଡ଼ିଶାର ପୁରପଲ୍ଲୀରେ ?

"ଆହେ ଦୟାମୟ ବିଶ୍ୱ ବିହାରୀ,
ଘେନ ଦୟାବହି ମୋର ଗୁହାରି "

ଆଜି ବି ଧ୍ୱନିତ ହୁଏ ଉତ୍ତର ପୀଢ଼ିର କଣ୍ଠରେ । ବହୁ ବିଦ୍ୟାଳୟ, ବହୁ ଶିକ୍ଷାନୁଷ୍ଠାନ, ତାଲିମକେନ୍ଦ୍ରରେ ।

ପଣ୍ଡିତ ନୀଳକଣ୍ଠଙ୍କ ଆଖିରେ ପଡ଼ନ୍ତି ସେ । ତାଙ୍କରି ପ୍ରେରଣାରେ ସେ ଯାଇ ପଢ଼ନ୍ତି ସତ୍ୟବାଦୀ ବନ ବିଦ୍ୟାଳୟରେ । ଏଇଠି ଦେବନାଗରୀ ଭାଷାରେ ତାଙ୍କର ବ୍ୟୁତ୍ପତ୍ତି ହୋଇଯାଏ । ମାଟ୍ରିକ ପାଶ କରନ୍ତି ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ । କିନ୍ତୁ ଗାଁକୁ ଫେରନ୍ତି ଏବଂ ପିତାମହ ଟ୍ରେନିଂ ଦିଅନ୍ତି ତାଙ୍କୁ ଧାନ ବାଛିବା ଏବଂ ରୋଇବା କାମରେ ।

ତାପରେ ଆସନ୍ତି କଟକ । ଚାକିରି ଜୀବନ ଆରମ୍ଭ ହୁଏ । ଶିକ୍ଷକ ଭାବରେ ୨୦ ଟଙ୍କା ମାସିକ ଦରମାରେ ସେ ବିଭିନ୍ନ ସ୍ଥାନକୁ ଯାଇ ଶିକ୍ଷା ସହିତ ସୂତାକଟା ଶିଖାନ୍ତି ପିଲାମାନଙ୍କୁ । ବିବାହ ହୋଇଯାଏ ୧୯ ବର୍ଷ ବୟସରେ । ସେତେବେଳେ ଇଂରାଜୀ ଶିକ୍ଷାର ହିଁ ସ୍ୱୀକୃତି ଥାଏ । ତେଣୁ ପୁଣି ଥରେ ମାଟ୍ରିକ ପରୀକ୍ଷା ଦିଅନ୍ତି ସରକାରୀ ଇଂରାଜୀ ସ୍କୁଲରେ । ରେଭେନ୍ସା କଲେଜରେ ପାଠ ପଢ଼ା । ସୋସାଲ ସର୍ଭିସ ଗିଲ୍ଡରୁ ମାସିକ ଚାରିଟଙ୍କା ବୃତ୍ତି ଏବଂ ଦୁଇବେଳା ଟ୍ୟୁସନରେ ଚଳିବାକୁ ପଡ଼େ । ତଥାପି ଇଂରାଜୀ ଅନର୍ସରେ ସେ ବର୍ଷ ପାଶ କରନ୍ତି । ସେ ହିଁ ସେ ବର୍ଷ ଏହା ପାଇବାରେ ଏକମାତ୍ର ଛାତ୍ର । ଏମ୍.ଏ. ଓ ଆଇନ ପାଠ ଆରମ୍ଭ ହୁଏ, ଚାକିରି ପାଇଁ ।

ପାଠ ଅଧାରେ ରହିଯାଏ ଆର୍ଥିକ ଦୁସ୍ଥିତି ଯୋଗୁଁ । ବାଙ୍କୀରେ ଶିକ୍ଷକତା । ଡିପୋଟି ପାଇଁ ଦରଖାସ୍ତ କରନ୍ତି କିନ୍ତୁ ଅସହଯୋଗ ଆନ୍ଦୋଳନରେ ଅଂଶ ଗ୍ରହଣ ହେତୁ ତାହା ମିଳେ ନାହିଁ । ୧୯୩୧ ମସିହାରେ ବାରିପଦାରେ ଶିକ୍ଷକତା ଆରମ୍ଭ ହୁଏ । ସେ ଭିତରେ ବର୍ଷେ କଟକକୁ ଆସି ବି.ଇଡି. ପାଶ କରନ୍ତି । ପାଠ୍ୟ ପୁସ୍ତକ ଲେଖିବା ଆରମ୍ଭ ହୁଏ ସେଇ ସମୟରୁ । ପରୀକ୍ଷକ ଭାବରେ ନିଯୁକ୍ତି ପାଆନ୍ତି ସେଇ ସମୟରୁ । ଦ୍ୱିତୀୟ ମହାଯୁଦ୍ଧର ଆରମ୍ଭ କାଳ । ସେ ବାରିପଦାରୁ ଚାକିରି ଛାଡ଼ି ଆସନ୍ତି ତାଙ୍କର ସ୍ୱାଧୀନଚେତା ମନୋଭାବ ଯୋଗୁଁ । ଭିଙ୍ଗାରପୁର ବକ୍ରେଶ୍ୱର ହାଇସ୍କୁଲରେ ପ୍ରଧାନ ଶିକ୍ଷକ । ତାଙ୍କ ଅମଳରେ ସ୍କୁଲର ବିପୁଳ ଉନ୍ନତି ହୋଇଥିବା ସତ୍ତ୍ୱେ ସେ ବିଦାୟ ନିଅନ୍ତି ସେଠାରୁ ୧୯୪୬ ମସିହାରେ । ଭାରତର ସ୍ୱାଧୀନତାର ଉପକଣ୍ଠରେ ସେ ପ୍ରତିଷ୍ଠା କରନ୍ତି ପାରିଜାତ ପ୍ରେସ । କିନ୍ତୁ 'ସଂସାର' ପତ୍ରିକାର ପ୍ରତିଷ୍ଠାତା ରାମକୃଷ୍ଣ ବ୍ୟବସାୟୀ ପାଲଟିବାକୁ ଚାହୁଁ ନ ଥିଲେ, ବ୍ୟବସାୟୀ ବୁଦ୍ଧି ମଧ ନ ଥିଲା । ଲେଖା ଚାଲିଥାଏ । ବିଶ୍ୱ ପରିଚୟ ବହିର ଅଧାଅଧି ଛପା ବେଳକୁ ପାରିଜାତ ପ୍ରେସ ଅଚଳ ହୋଇଗଲା । ପ୍ରେସ ବନ୍ଦ ହୋଇଗଲା । ତାଙ୍କର ଶ୍ୟାଳକ ପ୍ରେସଟିକୁ ଛୋଟ ଆକାରରେ, 'ସଂସାର' ପ୍ରେସ ନାମ ଦେଇ ଚଳାଇଲେ । ଠିକ୍ ସେଇପରି ଅବସ୍ଥା ହେଲା ସଂସାର ପତ୍ରିକାର । ୧୯୭୦ ମସିହାରେ ତାହା ମଧ ବନ୍ଦ ହୋଇଗଲା । ରାମକୃଷ୍ଣ ବାବୁ ପାଠ୍ୟପୁସ୍ତକ ଜାତୀୟ କରଣ ସହିତ ଆପଣାକୁ ସାମିଲ କରିନେଲେ ।

କିନ୍ତୁ କନ୍ୟାମାନଙ୍କର ବିବାହ ପରେ ସେ ନିଶ୍ଚିନ୍ତ ମନରେ ସାହିତ୍ୟ ସେବା କରିବାକୁ ଆରମ୍ଭ କଲେ । ଝୁମୁକ ପ୍ରକାଶନ , ଛଅଟି ଗଳ୍ପ, ସଂସାରର ପୁନଃ ପ୍ରକାଶନ, କଳାପଟା ଯୋଜନା । ପ୍ରଭୃତି କାର୍ଯ୍ୟରେ ସେ ଆପଣାକୁ ବିନିଯୋଗ କଲେ । ତୁଳସୀଦାସ (୧୯୩୦),

ପ୍ରତିଧ୍ୱନି (୧୯୩୩), ବିଶ୍ୱ ପରିଚୟ (୧୯୬୨), ଝୁମୁକା (୧୯୭୫), ଛଅଟି ଗଳ୍ପ ସିରିଜ୍ (୧୯୭୭-୮୪), ଓଡ଼ିଆ ଶିଶୁ ସାହିତ୍ୟ ସଂକଳନ (୧୯୮୨), ପ୍ରକୃତିର ଗଳ୍ପ ପୁରୀ (୧୯୮୨) ଆମ ଜାତୀୟ ପତାକା ଓ ଜାତୀୟ ସଂଗୀତ (୧୯୮୫), ଆମ ଜାତୀୟ ପୁଷ୍ପ ଓ ଜାତୀୟ ପ୍ରତୀକ (୧୯୮୫), ଜୀବନ ରହସ୍ୟ (୧୯୮୬), ସତର ଫୁଲ ଓ ପଞ୍ଚତନ୍ତ୍ର (୧୯୮୯), ଲେଖନୀର ପାଠଶାଳା(୧୯୯୪), ତୁଳସୀ ଦାସ ଦୋହା(୧୯୩୧), ସଂଗ୍ରାମ ଓ ସାଧନା(୧୯୩୬-୧୯୪୬), ବିଜ୍ଞାନର କୁହୁକ (୧୯୪୯), ଜୀବନ ତରଙ୍ଗ (୧୯୬୯), ସୁନା ପାହାଡ଼ (୧୯୮୪), ରତ୍ନ ପାଖୁଡ଼ା (୧୯୮୮), ଅଦେଖା ଡ଼ଗର ଫୁଲ (୧୯୯୮), ଭାବି ଦେଖନ୍ତୁ (୧୯୯୩) ପ୍ରଭୃତି ବହି ବହୁ ଅନୁବାଦ, ବହୁ ପାଠ୍ୟ ପୁସ୍ତକ ତାଙ୍କ କଲମରୁ ଝରିଛି ଏବଂ ଓଡ଼ିଆ ସାହିତ୍ୟକୁ ଯେପରି ସମୃଦ୍ଧ କରିଛି, ସବୁ ଶ୍ରେଣୀର ପାଠକଙ୍କୁ ଅନୁପ୍ରାଣିତ କରିଛି ।

ବହୁ ଅନୁଷ୍ଠାନ ସହିତ ସେ ସଂପୃକ୍ତ ଥିଲେ, ବିଭିନ୍ନ ଅନୁଷ୍ଠାନରୁ ସମ୍ବର୍ଦ୍ଧନା, ମାନପତ୍ର ପାଇଥିଲେ । ସେ କିନ୍ତୁ ସେଥିରୁ ନିର୍ଲିପ୍ତ ଥିଲେ । ଅନୁଷ୍ଠାନ ମାନେ ଉପକୃତ ହୋଇଛନ୍ତି, ସେ ରହିଯାଇଛନ୍ତି ସେଇପରି ବିନୀତ, ନମ୍ର ଏବଂ ଭଦ୍ର ।

ସମୟ ଅତିକ୍ରାନ୍ତ ହୋଇଛି । ମହାକାଳର ଆହ୍ୱାନ ଶୁଭିଲାଣି । ସେ ଅସୁସ୍ଥ ହୋଇ ପଡ଼ିଲେଣି । ତଥାପି ଲେଖନୀ ଚାଲିଛି ।

କାଲି ତାହା ବନ୍ଦ ହୋଇଗଲା ଚିରଦିନ ପାଇଁ । ଇତିହାସର ଏକ ଅଧ୍ୟାୟର ପରିସମାପ୍ତି ଘଟିଛି । ସେ ପାଲଟି ଯାଇଛନ୍ତି ଇତିହାସ ।

ଚିତା ଜଳୁଛି ।



# ରଂଗମଞ୍ଚର କଲୋସସ୍

"ମୁଁ ଏକ ସାଧାରଣ ମଣିଷ । ଜୀବନର ବହୁ ବିଷୟକୁ ମୁଁ ନୀରବରେ ଛାଡ଼ି ଦେଇଛି । ମୃତ୍ୟୁରେ ବି ମୁଁ ଆଜି ସେଇପରି ନୀରବରେ ନିଷ୍କ୍ରାନ୍ତ ହୋଇଯିବାକୁ ଚାହେଁ । ଶାଳୀନତା ସହିତ ମୁଁ ଯିବାକୁ ଚାହେଁ, ସେଇ ସାଧାରଣ ନିତିଦିନିଆ ପୋଷାକ ପିନ୍ଧି ଏବଂ କିଞ୍ଚିତ ନିର୍ଲିପ୍ତତା ସହିତ....." ।

ବୟସ ହୋଇଥିଲା ୮୧ ବର୍ଷ । ଗଲା କିଛି ବର୍ଷ ହେଲା ସେ ଦୃଷ୍ଟିଶକ୍ତି ହରାଇ ଥିଲେ ପ୍ରାୟ ସଂପୂର୍ଣ୍ଣ ଭାବରେ । ଅଭିନେତ୍ରୀ ଶିଳ୍ପୀ ଏବଂ ସହଧର୍ମିଣୀ ତୃପ୍ତି ଛାଡ଼ି ଯାଇଛନ୍ତି କିଛି ବର୍ଷ ଆଗରୁ । ଗୋଡ଼ର ହାଡ଼ ଭାଙ୍ଗି ଯାଇଥିଲା । ମାତ୍ର ଚାରି ମାସ ତଳେ ଗଲବ୍ଲାଡରରେ ଅସ୍ତ୍ରୋପଚାର ହୋଇ ସାରିଲା ପରେ ଜଣାଗଲା ଯେ ସେ କ୍ୟାନସର୍ ରୋଗରେ ଆକ୍ରାନ୍ତ । ମୃତ୍ୟୁର ପଦଧ୍ୱନି ଶୁଭୁଥିଲା । ଜୀବନର ରଂଗମଞ୍ଚରୁ ଅପସରି ଯିବାର ବେଳେ ଆସିଛି । କେବଳ ରହି ଯାଇଛି ଆଦରର କନ୍ୟା ଶାଓଲି, ଅଭିନେତ୍ରୀ ।

ବେଶ୍ କିଛି ବର୍ଷ ହେଲା ସେ ଅଭିନୟରୁ ବିଦାୟ ନେଇ ଯାଇଥିଲେ । ସବୁ ଯେପରି ହଜିଯାଇଛି । ସେ ସଂପୂର୍ଣ୍ଣ ବୀତସ୍ପୃହ , ଭଗ୍ନ ହୃଦୟ । ଯେଉଁମାନଙ୍କ ପାଇଁ ସେ ପଥଚାରୀ ଅଭିନେତା, ଯେଉଁମାନେ ତାଙ୍କର ଏକଦା ସହଯୋଦ୍ଧା, ଯେଉଁମାନଙ୍କ ପାଇଁ ତାଙ୍କର ଅଭିନୟ ଉଦ୍ଦିଷ୍ଟ ହୋଇ ରହିଆସିଚି, ସେଇମାନେ ମଧ ତାଙ୍କୁ ଜମି ଖଣ୍ଡିଏ ଦେଇ ପାରିଲେ ନାହିଁ କଲିକତା ସହରରେ ଗୋଟିଏ ରଂଗମଞ୍ଚ କରିବା ପାଇଁ, ଯେଉଁଠି ତରୁଣ କଳାକାର ମାନେ ଅଭିନୟ କରି ପାରିବେ । କାରଣ ପେଶାଦାର ରଂଗମଂଚର ଭଡ଼ା ସେମାନେ ଦେଇ ପାରିବେ ନାହିଁ ।

ବୀତସ୍ପୃହ କଳାକାର ଓହରି ଯାଇଥିଲେ ସାଧାରଣ କ୍ଷେତ୍ରରୁ ଏବଂ ଅଭିନୟରୁ । ଏବଂ ଆଶ୍ଚର୍ଯ୍ୟର କଥା, ଏହି ଓହରି ଯିବା ଫଳରେ ହିଁ ତାଙ୍କର ହାଲୋ ବଢ଼ି ଯାଇଥିଲା ଏବଂ କଦବା କ୍ୱଚିତ ସେ ରଂଗମଂଚରେ ଅଭିନୟ କରିବା ପାଇଁ ଓହ୍ଲାଇଲାବେଳେ ପ୍ରବଳ ଭିଡ଼ ଜମୁଥିଲା ତାଙ୍କ ଅଭିନୟ ଦେଖିବା ପାଇଁ । କାରଣ ଅଭିନୟର ସେ ଥିଲେ ପ୍ରବାଦ ପୁରୁଷ ।

"ଜୀବନରେ ଯନ୍ତ୍ରଣାକୁ ଆଉ ବଢ଼ାଇବା ପାଇଁ ଡାକ୍ତରୀ ଚିକିତ୍ସା ନାମରେ ମୋର ଅଧିକା ଚିକିତ୍ସା ଆବଶ୍ୟକ ନାହିଁ ।" ମୃତ୍ୟୁର ଆହ୍ୱାନ ସେ ଶୁଣିଥିଲେ । ରଂଗମଞ୍ଚରେ ତ ଶୁଣିଥିଲେ ବହୁବାର କିନ୍ତୁ ଆଜି ଜୀବନର କ୍ଷେତ୍ରରେ ସେଇ ପଦଧ୍ୱନି ଶୁଭୁଥିଲା ତାଙ୍କ କାନରେ ।

"ମୋର ମୃତ୍ୟୁ ପରେ ମୋର ଦେହକୁ ନେଇଯିବ ସିଧା ଶ୍ମଶାନକୁ । କାହାରି କାନ୍ଧରେ ନେବ ନାହିଁ । କାହାକୁ ମୁଁ କଷ୍ଟ ଦେବାକୁ ଚାହେଁନା । ମୋତେ ନେଇ ଯିବ ଗାଡ଼ିରେ । ଯେତେ ଶୀଘ୍ର ପାରିବ କାମ ସାରିଦେବ । କାହାରିକୁ ଅପେକ୍ଷା କରିବ ନାହିଁ । ରବୀନ୍ଦ୍ର ସଦନ ବା କୌଣସି ସ୍ଥାନରେ ମୋର ମର ଦେହକୁ ଜନସାଧାରଣଙ୍କ ଦର୍ଶନ ପାଇଁ ରଖିବ ନାହିଁ ବା ରାଜରାସ୍ତାରେ

ଶୋଭାଯାତ୍ରା କରି ମୋର ମର ଦେହକୁ ନେବ ନାହିଁ । ମୋର ମୁଖାଗ୍ନି ଆବଶ୍ୟକ ନାହିଁ । କେହି ମୋର ମୁଖାଗ୍ନି ଦେବ ନାହିଁ । ମୋର ମୃତ୍ୟୁରେ କୌଣସି ଶ୍ରାଦ୍ଧ ହେବ ନାହିଁ । କାରଣ ମୁଁ ଏଇ ପୁରୋହିତବାଦ ବା ରିଚୁଆଲରେ ବିଶ୍ୱାସ କେବେ କରିନାହିଁ ।"

ଏକ ମନଛୁଆଁ ଭାଷାରେ ସେ ଲେଖିଗଲେ ଆପଣାର ଉଇଲରେ "ଲକ୍ଷ ଲକ୍ଷ ସାଧାରଣ ମଣିଷ ମୋତେ ଭରି ଦେଇଛନ୍ତି ସେମାନଙ୍କ ଅକୁଣ୍ଠ ସ୍ନେହରେ । ବହୁ ବାଧା ବିଘ୍ନ ସତ୍ତ୍ୱେ ମୁଁ ଯେତିକି ସାମାନ୍ୟ କରିଛି ତାହା କରି ପାରିଚି ସେଇମାନଙ୍କର ସ୍ନେହ ଓ ମମତା ଫଳରେ । ଏଇ ଲକ୍ଷ ଲକ୍ଷ ସାଧାରଣ ମଣିଷ ପାଇଁ ମୋର ଗଭୀର , ସୀମାହୀନ କୃତଜ୍ଞତା । ଏଇ ଅବସରରେ ମୁଁ ସେମାନଙ୍କ ପ୍ରତି ମୋର ଗଭୀର ସମ୍ମାନ ଜଣାଉଛି " ।

ମୃତ୍ୟୁ ଆସେ ରାତ୍ରିର ବିଳମ୍ବିତ ପ୍ରହରରେ । ପ୍ରାୟ ଦୁଇଟା ପନ୍ଦର ମିନିଟ୍‌ରେ । ସୁର ନନ୍ଦିନୀ ଉଷା ରୂପସୀର ଉଜ୍ଜ୍ୱଳ ହିମରେଖା କଜ୍ଜଳନିଭ ରାତ୍ରିର ନିକଷାରେ ଲେଖା ହେବା ପୂର୍ବରୁ ପାଞ୍ଚଟା ପନ୍ଦର ମିନିଟ୍ ସୁଦ୍ଧା ଅନ୍ତ୍ୟେଷ୍ଟିକ୍ରିୟା ସରି ଯାଇଥିଲା । କଲିକତା ସହର ନିଦରୁ ଉଠିଲା ବେଳକୁ ଶୁଣିଲେ ଯେ ନାଟ୍ୟକାର ଶମ୍ଭୁମିତ୍ର ଆଉ ନାହାନ୍ତି ଏବଂ ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସରି ଯାଇଛି ।

କନ୍ୟା ଅଭିନେତ୍ରୀ ଶାଓଲି ବାପାଙ୍କର ଉଇଲକୁ ଅକ୍ଷରେ ଅକ୍ଷରେ ପାଳନ କରିଗଲେ ଠିକ୍ ଯେମିତି ରଂଗମଂଚ ଉପରେ ଅଭିନେତା, ଅଭିନେତ୍ରୀ ପ୍ରମ୍ପଟରର ପ୍ରମ୍ପଟିଙ୍ଗକୁ ପାଳନ କରିଯାଏ ।

ଏଇ ହେଉଛି ଭାରତୀୟ ନାଟ୍ୟ ଆକାଶର ଦିପ୍ତୀମାନ ସୂର୍ଯ୍ୟ ଅଭିନେତା ଶମ୍ଭୁମିତ୍ରଙ୍କର ଅନ୍ତିମ ଯାତ୍ରାର କାହାଣୀ ।

ତାଙ୍କ ସାଂଗରେ ମୋର ପ୍ରଥମ ଦେଖା ନିଖିଳ ଉତ୍କଳ ଛାତ୍ର ସଂଘ ସମ୍ମିଳନୀରେ ବାଲେଶ୍ୱରରେ । ବନ୍ଧୁ ମନୋଜ ଦାସ ଜଣେ କବି ଏବଂ ନାଟ୍ୟପ୍ରେମୀ ଭାବରେ ସେତେବେଳକୁ ପ୍ରସିଦ୍ଧି ଲାଭ କରିଥିଲେ । ଶୀତଦିନ । ବିଶାଳ ଜନସମାଗମ । ଶମ୍ଭୁମିତ୍ର ଆବୃତ୍ତି କରୁଥିଲେ ରବୀନ୍ଦ୍ର ନାଥଙ୍କ ସଂଗୀତ ।

"ଓରେ ବିହଙ୍ଗ, ବିହଙ୍ଗମ ଏ ଖୋନି ଆଧି
ବନ୍ଦୋ କରୋନା ପାଁଖା "

ତାଙ୍କର ଉଦାତ୍ତ କଣ୍ଠର ଧ୍ୱନିରେ ସ୍ତବ୍ଧ ଚକିତ ହୋଇ ଶୁଣୁଥିଲେ ହଜାର ହଜାର ଶ୍ରୋତା । ଆବାଳ ବୃଦ୍ଧବନିତା । ମନେ ହେଉଥିଲା ସତେ ଯେପରି ଝଡ଼ ମଥା ପିଟୁଛି ବାହାରେ । ଆବୃତ୍ତି ସରିଲା । କିନ୍ତୁ କେହି ଉଠୁ ନାହାନ୍ତି ଆପଣାର ସ୍ଥାନରୁ, ଯଦିଓ ସଭା ସରି ଯାଇଛି ବୋଲି ଘୋଷଣା ହେଲାଣି । କିମିତି ଯିବେ ? ବାହାରେ ପରା ଦୁରନ୍ତ ଝଡ଼, ଆଁଧି ! ଆପଣାର ଆବୃତ୍ତିରେ ସେ ନେଇ ଯାଇ ପାରୁଥିଲେ ଶ୍ରୋତାକୁ ଆଉ ଏକ ଜଗତକୁ ।

ଦେଖା ହୋଇଛି ତା ପରେ ଅନେକ ଥର । ରଂଗମଂଚରେ । ତାଙ୍କ ଘରେ । ଦେଖାଗଲା ବେଳକୁ ସେ କିନ୍ତୁ ଆଉ ପଲିଟିକାଲ ଆକ୍ଟିଭିଷ୍ଟ ନ ଥିଲେ । ସେ ଯୁଗର ପରିସମାପ୍ତି ଘଟିଥିଲା ପ୍ରାୟ । ସେ 'ଇପ୍‌ଟା' (Indian Peoples' Theatre Association) ଛାଡ଼ି ଆପଣାର ନିଜସ୍ୱ ଥିଏଟର ସଂସ୍ଥା ବହୁରୂପୀ ଗଢ଼ିଥିଲେ । ବୀତସ୍ପୃହତା ବଢ଼ିଥିଲା । କିମିତି ସିନିକ୍ ହୋଇ

ଉଠୁଥିଲେ ସେ । ମୁଁ ଖବରକାଗଜ ପଢୁନାହିଁ, କଣ ସବୁ ଓଡ଼ିଶାର ଖବର ? ସମ୍ବାଦପତ୍ର ତ ଆଉ ଦିଗନିର୍ଦ୍ଦେଶନା ଦେଇ ନାହାନ୍ତି । ତେଣୁ ପଢ଼ିବ ସେଇ ସେଇ ସଂବାଦ, ଷ୍ଟିରିଓ ଟାଇପ ।

ଶମ୍ଭୁମିତ୍ର ବିବାହ କରିଥିଲେ ସହଯୋଦ୍ଧା ଅଭିନେତ୍ରୀ ତୃପ୍ତି ମିତ୍ରଙ୍କୁ । ସେ ହିଁ ଅଭିନୀତ ପ୍ରାୟ ସବୁ ନାଟକର ହିରୋଇନ୍ ହୋଇଛନ୍ତି । ଏଇ ଯୋଡ଼ିଙ୍କର ଅଭିନୟ ଭାରତୀୟ ରଂଗମଂଚର ଇତିହାସରେ ଯୁଗାନ୍ତକାରୀ ଅଧ୍ୟାୟ ଉନ୍ମୋଚନ କରିଛି ।

ବଂଗଳାରେ ସେତେବେଳେ ଉଦ୍‌ବେଳନର ସମୟ । ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମ ସହିତ ଫାସିବାଦ ବିରୋଧୀ ସଂଗ୍ରାମ ପାଇଁ ରାଜରାସ୍ତାରେ ଚାଲିଥିଲା ସମାବେଶ । ଏଇଥିପାଇଁ ଗଢ଼ା ହୋଇଥିଲା 'ଇପ୍‌ଟା' । ସମାଜବାଦୀ ଆନ୍ଦୋଳର ପ୍ରବାଦ ପୁରୁଷ ପିସି ଯୋଶୀ ଗଢ଼ିଥିଲେ ଗଣ ସଂଗଠନ ବରିୟ ବିଭାବ ପାଇଁ । ଶ୍ରମିକ, ଚାଷୀ, ଛାତ୍ର, ଲେଖକ, ଶିଳ୍ପୀ । ଇପ୍‌ଟା ତାହାର ଅଂଶ ବିଶେଷ । ରାଜରାସ୍ତା ଉପରେ ହିଁ 'ଇପଟା'ର ଜନ୍ମ । ସେତିକିବେଳେ ବଂଗଳାରେ ମନ୍ୱନ୍ତର, ଦୁର୍ଭିକ୍ଷ । ଛାତ୍ର ଧର୍ମଘଟ, ପୋଷ୍ଟାଲ ଧର୍ମଘଟ, ସମଗ୍ର ଦେଶରେ ଉଦ୍‌ବେଳନ । ଯେଉଁ ଶିଳ୍ପୀମାନେ ଏହି ମହାଯଜ୍ଞରେ ନିବେଦିତ ହେଲେ ସେମାନଙ୍କ ମଧ୍ୟରେ ଶମ୍ଭୁମିତ୍ର ଏବଂ ତୃପ୍ତି ମିତ୍ର ଅନ୍ୟତମ । କିନ୍ତୁ ସେଇ ଶିଳ୍ପୀମାନଙ୍କ ମଧ୍ୟରେ ମାତ୍ର ଚାରିଜଣ ଆଉ ଜୀବିତ ଅଛନ୍ତି - ଶୋଭା ସେନ୍, ଖଲେଦ ଚୌଧୁରୀ, ସୁଧି ପ୍ରଧାନ ଏବଂ ତାପସ୍ ସେନ୍ 'ଇପଟା'ର ସେଇ ପ୍ରାଣସ୍ପର୍ଶୀ ନାଟକ ନବାନ୍ନର ସେମାନେ ଥିଲେ ଅଭିନେତା ।

ତାଙ୍କର ନାଟକ ରାଜା ଓଡ଼ିପସ୍, ପୁତୁଲ ଖେଳା (ଇବସନ୍‌ଙ୍କ ଡୋଲ୍ସ ହାଉସ ) ଦଶଚକ୍ର, ରକ୍ତକରବୀ, ଚାରିଅଧ୍ୟାୟ, ବିସର୍ଜନ ଭାରତୀୟ ନାଟ୍ୟ ମଂଚର ଇତିହାସ ମାଇଲ ଖୁଣ୍ଟ ଭଳି ।

ଶମ୍ଭୁମିତ୍ର ୧୯୭୦ ମସିହାରେ ପଦ୍ମ ଭୂଷଣ, ୧୯୭୬ରେ ମାଗାସାସି ଆୱାର୍ଡ, ୧୯୮୩ ମସିହାରେ କାଳିଦାସ ସମ୍ମାନ ଲାଭ କରିଛନ୍ତି । ସମ୍ମାନ ଆସିଛି, ପ୍ରତିଷ୍ଠା ବଢ଼ିଛି । ଶମ୍ଭୁମିତ୍ର କିନ୍ତୁ ରହି ଯାଇଛନ୍ତି ସେଇ ସାଧାରଣ ମଣିଷର ଶିଳ୍ପୀ ଭାବରେ ।

ଶମ୍ଭୁମିତ୍ର ଆବାସଙ୍କ ଦ୍ୱାରା ନିର୍ଦ୍ଦେଶିତ 'ଧର୍‌ତି କେ ଲାଲ' ରେ ଆପଣାର ଅଭିନୟ ପାଇଁ ଉଚ୍ଚ ପ୍ରଶଂସିତ ହୋଇଛନ୍ତି । ରାଜ କପୁରଙ୍କର 'ଜାଗ୍‌ତେ ରହୋ' ଚଳଚ୍ଚିତ୍ର ପ୍ରସିଦ୍ଧି ଲାଭ କରିଛି । ଏହା ହେଉଛି 'ଏକ ଦିନ୍ ରାତ୍ର' ନାମକ ବଂଗଳା ଚଳଚ୍ଚିତ୍ର ହିନ୍ଦୀ ରୂପାନ୍ତର ଏବଂ ଏହି ଚଳଚ୍ଚିତ୍ରର ସ୍କ୍ରିପ୍ଟ ରଚନା କରିଥିଲେ ଶମ୍ଭୁମିତ୍ର ଏବଂ ଅମିତ ମିତ୍ର । କିନ୍ତୁ ୧୯୫୭ ମସିହାରେ କାର୍ଲୋଭି ଭାରିରେ ଏହା ଗ୍ରାଣ୍ଡ ପ୍ରିକ୍ସ ପାଇଲା ପରେ ରାଜ କପୁର ସବୁ ଗୌରବ ପାଇଥିଲେ ।

୧୯୪୩ ମସିହାରେ ଇପ୍‌ଟା ଗଠିତ ହୁଏ । ଯେଉଁମାନେ ଏହା ଗଠନ ପାଇଁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ସେମାନଙ୍କ ଭିତରେ ବିଜନ ଭଟ୍ଟାଚାର୍ଯ୍ୟ, ସୁଧି ପ୍ରଧାନ, ତୃପ୍ତିମିତ୍ର, ଶୋଭାସେନ୍ ସଲିଲ ଚୌଧୁରୀ, ଦେବବ୍ରତ ବିଶ୍ୱାସ, ହିମାଂଶୁ ବିଶ୍ୱାସ ଅନ୍ୟତମ ।

"କେବଳ ଆନନ୍ଦ ପାଇଁ ନୁହେଁ, ଏକ ଗଭୀର ଉଦ୍ଦେଶ୍ୟ ପାଇଁ ଆମର ନାଟକ ନିବେଦିତ।" ଶମ୍ଭୁମିତ୍ର ଆଉ ନାହାନ୍ତି । କିନ୍ତୁ ସେ ରହିବେ କାଳର କପାଳ ବକ୍ଷରେ ଏକ ଟୋପା ଅଶ୍ରୁଜଳ ପରି ସମୁଜ୍ଜ୍ୱଳ ରହିବେ ଚିରକାଳ ।



# ମଲାଜହ୍ନ

ହୁଁ ମେରା, ହୁଁ ମେରା ଭାଇରେ ହୁଁ !
ପାଲିଙ୍କି ଚାଲେ, ପାଲିଙ୍କି ଚାଲେରେ ପାଲିଙ୍କି ଚାଲେ ।

ବୋହୂଟିଏ ଯାଉଛି ପରା । ପିଲାମାନେ ଦୌଡ଼ନ୍ତି ଦେଖିବାକୁ । ବୋହୂମାନେ ଠିଆ ହୁଅନ୍ତି ଦେଖିବା ପାଇଁ ଓଢ଼ଣାତଳର ବୋହୂକୁ । ଆଗରେ ମାର୍କୁଣ୍ଡି ପରା । ବାଟରେ ଯାଉଥିବା ଲୋକେ ଆଡ଼େଇ ଠିଆ ହୁଅନ୍ତି ।

ହୁଁ ମେରା, ହୁଁ ଭାଇରେ ହୁଁ ।

ଆଜି କିନ୍ତୁ ସବାରୀ ନାହିଁ । ଚାଲିଛି ଶଗଡ଼ଟିଏ । ସଗଡ଼ରେ ସେହି ବୋହୂ । ଗାଡ଼ି ଚାଲିଛି । ର....ଟ...ଟ.... ର....ଟ....ଟ କରି । କିନ୍ତୁ ଇଏ କି ଅବିଗୁଣ କଥା ! ଇଏ କି ବୋହୂ । ବୋହୂଟି ବଢ଼ାଇ ଦେଉଛି କାଗଜଟିଏ ଆଗରେ ବସିଥିବା ପିଲାଟିକୁ । ସେ ବାଣ୍ଟି ଦେଉଛି ତାକୁ ଲୋକଙ୍କ ଭିତରେ ।

ବନ୍ଦେ ମାତରମ୍ । ‘ କର ବା ମର’ । ଇଂରେଜ ଭାରତ ଛାଡ ରକ୍ତରେ ନିଆଁ ଖେଳୁଚି । ପାଲିଙ୍କି ଚାଲିଛି ।

ବୋହୂଟିର ନାମ ଶଶୀକଳା - ସ୍ୱାଧୀନତା ସଂଗ୍ରାମୀ ନିଜେ । ସ୍ୱାମୀ ବିନୋଦ କାନୁନ୍‌ଗୋ ମଧ୍ୟ ସ୍ୱାଧୀନତା ସଂଗ୍ରାମୀ । ଆଗ ପିଲାଟି ଭଣଜା ଗୋବିନ୍ଦଚନ୍ଦ୍ର ମହାନ୍ତି । ସ୍ୱାଧୀନତା ସଂଗ୍ରାମୀ ଏବଂ ବର୍ତ୍ତମାନ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ତାତ୍ତ୍ୱିକ ।

ଶଶୀର ଉଦୟ ହେଉଥିଲା । ପୂର୍ଣ୍ଣମୀ ବି ଦିନେ ଆସିଥିଲା । ଆଜି ତାହା ଅମାବାସ୍ୟାରେ ପରିଣତ ହୋଇଛି । ସେ ଚନ୍ଦ୍ର ଆଉ ଉଇଁବ ନାହିଁ ।

୧୯୧୬ ମସିହାରେ ଜଗତସିଂହପୁରର ସାତପୁରା ଗ୍ରାମରେ ତାଙ୍କର ଜନ୍ମ । ଇମିତି ସେଦିନ ଅନେକ ଶିଶୁ ଜନ୍ମ ହୋଇଥିବେ । କିନ୍ତୁ ଶଶୀ ବଢ଼ିଥିଲେ ଏକ ଐତିହାସିକ କର୍ତ୍ତବ୍ୟ ସଂପାଦନ କରିବା ପାଇଁ । ଏଥିପାଇଁ କ’ଣ ସେ ଅଭିପ୍ରେତ ହେଇଥିଲା ? କିଏ କହିବ ?

ଶଶୀକଳା ଶଶୀ ଭଳି ବୃଦ୍ଧି ପାଇଁ ଚାଲିଲେ । ରୂପରେ, ଗୁଣରେ ସବୁଥିରେ । ୧୯୩୯ ମସିହାରେ ତାଙ୍କର ବିବାହ ହୋଇଗଲା । ଅପାଠୁଆ ବିନୋଦ କାନୁନ୍‌ଗୋଙ୍କ ସାଙ୍ଗରେ । ବିନୋଦ କାନୁନ୍‌ଗୋ ତ ଏକ ବ୍ୟତିକ୍ରମ । ସେଇ ବ୍ୟତିକ୍ରମ ସହିତ ତାଳ ପକାଇ ଚାଲିବା ପାଇଁ ଅଣ୍ଟାରେ କାନି ଭିଡିଲେ ଶଶୀକଳା ।

ବିନୋଦ କାନୁନ୍‌ଗୋ ପୋଥିପାଠକୁ ବସ୍ତାନିରେ ରଖି ଜୀବନର ପାଠ ପଢ଼ିବା ପାଇଁ

ଚାଲିଯାଇଥିଲେ ରାଜରାସ୍ତାକୁ । ଆପଣା ଗାଁରେ କିଶନନଗର ଥାନା ମଲ୍ଲିପୁର ଗାଁକୁ ଗାନ୍ଧିଜୀଙ୍କର ରଚନାତ୍ମକ କେନ୍ଦ୍ରର ଏକ ପୀଠ ରୂପେ ଗଢ଼ି ତୋଳିବା ପାଇଁ ଯେଉଁମାନେ ପଣ କରିଥିଲେ ସେମାନଙ୍କ ଭିତରେ ଥିଲେ ଶଶୀକଳା । ବହୁ ସର୍ବଭାରତୀୟ ନେତା ଆସି ସେଇ ପୀଠରେ ପାଦ ଦେଇ ଯାଉଛନ୍ତି । ସମସ୍ତେ ଶତମୁଖରେ ପ୍ରଶଂସା କରିଛନ୍ତି ସେଇ କେନ୍ଦ୍ରକୁ । ଆନ୍ଦୋଳନର ଜୁଆରରେ ଭଟ୍ଟା ଆସେ କିଛି ସମୟ ପାଇଁ । ସେତିକିବେଳେ ଏଇ ପ୍ରକାର କେନ୍ଦ୍ର ଦିଏ ସେନାନୀମାନଙ୍କୁ ଆଶ୍ରୟ ଏବଂ ନୂତନ ଧରଣର କାର୍ଯ୍ୟ । ଜାତିଭେଦ କଟି ଯାଉଥିଲା ବହୁକାଳରୁ । ଜାତି ବା ଧର୍ମର ଭେଦର ପ୍ରାଚୀର ଭାବ ପଡିଥିଲା ଜାତୀୟ ଜୀବନର ମହାସ୍ରୋତରେ । ଶଶୀକଳା ସେଇ ମହାସ୍ରୋତର ପ୍ରବାହରେ ଚାଲିଥିଲେ କିନ୍ତୁ ପ୍ରବାହ ତାଙ୍କୁ ଇତସ୍ତତଃ କରିପାରି ନ ଥିଲା । ସେ ପ୍ରବୃଦ୍ଧ ପାଲଟି ଯାଇଥିଲେ, ଲକ୍ଷ୍ୟ ସ୍ଥିର ରହିଥିଲା । ସୂତାକଟା ନ ହୋଇ ପାରିଲେ ଉପବାସ ଏଇପରି ଜୀବନର ବ୍ରତ ବନ୍ଧା ହୋଇଥିଲା । ଶଶୀକଳା ବରୀରେ ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀଙ୍କ ତାଲିମ ଶଶୀକଳାଙ୍କୁ ଲୁହାରୁ ଇସ୍ପାତ୍‌ରେ ପରିଣତ କରିଦେଲା ।

୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନ । ଶଗଡ଼ ଗାଡ଼ିରେ ବୋହୂ ବେଶରେ ଶଶୀକଳା ଓ ଗୋବିନ୍ଦ ଚନ୍ଦ୍ର ମହାନ୍ତି ବୋହୂ ସାଙ୍ଗରେ ପିଲାଟିଏ । ପାଲିଙ୍କି ନ ଥିଲା, ଶଗଡ଼ ଗାଡି ପାଲିଙ୍କି କାମ କରୁଥିଲା । ଶଶୀକଳା ଅଗଷ୍ଟ ବିପ୍ଳବର ବାର୍ତ୍ତାବହ ପାଲଟିଲେ । ଚନ୍ଦ୍ରର କିରଣ ପ୍ରତିଭାତ ହେବାକୁ ଲାଗିଲା । କିନ୍ତୁ ପରିଶେଷରେ ସେ ମଧ୍ୟ ଗିରଫ ହେଲେ । ବିନୋଦ ବାବୁ ବ୍ରହ୍ମପୁର ଜେଲରେ ଏବଂ ଶଶୀକଳା କଟକ ଜେଲ୍‌ରେ । ୧୯୪୨ ରୁ ୧୯୪୪ ପର୍ଯ୍ୟନ୍ତ କାରାବାସ । ଭଲ ରାନ୍ଧୁଣିଆ ଭାବରେ ତାଙ୍କର ଖ୍ୟାତି ଥିଲା ଜେଲଖାନାରେ । ପରବର୍ତ୍ତୀ କାଳରେ ବିନୋଦବାବୁଙ୍କ ସହିତ ଭେଟ ହୋଇଛି । ଭାଷାକୋଷ ଲେନ୍ ଠାରୁ ବାରବାଟୀ ଷ୍ଟାଡିୟମ ପର୍ଯ୍ୟନ୍ତ । କାକରା, ଆରିସା ଖାଇବାକୁ ମିଳିଛି ପ୍ରଚୁର ଏବଂ ତାହାରି ସ୍ମୃତି ଆଜି ଲୁହରେ ଭରିଦିଏ ଆଖି ଓ ମନକୁ । ଶଶୀକଳାଙ୍କ ପାଖରୁ ଟଙ୍କାଟିଏ ଆଣି ଅପାଠୁଆ ବିନୋଦ କାନୁନ୍‌ଗୋ ଆରମ୍ଭ କଲେ ସେଇ ସାଧନା ଯାହାର ପଟାନ୍ତର ନାହିଁ । କେବଳ ଆମ ଦେଶରେ ନୁହେଁ, ସାରା ପୃଥିବୀରେ । ଶଶୀକଳା ସେଦିନ ଯେପରି ଘରର ଦାୟିତ୍ୱ ନେଇଥିଲେ ଆଜି ମଧ୍ୟ ଠିକ୍ ସେଇପରି ଦାୟିତ୍ୱ ବୁଝିଲେ, ଅନାବିଳ ଭାବରେ । ଅନେକ ରାଜନୈତିକ କର୍ମୀଙ୍କ ସ୍ତ୍ରୀମାନେ ମୁଖରା, କଳହୀ ପାଲଟନ୍ତି । ଦାରିଦ୍ର୍ୟ, କଷଣ ସେମାନଙ୍କୁ ସେମିତି କରିଦିଏ । କିନ୍ତୁ ଅନେକ ବି ବ୍ୟତିକ୍ରମ ଥାଆନ୍ତି । ସେଇଭଳି ଏକ ବ୍ୟତିକ୍ରମ ଶଶୀକଳା । ସେ ବ୍ୟତିକ୍ରମ ହୋଇ ନ ଥିଲେ ବିନୋଦ କାନୁନ୍‌ଗୋର କି ସାଧନାରେ ନିରବଚ୍ଛିନ୍ନତା ହୁଏତ ରହିପାରି ନ ଥାନ୍ତା । ଏକାଗ୍ର ସାଧନାରେ ସେ ମଜ୍ଜି ଯାଇ ପାରି ନ ଥାନ୍ତେ ଜ୍ଞାନମଣ୍ଡଳର ସଂପାଦନାରେ । ଭିଟାମିନ୍‌କୁ କେହି ଦେଖି ପାରନ୍ତି ନାହିଁ କିନ୍ତୁ ସେ ତା କାମ କରିଯାଏ ଅଲକ୍ଷ୍ୟରେ । ଠିକ୍ ସେହିପରି ଶଶୀକଳା । ବିନୋଦ ବାବୁଙ୍କର ସହଧର୍ମିଣୀ । ଈର୍ଷା ନାହିଁ, ଦ୍ୱେଷ ନାହିଁ, ଦୁଃଖ ନାହିଁ । ବିନୋଦ ବାବୁଙ୍କର ସେ ହେଉଛନ୍ତି ପ୍ରେରଣାର ଗୁପ୍ତ ଗଂଗା ।

ପୂର୍ଣ୍ଣମୀ ଅତିକ୍ରାନ୍ତ ହୋଇଛି । ବୟସ ଅତିକ୍ରାନ୍ତ ହୋଇଛି । ବିନୋଦ ବାବୁ ବାହୁଡ଼ିଗଲେଣି । ଶଶୀ ବର୍ତ୍ତମାନ ଅସ୍ତରାଗରେ । ପୁଅ, ଝିଅ, ସମସ୍ତେ ପାରି ଉଠିଲେଣି । ନିଜ ଦେହ କିନ୍ତୁ ଆଉ ବୋଲ ମାନୁ ନାହିଁ । ତାଙ୍କର ଅସ୍ତ ହେବାର ସମୟ ହେଲାଣି ।

ଯାଉ ଯାଉ ଅଟକି ଯାଇଛନ୍ତି ଥରେ ଦିଥର । ପୁଅଝିଅ ଜୋଇଁ ବୋହୂର ସେବାଦ୍ୱାରା । କିନ୍ତୁ ମହାକାଳକୁ କଣ ସବୁଦିନ ଅଟକାଇ ହେବ ? ସେପ୍ଟେମ୍ବର ୩୦, ୧୯୯୬ ସକାଳ । ସେ ସକାଳ ଆଉ ଆସିବ ନାହିଁ । ଶଶୀକଳା ଅସ୍ତ ହୋଇଗଲେ । ପାଲଟି ଗଲେ ଇତିହାସ ।

କିନ୍ତୁ ସେ ପରା ଶଶୀ । ସେ ରହିବେ ସବୁଦିନେ ସ୍ମୃତିର ଆକାଶରେ ମଳା ଜହ୍ନ ଭଳି । ତାଙ୍କୁ ହେରିବେ ଅଗଣିତ ବନ୍ଧୁ ବାନ୍ଧବ । ସତୀ ଚଉରାରେ ଚିତା ଜଳୁଛି । ହାଡ଼ ଉପରେ ଚମଡ଼ା ଦିଶୁଣ୍ଡ । ଆଉ ଟିକକୁ ଜଳି ସବୁ ପାଉଁଶ ହୋଇଯିବ । କିନ୍ତୁ ସ୍ମୃତି ରହିଯିବ ଚିରକାଳ ।



# ମୃତ୍ୟୁ କଣ ଏଇପରି ଆସେ

ଶ୍ରୀକାନ୍ତ ମୋତେ ଭାଇ ବୋଲି ଡାକେ । ସେଇଭଳି ବ୍ୟବହାର ମଧ କରି ଆସିଛି ପିଲାଦିନରୁ । ବୟସରେ ସାନ । ରେଭେନ୍ସା କଲେଜର ପ୍ରଥମ ବାର୍ଷିକ ବିଜ୍ଞାନର ଛାତ୍ର ଥିଲାବେଳୁ ହିଁ ପରିଚୟ । ତାହା ନିବିଡ଼ ହେଇଛି ସମୟାନୁକ୍ରମେ । ତା'ର ସବୁ ସାମାଜିକ କାର୍ଯ୍ୟକ୍ରମକୁ ମୋ ପାଇଁ ଯେପରି ନିମନ୍ତ୍ରଣ, ମୋ ତରଫରୁ ବି ସେଇପରି । ତାର ବିବାହ ଠାରୁ ଆରମ୍ଭ କରି ଝିଅ ବିବାହ ପର୍ଯ୍ୟନ୍ତ ସବୁଥି ପାଇଁ ତ ଡାକିଥିଲା । ଆଜିତ କାହିଁ ଖବର ବି ଦେଇଗଲା ନାହିଁ ।

ଏବେ ଦିଲ୍ଲୀରୁ ଫେରିଥିଲା । ନିରଜ ଡ଼ାକ୍ତରୀ ପରୀକ୍ଷା କରି । କିଛି ତ ନ ଥିଲା ବୋଲି କହୁଥିଲା ସେ ଦିନ । ଆଗାମୀ ବୁଧବାର ଦିନ ମୋର ଦାନ୍ତ ଉପାଡିବା ପାଇଁ ଦିନ ସ୍ଥିର କରିଥିଲା । କିନ୍ତୁ ଆଜି ହଠାତ୍ ଖବରକାଗଜରେ ସଂବାଦ ଯେ ସେ ଆଉ ନାହିଁ । ଗଲା କୁଆଡ଼େ ? କିଏ ଦେବ ଏହି ଚିରନ୍ତନ ସତ୍ୟର ଉତ୍ତର ।

ସେ ଥିଲା ଖୋଦ୍ କଟକୀ । ବାପାଙ୍କ ଠାରୁ ଆଣିଥିଲା ଚିକିତ୍ସା ଆପଣାର ଜିନ୍‌ରେ, ଆପଣାର ରକ୍ତରେ । ରେଭେନ୍ସା କଲିଜିଏଟ୍‌ରୁ ମାଟ୍ରିକ ପାଶ କରି ପଢ଼ିଲା ରେଭେନ୍ସା କଲେଜରେ । ପାଠ ପଢ଼ିବା ସହିତ ଅନ୍ୟାନ୍ୟ ସାମାଜିକ, ଜନକଲ୍ୟାଣ, ସାମୂହିକ କାର୍ଯ୍ୟରେ ଥିଲା ତାର ଆଗ୍ରହ ଏବଂ ସେଇ ଯୋଗୁଁ ହିଁ ମୋ ଆଖିରେ ପଡ଼ିଥିଲା ସେ ।

ଜୀବନରେ ତାର ଘଟିଛି ବହୁ ଘାତ ପ୍ରତିଘାତ । ସବୁ ତ କହିଛି ମୋତେ, ସବୁ କଥାରେ ଲୋଡ଼ିଛି ପରାମର୍ଶ । ଆଜି ଯିବା ପୂର୍ବରୁ ତ କିଛି କହିଗଲା ନାହିଁ । ଖବର ବି ଦେଲା ନାହିଁ ଟିକିଏ । କ'ଣ ଏହା ଠାରୁ ବଡ଼ କାମ ପଡ଼ିଲା କି କେଉଁଠି ଆଉ ?

ରେଭେନ୍ସା କଲେଜରୁ ପାଶ କରିବା ପରେ ହେଲା ଦାନ୍ତ ଡାକ୍ତର କଲିକତାରୁ ଦନ୍ତ ବିଜ୍ଞାନରେ ଡିଗ୍ରୀ ଲାଭ କରି । ସେତିକିରେ ତୃପ୍ତ ନ ହୋଇ ସେ ପଢ଼ିଲା ଏମ୍.ବି.ବି.ଏସ୍. ବମ୍ବେରେ । ବିଶ୍ୱସ୍ୱାସ୍ଥ୍ୟ ସଂଗଠନର ବୃତ୍ତି ପାଇ ଗଲା ବିଦେଶକୁ ଉଚ୍ଚ ଶିକ୍ଷା ଓ ଜ୍ଞାନ ଆହରଣ ପାଇଁ ।

ଯୋଗଦେଲା ଶ୍ରୀରାମଚନ୍ଦ୍ର ଭଂଜ ମେଡିକାଲ କଲେଜର ଦନ୍ତ ବିଭାଗରେ । ତଥାପି ତୃପ୍ତ ହେଲା ନାହିଁ । ଦନ୍ତ ବିଜ୍ଞାନ ପାଇଁ ଏକ ସ୍ୱତନ୍ତ୍ର କଲେଜ ହେବା ଆବଶ୍ୟକ । ଲାଗିଲା ସେଥିପାଇଁ ଉଦ୍ୟମ । ସେଇ ଉଦ୍ୟମରେ ସେ ସହଯୋଗ ଲୋଡ଼ିଥିଲା ସମସ୍ତଙ୍କର । ସଂପର୍କ ଆହୁରି ନିବିଡ଼ ହେଲା ସେଇ ଉଦ୍ୟମ ଭିତରେ । ଓଡ଼ିଶାରେ ସ୍ୱତନ୍ତ୍ର ଦନ୍ତ କଲେଜର ପ୍ରତିଷ୍ଠା ପାଇଁ ତାର ଅବଦାନ ତାକୁ ଚିରକାଳ ସ୍ମରଣୀୟ କରି ରଖିବ ଉତ୍ତର ପୀଢ଼ି ପାଇଁ ।

ସାଂଗଠନିକ ତଥା ନୀତିଗତ ମତଭେଦ ପାଇଁ ଚାକିରି ଛାଡ଼ିଦେଲା । ସେ ବଂଚିବ ସତ୍ୟ କିନ୍ତୁ ବଂଚିବା ସମ୍ମାନର ସହିତ । ଏଇ ଥିଲା ତାର ନୀତି ।

ନିଜର ପ୍ରାଇଭେଟ୍ ପ୍ରାକ୍‌ଟିସ୍ ଆରମ୍ଭ କଲା । କନିକା ଛକରୁ ମଣିସାହୁ ଛକ ପର୍ଯ୍ୟନ୍ତ । ମନେ ପଡୁଛି ଗୋଟାଏ କଳ କଂଚା ଦାନ୍ତ ଫାଟିଯିବା ହେତୁ ଯାଇଥିଲି ଦାନ୍ତ ଉପାଡିବା ପାଇଁ । ଅନେକ ଦାନ୍ତ ଡାକ୍ତରଙ୍କ ନାମକୁ ଉପକ୍ଷା କରି । ମୋ ସାଂଗରେ ମୋର ଜଣେ ବଂଧୁ ଡାକ୍ତର ବି ଯାଇଥିଲେ । ଦାନ୍ତ ଉପାଡିବା ଦେଖିଲେ ସେ ଏବଂ ବାଟରେ କହିଲେ ଯେ ଆପଣ ଠିକ୍ ନିଷ୍ପତ୍ତି ନେଇଛନ୍ତି । ଦାନ୍ତ ଉପାଡିବାର କୌଶଳ ମୁଁ ଦେଖିଲି । ମନେ ହେଲା ଯେପରି ଶିଳ୍ପୀ ଏକ ଚିତ୍ର ଆଙ୍କୁଛି ।

ଏହା ଖାଲି ମୋ ପାଇଁ ପ୍ରଯୁଜ୍ୟ ନୁହେଁ । ଅସଂଖ୍ୟ ଲୋକ ସେଇ କଥା କହିବେ ଏବଂ ସେମାନଙ୍କର ଦାନ୍ତରୁ ନୁହେଁ, ଆଖିରୁ ଝରି ପଡିବ ଟୋପା ଟୋପା ରକ୍ତ ଲୁହ ଆକାରରେ । ସେଇ କଥା ଲେଖିଲାବେଳେ ଆଖିରେ ବାମ୍ପ ଜମୁଛି । ମନ, ଆଖି ସବୁ ଯେମିତି ରୁନ୍ଧି ହୋଇଯାଉଛି ।

ଶ୍ରୀକାନ୍ତ ପୃଷ୍ଟି ଦାନ୍ତ ଡାକ୍ତର । ସେ କିନ୍ତୁ ସତରେ ଦାନ୍ତ ଭଳି । ଥିଲାବେଳେ କେତେ ମୂଲ୍ୟବାନ, ଦାନ୍ତ ପରି । ଗଲା ପରେ ତାହାର ମୂଲ୍ୟ ଆହୁରି ବେଶୀ ଜଣାପଡ଼େ । କିନ୍ତୁ ଦାନ୍ତ ଭଳି ସେ ତ ଆଉ ଫେରିବ ନାହିଁ । ଆଉ ସେଇଥିରେ ହିଁ ତାର ଜୀବନର ସାର୍ଥକତା । ତାରି ପାଇଁ ବହୁ ଆଖିର ଲୁହରେ ଶ୍ରଦ୍ଧାଞ୍ଜଳି ।



# ଇତିହାସ ଖୋଳୁ ଖୋଳୁ ନିଜେ ଇତିହାସ

**ସ**ତ୍ୟନାରାୟଣ ରାଜଗୁରୁ ଓଡ଼ିଶା ଇତିହାସର ଏକ କିମ୍ବଦନ୍ତୀ ପୁରୁଷ । ଘର ପାରଳାଖେମୁଣ୍ଡି, କରଣ ସାହିରେ । କର୍ମ ଜୀବନ କିନ୍ତୁ କଟକ ଏବଂ ଭୁବନେଶ୍ୱରକୁ କେନ୍ଦ୍ର କରି । ସାରା ଓଡ଼ିଶା ଥିଲା ତାଙ୍କର କର୍ମସ୍ଥଳ । ଓଡ଼ିଶାର ଇତିହାସକୁ ସେ ଭଲ ପାଉଥିଲେ, ଗର୍ବିତ ଥିଲେ ମଧ୍ୟ ସେଇଥିପାଇଁ । ଓଡ଼ିଶା ଇତିହାସର ବହୁ ଯୁଗ ରହିଛି ଅଂଧକାରରେ । ଏହା ତାଙ୍କୁ ବ୍ୟଥିତ କରିଛି । ସେ ଲାଗି ଯାଇଛନ୍ତି ସେଇ କାମରେ, ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ । ଚିରବିଶ୍ରାମ ନେବା ପୂର୍ବରୁ ସେ ଆଦୌ ବିଶ୍ରାମ ନେଇ ନାହାନ୍ତି । ସରକାରୀ ଚାକିରିରୁ ଅବସର ଗ୍ରହଣ କରିଛନ୍ତି । କିନ୍ତୁ କାମରୁ ଅବସର ନେଇ ନାହାନ୍ତି, ଲୋଡ଼ି ନାହାନ୍ତି, ଓଡ଼ିଶାର ଇତିହାସ ରହି ଯାଇଛି ତାଙ୍କର ନଖ ଦର୍ପଣରେ । ସେ ସଚେତନ ଯେ ଏ କାମ ଜଣକର ନୁହେଁ, ଏ କାମ ପାଇଁ ଗୋଟିଏ ଜୀବନ ମଧ୍ୟ କୁଳାନ ନୁହଁ । ତେଣୁ ସେ ତରୁଣ ଗବେଷକମାନଙ୍କୁ ଉତ୍ସାହିତ କରିଛନ୍ତି, ଯେଉଁମାନେ ଇତିହାସ ସଂପର୍କରେ ଆଗ୍ରହୀ ସେମାନଙ୍କୁ ସାହାଯ୍ୟ କରିଛନ୍ତି । ଚରୈବତି ଚରୈବତି ଚରୈବତି ଆଗେଇ ଚାଲ । ଆଗେଇ ଚାଲ, ଥିଲା ତାଙ୍କର ମୂଳ ମନ୍ତ୍ର ।

ଶିଳାଲେଖମାନଙ୍କରୁ ପାଠୋଦ୍ଧାର ଥିଲା ତାଙ୍କର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ପରିଣତ ବୟସରେ ସେ ଦେଖିଲେ ଶ୍ରୀମନ୍ଦିରରୁ ଲେପି ଦିଆଯାଇଥିବା ଚୂନ ଛଡ଼ା ଯାଉଛି ଏବଂ ତା ଭିତରୁ ବାହାରିଛି ଶିଳାଲେଖ । ବୟସ ହାର ମାନିଛି ତାଙ୍କ ପାଖରେ । ପାଠୋଦ୍ଧାର କରି ସେ ଦେଖିଛନ୍ତି ଯେ ଜଗନ୍ନାଥଙ୍କ ବିଗ୍ରହ ଥିଲା ପଥରରେ ତିଆରି ଏହା ପୂର୍ବରୁ ଏବଂ ଶତ୍ରୁ ଆକ୍ରମଣ ବେଳେ ଉକ୍ତ ତିନିଠାକୁରଙ୍କୁ ଆଣି ଭୁବନେଶ୍ୱର ବିନ୍ଦୁ ସାଗରରେ ପକାଇ ଦିଆଯାଇଛି ସୁରକ୍ଷା ପାଇଁ । ସମାଜ ବିକାଶର ନିୟମରେ ଏହା ପଡ଼ୁନାହିଁ । କାଠ ପରେ ହିଁ ପଥରର ଦେଉ ଆରମ୍ଭ ହୋଇଛି । ଜଗନ୍ନାଥଙ୍କ ବିଗ୍ରହ କାଠରେ ତିଆରି, ପଥରରେ ନୁହେଁ । ପଥରରେ କେବେ ତିଆରି ହେଲା, କଲା କିଏ ? ପଥର ବିଗ୍ରହ ପରେ କାଠର ବିଗ୍ରହ ଆବଶ୍ୟକ ହେଲା କାହିଁକି ?

ଏଇ ପ୍ରଶ୍ନ ଘାରିଛି ଅନେକଙ୍କୁ । ମୋର ମନେ ପଡ଼ୁଛି 'କଟକ ନଗର ହଜାର ବର୍ଷ'ର ବହି ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ଅର୍ପଣ କଲା ବେଳେ ସେ ମଧ୍ୟ ଏଇ ପ୍ରଶ୍ନ ଉତ୍ଥାନ କରିଥିଲେ ଏବଂ କହିଥିଲେ ଯେ ଶ୍ରୀ ସତ୍ୟନାରାୟଣ ରାଜଗୁରୁ ଯେତେବେଳେ ଏଇ ପ୍ରଶ୍ନ ଶିଳାଲେଖରୁ ଉଦ୍ଧୃତ କରିଛନ୍ତି ସେତେବେଳେ ଏହା ସମସ୍ତଙ୍କର ପ୍ରଣିଧାନର ବିଷୟ । କାରଣ ସେ ହେଉଛନ୍ତି ଓଡ଼ିଶାର ଚଳନ୍ତି ଇତିହାସ ।

ସତ୍ୟନାରାୟଣ ରାଜଗୁରୁଙ୍କ ପାଇଁ ଜଗନ୍ନାଥ ହେଉଛନ୍ତି ଓଡ଼ିଶା ଇତିହାସର କେନ୍ଦ୍ରବିନ୍ଦୁ । ତାଙ୍କ ପ୍ରତି ଶ୍ରୀ ରାଜଗୁରୁଙ୍କର ଥିଲା ଅଗାଧ ଭକ୍ତି ଓ ବିଶ୍ୱାସ । ଜୀବନର ଅପରାହ୍ନକୁ ସେ ତାଙ୍କରି ପାଖରେ କଟାଇବା ପାଇଁ ସ୍ଥିର କରିଥିଲେ । ସେଇଠି ତାଙ୍କ ସାଙ୍ଗରେ ଦେଖା ହୋଇଛି । କଟକ ନଗରର ସହସ୍ର ବାର୍ଷିକୀ ପୁସ୍ତକ ଦେଖି ସେ ଅତ୍ୟନ୍ତ ଆନନ୍ଦିତ ହୋଇ ଆଶୀର୍ବାଦ କରିଛନ୍ତି ଏବଂ ଶୁଭେଚ୍ଛା ଜଣାଇଛନ୍ତି । ଆମେ କେତେ ପୁରାତନ, ଆମର ଐତିହ୍ୟ କେତେ ଗାରିମାମୟ ଏଇ କଥା ଲୋକମାନଙ୍କ ଭିତରେ ଜାଗ୍ରତ କରି ଜଷ୍ଟିସ ହରିହର ମହାପାତ୍ର, ଡକ୍ଟର ସଦାଶିବ ମିଶ୍ର ଏବଂ ତମେମାନେ ସ୍ମରଣୀୟ ହୋଇ ରହିବ - ଏଇଥିଲା ତାଙ୍କର ସ୍ନେହଭରା ଶୁଭେଚ୍ଛା । ଟିକିଏ ବି ଗର୍ବ ନାହିଁ, ଅହଂକାର ନାହିଁ । ଯିଏ ଯାହା ପାରୁଚ କର । ସମସ୍ତଙ୍କର ସମବେତ ଉଦ୍ୟମ ହିଁ ଆମର ଇତିହାସର ପୃଷ୍ଠାକୁ ଆଲୋକିତ କରି ପାରିବ - ଏଇ ଥିଲା ତାଙ୍କର ଉକ୍ତି । ଆଜି ତାଙ୍କର ବିୟୋଗରେ ସେଇ କଥା ମନେ ପଡ଼େ, ଆଖିରେ ଲୁହ ଆସିଯାଏ ।

ମନେପଡୁଛି ୧୯୭୫-୭୬ ମସିହାର କଥା । ବୌଦ୍ଧ ଓ ଜୈନ ଦର୍ଶନ ଉପରେ ଆନ୍ତର୍ଜାତିକ ସେମିନାର କରିବା ପାଇଁ ଆମର ପ୍ରଚେଷ୍ଟା ସରକାରୀ ସାହାଯ୍ୟ ବିନା ଏହା କରିବାର କଷ୍ଟକର ପରିସ୍ଥିତି ସେ ଉପଲବ୍ଧି କରିଥିଲେ । ସରକାରୀ ସାହାଯ୍ୟ ବିନା ଏଇଭଳି ସେମିନାର ତମେମାନେ କରିବ, ମୁଁ ନିବନ୍ଧ ଦେବି ନାହିଁ ? ମୁଁ ଯିବ ନାହିଁ ? ମୁଁ ନିଶ୍ଚିତ ଭାବରେ ଲେଖା ଦେବି ଏବଂ ସେମିନାରକୁ ଯିବି । ଜୈନ ଦର୍ଶନ ଉପରେ ସେ ଏକ ପାଣ୍ଡିତ୍ୟପୂର୍ଣ୍ଣ ନିବନ୍ଧ ଦେଇଥିଲେ ଏବଂ ଚାରିଦିନ ବ୍ୟାପୀ ସେମିନାରରେ ମୂଳରୁ ଶେଷ ପର୍ଯ୍ୟନ୍ତ ବସିଥିଲେ । ସେମିନାରରେ ଅନ୍ୟମାନଙ୍କ ଭିତରେ ତାଙ୍କୁ ବି ସମ୍ବର୍ଦ୍ଧିତ କରାଯାଇଥିଲା ଏବଂ ଆପଣାର ବକ୍ତବ୍ୟରେ ସେ କହିଥିଲେ ଯେ ଏ ସେମିନାର ଆମ ପାଇଁ, ଆମ ଉତ୍ତର ପୁରୁଷ ପାଇଁ ଏକ ମାଇଲଖୁଣ୍ଟ ହୋଇ ରହିବ । ବେସରକାରୀ ଉଦ୍ୟମରେ ଏବଂ ସରକାରଙ୍କ ବିନା ସାହାଯ୍ୟରେ ଏଭଳି ସେମିନାର ସମ୍ଭବ ହୋଇ ପାରିଚି, ଏହା ଆମ ଭିତରେ ଥିବା ଜନଶକ୍ତି ଏବଂ ଇତିହାସ ପ୍ରୀତିର ଶୁଭଙ୍କର ସୂଚନା ଦିଏ ।

ଆଜି ଚଳନ୍ତି ବର୍ଷ (୧୯୯୮) ଭାରତୀୟ ସଂସ୍କୃତି ଉପରେ ଏକ ଆନ୍ତର୍ଜାତିକ ସମ୍ମିଳନୀର ଆୟୋଜନ କଲାବେଳେ ସେ ଆଉ ନାହାନ୍ତି ପ୍ରେରଣା ଦେବା ପାଇଁ, ମୁଣ୍ଡ ଉପରେ ହାତ ବୁଲାଇବା ପାଇଁ ଆଖିରେ ଲୁହ ଜାଗେ ।

ସତ୍ୟନାରାୟଣ ରାଜଗୁରୁ କେବଳ ଜଣେ ଐତିହାସିକ ନ ଥିଲେ । ଓଡ଼ିଆ ଜାତି, ଓଡ଼ିଆର ସଂସ୍କୃତି ଏବଂ ଇତିହାସର ସେ ଥିଲେ ଚଳନ୍ତି ପ୍ରତିମା । ଓଡ଼ିଶା ରାଜ୍ୟ ସଂଗ୍ରହାଳୟ କରିବା ପାଇଁ ପରମାନନ୍ଦ ଆଚାର୍ଯ୍ୟ, କେଦାରନାଥ ମହାପାତ୍ର ଏବଂ ସତ୍ୟନାରାୟଣ ରାଜଗୁରୁ ସ୍ମୃତ ହୋଇ ରହିବେ ଚିରକାଳ । ରେଭେନ୍ସା କଲେଜର ଉଦ୍‌ଭିଦ୍ ବିଜ୍ଞାନ ବିଭାଗର ପୋଷ୍ଟ ଗ୍ରାଜୁଏଟ୍ ଡିପାର୍ଟମେଣ୍ଟ ଆଜି ଯେଉଁଠି ଅଛି, ସେଇଠି ସଂଗଠିତ ହୁଏ, ଓଡ଼ିଶାର ସଂଗ୍ରହାଳୟ । ପରବର୍ତ୍ତୀ କାଳରେ ତାହା ଭୁବନେଶ୍ୱରରେ ବର୍ତ୍ତମାନର ଘରକୁ ସ୍ଥାନାନ୍ତରିତ ହୁଏ । ପାଇଓନିୟର କାମ କରିବା ବଡ଼ କଷ୍ଟକର କଥା । ଗବେଷଣା ସହିତ ରାଜ୍ୟ ସଂଗ୍ରହାଳୟ ଗଠନର ଦାୟିତ୍ୱ

ବହନ କରିବା ସେମାନଙ୍କର ସଂଗଠନ ଶକ୍ତିର ପରିଚୟ ଦିଏ ।

ପରିଣତ ବୟସରେ ତାଙ୍କୁ ଆଉ ଲେଖିବାକୁ ବା ପଢ଼ିବାକୁ ମନା କରା ଯାଇଥିଲା । ସେ ଦୁଃଖରେ ଭାଙ୍ଗି ପଡ଼ିଥିଲେ । ସତରେ ମୁଁ ଆଉ ପଢ଼ି ପାରିବି ନାହିଁ । ଲେଖି ପାରିବି ନାହିଁ । ତା ହେଲେ ମୁ ବଞ୍ଚିବି କିମିତି ?

ସ୍ୱତନ୍ତ୍ର ଓଡ଼ିଶା ଗଠନ, ସୀମା ସମସ୍ୟା ଏବଂ ଜାତିତତ୍ତ୍ୱ ପ୍ରତି ତାଙ୍କର ଆଗ୍ରହ ଥିଲା ପ୍ରଚୁର । ତାଙ୍କର କଲମରୁ ଝରିଥିଲା ଏ ସଂକ୍ରାନ୍ତରେ ବହୁ ଉପାଦେୟ ଲେଖା । ମୋର ମନେ ପଡ଼ୁଛି ଓଡ଼ିଆ ଭାଷାଭାଷୀ ଅଂଚଳକୁ ଓଡ଼ିଶାରେ ମିଶାଇବା ପାଇଁ ଉଦ୍ୟମ, ସୀମା କମିଶନ ଆଗରେ ସାକ୍ଷୀ, ସୀମା ଆନ୍ଦୋଳନ, ସତ୍ୟନାରାୟଣ ରାଜଗୁରୁଙ୍କ ପାଖରେ ଯେତେବେଳେ ପହଞ୍ଚିବୁ ସେ ସ୍ୱାଗତ କରିବେ । କର୍ମବ୍ୟସ୍ତତା ସେଥିପାଇଁ ଅନ୍ତରାୟ ହେଉନାହିଁ । କାମ୍ ଅଛି, ପରେ ଆସନ୍ତୁ ବୋଲି କେବେ କହିନାହାନ୍ତି । ଯାହା ଡାଟା ବା ବିଷୟବସ୍ତୁ ଦରକାର ସବୁ ଦେବେ ଫାଇଲରୁ ଖୋଜି ଖୋଜି ।

ତାଙ୍କ ଦ୍ୱାର ପ୍ରଣୀତ Inscription of Orissa, History of the Gangas, Inscription of the temple of Puri, Origin of Sri Jagannath ପ୍ରଭୃତି ପୁସ୍ତକ ପାଇଁ ସେ ଓଡ଼ିଆ ଜାତିର ଚିର ନମସ୍ୟ ଏବଂ ସ୍ମରଣୀୟ ହୋଇ ରହିବେ ।

ଅନେକ ପୁରସ୍କାର, ଆୱାର୍ଡ ସମ୍ମାନ ମିଳିଛି ଜଗନ୍ନାଥଙ୍କ ଏଇ ଭକ୍ତକୁ । ଚାକିରିରେ ପେନସନ୍‌ରେ ବିଭ୍ରାଟ ଦେଖା ଦେଇଛି । ସେ କିନ୍ତୁ ରହିଯାଇଥିଲେ ସୁଖ ଦୁଃଖରେ ଅବିଚଳ, ବିନମ୍ର । ଲକ୍ଷ୍ୟ ଥିଲା ସୁଦୂର ପ୍ରସାରୀ । ସଂସାରର ଛୋଟ ବଡ଼ କଥା ତାଙ୍କୁ ଘାରୁ ନଥିଲା । ସବୁ ଜଗନ୍ନାଥଙ୍କ ଇଚ୍ଛା ଏଇ ଥିଲା ତାଙ୍କର ବିଶ୍ୱାସ ।

ଏଇ ପ୍ରବାଦ ପୁରୁଷ ଆମ ଜାତିକୁ ଦରିଦ୍ର କରି ଚାଲି ଯାଇଛନ୍ତି । ଓଡ଼ିଆ ଜାତିକୁ କିନ୍ତୁ ସେ ସଚେତନ କରାଇ ଯାଇଛନ୍ତି ଆପଣାର ଇତିହାସ, ଆପଣାର ଐତିହ୍ୟ ପାଇଁ ଗର୍ବିତ ହେବା ସକାଶେ ।



# ସହରର ଅଭିଭାବକ ଆଉ ନାହାନ୍ତି

**ଶ**ହେ ବର୍ଷ ବଂଚିବା, ପୁଣି ସକ୍ରିୟ ହୋଇ ବଂଚିବା ଭାରି କଷ୍ଟକର । କେବଳ ଶାରୀରିକ ଦୃଷ୍ଟିରୁ ନୁହେଁ ମାନସିକ ଦୃଷ୍ଟିରୁ ମଧ୍ୟ । ସାଂଗ ସାଥୀ ଆଉ କେହି ନ ଥିବେ, ଯେଉଁମାନେ ଥିବେ ସେମାନେ ଥିବେ ଘର ଭିତରେ, ନଚେତ ବିଛଣାରେ । ନିଜ ସମୟର ରୁଚି, ମୂଲ୍ୟବୋଧ, ସଂସ୍କୃତି, ବିଚାର ସବୁ ବଦଳି ଯାଇଥିବ ଇମିତି ଯେ ନିଜକୁ ଖାପ ଖୁଆଇବା ସମ୍ଭବପର ହେଉ ନ ଥିବ । ଘରେ ହୁଏତ ଏକାକୀ ରହିବାକୁ ପଡୁଥିବ, କାରଣ ପୁଅ ବୋହୂ, ନାତି ନାତୁଣୀ ହୁଏତ ଅନ୍ୟ କୁଆଡ଼େ ଥିବେ ତାଙ୍କ କାର୍ଯ୍ୟକ୍ଷେତ୍ରରେ । ଶହେ ବର୍ଷ, ଆଉ ଶତାବ୍ଦୀରୁ ଆରମ୍ଭ ।

କଟକ ସହରର ସହସ୍ର ବାର୍ଷିକୀ ପାଳନ ହେଉଥାଏ । ଆମେ ଖୋଜିଲୁ ସବୁଠାରୁ ବୟସ୍କ ମଣିଷକୁ, ଯାହାଙ୍କୁ ସେ ଦିନ ଆମେ ନାଗରିକ ସମ୍ବର୍ଦ୍ଧନା ଦେବାକୁ ଚାହିଁଥିଲୁ । ବୟସ୍କ ଲୋକମାନଙ୍କୁ ଖୋଜା ପଡ଼ିଲା । ଡାକ୍ତର ସନାତନ ମୁଖାର୍ଜୀଙ୍କ ନାମ ଉଠିଲା ସ୍ୱାଭାବିକ କାରଣରୁ । ମୁଁ ତାଙ୍କ ପାଖରେ ଯାଇ ପହଞ୍ଚିଲି । ପରିଚିତ ଥିଲା ଅନେକ ଦିନରୁ । କିନ୍ତୁ ପହଞ୍ଚିବା ସଂଗେ ସଂଗେ ସେ କହିଲେ 'ସମାଜ' ସଂପାଦକ ଶ୍ରୀ ରାଧାନାଥ ରଥ ଏବଂ ସହସ୍ର ବାର୍ଷିକୀ କମିଟିର ସଭାପତି ଖୋଦ୍ ଜଷ୍ଟିସ ହରିହର ମହାପାତ୍ର ଥାଉ ଥାଉ ମୋତେ କାହିଁକି ସେ ତାଲିକାରେ ଅନ୍ତର୍ଭୁକ୍ତ କରୁଛ ? ସେ ଆଦୌ ରାଜି ହେଲେ ନାହିଁ । ତାଙ୍କର ଜୀବନୀ ମାଗିବାରୁ ସେ କହିଲେ ଯେ ସମ୍ଭାବ୍ୟ ପ୍ରକାଶନମାନଙ୍କରେ କୌଣସି ଜୀବିତ ବ୍ୟକ୍ତିର ନାମ ଅନ୍ତର୍ଭୁକ୍ତ ନ କରିବା ପାଇଁ । କାରଣ ତା ହେଲେ ବିବାଦର ସମ୍ଭାବନା ଅନେକ । ମୃତ ବ୍ୟକ୍ତିଙ୍କ ନାମ ନ ରଖିଲେ ବି କେହି ସେ ବିପଦ ଭିତରକୁ ଯିବେ ନାହିଁ । ଆମକୁ ପରେ ସେଇକଥା ଶ୍ରୀରାମ ମହାପାତ୍ର ମଧ୍ୟ କହିଲେ ।

ଡାକ୍ତର ସନାତନ ମୁଖାର୍ଜୀଙ୍କର ପିତୃ ପୁରୁଷ ଆସିଥିଲେ ବୋଧହୁଏ ବର୍ଦ୍ଧମାନ ଜିଲ୍ଲାରୁ କଲିକତାରୁ ଆସିଥିଲେ ଜଳପଥରେ । ବାଲେଶ୍ୱର ଦେଇ ଆସିଥିଲେ କି ସିଧାସଳଖ ଜଗତସିଂହ ପୁର ଆସିଥିଲେ କହିହେବ ନାହିଁ । ଇଂରେଜ ବଣିକମାନେ ପୂର୍ବ ଉପକୂଳରେ ପ୍ରଥମେ ଜଗତସିଂହ ପୁରରେ ହିଁ ଆପଣାର ବ୍ୟବସାୟ କେନ୍ଦ୍ର ପ୍ରତିଷ୍ଠା କରିଥିଲେ । ଅଳକା ନଦୀ ଶୁଖିଯାଇ ନ ଥିଲେ ଜଗତସିଂହପୁର ହିଁ କଲିକତା ହୋଇଥାନ୍ତା । କାରଣ ସେତେବେଳେ ନଦୀ ବନ୍ଦର ବା ରିଭାଇନ (Riverine) ପୋର୍ଟ ସେମାନେ ଖୋଜୁଥିଲେ । ଅଳକାନଦୀ ଶୁଖି ଯିବାରୁ ଇଂରେଜ ବଣିକମାନେ ବିକଳ୍ପ ଖୋଜି ଖୋଜି ଯାଇ ପହଞ୍ଚିଲେ ସୁତାନଟି ଗ୍ରାମରେ, ଯାହା ପରବର୍ତ୍ତୀ ସମୟରେ କଲିକତା ସହରରେ ପରିଣତ ହେଲା । ସେ ଯାହା ହେଉ ମୁଖାର୍ଜୀ

ପରିବାର ଆସି ଜଗତସିଂହପୁରର ସିର୍ଲୋଠାରେ 'ନବଗ୍ରାମ' ପ୍ରତିଷ୍ଠା କଲେ । ସେଇଠି ବସବାସ ସ୍ଥାପନ କଲେ ।

ଡାକ୍ତର ମୁଖାର୍ଜୀଙ୍କର ବାପା କୃଷ୍ଣମୋହନଙ୍କର ସଂସ୍କୃତରେ ବିପୁଳ ପାରଦର୍ଶିତା ଥିଲା ଏବଂ ବିଭିନ୍ନ ଶିକ୍ଷାୟତନରେ ସେ ଅଧ୍ୟାପନା କରିଥିଲେ । ସନାତନ ମୁଖାର୍ଜୀ ତତ୍‌କାଳୀନ ମେଡ଼ିକାଲ ସ୍କୁଲରେ ଏଲ୍.ଏମ.ପି. ପାଶ କରି , କେଉଁଝରରେ ଡାକ୍ତର ହୋଇଥିଲେ । କିନ୍ତୁ ସ୍ୱାଧୀନତା ଆନ୍ଦୋଳନର ଦୁର୍ବାର ଆହ୍ୱାନରେ ସେ ଚାକିରି ଛାଡ଼ି ସ୍ୱାଧୀନ ଭାବରେ ଜୀବିକା ଅର୍ଜନ କଲେ କଟକ ସହରରେ । କ୍ରମେ ଟାଉନ୍‌ହଲ ରୋଡ଼ରେ ଥିବା ତାଙ୍କ ଘର ଏକ ପୀଠ ପାଲଟିଲା ଜାତୀୟତାବାଦୀ ମାନଙ୍କର । ଖାଲି ଭାରତୀୟ ଜାତୀୟ କଂଗ୍ରେସ ନୁହେଁ ଫରଓ୍ୱାର୍ଡ ବ୍ଲକ୍‌ଠାରୁ ଆରମ୍ଭ କରି ସମାଜବାଦୀମାନେ ମିଳିତ ହେଉଥିଲେ ଏଇଠି । ସନାତନ ବାବୁ ସଂକୀର୍ଣ୍ଣମନା ନ ଥିଲେ, ଥିଲେ ଉଦାର । ସେଇ ଯୋଗୁଁ ସବୁ ମୁକ୍ତିକାମୀ, ସ୍ୱାଧୀନତାକାମୀ ମାନଙ୍କ ପ୍ରତି ତାଙ୍କର୍‌ ଦରଦ ଥିଲା ।

ତାଙ୍କର କାର୍ଯ୍ୟ ପରିସର ଜୀବନର ବହୁ ବିଭାବକୁ ସମ୍ପ୍ରସାରିତ ହୋଇଥିଲା । ନେତାଜୀ ସୁଭାଷ ସେବା ସଦନ, ଉତ୍କଳ ସଂଗୀତ ସମାଜ ପ୍ରଭୃତି ତାହା ଭିତରେ ଅନ୍ତର୍ଭୁକ୍ତ । କଟକ ପୌର ସଂସ୍ଥାର ସେ କିଛିକାଳ କାଉନସିଲର ମଧ୍ୟ ଥିଲେ । ପ୍ରଚାର ଲୋଡ଼ି ନାହାନ୍ତି । କାହାରି ଉପରେ କ୍ରୋଧ ପ୍ରକାଶ କରି ନାହାନ୍ତି । ଖାଲି ଶରୀରର ଚିକିତ୍ସକ ନ ଥିଲେ ସେ ଥିଲେ ମଧ୍ୟ ମନର ଚିକିତ୍ସକ । ଦଳ,ମତ,ଗୋଷ୍ଠୀର ସଂକୀର୍ଣ୍ଣତା ତାଙ୍କୁ ସ୍ପର୍ଶ କରି ନ ଥିଲା ।

କଟକ ସହର ଅଭିଭାବକ ଶୂନ୍ୟ ହୋଇ ଯାଇଛି । ଡାକ୍ତର ସନାତନ ମୁଖାର୍ଜୀଙ୍କର ପରଲୋକ ସେଇ ଶୂନ୍ୟତାକୁ ଆହୁରି ବଢ଼ାଇ ଦେଇଛି ।



# ସୃଜନୀର ଶେଷ ସ୍ପନ୍ଦନ

୧ ୯ ୯ ୬ ମସିହାର କୁଆଁର ପୁନେଇଁ ଜହ୍ନ ଉଠିବ । କୁଆଁରୀଏ ଗୀତ ଗାଇବେ । କୁମାର ଉତ୍ସବ ପାଳିତ ହେବ । କିନ୍ତୁ ସେ ଚନ୍ଦ୍ର ସାଂଗରେ ଆଉ କୁମାର ଉତ୍ସବ ସମିତିର ସୁରେଶଚନ୍ଦ୍ର ପଟ୍ଟନାୟକଙ୍କର ଭେଟ ହେବ ନାହିଁ । ସେଇ ପୂର୍ଣ୍ଣମୀ, ସେଇ ଚନ୍ଦ୍ର, ସେଇ ରାକା ରଜନୀ ଆସିବ, ଆସିବ ନର୍ତ୍ତକୀର ପାଦଛନ୍ଦର ତାଳେ ତାଳେ, ଆସିବ "କୁଆଁର ପୁନେଇ ଜହ୍ନ ଗୋ ଫୁଲ ବଉଳ ବେଣୀ"ର ଧ୍ୱନି ଭିତରେ । କିନ୍ତୁ ସୁରେଶ ଚନ୍ଦ୍ର ନ ଥିବେ । ତାଙ୍କର ଜୀବନର ପୂର୍ଣ୍ଣଚନ୍ଦ୍ର ଅସ୍ତମିତ ହୋଇ ଯାଇଥିଲା । ବହୁ କାଳରୁ ସେ ଖାଲି ପଡ଼ି ରହିଥିଲେ "ମଲ୍ଲି ଜହ୍ନ" ପରି । ୧ ୯ ୯ ୬ ମଇ ମାସରେ ସେ ମଲ୍ଲି ଜହ୍ନ ମଧ୍ୟ ବୁଡ଼ିଗଲା ଚିରକାଳ ପାଇଁ ।

ସୁରେଶ ବାବୁଙ୍କ ଘର ତିଗିରିଆ କୁମ୍ଭୀପୁଟ ଗ୍ରାମରେ । ଏକ ସମ୍ଭ୍ରାନ୍ତ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ପାଠ ପଢ଼ିବାକୁ କଟକ ଆସିଥିଲେ । ଅଭିଭାବକ , ପିଉସା ଐତିହାସିକ ସୁଧାକର ପଟ୍ଟନାୟକ ଏବଂ ଗଣିତଜ୍ଞ ବିଶେଶ୍ୱର ପଟ୍ଟନାୟକ । ଗଂଗାମନ୍ଦିରରେ ଘର । ସୁରେଶ ବାବୁ ଏଇଠି ପାଠ ପଢ଼ିଲେ । ଯଥା ସମୟରେ ବି.ଏ. ଓ ଆଇନରେ ସ୍ନାତକ ଡିଗ୍ରୀ ଲାଭ କଲେ । ପଢ଼ା ସାରି ଆଡ଼ଭୋକେଟ୍ ହେଲେ । ସେଇଟା ହେଲା ପେଶା । କିନ୍ତୁ ନିଶା ଲାଗି ଯାଇଥିଲା ସଂସ୍କୃତିର ବିକାଶ ପାଇଁ । ପେଶା ଧୀରେ ଧୀରେ ଗୌଣ ହୋଇଗଲା ।

ବନ୍ଧୁବତ୍ସଳ ସୁରେଶ ବାବୁଙ୍କର ବନ୍ଧୁ ଅନେକ । ଜୀବନର ବିଭିନ୍ନ ବିଭାବର । ସେମାନେ ଗଢ଼ିଲେ କୁମାର ଉତ୍ସବ ସମିତି । ପ୍ରତିବର୍ଷ କୁଆଁର ପୁନେଇଁ ଦିନ ସେମାନେ ଆୟୋଜନ କଲେ ନୃତ୍ୟ ଗୀତର ସନ୍ଧ୍ୟା । କୁଆଁର ପୁନେଇଁ ହେଉଛି ଓଡ଼ିଶାର ଜାତୀୟ ପର୍ବ । ବର୍ଷା ଛାଡ଼ି ଯାଇଚି । ଆକାଶ ସୁନିର୍ମଳ । 'ନିର୍ମଳ ଚନ୍ଦ୍ର ମଣ୍ଡଳ ଶାରଦେ ବିରାଜି, ଦିଶେ ଯଥା ଦର୍ପକ ଦର୍ପଣେ ଥିଲେ ମାଜି ।' ଧାନ ପାଚି ଆସୁଚି । ଧାନ କ୍ଷେତରୁ ପବନ ବୋହି ଆଣୁଚି ପାଚିଲା ଧାନର ଗନ୍ଧ । ଫୁଲ ଫୁଟୁଚି ମେଘମୁକ୍ତ ଆକାଶ ତଳେ । ପବନ ତାକୁ ମଧ୍ୟ ବୋହି ଆଣୁଚି । ମତୁଆଲା ହୋଇଛି ପବନ । କୁଆଁର ପୁନେଇଁ ହେଉଛି କୁମାର ଓ କୁମାରୀଙ୍କର ପର୍ବ । ଯୌବନର ପର୍ବ । ଏହା ପାଳିତ ହୁଏ ଆନନ୍ଦ ଉଲ୍ଲାସ ଭିତରେ । ଏହା ହିଁ ଓଡ଼ିଶାର ଜାତୀୟ ପର୍ବ । କିନ୍ତୁ ଏହା ଏ ପର୍ଯ୍ୟନ୍ତ ସେଇପରି ପାଳିତ ହେଉନାହିଁ । ଆସାମର ବିହୁ, ଆନ୍ଧ୍ରର ପଙ୍ଗଲ ପରି ଏହା ହୋଇ ପାରନ୍ତା । ଟାଣି ଆଣନ୍ତା ଅସଂଖ୍ୟ ନର ନାରୀଙ୍କୁ ଭାରତବର୍ଷର ବିଭିନ୍ନ ପ୍ରାନ୍ତରୁ । ଆକୃଷ୍ଟ କରନ୍ତା, ପରିବ୍ରାଜକ ମାନଙ୍କୁ ବିଭିନ୍ନ ଦେଶରୁ ।

ସେଇ ସ୍ୱପ୍ନ ଘାରିଥିଲା ସୁରେଶଚନ୍ଦ୍ରଙ୍କୁ ଏବଂ କୁମାର ଉତ୍ସବ ସମିତିର କର୍ମକର୍ତ୍ତା ମାନଙ୍କୁ । କୁମାର ଉତ୍ସବ ବାଢ଼ିଥିଲା ପ୍ରତିବର୍ଷ ନୂଆ ନୂଆ ପ୍ରୋଗ୍ରାମ୍, ନୂଆ ନୂଆ ଶିଳ୍ପୀ, ପୁରାତନ ସହିତ

ନୂତନର ସମନ୍ୱୟ । ଦର୍ଶକ ବଢ଼ିଥିଲେ । ହଲରେ ଯାଗା କୁଲାନ ହେଲାନାହିଁ । ପ୍ରଥମେ ଗଲା ରେଭେନ୍ସା କଲେଜିଏଟ ହତାକୁ । ତା'ପରେ ବାରବାଟୀ ଷ୍ଟାଡିୟମ ପଡ଼ିଆକୁ । ପଚିଶବର୍ଷ ପୂରିଗଲା । ସଂଗଠକ ମାନଙ୍କର ଯୌବନ ଅତିକ୍ରାନ୍ତ ହୋଇଗଲା । ନୂଆ ସଂଗଠକ ଆସିଲେ ନାହିଁ । କୁମାର ଉତ୍ସବ ସମିତିର ବାର୍ଦ୍ଧକ୍ୟ ଆସିଗଲା ଏବଂ ଧୀରେ ଧୀରେ ତାହା ଲୋପ ପାଇଗଲା ବିସ୍ମୃତିର ଗର୍ଭରେ । 'ଆମେ' ଆଉ ଆମେ ହୋଇ ରହିଲା ନାହିଁ, 'ସେମାନେ' ରେ ପରିଣତ ହୋଇଗଲା । ସୁରେଶଚନ୍ଦ୍ରଙ୍କର ସ୍ୱାସ୍ଥ୍ୟ ହାନି ଘଟିଲା ।

ସୁରେଶଚନ୍ଦ୍ର ସେତିକିରେ ସନ୍ତୁଷ୍ଟ ବା ତୃପ୍ତ ନ ଥିଲେ । ଓଡ଼ିଶାରେ ନୂତନ ନାଟକର ପରୀକ୍ଷା ନାହିଁ । ନୂତନ ଧର୍ମୀ ନାଟକ, ନୂଆ ପ୍ରକାରର ଅଭିନୟ, ନିର୍ଦ୍ଦେଶନା, ନୂତନ ଧରଣର ରଂଗମଞ୍ଚ ଆବଶ୍ୟକ । ଗଢ଼ା ହେଲା 'ସୃଜନୀ' ଆଜି ମଧ୍ୟ ନାଟକ ପ୍ରେମୀ ମାନେ ସ୍ମରଣ କରନ୍ତି ସୃଜନୀ ଦ୍ୱାରା ଆୟୋଜିତ ନାଟକ ଏବଂ ଏକାଙ୍କିକା ଗୁଡ଼ିକୁ । ଏଥିପାଇଁ 'ନାରୀ ସେବା ସଦନ' ର ମଞ୍ଚ, ହଲର ପୁନର୍ବିନ୍ୟାସ ଆବଶ୍ୟକ ପଡ଼ିଲା । କିନ୍ତୁ ସୃଜନୀର ସଂଗଠକ ମାନେ ମଧ୍ୟ ବୟସ୍କ ହେବାକୁ ଲାଗିଲେ । ସୃଜନଶକ୍ତି ପାଇଁ ଆବଶ୍ୟକୀୟ ଦମ୍ଭ, ପରିଶ୍ରମ ପାଇଁ ସେମାନେ ଅକ୍ଷମ ହାଇଗଲେ । 'ସୃଜନୀର' ମଧ୍ୟ ପରଲୋକ ହୋଇଗଲା ।

ସୁରେଶବାବୁ ରୋକାକ୍ରାନ୍ତ ହେଲେ । ହୃଦ୍‌ରୋଗ ତାଙ୍କୁ ଆକ୍ରମଣ କଲା । ନିଜର ସଂପତ୍ତି, ସ୍ତ୍ରୀର ଆୟ ସବୁ ଖର୍ଚ୍ଚ ହୋଇଗଲା ଅବାରିତ ଭାବେ । ତଥାପି ସେ ମୁକ୍ତି ପାଇଲେ ନାହିଁ । ସରକାରୀ ସାହାଯ୍ୟ ମିଳିଲା ନାହିଁ । ସୁରେଶ ବାବୁ ଭଗ୍ନ ହୃଦୟ ହୋଇଗଲେ, ପାଦର ଗତି ଶିଥିଳ ହୋଇଗଲା । ଜୀବନର ସରାଗ ମରିଗଲା । ସୁରେଶ ବାବୁ ପ୍ରାଣହୀନ ଭଳି ମନେ ହେଲେ ।

ପତ୍ନୀ ଅଧ୍ୟାପିକା । ସେ ମଧ୍ୟ ଅସୁସ୍ଥ ହୋଇ ଉଠିଲେ । ଚଳତ୍‌ଶକ୍ତିହୀନ ଅଧ୍ୟାପିକା ତଥାପି ହେଲେ ବଦଳିର ଶିକାର ଏବଂ ତାହା ଡାକି ଆଣିଲା ତାଙ୍କର ମୃତ୍ୟୁକୁ । ଅକାଳରେ, ହଠାତ୍ ସୁରେଶବାବୁ ଭାବିଥିଲେ ସେ ଆଗ ଯିବେ, ସ୍ତ୍ରୀ ଯିବେ ପରେ । କିନ୍ତୁ ସ୍ତ୍ରୀଙ୍କୁ ଯେ ହଠାତ୍ ଯିବାକୁ ପଡ଼ିବ ଏ କଥା ସେ ଭାବି ପାରି ନ ଥିଲେ । ଆର୍ଥିକ ଅବସ୍ଥା ଶୋଚନୀୟ ହୋଇ ଯାଇଥିଲା । ନିଜେ ଅସୁସ୍ଥ, ସ୍ତ୍ରୀ ଅସୁସ୍ଥ, ପିଲାମାନେ କେହି ଘର ସମ୍ଭାଳିବାକୁ ସକ୍ଷମ ନୁହନ୍ତି । ପାରିବାର ହୋଇ ପାରି ନାହାନ୍ତି, ଘରର ଅବସ୍ଥା ସାଂଘାତିକ । ହଠାତ୍ ସ୍ତ୍ରୀଙ୍କର ପରଲୋକ । ତାଙ୍କୁ ବିପର୍ଯ୍ୟସ୍ତ କରିଦେଲା ଏଇ ଘଟଣା । ସରକାର ବର୍ତ୍ତମାନ ଗ୍ରୁପ ଇନ୍‌ସୁରାନ୍ସ କରିଛନ୍ତି । ସେ ନିୟମ ଅନୁସାରେ ଜଣେ ଲୋକ ମରିଗଲେ ତାର ଅନ୍ତ୍ୟେଷ୍ଟିକ୍ରିୟା ପାଇଁ ମଧ୍ୟ ଅର୍ଥ ସାହାଯ୍ୟ ମିଳେ ତୁରନ୍ତ । ଶୁଦ୍ଧିକ୍ରିୟା ପାଇଁ ମଧ୍ୟ ଅର୍ଥ ସାହାଯ୍ୟ ମିଳେ ତୁରନ୍ତ । କିନ୍ତୁ ସୁରେଶ ବାବୁ ଦୌଡ଼ି ଦୌଡ଼ି କିଛି ପାଇଲେ ନାହିଁ । ସ୍ତ୍ରୀଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଠାରୁ ଆରମ୍ଭ କରି ନିଜ ଅନ୍ତ୍ୟେଷ୍ଟିକ୍ରିୟା ପର୍ଯ୍ୟନ୍ତ । ସେ ଖାଲି ଦୌଡ଼ିଲେ ଏ ଅଫିସରୁ ସେ ଅଫିସ । ସ୍ତ୍ରୀଙ୍କର ଜୀବନବୀମାର ଟଙ୍କା ମଧ୍ୟ ପାଇଲେ ନାହିଁ ନିଜ ମୃତ୍ୟୁ ପର୍ଯ୍ୟନ୍ତ । ଭାଗ୍ୟର କି କ୍ରୁର ପରିହାସ । ଏତେ ବନ୍ଧୁ ଗୋଷ୍ଠୀ, ଏତେ ଲୋକଙ୍କ ସହିତ ସମ୍ପର୍କ, ତଥାପି ଯେଉଁ ଟଙ୍କା ଶବଦାହ ପାଇଁ ମିଳିବାର କଥା, ସ୍ତ୍ରୀଙ୍କର ମୃତ୍ୟୁ ପରେ ସେଇ ଟଙ୍କା ନିଜ ମୃତ୍ୟୁ ପର୍ଯ୍ୟନ୍ତ ମଧ୍ୟ ସେ ପାଇଲେ

ନାହିଁ । କଲେଜରେ ଟଙ୍କା ନାହିଁ, ବଜେଟରେ ବ୍ୟବସ୍ଥା ନାହିଁ, ଦସ୍ତଖତ ମିଳୁନାହିଁ । ସେ ଏ କଲେଜରେ ଅଧ୍ୟାପକ ଥିଲେ ବୋଲି ସାର୍ଟିଫିକେଟ୍ ନାହିଁ ଇତ୍ୟାଦି ଆଳରେ ସ୍ତ୍ରୀଙ୍କର ଅନ୍ତ୍ୟେଷ୍ଟିକ୍ରିୟା ବା ଶୁଦ୍ଧିକ୍ରିୟାର ଅର୍ଥ ମିଳିଲା ନାହିଁ । ଏହା ପୁଣି ତାଙ୍କର ପ୍ରାପ୍ୟ ଏବଂ ଏହା ଏକ ଇନସୁରାନ୍ସ । ଏଇ ହେଉଛି ସରକାରୀ ନୀତିର କ୍ରୁର ପରିଣତି । ସମସ୍ତେ 'ଆହା' କଲେ ସମବେଦନା ଜଣାଇଲେ କିନ୍ତୁ ସାହାଯ୍ୟ କଲେ ନାହିଁ କେହି ।

ସୁରେଶ ବାବୁ ଦୌଡ଼ିଲେ , ଏ ଅଫିସରୁ ସେ ଅଫିସ, କଟକରୁ ଭୁବନେଶ୍ୱର, କିରାଣୀ ଠାରୁ ଅଫିସର ମନ୍ତ୍ରୀ ପର୍ଯ୍ୟନ୍ତ । ବାଧ ହୋଇ ଖାଇଲେ ଏ ହୋଟେଲ, ସେ ହୋଟେଲରେ । ପରିଣତି ଯାହା ହେବାର କଥା ତାହା ହିଁ ହେଲା । ସୁରେଶ ବାବୁ ମସ୍ତିଷ୍କରୁ ରକ୍ତସ୍ରାବ ରୋଗରେ ପୀଡ଼ିତ ହେଲେ । ଅଜ୍ଞାନ ଅବସ୍ଥାରେ ହିଁ ତାଙ୍କର ପରଲୋକ ହୋଇଗଲା, ଡାକ୍ତରଖାନାରେ, କରୁଣ ପରିସ୍ଥିତିରେ ।

ଏକ ସୃଜନଶୀଳ ସଂଗଠକ, ଏକ ସମ୍ବେଦନଶୀଳ ମଣିଷ, ଏକ ଉତ୍ତମ ବନ୍ଧୁ ଏବଂ ଏକ ଭଲ ମଣିଷର ପରଲୋକ ହୋଇଗଲା ସମୟର କ୍ରୁର ପରିହାସ ଭିତରେ ।



# ଜାପାନୀକୁ ଚିଠିଟିଏ - ଶୋକର

ଜାପାନୀ,

ଆମେରିକା ଯାଇଥିଲୁ । ଖବର ସେଇଠି ପାଇଲ ନା ଯେ ବାବା ଆଉ ନାହାନ୍ତି ବୋଲି ! ବାପାଙ୍କର ମୃତ୍ୟୁ ସଂବାଦ ଖାଲି ତୁମକୁ ଚକିତ କରିନାହିଁ, ଅମ ସମସ୍ତଙ୍କୁ ଚକିତ କରିଛି । ବୟସ ଅବଶ୍ୟ ଅତିକ୍ରାନ୍ତ ହେଇଥିଲା । କିନ୍ତୁ ବାପା ସୁଧୀର ଚନ୍ଦ୍ରଙ୍କର ଫୁଟ୍‌ବଲ ଖେଳ ତାଙ୍କୁ ୮୭ ବର୍ଷ ବୟସ ପର୍ଯ୍ୟନ୍ତ ଜୀବିତ କରି ରଖିପାରିଥିଲା । ତମେମାନେ ସେ ଖେଳ ଦେଖିନାହଁ । ମୁଁ ଦେଖିଚି ଶେଷ ତାର୍ଯ୍ୟକ ସେ ଖେଳର । କିନ୍ତୁ ପୁରାତନ ଖେଳାଳୀ ଓ ବୁଢ଼ା ବୁଢ଼ା ଲୋକେ ଆଜି ପର୍ଯ୍ୟନ୍ତ ମନେରଖିଛନ୍ତି 'ବାୟାବାବୁ'ଙ୍କ ଖେଳ । ରେଭେନ୍ସା କଲେଜିଏଟ୍‌ରେ ତାଙ୍କର ପାଠପଢ଼ା ଏବଂ ଖେଳ ଉଭୟ ଆରମ୍ଭ ହୁଏ । ପରେ ରେଭେନ୍ସା କଲେଜରେ ପଢ଼ିଲାବେଳେ ସେ ଖେଳ ପାଇଁ ପ୍ରତିଷ୍ଠା ଲାଭ କରନ୍ତି । କିନ୍ତୁ ସେତିକି ବେଳେ ତାଙ୍କର ପାଠପଢ଼ା ବନ୍ଦ ହୋଇଯାଏ ଆଉ ଏକ ଖେଳର ଡାକରାରେ । ସ୍ୱାଧୀନତା ସଂଗ୍ରାମର ଦୁନ୍ଦୁଭି ବାଜୁଛି । ସଂଗ୍ରାମର ମଇଦାନରେ ସେ କ୍ରୀଡ଼ାର ଆହ୍ବାନ । ଖେଳ ଓ ବହି ଉଭୟରେ ଡୋରି ବନ୍ଧା ହେଲା ତାଙ୍କର, ଇରମର ପ୍ରସିଦ୍ଧ ଲୁଣମରା ସତ୍ୟାଗ୍ରହରେ ।

ଇମିତି ବାପାଟିଏ ପାଇବା କଠିନ । ପଚାଶ ବର୍ଷ ବୟସ ପର୍ଯ୍ୟନ୍ତ ସେ ଫୁଟବଲ ଖେଳୁଥିଲେ ଏବଂ କଲିକତା ଫୁଟବଲ ପ୍ରତିଯୋଗିତାରେ ଦକ୍ଷିଣ ପୂର୍ବ ରେଲୱାଇର ପ୍ରତିନିଧିତ୍ୱ କରିଥିଲେ ବହୁଦିନ । ବଂଗଳା ହେଉଛି ଫୁଟବଲ୍ ଖେଳର ସର୍ବଶ୍ରେଷ୍ଠ ପୀଠ । ସେଇଠି ସ୍ଥାନ ପାଇବା ଏକ ଗୌରବର ବସ୍ତୁ ।

ତାଙ୍କର ଖ୍ୟାତି, ତାଙ୍କର ପାରଙ୍ଗମତା ଏତିକିରେ ସୀମିତ ନ ଥିଲା । ୧୯୩୭ ମସିହାରେ ମାତ୍ର ୨୩ ବର୍ଷ ବୟସରେ ସେ ଏକ ଦୋରସ୍ତ ନାଟକ ଦଳ ସଂଗଠିତ କରିଥିଲେ ଏବଂ ଜିଲ୍ଲା ପରେ ଜିଲ୍ଲା, ସହର ପରେ ସହର, ଗ୍ରାମ ପରେ ଗ୍ରାମ ତାଙ୍କର ନାଟକ ଦଳର ଯାତ୍ରାରେ କଟୁଥିଲା । ସେ ନାଟ୍ୟକାର, ନିର୍ଦ୍ଦେଶକ ଏବଂ ଅଭିନେତା ମଧ । ଏଭଳି ପାରଦର୍ଶିତା କେତେକଙ୍କର ଭାଗ୍ୟରେ ଜୁଟେ ? ସେ ଗୀତ ଗାଇ ପାରୁଥିଲେ ଏବଂ ବାଜା ମଧ ବଜାଇପାରୁଥିଲେ । ପ୍ରତିଭାଶାଳୀ ଏଇ ସଂଗୀତଜ୍ଞ ଆଠୋଟି ପ୍ରକାରର ବାଦ୍ୟଯନ୍ତ୍ର ବଜାଇବାରେ ନିପୁଣତା ଲାଭ କରିଥିଲେ । ମୟୂରଭଂଜର ଛଉନାଚ ଓଡ଼ିଶାର ଗୌରବ । ଏଇ ନୃତ୍ୟ ଲୋପ ପାଇଯାଉଥିଲା, ରାଜ ପୃଷ୍ଠପୋଷକତାର ଅଭାବ ଯୋଗୁଁ । ସୁଧୀରଚନ୍ଦ୍ର ଏହାକୁ ପୁନରୁଦ୍ଧାର କରିଥିଲେ, ବହୁକଷ୍ଟରେ । ପ୍ରତିବଂଧକ ଆଗରେ ଥିଲା ଅନେକ । କିନ୍ତୁ ସୁଧୀର ଚନ୍ଦ୍ର ତାକୁ ଖାତିର କରି ନ ଥିଲେ । ଗୋଡ଼ ଯେପରି ଦକ୍ଷ ଥିଲା ଫୁଟବଲ ଖେଳ

ପାଇଁ, ହାତ ସେଇପରି ଥିଲା ବାଦ୍ୟଯନ୍ତ୍ର ପାଇଁ, ଦେହ ଆଉ ମୁହଁ ଥିଲା ଅଭିନୟ ପାଇଁ ।

ପ୍ରତିଭାବାନ ତମର ବାପା ଯେଉଁ ଯଶର ଅଧିକାରୀ ତମେ, ତମର ଭାଇ ଆଉ ଭଉଣୀ ଶୈଳଜା କୁମାରୀ ଅପରାଜିତା ସେଇ ପ୍ରତିଭାରୁ କିଛିତ ପାଇଚ । ଭାଇ ଭଉଣୀ ଦୁହେଁ ଗଳ୍ପ ଉପନ୍ୟାସ ଲେଖିବାରେ ଯଶସ୍ୱୀ ମଧ । ଆର ଭାଇଟି ତ ଇସ୍ପାତ କାରଖାନରେ ଲୌହପିଣ୍ଡର ତରଳା ଭିତରେ ଦେଖୁଚି ସ୍ୱପ୍ନ ।

ବାପା ନାହାନ୍ତି, କେହି ରହିବେ ନାହିଁ, ଯିବା ତ ଅଲଂଘନୀୟ । ତେଣୁ ଶୋକ କରିବ କାହିଁକି ? ବାପା ତୁମମାନଙ୍କୁ ମଣିଷ କରି ଯାଇଛନ୍ତି । ସଂସାରରେ ତାଙ୍କର କାମ ସରିଯାଇଛି । ତାଙ୍କ ଗୋଡ଼ରେ ଆଉ ବଳ ବୋଲ ମାନିବ ନାହିଁ । ହାତର କଂପନରେ ମଧୁର ମୂର୍ଚ୍ଛନା ତୋଳି ହେବ ନାହିଁ । ତେଣୁ ରହିବେ କାହିଁକି ?

କିନ୍ତୁ ସେ ଛାଡ଼ି ଯାଇଚନ୍ତି ଏକ ବିରାଟ ପରମ୍ପରା, ଏକ ବିରାଟ ଐତିହ୍ୟ । ତାହାହିଁ ଆମ ସମସ୍ତଙ୍କ ପାଇଁ ଉଜ୍ଜ୍ୱଳି ରହିବ ।

କେବେ ଫେରୁଚ ? ଆସି ଦେଖିବ କିପରି ସେ ଫେରି ଯାଇଚନ୍ତି ମାଟିକୁ, ଯେଉଁ ମାଟିରୁ ସେ ଜନ୍ମ । ଯେଉଁ ମାଟିରେ ତାଙ୍କର ଖେଳ । ତାଙ୍କୁ ଆମର ସହସ୍ର ପ୍ରଣାମ ।



# ପ୍ରତିଭାଶାଳିନୀର ପରଲୋକ

**ବା**ରବାଟି ଷ୍ଟାଡିୟମର ସବୁଜ ପ୍ରାନ୍ତର । ତତ୍‌କାଳୀନ ସୋଭିଏତ୍ ୟୁନିୟନ୍‌ର କଳାକାର ଦଳ ନୃତ୍ୟ ପରିବେଷଣ କରୁଛନ୍ତି । ଭାରତ ସୋଭିଏତ୍ ମୈତ୍ରୀ ସଂସଦର ଜାତୀୟ ସମ୍ମିଳନୀ । ସମଗ୍ର ବାରବାଟୀ ଷ୍ଟାଡିୟମ ଦର୍ଶକମାନଙ୍କ ଦ୍ୱାରା ଭରପୁର । ସୋଭିଏତ ଶିଳ୍ପୀ ମାନଙ୍କର କାର୍ଯ୍ୟକ୍ରମ ସରିଲା । ବର୍ତ୍ତମାନ ଉତ୍କଳୀୟ ଶିଳ୍ପୀ ମାନଙ୍କର ପାଳି । ମଂଚ ଉପରକୁ ଉଠିଲେ ଜଣେ ତରୁଣୀ, ଶିଳ୍ପୀ, ତାଙ୍କର ପାଦର ତାଳେ ତାଳେ ମର୍ମରିତ ହୋଇ ଉଠିଲା ଚତୁଃପାର୍ଶ୍ୱ, ପ୍ରତିଭାଶାଳିନୀ ଓଠରେ ଫୁଟୁଥିବା ଲାସ୍ୟ ବିମୋହିତ କଲା ସମସ୍ତଙ୍କୁ । ନୂପୁରର ସିଞ୍ଜିର ଧ୍ୱନିରେ ରଣିତ ହୋଇ ଉଠିଲା ନଭୋମଣ୍ଡଳ । ଦର୍ଶକ ମଣ୍ଡଳୀ ବିମୁଗ୍ଧ ହୋଇ ଉଠୁଥିଲେ । ଏଇ ଲାସ୍ୟମୟୀ ନାରୀ ଅଙ୍ଗଭଙ୍ଗୀରେ ତିଆରି କରିଥିଲା ଏକ ସ୍ୱପ୍ନିଳ ପରିସ୍ଥିତି । ଉପସ୍ଥିତ ଥିଲେ ସମାବେଶରେ ବୃଦ୍ଧ କୂଟନୀତିଜ୍ଞ କେ.ପି.ଏସ୍. ମେନନ୍ ; ସେ କେବଳ ଭାରତ ସୋଭିଏତ୍ ମୈତ୍ରୀ ସମିତିର ସଭାପତି ନ ଥିଲେ, ଥିଲେ ମଧ୍ୟ ସଂଗୀତ ନାଟକ ଏକାଡ଼େମୀର ସଭାପତି ।

" ଯେଉଁ ସୁନ୍ଦରୀ ତରୁଣୀ ଆଜି ଏଇ ମଞ୍ଚରେ ନୃତ୍ୟ ପ୍ରଦର୍ଶନ କଲେ, ସେ ମୋର ଚିନ୍ତାକୁ ବିଦଗ୍ଧ କରିଦେଲେ ଏବଂ ମୁଁ ସ୍ୱୀକାର କରୁଛି ଯେ ମୋର ଯଦି ବୟସ କୋଡ଼ିଏ ବର୍ଷରୁ କମ ହୋଇଥାନ୍ତା ତାହେଲେ ସେ ମୋର ନିଦ୍ରାରେ ମଧ୍ୟ ବ୍ୟାଘାତର କାରଣ ହୋଇଥାନ୍ତେ ।"

ସମଗ୍ର ବାରବାଟୀ ଷ୍ଟାଡିୟମ୍ କମ୍ପି ଉଠିଲା କରତାଳି ଧ୍ୱନିରେ । ପାଖରେ ବସିଥିବା କନ୍ୟା ଶ୍ରୀମତୀ ନାୟାର ହସି ହସି ବେଦମ୍ । କିନ୍ତୁ ବକ୍ତା ନିର୍ବିକାର, ନିର୍ଲିପ୍ତ ।

ସେଇବର୍ଷ ସୋଭିଏତ୍ ୟୁନିୟନକୁ ଯିବ ଏକ ପ୍ରତିନିଧି ଦଳ । କେ.ପି.ଏସ. ମେନନ୍ ନିଷ୍ପତ୍ତି କଲେ ଯେ ସେଇ ନର୍ତ୍ତକୀ ସେଥିରେ ସାମିଲ ହେବେ । କିନ୍ତୁ ସମ୍ଭବ ହେବ କିପରି ? ଜଣେ ଓଡ଼ିଶୀ ନର୍ତ୍ତକୀ ସହିତ ଜଣେ ସଙ୍ଗୀତଜ୍ଞ ଜଣେ ବାଦକ, ଜଣେ ଗୁରୁ ଯିବା ଆବଶ୍ୟକ । ତାହେଲେ ସେମାନେ ସମସ୍ତେ ଯିବେ । ଗୁରୁ କେଳୁଚରଣ, ସଙ୍ଗୀତଜ୍ଞ ରଘୁନାଥ ଏବଂ ସେ ନର୍ତ୍ତକୀ ଗଲେ ସୋଭିଏତ୍ ୟୁନିୟନ । ସେମାନଙ୍କ ପାଇଁ ବିପୁଳ ଜନ ସମ୍ବର୍ଦ୍ଧନା ଅପେକ୍ଷା କରିଥିଲା, ଅପେକ୍ଷା କରିଥିଲେ ସେମାନଙ୍କର ଗୁଣମୁଗ୍ଧ ଦର୍ଶକବୃନ୍ଦ ।

ସେଇ ପ୍ରତିଭାଶାଳିନୀ ନର୍ତ୍ତକୀ ଶ୍ରୀମତୀ ସଂଯୁକ୍ତା ପାଣିଗ୍ରାହୀ ଆଉ ନାହାନ୍ତି ।

କ୍ୟାନସର ରୋଗରେ ସେ ଆକ୍ରାନ୍ତ ହୋଇଥିଲେ ଗଲା କିଛି ଦିନ ହେଲା । ଦେହ କ୍ଷୟ ହୋଇଯାଉଥିଲା । ସେ କିନ୍ତୁ ତାହା ଜାଣି ନ ଥିଲେ । ତାହା ତାଙ୍କୁ ସ୍ୱାଭାବିକ କାରଣରୁ ଜଣାଇ ଦିଆ ଯାଇ ନ ଥିଲା । ତାଙ୍କ ଦେହ କଥା ପଚାରିଲେ ସେ ବିସ୍ମିତ ହୋଇ ପଚାରୁଥିଲେ, କାହିଁକି, ମୋର କଣ ହୋଇଛି କି ?

ତାଙ୍କୁ ଦେଖିବାକୁ ଯାଇଥିଲି । ଲାସ୍ୟ ମୁଖର ମୁହଁ ଉପରେ ହସର ଏକ ମ୍ଳାନ ରେଖା ଉକୁଟି ମିଳେଇ ଯାଇଥିଲା । ମୋର କହିବାର କିଛି ନ ଥିଲା । ଯାହା କହିବାର ଥିଲା ତ କହି ପାରିଲି ନାହିଁ ।

ସଂଯୁ ସାଙ୍ଗରେ ତା ପରେ ଦେଖା ହୋଇଛି ଅନେକ ଥର । ଦେଖା ହେଲେ କହେ, ଭାଇ ପୃଥିବୀର ବହୁ ଦେଶକୁ ତା ପରେ ଯାଇଛି । ଅନେକ ଅର୍ଥ ଉପାର୍ଜନ କରିଛି । କିନ୍ତୁ ସୋଭିଏତ୍ ୟୁନିୟନ୍‌ର ଜନ ସମ୍ବର୍ଦ୍ଧନା କେଉଁଠି ମିଳିନାହିଁ କି ମିଳିବ ନାହିଁ । ସଂଯୁ ବୁଲିଛି ସାରା ପୃଥିବୀରେ । ଓଡ଼ିଶୀ ନୃତ୍ୟକୁ ଯେଉଁମାନେ ଆନ୍ତର୍ଜାତିକ କରିଛନ୍ତି, ସେମାନଙ୍କ ମଧ୍ୟରେ ସଂଯୁ ଅନ୍ୟତମ ଅଗ୍ରଗାମୀ । ସେଦିନ ଦେଖୁଥିଲି ' ମହାଭାରତ ' ତାରି ନୃତ୍ୟରେ । ଗୁରୁ କେଳୁଚରଣ ପରିଣତ ବୟସରେ ମଧ ନୃତ୍ୟରେ ଯେପରି ପାରଙ୍ଗମ, ନିର୍ଦ୍ଦେଶନାରେ ବି ସେଇପରି ପାରଂଗମ । ସମଗ୍ର ଦର୍ଶକ ମଣ୍ଡଳୀ ମୁଗ୍ଧ, ବିସ୍ମୟାଭିଭୂତ ହୋଇ ଦେଖୁଛନ୍ତି ନୃତ୍ୟନାଟିକା । ସରିଲା ନୃତ୍ୟନାଟିକା । ସଂଯୁ ଆସି ପ୍ରଣାମ କଲା । ତାର ଭାଲପଟରେ ସ୍ନେହର ଏକ ଚୁମା ଆଙ୍କିଦେଇ କହିଲି, ଆହୁରି ଯଶସ୍ୱୀ ହୁଅ ।

ଯଶ ରେ ସେ ଆଣିଛି ପ୍ରକୃତରେ ଆମ ରାଜ୍ୟ ପାଇଁ ଆମ ଦେଶ ପାଇଁ, ଓଡ଼ିଶୀ ନୃତ୍ୟ ପାଇଁ । ତାର ନୃତ୍ୟକୁ ସଂକ୍ଷିପ୍ତ କରିବା ପାଇଁ ବିହାରର ମୁଖ୍ୟମନ୍ତ୍ରୀ ଲାଲୁଙ୍କ ନିର୍ଦ୍ଦେଶ ବିଜୁ ପଟ୍ଟନାୟକଙ୍କୁ ଉତ୍‌କ୍ଷିପ୍ତ କରିଛି । ଓଡ଼ିଶାବାସୀଙ୍କୁ ବିକ୍ଷୁବ୍ଧ କରିଛି ।

ସଂଯୁ ଯାଉଛି ଇଟାଲି । ହଠାତ୍ ବାଟରେ ଦେଖାହୁଏ । କଣ, ପୁଣି ଏକ ଯାତ୍ରାର ଉପକଣ୍ଠରେ ସଂଯୁ ? ଜୀବନର ମହାଯାତ୍ରା ପୂର୍ବରୁ ଆଉ ଇମିତି କେତେଟା ଯାତ୍ରା ସାରିଦିଏ ମ ଭାଇ, ତମେ ଆଶୀର୍ବାଦ କର । ସଂଯୁକୁ ଆଶୀର୍ବାଦ କଲି ।

ପ୍ରତିଭାଶାଳିନୀ ଏଇ ନାରୀ ଶୋଇ ପଡ଼ିଛି ଶେଯ ଉପରେ । କେତେ ମୃତ୍ୟୁର ଅଭିନୟ ସେ କରିନାହିଁ ଜୀବନରେ ? ପୁଣି ତ ଉଠିଛି , ଆଜି କଣ ସେ ଉଠିବ ନାହିଁ ? ଏତେ ଅସୁସ୍ଥ ଯେ ଯିବା ସମ୍ଭବ ହେଉ ନାହିଁ, ତାର ଶବାଧାର ଉପରେ ଗୋଟିଏ ପୁଷ୍ପ ଦେବା ପାଇଁ ଗୋଟିଏ ଧାର ଲୁହ ଢ଼ାଳିବା ପାଇଁ । ମୋର ବଳକା ଆୟୁଷକୁ ନେଇ ସଂଯୁ ଉଠନ୍ତା ନାହିଁ ? ପୁଣି ତା ପାଦର ନିକ୍କଣ ଧ୍ୱନିରେ ଝଂକୃତ ହୋଇ ଉଠନ୍ତା ଏଇ ବାୟୁମଣ୍ଡଳ, ଆକାଶ, ପୃଥିବୀ ।

ନା, ସେ ଆଉ ଫେରିବ ନାହିଁ କି ଉଠିବ ନାହିଁ, କିନ୍ତୁ ସେ ତ ସ୍ମୃତ ହୋଇ ରହିବ ଚିରକାଳ ଆମମାନଙ୍କର ସ୍ମୃତିରେ । ଲିଭିବ କେମିତି ? ସେ ତ ଲିଭିବାର ନୁହେଁ ।



# ସାବିତ୍ରୀ - ତମର କଲମଟା... ?

ସାବିତ୍ରୀ ମିଶ୍ରଙ୍କର ପରଲୋକ ହୋଇଯିବା ସଂବାଦ । ସେଥିପାଇଁ ମାନସିକ ପ୍ରସ୍ତୁତି ଅନେକ ଦିନରୁ । ତଥାପି ଚମକ ଲାଗିଲା । କ୍ୟାନସର ରୋଗରେ ଆକ୍ରାନ୍ତ ଥିଲେ ସେ । ଜୀବନର ଛାଇ ଲମ୍ବ ହୋଇ ଯାଉଥିଲା । ଜୀବନର ଗୋଧୂଳିରେ ପହଞ୍ଚି ଯାଇଥିଲା ଏଇ ସରଳ, ନିର୍ମଳ ହୃଦୟା ନାରୀଟି । ସ୍ୱାମୀ ରାମଚନ୍ଦ୍ର ମିଶ୍ର ବାହୁଡି ସାରିଛନ୍ତି । ଝିଅ ବିବାହ କରି ସାରିଛି ଜର୍ମାନୀରେ ଶିକ୍ଷା ପରେ । ପୁଅମାନେ ବଡ଼ ହେଲେଣି । ସେ ଆଉ ରହନ୍ତେ କାହିଁକି ।

କିନ୍ତୁ ବୟସ ତ ହୋଇ ନ ଥିଲା । ଶିକ୍ଷକତା ଚାଲିଥଲା ସେକେଣ୍ଡାରୀ ବୋର୍ଡ ସ୍କୁଲରେ । ଆପଣାର ସାରଲ୍ୟ, ନିର୍ମାୟା ପ୍ରକୃତିରେ ସେ ସମସ୍ତଙ୍କ ପ୍ରିୟପାତ୍ର ହୋଇଥିଲେ । କ'ଣ ଦରକାର ପଡ଼ିଲା ତାଙ୍କର ଯିବା ପାଇଁ ।

ସାବିତ୍ରୀ ବିବାହ କରିଥିଲେ ପ୍ରସିଦ୍ଧ କମ୍ୟୁନିଷ୍ଟ ନେତା ରାମଚନ୍ଦ୍ର ମିଶ୍ରଙ୍କୁ । ସାବିତ୍ରୀ ଆମର ସମସାମୟିକ । ମୋ ଠାରୁ ବର୍ଷେ ତଳେ ପାଠ ପଢୁଥିଲା । ଏତେ ସରଳ ଯେ ଆମେ ତାକୁ ବୋକୀ ବୋଲି କହୁଥିଲୁ । ସେ ହସିଦିଏ । ସେଇ ସରଳିଆ, ପିଲାଳିଆ ହସ । ଜଟିଳତା ତାକୁ ସ୍ପର୍ଶ କରିନାହିଁ ।

ଏକା ସାଂଗରେ କାମ କରୁ, ଛାତ୍ର ସଂଘର କାମ, କଲେଜ ୟୁନିୟନ କାମ, ପାର୍ଟି କାମ, ଟ୍ରେଡ଼ ୟୁନିୟନ କାମ । ସାବିତ୍ରୀର ସ୍ପାର୍କ ବା ଝଲକ ନ ଥିଲା । କିନ୍ତୁ ଥିଲା ନିଷ୍ଠା । କାମ କରି ବାହାଦୁରୀ ନେଇପାରେ ନାହିଁ । ଖବର କାଗଜକୁ ବିବୃତି ଦେଇ ପାରେ ନାହିଁ । କାମ କରିଚାଲ, ପବ୍ଲିସିଟିରୁ କ'ଣ ମିଳିବ ? ସେ ଲେଖେ ଅନ୍ୟ ମାନଙ୍କ ପାଇଁ ସଂବାଦ, ଖବରକାଗଜ ପାଇଁ । ନିଜେ ରହିଯାଏ ଅନ୍ତରାଳରେ ।

ଚାଲିଚାଲି ବୁଲୁ । ରାଜରାସ୍ତାରେ, ଗଳି ବସ୍ତିରେ । ରିକ୍ସା, କରିବା ପାଇଁ ଯଥେଷ୍ଟ ପଇସା ନାହିଁ । ପ୍ରହ୍ଲାଦ ସେଠୀ, ଶିବାଜୀ ପଟ୍ଟନାୟକ, ନନ୍ଦିନୀ ଶତପଥୀ, କଲ୍ୟାଣ ମଜୁମଦାର.... ଇମିତି କେତେ । ବାଟରେ କେଉଁଠି ଖାଇଦେଲେ ଚଳିବ । ପଥିକବନ୍ଧୁ ଭୋଜନାଳୟ, ଆମ ଗାଁ ହେଟେଲ୍, ଦୁର୍ଗାବତୀ ହୋଟେଲ... କିଛି ନ ହେଲେ ପହଞ୍ଚି ଯାଅ ବସି ଅପା (ନିରୂପମା ରଥ) ଘରେ । ସେତେବେଳେ ତାଙ୍କ ଅବସ୍ଥା (ଆର୍ଥିକ ଅବସ୍ଥା) ଭଲ ନୁହେଁ । ଗଂଗାଧର ବାବୁ ଓକିଲ ହେବାକୁ ବାକି ଅଛି । ବସି ଅପା ମେଡିକାଲରେ ଛାତ୍ରୀ । ହେଲେ କ'ଣ ହେଲା ? ଯାହା ରୋଷେଇ ହେଇଛି ତାକୁଇ ବାଣ୍ଟି ବଢ଼େଇ ଦିଅନ୍ତି । ବସି ଅପା ଗେହ୍ଲାରେ ଥାଉଁସି ଦେଇ କହେ । ଖାଇଦେବା, ଯାହା ଅଛି ! ପରେ ପ୍ରତିଷ୍ଠିତ ଆଇନ ଜୀବୀ ଗଂଗାଧର ରଥ ଏବଂ ପ୍ରସିଦ୍ଧ ଲେଡ଼ି ଡାକ୍ତର ନିରୂପମା ରଥଙ୍କର ଆତିଥ୍ୟ ମିଳିଛି । କିନ୍ତୁ ସେଦିନର ସହଯୋଦ୍ଧୃତ୍ୱରେ ରଂଜିତ ଖାଦ୍ୟର ସ୍ୱାଦୁ ଆଜି ବି ମନେ ପଡ଼େ ।

ସାବିତ୍ରୀ ବିଭା ହୋଇଥାଏ ପ୍ରସିଦ୍ଧ ସାମ୍ୟବାଦୀ ନେତା ରାମଚନ୍ଦ୍ର ମିଶ୍ରଙ୍କୁ । ରାମବାବୁ ତାଙ୍କୁ ସଉକ ଦେଇଥିଲେ ଏକ ଫାଉଣ୍ଟେନ୍ ପେନ୍ । ସେଇ କଲମଟି ମୋତେ ସାବିତ୍ରୀ ଦେଇଥିଲେ ଲେଖିବାକୁ । ମୁଁ ଲେଖି ମୋର କାମିଜ ତଳ ଗେଞ୍ଜିରେ ସେଇଟିକୁ ମାରିଥିଲି । ଦୈବାତ୍ ସେଇ କଲମଟି ଖସି ଯାଇଥିଲା, ରହି ଯାଇଥିଲା କ୍ୟାପ୍‌ଟି ମାତ୍ର । ମୁଁ ଲଜ୍ଜାରେ ଝାଉଁଳି ପଡ଼ିଥିଲି । କହିଥିଲି କଲମଟି ଖୋଜି ଫେରାଇ ଦେବାକୁ । କିନ୍ତୁ ଆଉ ତ ଫେରାଇ ପାରିନାହିଁ । ସେଇଟି ରହିଗଲା ମୋ ଉପରେ ଦାୟାହୋଇ । ସାବିତ୍ରୀ ଆଜି ଚାଲିଗଲା । ସେ କଲମ କିନ୍ତୁ ରହିଗଲା ମୋ ପାଖରେ । ଜୀବନ ତମାମ ସେ କଥା ମନେ ରହିବ । କେବେ ଫେରାଇବି କହି ପାରିବି ନାହିଁ ।

ସାବିତ୍ରୀର ରାଜନୈତିକ ଜୀବନ ଥିଲା କଷଣମୟ । ଦାରିଦ୍ର୍ୟ, ଅଭାବ, କାରାବାସ, ରାମଚନ୍ଦ୍ର ମିଶ୍ରଙ୍କ ଜେଲଖାନାରେ ଅନଶନ ସବୁ ମିଶି ତାର ଜୀବନକୁ ପଥର କରି ଦେଇଥିଲା । ସାବିତ୍ରୀ କିନ୍ତୁ ହସେ ତାରି ଭିତରେ । ସେ ହସ ଏକ ସରଳ, ଗାଉଁଲି ହସ, ନିହାତି ରଷ୍ଟିକ । କିନ୍ତୁ କି ଅନାବିଳ !

ରାଜନୈତିକ ଜୀବନରେ ସ୍ୱାମୀ ଓ ସ୍ତ୍ରୀ ଉଭୟ ଏକ ବୈପ୍ଳବିକ ଦଳର ସଦାବେଳିଆ କର୍ମୀ ହୋଇ ରହିବା କଠିନ । ଅନେକ ଦୁଃଖ କଷଣର ରାତି ପାହିଲା । ପରେ ସେ ସେକେଣ୍ଡାରୀ ବୋର୍ଡ ହାଇସ୍କୁଲରେ ଶିକ୍ଷକତା କରିବାକୁ ବାଧ ହେଲେ । ସରଳ ମଣିଷ, ବ୍ୟବହାର ସେଇପରି । ସମସ୍ତଙ୍କର ପ୍ରିୟ । କାହାକୁ ବାଧିଲା ପରି କଥା କହିବେ ନାହିଁ । ଇମିତି କହିବେ ଯେ ବିରୋଧ କରୁଥିଲେ ମଧ ସେ ପ୍ରତିବାଦର କୌଣସି ଅସୂୟା ନାହିଁ ।

ସମୟ ଅତିକ୍ରାନ୍ତ ହୋଇ ଚାଲିଲା । ଝିଅ ଗଲା ଜର୍ମାନ ପଢ଼ିବା ପାଇଁ । ଆପଣାର ଏକ ସହପାଠୀ ସହିତ ବିବାହ ବନ୍ଧନରେ ଆବଦ୍ଧ ହେଲା । ସାବିତ୍ରୀ କିନ୍ତୁ ନିର୍ବିକାର । ଆନନ୍ଦରେ ହସେ, ଦୁଃଖରେ ବି ହସେ ।

ସ୍ୱାମୀ, ସହଯୋଦ୍ଧା ରାମଚନ୍ଦ୍ର ମିଶ୍ର ଅସୁସ୍ଥ ହେଲେ । ମୃତ୍ୟୁ ମୁଖରୁ ବଂଚିଗଲେ ସତ୍ୟ କିନ୍ତୁ ମୃତ୍ୟୁର ପଦଧ୍ୱନି ଶୁଭିଲା । ରାମବାବୁ ହଠାତ୍ ବିଦାୟ ନେଇଗଲେ, ସାବିତ୍ରୀ ଭାଂଗି ପଡ଼ିଲା, ରୋଗ ତାର ବଢ଼ିଗଲା ।

ତା ପରେ ?

ତାପରେ ସେଇ ମହା ସନ୍ଧିକ୍ଷଣ ଉପସ୍ଥିତ । ସାବିତ୍ରୀ ବିଦାୟ ନେଇଗଲା ସଂସାରରୁ । ରାଜନୈତିକ କର୍ମୀ, ଶିକ୍ଷକ, ଛାତ୍ର, ଶ୍ରମିକ, ବହୁ ବୁଦ୍ଧିଜୀବୀ ଆସିଥିଲେ କାଲି ଏଇ ନାରୀଟିକୁ ବିଦାୟ ଦେବା ପାଇଁ, ଶ୍ରଦ୍ଧାଞ୍ଜଳି ଦେବା ପାଇଁ ।

ଦେଇଛି, ପାଇ ନାହିଁ କିଛି, ଦେଇ ଦେଇ ସେ ମିଳାଇ ଗଲା । ସାବିତ୍ରୀ, ତମେ ତ ମୋତେ ଋଣୀ କରିଦେଇ ଗଲ । ତମ କଲମଟା ମୁଁ ଫେରାଇ ପାରିନାହିଁ । ଧାରୁଆ ହୋଇ ରହିଗଲି ମୁଁ ।



# ଶିଳ୍ପୀକୁ ଚିଠିଟିଏ

ପାଗଳା, ତାକୁ ତ ଏଇ ନାଁରେ ଆମେ ଡାକି ଆସିଚୁ । ସୌରାଷ୍ଟ୍ର ନାଁଟା ଥିଲା 'ତାର ଶିଳ୍ପୀ ଜଗତର ପରିଚୟ । ସତରେ ତ , ତମେ ସମସ୍ତଙ୍କୁ ପାଗଳା କରିଦେଇ ଚାଲିଗଲ । କିନ୍ତୁ କାହିଁକି ? ଗଲ କୁଆଡ଼େ ? ସମସ୍ତେ ସ୍ତବ୍ଧ । ଶୋକ ପ୍ରକାଶ କରିବାକୁ ବେଳ ବି ନାହିଁ । ରୋଗ ନାହିଁ କି ବୈରାଗ୍ୟ ନାହିଁ । ରାତି ନଅଟାରେ ପରା ଫୋନ କଲି କୁକୁମିନାକୁ - କାଲି ଯିବା ପୁଅକୁ ନେଇ ମାଡ୍ରାଜ । ପୁଅର ଦେହ ଭାରି ଖରାପ ତାକୁ ନେଇ ତମେ ପରା ଯିବାର କଥା ମାଡ୍ରାଜ । ତମେ କିନ୍ତୁ ଚାଲିଗଲ କୁଆଡ଼େ ? ଘରେ କୁକୁମିନା ଅପେକ୍ଷା କରିଛି । ରାତି ନଅଟାରେ ତମେ ତାକୁ ପରା ଫୋନ କରିଥିଲ ସାଙ୍ଗରେ ନେଇ ଖାଇବାକୁ ଯିବା ପାଇଁ । ଭାଇ ଚିତ୍ତରଂଜନ, ଭାଉଜ, କୁକୁମିନା ତମକୁ ଅପେକ୍ଷା କରି ବସିଛନ୍ତି । ତମେ ସେଆଡ଼େ କୁଆଡ଼େ ପଳେଇଲ ସୌରାଷ୍ଟ୍ର ? କ'ଣ ସେଠି କୌଣସି ମନ୍ ଲାଖି କୋଠାର ନକ୍ସା କରିବା ଆବଶ୍ୟକ ପଡ଼ିଲା କି ? ଇମିତି କ'ଣ କେହି ଯାଆନ୍ତି କୁଆଡ଼େ ?

ସ୍ଥାପତ୍ୟ ଶିଳ୍ପୀ ଥିଲା ପେଶା ଓ ନିଶା ଉଭୟ । ସମସ୍ତେ କହନ୍ତି ପାଗଳା । ପ୍ରକୃତରେ ପାଗଳାଟାଏ । ଡିଜାଇନ୍ କରିବାକୁ କେତେ ଯେ ସମୟ ନେବ ଠିକଣା ନାହିଁ । ତମେ ଘର ଡିଜାଇନ୍ କର । ମନଲାଖି ନ ହେଲେ ପୁଣି ଥରେ । ମନଃପୂତ ନ ହେବା ପର୍ଯ୍ୟନ୍ତ ଡିଜାଇନ୍ ପରେ ଡିଜାଇନ୍ । ନକ୍ସା ପରେ ନକ୍ସା । ତମ ଆଖିରେ ଥିଲା ସ୍ୱପ୍ନ । ହାତରେ ଥିଲା ପେନସିଲ୍ । ଯାହା ସ୍ୱପ୍ନ ଆଖିରେ ରହିଚି ତା ପେନ୍‌ସିଲ୍‌ରେ ରୂପ ନ ପାଇଲା ପର୍ଯ୍ୟନ୍ତ ତମର ନକ୍ସା ସଂପୂର୍ଣ୍ଣ ହୋଇ ପାରେନା । ଘରର ନକ୍ସା ସହିତ ତମେ ସ୍ୱପ୍ନର ଜାଲ ତିଆର କର । ଘର ତିଆର ହୋଇଛି, ସେଇ ଘରେ ଫୁଲର ଝଡ଼ । ଘରେ ଗୃହିଣୀର ପାଦର ନିକ୍ୱଣ ଧ୍ୱନି, ଡ୍ରଇଁ ରୁମ୍‌ରେ ମୋନାଲିସାର ଫଟୋ ଏ ତ ଖାଲି ଘରର ନକ୍ସା ନୁହେଁ, ଏ ହେଉଛି ଘରର ଏକ ସାମୂହିକ ସ୍ୱପ୍ନ । ରହ, ରହ, ଶିଳ୍ପୀ ରହ ଅଦ୍ଭୁତ ବିନ୍ଧାଣୀ ବନ୍ଧୁ ଘରର ନକ୍ସା ଏବେ ବି ବାକି ଅଛି । ଆଉ ସ୍ୱପ୍ନ ତ ସରିନାହିଁ । ତମେ ଯିବ କାହିଁକି ?

ଘର ପାତିଥିଲ । ଗୃହିଣୀ କରି ଆଣିଥିଲ କୁକୁମିନାକୁ । ସେ ନର୍ତ୍ତକୀ । ତାର ପାଦର ସିଞ୍ଜିର ଧ୍ୱନିର ତାଳେ ତାଳେ, ତାର ଭ୍ରୂଲତାର କମ୍ର ଚାହାଣୀରେ ତାର ହସ୍ତର ମୁଦ୍ରାରେ ତମର ସ୍ୱପ୍ନ ରଞ୍ଜିତ ହୋଇଥିଲା । ତମେ ଆଙ୍କି ଚାଲିଥିଲ ନକ୍ସା ପରେ ନକ୍ସା । କେବଳ ଜୀବିକା ପାଇଁ ନୁହେଁ, ଆପଣାର ସ୍ୱପ୍ନ ପାଇଁ ।

ସରକାରୀ ଚାକିରିରୁ ଅବସର ନେଇ ଯାଇଥିଲ ଅବସର ସମୟର ବହୁ ପୂର୍ବରୁ । ସରକାରୀ ନାଲି ଫିତାର ଶବ ତଳେ ତମର ସୃଜନୀ ଶକ୍ତି ଯେପରି ଚିତ୍କାର କରୁଥିଲା ବାହାରି ଆସିବା ପାଇଁ । ଆପଣାର ସୃଜନଶୀଳତା ଅଣନିଃଶ୍ୱାସୀ ହୋଇ ଉଠୁଥିଲା ଫାଇଲର ଗର୍ଭରେ । ସେଥିରୁ ତାକୁ ମୁକ୍ତି ଦେଇ ସ୍ୱାଧୀନ ଜିବୀକାରେ ଲାଗିଲ । ମନ ଲାଖି ଘର ତିଆରି କଲ । ସ୍ୱପ୍ନ ଦେଖିଲ, ତମର ହାତର ସ୍ପର୍ଶରେ ଭୁବନେଶ୍ୱରର ଆଉ ନିର୍ଜୀବ, ବନ୍ଧ୍ୟା, ପଥର ଇଟାର ସହର ହୋଇ ରହିବ ନାହିଁ । ତମ ଭଳି ଶିଳ୍ପୀର ହାତରେ ଏହା ହର୍ମ୍ୟରାଜୀ ଜୀବନ୍ତ ହୋଇ ଉଠିବ । କିନ୍ତୁ ସେ ସ୍ୱପ୍ନ ତ ରହିଗଲା ଅପୂର୍ଣ୍ଣ ।

.ତମେ ଆଉ ନାହିଁ । କେହି ରହିବେ ନାହିଁ ଏହା ସତ୍ୟ । କିନ୍ତୁ ତମେ ଯାଇ ଯେଉଁ କ୍ଷତ ସୃଷ୍ଟି କରିଗଲ ତାହା ତ ରହିବ ସେଇଭଳି ଆମେ ସବୁ ଯିବା ପର୍ଯ୍ୟନ୍ତ ।



# ବୁଲା ଫକୀରର ଅନ୍ତିମ ଯାତ୍ରା

ଗଲା ସପ୍ତାହରେ ଘଟି ଯାଇଥିବା ଏକ ଘଟଣା ସମଗ୍ର ଓଡ଼ିଶାକୁ ଆନ୍ଦୋଳିତ କରିଛି । ପଣ୍ଡିତ ଲକ୍ଷ୍ମୀ ନାରାୟଣ ମିଶ୍ର ଝାରସୁଗୁଡ଼ାରୁ ଯାଉଥିଲେ ଭିଲାଇ । ବାଟରେ ଟ୍ରେନ୍ ଭିତରେ ତାଙ୍କୁ ହତ୍ୟା କରାଯାଇଛି । ତାଙ୍କ ପାଖରେ କୌଣସି ଟଙ୍କା ପଇସା ନ ଥାଏ, ନ ଥିଲା । ଏ କଥା ସମସ୍ତେ ଜାଣନ୍ତି । ତା ହେଲେ ତାଙ୍କୁ ହତ୍ୟା କରିଲା କିଏ ଏବଂ କାହିଁକି ? କିଛି ଦିନ ତଳେ ଲକ୍ଷ୍ମୀନାରାୟଣ ମିଶ୍ର ଏକ ଚାଞ୍ଚଲ୍ୟକର ଅଭିଯୋଗ ଆଣିଥିଲେ କିଛି ରାଜନୈତିକ ନେତାମାନଙ୍କ ବିରୁଦ୍ଧରେ । କଥାଟା ବେଶ୍ ଗୁରୁତର ସ୍ତରକୁ ଯାଇଥିଲା । ତେଣୁ ଅଭିଯୋଗ ମଧ୍ୟ ସେଇ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରୁଛି । ତଦନ୍ତର ଫଳ କ'ଣ ହେବ ତା କିଏ କହିବ ?

କିନ୍ତୁ ଓଡ଼ିଶାରେ ଏହା ଚାଞ୍ଚଲ୍ୟ ସୃଷ୍ଟି କରିଛି । କାରଣ ରାଜନୈତିକ ହତ୍ୟା ଓଡ଼ିଶାରେ ଆଗରୁ ହୋଇନାହିଁ, ଯଦି ଏହା ରାଜନୈତିକ ହତ୍ୟା ହୋଇଥାଏ ।

ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ସମଗ୍ର ଓଡ଼ିଶାରେ ପରିଚିତ । ସ୍ୱାଧୀନତା ଆନ୍ଦୋଳନର ଦୁନ୍ଦୁଭି ଓଡ଼ିଶାରେ ଯେଉଁମାନେ ପ୍ରଥମେ ନିନାଦିତ କରିଥିଲେ ସେମାନଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମ । ୧ ୯ ୨ ୧ ମସିହାର କଥା । ସମ୍ବଲପୁର ଜିଲ୍ଲା ସ୍କୁଲର ଛାତ୍ର ଲକ୍ଷ୍ମୀନାରାୟଣ, ନୃସିଂହ ଗୁରୁ ପ୍ରମୁଖ । ମହାତ୍ମାଗାନ୍ଧୀ ଡାକରା ଦେଇଛନ୍ତି ଅସହଯୋଗ ଆନ୍ଦୋଳନ । ଲକ୍ଷ୍ମୀନାରାୟଣ, ନୃସିଂହ ଗୁରୁ ପ୍ରଭୃତି ସେଦିନ ପାଠରେ ଡୋରି ବାନ୍ଧିଲେ । ସମ୍ବଲପୁର ସହରର ଉପକଣ୍ଠରେ ପର୍ବତ ଶିଖରରେ ଅବସ୍ଥିତ ବୁଢ଼ାରଜା ପାହାଡ଼ । ସେଇଠି ଶିବ ମନ୍ଦିରରେ ସେମାନେ ଶପଥ ଘେନିଲେ । ଦେଶର ମୁକ୍ତି ପାଇଁ ପଣ ଘେନିଲେ ସେମାନେ । ଏଇ ଥିଲା ସେଦିନ ଅସହଯୋଗକାରୀ ମାନଙ୍କର ଶପଥ । ସେମାନେ ଆଉ ପଛକୁ ଫେରି ନାହାନ୍ତି । ସେଦିନ ସ୍ୱାଧୀନତା ସଂଗ୍ରାମର ମୁଖପତ୍ର 'ଅମୃତ ବଜାର' ପତ୍ରିକା ସ୍ୱାଧୀନତାର ବେଶି ହରଣକୁ ସ୍ୱାଗତ କରି ଯେଉଁ ଅଗ୍ରଲେଖା ଲେଖିଥିଲେ ତାହା ଅବିସ୍ମରଣୀୟ ।

୧୯୨୧ ରୁ ୧୯୪୭ ପର୍ଯ୍ୟନ୍ତ ତାଙ୍କର ଇତିହାସ ହେଉଛି ନିରବଚ୍ଛିନ୍ନ ସଂଗ୍ରାମ ଓ ସାଧନାର ଇତିହାସ । ତାହାରି ଭିତରେ ଅପାଠୁଆ ଲକ୍ଷ୍ମୀନାରାୟଣ ଇଂରାଜୀ, ସଂସ୍କୃତ, ହିନ୍ଦୁସ୍ଥାନୀ, ଉର୍ଦ୍ଦୁ, ବଂଗଳା ଭାଷା ଓ ସାହିତ୍ୟରେ ବ୍ୟୁତ୍ପତ୍ତି ଲାଭ କଲେ କେବଳ ନୁହେଁ, ଏ ସବୁ ଭାଷାରେ ଅନର୍ଗଳ ଭାଷଣ ମଧ୍ୟ ଦେଇ ପାରିଲେ । ସେ ବାଗ୍ମୀ ଭାବରେ ବିବେଚିତ ହେଲେ । ପଣ୍ଡିତ ଉପାଧି ଲାଭ କଲେ । କାରାଗାରର ନିର୍ଜ୍ଜନତାକୁ ଏଭଳି ଫଳପ୍ରଦ ବିନିଯୋଗ ଇତିହାସରେ ଖୁବ୍ କମ ଦେଖାଯାଏ । ଦୀର୍ଘ ୧୭ ବର୍ଷ କଟିଛି କାରାଗାର ଭିତରେ । କାଳ୍ପାଗାରରୁ

ଯେତେବେଳେ ସଂକ୍ଷିପ୍ତ  ସମୟ ପାଇଁ ମୁକ୍ତି ମିଳିଛି ସେତେବେଳେ ସେ ଝାସ ଦେଇଛନ୍ତି ସଂଗ୍ରାମରେ ।

ପରିବାରକୁ ଅନେଇବାର  ବି ସୁଯୋଗ ପାଇ ନାହାନ୍ତି । ସେ କାହାଣୀ ଅବର୍ଣ୍ଣନୀୟ । କାରାଗାର ଭିତରେ ଥିଲାବେଳେ ତାଙ୍କର ତିନୋଟି ସନ୍ତାନ  ପରଲୋକ ଗମନ କରିଛନ୍ତି । ଛାତିକୁ ପଥର କରି ସେ ସହିଛନ୍ତି ଯନ୍ତ୍ରଣା, କିନ୍ତୁ ବ୍ରିଟିଶ ସରକାର ପାଖରେ ମୁଣ୍ଡ ନୁଆଁଇ ନାହାନ୍ତି । ଜ୍ୟେଷ୍ଠ ପୁତ୍ରର ଶବଦାହ ସାରି ସେ ଶ୍ମଶାନରୁ ସିଧା ଯାଇଥିଲେ ସତ୍ୟାଗ୍ରହ ସଭାକୁ ଉଦ୍‌ବୋଧନ ଦେବେ ଏବଂ ସତ୍ୟାଗ୍ରହ କରିବେ । ରୋଗ ଶଯ୍ୟାରେ ଶାୟିତା କନ୍ୟା ମୁମୂର୍ଷୁ ଅବସ୍ଥାରେ, ତାକୁ ଚାହିଁଦେଇ, ମୁଣ୍ଡରେ ତାର ହାତ ବୁଲାଇ ଦେଇ ଯାଇଥିଲେ ଲକ୍ଷ୍ମୀନାରାୟଣ ସତ୍ୟାଗ୍ରହ କରିବାକୁ । କନ୍ୟାକୁ ଆଉ ସେ ଦେଖି  ପାରିନାହାନ୍ତି  ।  ଏଭଳି ତ୍ୟାଗ ବିରଳ ।

ଲକ୍ଷ୍ମୀନାରାୟଣ ରାଜନୀତି ସହିତ ସାହିତ୍ୟ, ସଂସ୍କୃତିର ଏକ ଅପୂର୍ବ୍ ସମନ୍ୱୟ । ତାଙ୍କୁ ଡାକରା ଆସେ ରାଜନୈତିକ ସଭାକୁ ଯେପରି ସାଂସ୍କୃତିକ  ସମ୍ମିଳନୀ ମାନଙ୍କରୁ ସେଇପରି । ତାଙ୍କର ଓଜସ୍ୱିନୀ ଭାଷଣ ମନ୍ତ୍ରମୁଗ୍ଧ କରେ ଶ୍ରୋତାମାନଙ୍କୁ, ପଣ୍ଡିତ ମାନଙ୍କୁ । ତାଙ୍କର ପ୍ରତିଭା ସ୍ୱୀକୃତ ହେଇଛି, ଆଦୃତ ହୋଇଛି ଡକ୍ଟର ରାଜେନ୍ଦ୍ର ପ୍ରସାଦ,ପଣ୍ଡିତ ଜବାହାରଲାଲ ନେହେରୁ, ମୌଲାନା ଆବୁଲ କାଲାମ ଆଜାଦ୍ ଏବଂ  ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଦ୍ୱାରା ।  ଭଗ୍‌ବଦ୍ ଗୀତା ଔର ଇସଲାମ   ନାମକ ତାଙ୍କର ଉର୍ଦ୍ଦୁ ଭାଷାର ପୁସ୍ତକ ଉସମାନିଆ ବିଶ୍ୱବିଦ୍ୟାଳୟ ଦ୍ୱାରା ପାଠ୍ୟପୁସ୍ତକ ଭାବରେ ହୋଇଛି । ଉର୍ଦ୍ଦୁ ଭାଷାଭାଷୀ ସବୁ ପଣ୍ଡିତଙ୍କ ଦ୍ୱାରା ଏହା ଆଦୃତ ଏବଂ ପ୍ରଶଂସିତ ହୋଇଛି । ମୈଥିଳୀ କବି ବିଦ୍ୟାପତିଙ୍କର କାନ୍ତ ପଦାବଳୀର ଅନୁବାଦ   ସେ କରିଥିଲେ । ଏହା ସାହିତ୍ୟ ଏକାଡ଼େମୀ ଦ୍ୱାରା ପ୍ରକାଶିତ ହୋଇ ଭୂୟସୀ ପ୍ରଶଂସା ଲାଭ କରିଛି ।

ନିଜର ସାହିତ୍ୟିକ ଓରମାନ ମେଣ୍ଟାଇବା ପାଇଁ ସେ ମେହେର କବି ପ୍ରେସ ନାମକ ଏକ ପ୍ରେସ ଗଠନ କରିଥିଲେ ଏବଂ "ସୁବ୍ରତୀ" ନାମକ ଏକ ସାପ୍ତାହିକୀ ପ୍ରକାଶ କରୁଥିଲେ । କିନ୍ତୁ ସଂଗ୍ରାମର ଘାତ ପ୍ରତିଘାତରେ ସେସବୁ ତିଷ୍ଠି ପାରି ନ ଥିଲା । ସେଇପରି ତିଷ୍ଠି ପାରି ନ ଥିଲା ପ୍ରଜାଶକ୍ତି ନାମକ ସାପ୍ତାହିକ ପତ୍ରିକା, ଯାହା ଝାରସୁଗୁଡ଼ାରୁ ତାଙ୍କର ସଂପାଦନାରେ ପ୍ରକାଶ ପାଉଥିଲା ।

ଲକ୍ଷ୍ମୀନାରାୟଣ ସ୍ପଷ୍ଟବାଦୀ ଏବଂ ସାଟାୟାରିଷ୍ଟ । ଯାହା ଭାବନ୍ତି  ମୁହେଁ ମୁହେଁ କହନ୍ତି । କାହାରି ଉପ୍ରୋଧ ରଖନ୍ତି ନାହିଁ । ମୁହଁଖୋର ଲକ୍ଷ୍ମୀନାରାୟଣ ତୀବ୍ର  କଟୂକ୍ତି  ମଧ କରନ୍ତି । ହ୍ୟୁମର ବୁଝି ନ ପାରିଲା ଲୋକ ତାଙ୍କୁ ଭୁଲ୍ ବୁଝନ୍ତି । ଲକ୍ଷ୍ମୀନାରାୟଣ  ବିଧାନ  ସଭାର ସଦସ୍ୟ ଥିଲେ । ମୋର ମନେ ପଡୁଛି  ଏକ ଦୃଶ୍ୟ । ମହତାବ ବାବୁ ଭାଷଣ ଦେଉଥିଲେ । ପାଖରେ ବସିଥିଲେ ୰ ଭୈରବ ଚନ୍ଦ୍ର ମହାନ୍ତି । ଲକ୍ଷ୍ମୀନାରାୟଣ ପଛ ସିଟ୍‌ରୁ ଗୋଟିଏ ଛୋଟିଆ ନୋଟ୍ ପଠାଇଦେଲେ । ସେଥିରେ ଲେଖାଥିଲା ।        ଲକ୍ଷ୍ମୀନାରାୟଣ ଉବାଚ —

ମିଥ୍ୟା ବୋଲିଣ ନାମ କିସ

କହ ହେ ମହତାବ ଇଶ  ?

ଭୈରବବାବୁ ସେ ଖଣ୍ଡକ ମହତାବ ବାବୁଙ୍କ ହାତକୁ ବଢ଼ାଇଦେଲେ । ମହତାବ ବାବୁ ତାକୁ ପଢ଼ି ସାରିବା ପୂର୍ବରୁ ଆଉ ଖଣ୍ଡିଏ ସ୍ଲିପ ମହତାବ ବାବୁଙ୍କ ପାଖରେ ପହଞ୍ଚିଲା ଲେଖା ଥିଲା —

ମହତାବ ଉବାଚ
ମିଥ୍ୟା ମୋହର ନିଜ ଗୁରୁ
ଭୈରବ କେତେ ତୁ ପଚାରୁ ।

ମହତାବ ବାବୁ ଗମ୍ଭୀର ଭାବରେ ଭାଷଣ ଦେଉଥିଲେ । ମହତାବ ବାବୁଙ୍କ ମୁହଁରେ ହସ ଉକୁଟି ଗଲା ଏଇ ସ୍ଲିପଟି ପଢ଼ି । ସେ ହସି ପଛକୁ ଅନାଇଲା ବେଳକୁ ଲକ୍ଷ୍ମୀନାରାୟଣ କବାଟ ପାର ହୋଇ ଲାଉଞ୍ଜରେ ହାଜର । ମହତାବ ବାବୁ ତାଙ୍କର ଗଭୀର ବନ୍ଧୁ । କିନ୍ତୁ ହ୍ୟୁମରସ୍ ଲକ୍ଷ୍ମୀନାରାୟଣ କାହାକୁ ଛାଡ଼ିବା ବ୍ୟକ୍ତି ନୁହଁନ୍ତି ।

ଲକ୍ଷ୍ମୀନାରାୟଣ ମିଶ୍ରଙ୍କର ଶେଷ କର୍ମସ୍ଥଳୀ ଥିଲା ଝାରସୁଗୁଡ଼ା । ଏହି ଅଂଚଳରେ ବ୍ରଜରାଜନଗର ବିରଲାଙ୍କର ଓରିଏଣ୍ଟ ପେପର ମିଲ ଅବସ୍ଥିତ । ଇବ ନଦୀର ପାଣି ଦୂଷିତ ହେବା ସମ୍ବଲପୁରବାସୀଙ୍କ ପାଇଁ ଥିଲା ଏକ ଅଭିଶାପ । ଲକ୍ଷ୍ମୀନାରାୟଣ ସମ୍ବଲପୁରବାସୀଙ୍କ ବାବଦୂକ ଏବଂ ବିରଲା ବ୍ରଦର୍ସ ସହିତ ତାଙ୍କର ସଂଘର୍ଷ ଥିଲା ତୀବ୍ର ।

ଲକ୍ଷ୍ମୀନାରାୟଣଙ୍କ ସହିତ ମୋର ଭେଟ ହୁଏ ଛାତ୍ରାବସ୍ଥାରେ । ଯୁବକମାନଙ୍କ ପାଇଁ ସେ ଥିଲେ ପ୍ରେରଣାର ଉତ୍ସ । ସେ କଂଗ୍ରେସର ଦଳରେ ଥିଲେ କିନ୍ତୁ ସବୁ ରାଜନୈତିକ ଦଳର ନେତାମାନଙ୍କ ସହିତ ତାଙ୍କର ସୌହାର୍ଦ୍ଧ୍ୟ ଥିଲା । ନିଃସ୍ୱାର୍ଥପର, ସାହସୀ ଯୋଦ୍ଧା ମାନଙ୍କୁ ସେ ସବୁବେଳେ ପ୍ରେରଣା ଦେଉଥିଲେ । ସଂଗ୍ରାମର ପଥ ଭିନ୍ନ ହୋଇପାରେ କିନ୍ତୁ ଲକ୍ଷ୍ୟ ଥିଲା ଏକ ।

ସାହିତ୍ୟିକ ଲକ୍ଷ୍ମୀନାରାୟଣ ରବୀନ୍ଦ୍ର ଶତବାର୍ଷିକୀ ଉତ୍ସବରେ ବକ୍ତା ଥିଲେ । ରବୀନ୍ଦ୍ର ସାହିତ୍ୟ ଉପରେ ତାଙ୍କର ଓଜସ୍ୱିନୀ ମନୋମୁଗ୍ଧକର ଭାଷଣ ଶୁଣି ସେ ସନ୍ଧ୍ୟାରେ ମୁଖ୍ୟ ଅତିଥି ବଂଗୀୟ ସାହିତ୍ୟିକ କହିଲେ ରବୀନ୍ଦ୍ରନାଥଙ୍କ ଉପରେ ଏଭଳି ପଣ୍ଡିତ ଏଇଠି ଥାଉଁ ଥାଉଁ ଆପଣ ମୋତେ କାହିଁକି ଡାକିଲେ କଲିକତାରୁ ?

ଲକ୍ଷ୍ମୀନାରାୟଣ ପଣ୍ଡିତ, ସାହସୀ ସେନାନୀ, କଠୋର ସମାଲୋଚକ, ହସ କୌତୁକ ଭରପୂର, ମାଟି ମାଆର ଏକ ପୂର୍ଣ୍ଣାଙ୍ଗ ସନ୍ତାନ ।

କରୁଣ ପରିସ୍ଥିତିରେ ତାଙ୍କର ମୃତ୍ୟୁ । ଜୀବନରେ କୌଣସି ଦୁର୍ବିସହକୁ ଯେ ଖାତିର କରି ନ ଥିଲା । ତାର ପରଲୋକ ହୋଇଛି ଏକ ନୀଚ ଘୃଣ୍ୟ ଆତତାୟୀ ହାତରେ । ଆଇନକୁ ସେ ଫାଙ୍କି ଦେଇପାରେ କିନ୍ତୁ ଏ ଜାତିର ଅଭିଶାପ ନିଶ୍ଚୟ ତା ମୁଣ୍ଡରେ ଯିବ । ଲକ୍ଷ୍ମୀ ନାରାୟଣ ସ୍ମୃତ ରହିବେ ତାଙ୍କର ଅଗଣିତ ବନ୍ଧୁଙ୍କର ମନରେ ଓ ହୃଦୟରେ ।



# ନମ୍ରତା ଓ ଜ୍ଞାନ ପିପାସାର ଜ୍ୱଳନ୍ତ ପ୍ରତୀକ

ଗଲାକାଲି ସେଇ ମଣିଷଟି ୭୪ ବର୍ଷ ବୟସରେ ସଂସାରରୁ ଚାଲିଗଲା । ପୈତୃକ ନାମ ଥିଲା ଲକ୍ଷ୍ମୀନାରାୟଣ ସାହୁ । କିନ୍ତୁ ଏ ଦେଶ ପାଇଁ ସେ ଥିଲେ ନମ୍ରତା, ସେବା, ଜ୍ଞାନ ପିପାସାର ପ୍ରତୀକ । ଚାରିଟି ବିଷୟରେ ଏମ୍.ଏ.ପାଶ୍ କରିଥିଲେ । କ'ଣ ମିଳିଚି ତାଙ୍କୁ ଏଇ ଡିଗ୍ରୀରୁ ? ଡିଗ୍ରୀମାନଙ୍କଠାରୁ ସେ ତ ବହୁ ଊର୍ଦ୍ଧ୍ୱରେ । ଏ ସବୁ ତାଙ୍କ ପାଇଁ ଡିଗ୍ରୀ ପାଇଁ ନୁହେଁ ଜ୍ଞାନ ପିପାସା ? ମାଇଲଖୁଣ୍ଟ ନା କ'ଣ ? ଖରାଦିନ । ପ୍ରଚଣ୍ଡ ଗରମ ଲକ୍ଷ୍ମୀ ନାରାୟଣଙ୍କ ଇଚ୍ଛା ସେ ଏମ୍.ଏ. ପରୀକ୍ଷା ଦେବେ ଦର୍ଶନଶାସ୍ତ୍ରରେ । ଦର୍ଶନ ସାସ୍ତ୍ରର ଅଧ୍ୟାପକ ଡକ୍ଟର ଗୁରୁପଦ ପରିଡ଼ା ରହୁଥାନ୍ତି ଟାଉନ ହଲ ସାମନା ରାସ୍ତାରେ, ଆପଣାର ଶ୍ୱଶୁର ଶ୍ରୀ ମହାଲିକଙ୍କ ଘରେ । ଉଦୁଉଦିଆ ଦିପହର । ଲକ୍ଷ୍ମୀନାରାୟଣ ପହଞ୍ଚିବେ ତାଙ୍କ ଘରେ । ଶୁଣିବେ ସେ ଶୋଇଛନ୍ତି । ସେ ଫେରିବେ ଶ୍ରୀ ରାମଚନ୍ଦ୍ର ଭବନକୁ । ସେଇଠି ବସି ପଢ଼ିବେ । ପୁଣି ଯିବେ ତିନିଟା ବେଳକୁ । ଅଧ୍ୟାପକ ଉଠି ନାହାନ୍ତି । ଫେରିବେ ଏବଂ ପୁଣି ଯିବେ । ଦିନେ ନୁହେଁ ଦି' ଦିନ ନୁହେଁ । ସେ ତୃପ୍ତ ହେଲା ପର୍ଯ୍ୟନ୍ତ । ଗୁରୁପଦ ବାବୁ ନିଜେ ଆଶ୍ଚର୍ଯ୍ୟ, କି ପ୍ରକାର ମଣିଷ ଏଇ ? ପରିଣତ ବୟସ ହେଲାଣି । ତଥାପି ଦୁରନ୍ତ ପିପାସା, ଜ୍ଞାନ ଆହରଣ ପାଇଁ ! ଯେ କୌଣସି ଅଧ୍ୟାପକ, ଗବେଷକ, ଛାତ୍ରଠାରୁ ବେଶୀ । ଜ୍ଞାନ ଆହରଣ ପାଇଁ ବୟସର ସୀମା କ'ଣ ଦରକାର ?

ଲକ୍ଷ୍ମୀନାରାୟଣ ଜନ୍ମ ହୋଇଥିଲେ ବାଲେଶ୍ୱରରେ ୧୮୯୦ ମସିହା ଅକ୍ଟୋବର ୩ ତାରିଖ ଦିନ । ଏଇ ସନ ୧୯୬୪ ମସିହାରେ ସେ ବିଦାୟ ନେଲେ । ବାପାଙ୍କ ନାମ କ୍ଷେତ୍ରମୋନ । ମାଆଙ୍କ ନାମ ଅନ୍ନପୂର୍ଣ୍ଣା । ପାଠ ପଢ଼ା ବାଲେଶ୍ୱର ଜିଲ୍ଲା ସ୍କୁଲ ଏବଂ ପରେ ରେଭେନ୍ସା କଲେଜ । ୧୯୧୨ ରୁ ୧୯୧୬ ପର୍ଯ୍ୟନ୍ତ କଟକ ମିଶନ ସ୍କୁଲରେ ଶିକ୍ଷକତା । ତା ପରେ ଆରମ୍ଭ ହେଲା ସାଧାରଣ ଜୀବନ । ଗାନ୍ଧିଜୀଙ୍କ ପ୍ରଭାବ ତାଙ୍କୁ ଟାଣି ଆଣିଲା ସାଧାରଣ କ୍ଷେତ୍ରକୁ । ଗାନ୍ଧିଜୀଙ୍କ ଅସହଯୋଗ ଅପେକ୍ଷା ଅଧିକ ପ୍ରଭାବିତ କରିଥିଲା ଅସ୍ପୃଶ୍ୟତା ନିବାରଣ, କୁଷ୍ଠ ରୋଗୀଙ୍କ ସେବା ଏବଂ ବାତ୍ୟାବନ୍ୟା ବିପତ୍ତିରେ ସେବା । ଲକ୍ଷ୍ମୀନାରାୟଣଙ୍କ ଉପରେ ବିଶେଷ ପ୍ରଭାବ ପଡ଼ିଥିଲା ଗୋପାଳ କୃଷ୍ଣ ଗୋଖଲେଙ୍କର । ୧୯୧୭ ମସିହାରେ ସେ ହିନ୍ଦ୍ ସେବକ ସଂଘର ଆଜୀବନ ସଭ୍ୟ ହୋଇ ଜୀବନର ଅନ୍ୟ ସବୁ ଅଭିଳାଷକୁ ପରିତ୍ୟାଗ କରି ଜନସେବାରେ ଆପଣାକୁ ନିବେଦିତ କରିବା ପାଇଁ ସ୍ଥିର କରିଥିଲେ ।

ଲକ୍ଷ୍ମୀନାରାୟଣ ସାହୁ ଥିଲେ ଟିପିକାଲ ବା ନିଚ୍ଛକ ଉଦାରବାଦୀ । ବଡ଼ ବିଚିତ୍ର ମଣିଷ

ଥିଲେ ସତରେ । ସବୁ ଧର୍ମ ସମନ୍ୱୟର ସେ ଥିଲେ ପ୍ରତୀକ । ସେ କଟକ ୱାଇ.ଏମ୍.ସି.ଏ. ର ସଂପାଦକ ଥିଲେ । କଟକରେ କୋରାନ କ୍ଲବ ମଧ୍ୟ ପ୍ରତିଷ୍ଠା କରିଥିଲେ । ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ମଣିଷର ସେବା କରିବା ଥିଲା ତାଙ୍କର ବ୍ରତ । ମୋର ମନେ ପଡୁଛି । ଜେଲ୍ ଲାଇବ୍ରେରୀକୁ ସେ ତାଙ୍କର ପ୍ରକାଶିତ ପୁସ୍ତକମାନଙ୍କ ଭିତରୁ ଗୋଟିଏ ଲେଖାଏଁ ଦାନ କରୁଥିଲେ ଏବଂ ଜେଲରେ ଥିବା କଇଦୀ ମାନଙ୍କୁ ଯାଇ ନିୟମିତ ଭାବରେ ଭେଟୁଥିଲେ । ସେଇଠି ତାଙ୍କ ସାଙ୍ଗରେ ଭେଟାଭେଟି ହୋଇଛି ଅନେକ ଥର । କିନ୍ତୁ ସେ ଆମ ୱାର୍ଡକୁ କଦାପି ଆସିନାହାନ୍ତି । ଉଗ୍ରପନ୍ଥା ପାଇଁ ତାଙ୍କର ଥିଲା ବିତୃଷ୍ଣା । ସେ ଭଲ ପାଆନ୍ତି ଆମକୁ ବ୍ୟକ୍ତିଗତ ଭାବରେ କିନ୍ତୁ ଆମ ପନ୍ଥାଠାରୁ ରହିବାକୁ ଚାହୁଁଥିଲେ ବହୁ ଦୂରରେ । କିନ୍ତୁ ଅନେକ କାର୍ଯ୍ୟକ୍ରମରେ ଏକାଠି ତ କାମ କରିବାକୁ ପଡ଼ିଛି । ସେ ଯାଆନ୍ତି କୁଆଡ଼େ ? ଆଦର ପ୍ରଶଂସା ଲାଭ କରିଛି କିନ୍ତୁ ରାଡ଼ିକାଲ ପନ୍ଥା କହିଲେ ଲକ୍ଷ୍ମୀନାରାୟଣ ବାବୁ ଆଉ ସେ ସୀମା ମାଡ଼ିବା ପାଇଁ ପ୍ରସ୍ତୁତ ନୁହନ୍ତି । ଥରେ ସେ ଯାଇଥିଲେ କଲିକତା ୧୯୪୩ କି ୧୯୪୪ ମସିହା ହେବ । ସେ ଗଲେ ତ ନିଶ୍ଚୟ ଓଡ଼ିଆ ବସ୍ତିକୁ ଯିବେ, ଓଡ଼ିଆମାନଙ୍କୁ ଭେଟିବେ । ସେ ଆପଣାକୁ ଓଡ଼ିଆ କହି ଗର୍ବିତ ମନେ କରୁଥିଲେ । ସେ ହୀନମନ୍ୟତା ତାଙ୍କର ନ ଥିଲା । ମୁଁ ଓଡ଼ିଆ, ମୁଁ ହେଉଛି କୋଣାର୍କ, ପୁରୀ ବଡ଼ ଦେଉଳ ନିର୍ମାତା । ଏଇପରି କହନ୍ତି ସେ । ସେଇଠି ହଠାତ୍ ତାଙ୍କର ଭେଟ ହୋଇଗଲା ବୈଷ୍ଣବ ପଟ୍ଟନାୟକଙ୍କ ସହିତ । ମୋର ଠିକ୍ ମନେ ପଡୁନି । ବୋଧହୁଏ ହୃଦାନନ୍ଦ ନାୟକ (ଚାର୍ଟାଡ ଆକାଉଣ୍ଟାଣ୍ଟ)ଙ୍କ ଘରେ କି କ'ଣ ! ସେତେବେଳେ ବୀର ବୈଷ୍ଣବ ପ୍ରବାଦ ପୁରୁଷ । ତାଙ୍କ ନାମରେ ଗିରଫ ଜାରୀ ପରବାନା । ତାଙ୍କ ନାମରେ ବହୁ କାହାଣୀ, କବିତା । ବୈଷ୍ଣବବାବୁଙ୍କ ସହିତ ତାଙ୍କର ପରିଚିତ ନ ଥିଲା । ପରିଚୟ କରାଇଦେଲା ପର ମୁହୂର୍ତ୍ତରେ ଲକ୍ଷ୍ମୀନାରାୟଣ ବାବୁ ସେଠାରୁ ପାର୍ ! ରାଡ଼ିକାଲିଜିମ୍ ବା ରାଡିକାଲ ମାନଙ୍କ ସଂସ୍ପର୍ଶରେ ମଧ୍ୟ ସେ ଆସିବାକୁ ନାରାଜ ।

କୁହାଯାଏ ଡକ୍ଟର ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀଙ୍କୁ ଜନସେବା ପାଇଁ ଅନୁପ୍ରାଣିତ କରିଥିବା ଆଦ୍ୟ ବ୍ୟକ୍ତିମାନଙ୍କ ମଧ୍ୟରେ ଲକ୍ଷ୍ମୀନାରାୟଣ ଅନ୍ୟତମ ।

ପଢ଼ନ୍ତି ଯେମିତି, ଲେଖନ୍ତି ବି ସେମିତି । ପ୍ରତିଦିନ ପଢ଼ିବେ, ପ୍ରତିଦିନ ଲେଖିବେ, ଲେଖିବେ କାବ୍ୟ, ସାହିତ୍ୟ, ଇତିହାସ, ଜନସେବା ପାଇଁ ନିବନ୍ଧ, ନାଟକ, କିଛି ତାଙ୍କ କଲମରୁ ବାଦ ଯାଇ ନାହିଁ । ଲେଖିବେ, ଛାପିବେ ଏବଂ ବାଣ୍ଟିବେ । ଏଇଟା ହେଲା ତାଙ୍କର ବିଶ୍ୱାସ ଏବଂ ନିଶା । କ୍ୱାଲିଟି ପାଇଁ ସେ ବିବ୍ରତ ହୋଇ ନାହାନ୍ତି, ଖିଆଲ ବି କରି ନାହାନ୍ତି । ଲେଖିବା ଏକ ନିଶା ଏବଂ ତାର ଏକ ଲକ୍ଷ୍ୟ ରହିଛି, ଉଦ୍ଦେଶ୍ୟ ରହିଛି । ସେ ଦିନରେ ପାଦେ ଆଗେଇଲେ ବି ଯଥେଷ୍ଟ । ବହି ତ ତାଙ୍କ ପାଇଁ ବ୍ୟବସାୟ ନୁହେଁ ।

ବାତ୍ୟାବନ୍ୟା, ମରୁଡ଼ି କାମରେ ଲିପ୍ତ ଥିଲେ ଯୌବନରୁ ମୃତ୍ୟୁ ପର୍ଯ୍ୟନ୍ତ । ବିଶ୍ରାମ ନେଇ ନାହାନ୍ତି ଆଦୌ । ଚିର ବିଶ୍ରାମ ହିଁ ଏଇ ମଣିଷ ପାଇଁ ଥିଲା ପୂର୍ଣ୍ଣଛେଦ । ଠକ୍କର ବାପାଙ୍କ ସହିତ ଓଡ଼ିଶାରେ ରିଲିଫ କାର୍ଯ୍ୟ କରି ପ୍ରବାଦ ପୁରୁଷରେ ପରିଣତ ହୋଇଥିଲେ । ସ୍ୱେ

ସଂବିଧାନ ପ୍ରଣୟନ ସଭାର ସଭ୍ୟ ଥିଲେ, ଓଡ଼ିଶା ବିଧାନସଭାର ବି ସଭ୍ୟ ଥିଲେ । ତାଙ୍କ କଣ୍ଠରେ ଏବଂ ଲେଖାରେ ଏକ ନିଷ୍ଠତା ଓ ସିନ୍‌ସିଅରିଟି ପ୍ରକଟିତ ହେଉଥିଲା । ସୁତରାଂ ସମସ୍ତେ ତାଙ୍କୁ ଭଲ ପାଉଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ଡକ୍ଟରେଟ ଉପାଧି ପ୍ରଦାନ କରିଥିଲା । କଟକରେ ହିନ୍ଦ ସେବକ ସଂଘର ଅଫିସ, ଚୌଦ୍ୱାରରେ ସେବାକ୍ଷେତ୍ର, ରାୟଗଡ଼ାରେ ଡକ୍ଟର ବାବା ଆଶ୍ରମ ପ୍ରଭୃତି ତାଙ୍କର ଅବଦାନର ଆଲେଖ୍ୟ ବହନ କରିଛି । ବହୁ ଶିକ୍ଷାନୁଷ୍ଠାନ ମଧ ତାଙ୍କ ଆଲେଖ୍ୟ ବହନ କରିଛି ।

ଏଇପରି ଜଣେ ମଣିଷ ଆମଠାରୁ ବିଦାୟ ନେଇ ଯାଇଛନ୍ତି । ଜାତସ୍ୟହି ଧ୍ରୁବ ମୃତ୍ୟୁ । କିନ୍ତୁ ଏଭଳି ମଣିଷଟିଏ ତ ଆଉ ମିଳିବେ ନାହିଁ । ସବୁ ଦଳମତ ଗୋଷ୍ଠୀର ଉର୍ଦ୍ଧ୍ୱରେ ଜଣେ ମଣିଷକୁ ହେଜିଲା ବେଳେ ସେ ମନେ ପଡ଼ିବେ ଚିରକାଳ ।



# ଉଦାର, ମହତ୍‌, ମଣିଷଟିଏ

ଆଜି ଅଗଷ୍ଟ ୨୦, ୧୯୯୭ ମସିହା । ସକାଳୁ ପ୍ରକୃତି ଯେପରି କାନ୍ଦୁଛି । ତୁହାକୁ ତୁହା ବର୍ଷା ଚାଲିଛି, ଅବିରତ, ଅବିରାମ । ଫୋନ ବାଜୁଛି, ଖବର ପାଇଲି ଯେ ଲଳିତ ମୋହନ (ଟୁଆଁ) ଆଉ ନାହିଁ । ଏଇମ ମାତ୍ର ସକାଳୁ ସେ ଆଖି ବୁଜି ଦେଇଛି । ଗଲା ତିନି ଚାରିଦିନ ହେଲା ସେ ଅସୁସ୍ଥ ହୋଇପଡ଼ିଥିଲା । ଏଇ ମାତ୍ର ଚାରି ମାସ ତଳେ ସେ ଚାକିରିରୁ ଅବସର ନେଇଥିଲା । ନା, ଚାକିରି ତା ଠାରୁ ଅବସର ନେଇଯାଇ ଥିଲା । ବହୁମୂତ୍ର ରୋଗରେ ଆକ୍ରାନ୍ତ ହୋଇଥିଲା । ଚିକିତ୍ସାର କୌଣସି ନିୟମକୁ ସେ ମାନିନାହିଁ । ମାନିଯିବ ସେ କାହାକୁ ? ଜୀବନରେ ଯିଏ କାହାକୁ ମାନି ନାହିଁ ଆଜି ମାନିଯିବ ରୋଗ ବା ଚିକିତ୍ସା ପାଖରେ ଅସମ୍ଭବ । ଯାହା ହୋଇଯାଉ ପଛକେ, କୌଣସି ଜିନିଷର ଅଧିନ ହୋଇ ରହିବା ତାର ଜାତକରେ ଲେଖା ହୋଇ ନାହିଁ । ପିଲାଦିନୁ ଅମାନିଆଁ ଥିଲା । ବାପାଙ୍କଠାରୁ ଭୁଲ୍‌ରେ ମାଡ଼ ଖାଇଥିବା ବେଳେ ସେ ପ୍ରତିବାଦ କରିଛି । ଆପଣ ମୋତେ ମାରି ପାରନ୍ତି । କାରଣ ଆପଣ ମୋର ବାପା । କିନ୍ତୁ ଭୁଲ୍ ଆପଣଙ୍କର । ସେ ଭୁଲ୍‌କୁ ଆପଣ ସ୍ୱୀକାର ନ କରି ମୋତେ ବାଡ଼େଉଛନ୍ତି, ବାଡ଼ାନ୍ତୁ । କିନ୍ତୁ ଭୁଲ୍ ଆପଣଙ୍କର । ବାପା ଦୁର୍ଦ୍ଧାନ୍ତ ପୁଲିସ୍ ଇନସ୍‌ପେକ୍ଟର । ପୁଅର ଏଭଳି ପ୍ରତିବାଦକୁ ସେ ସହ୍ୟ କରିବାର ପ୍ରଶ୍ନ ଉଠୁନାହିଁ । ମାଡ଼ ଆହୁରି ହୋଇଛି ଏବଂ ପ୍ରତିବାଦର ସ୍ୱର ଲଳିତମୋହନଙ୍କ କଣ୍ଠରୁ ସେଇପରି ନିର୍ଗତ ହୋଇ ଚାଲିଛି । ସେଇ ଅମାନିଆଁ, ଅଝଟ ପଣିଆ ତାର ମୁଣ୍ଡରେ ବସା ବାନ୍ଧିଛି ତାର ଦିନରୁ । ବୟସ ବଢ଼ିବା ସହିତ ତାହା ବଢ଼ିଛି ସିନା କମିନାହିଁ । ଏକ ଉତପ୍ତ ଆଗ୍ନେୟଗିରି ପରି ତାର ଜୀବନ ଆରମ୍ଭ ସେଇଥିରେ ଏବଂ ଶେଷବି ସେଇଥିରେ ।

ଲଳିତ ମୋହନ ଏଇପରି ଏକ ଦୁର୍ଦ୍ଧାନ୍ତ ଚରିତ୍ରର ମଣିଷ । ଦାୟରେ ପଡ଼ି ସେ ଚାକିରି କରିଥିଲା । ଓଡ଼ିଶା ସରକାରୀ ପ୍ରେସରେ । ସେଠାରେ ମଧ ତାଙ୍କର ପରିଚିତି ସେଇଆ । କାହାକୁ ମାନନ୍ତି ନାହିଁ । କାହାକୁ ତେଲ ଦେବା ବା କୌଣସି କଥା ସହିତ ସାଲିସ୍ କରିବା ତାଙ୍କ ଦ୍ୱାରା ସମ୍ଭବ ହେଇ ନାହିଁ । ଚାକିରିରେ ପ୍ରମୋଶନ ମିଳି ନାହିଁ, ସି.ସି.ଆର୍. ଗଣ୍ଡଗୋଳ ହୋଇ ଯାଇଛି କିନ୍ତୁ ସେଥିପ୍ରତି ଲଳିତ ମୋହନଙ୍କର ଖିଆଲ ନାହିଁ । ଖାତିର ନାହିଁ । ସେ ଏକ ସୁଦୂର ଲକ୍ଷ୍ୟରେ ବିମୋହିତ, ଉଦ୍‌ବୁଦ୍ଧ । କିନ୍ତୁ ସେଥିପାଇଁ ମଧ ତାଙ୍କର ଅହେତୁକ ଉଦ୍‌ଗ୍ରୀବତା ନାହିଁ ।

ଲଳିତ ମୋହନ ଓଡ଼ିଶାରେ ବିଭିନ୍ନ ସ୍କୁଲରେ ପଢ଼ା ସାରି ଯୋଗ ଦିଅନ୍ତି ପୁରୀ କଲେଜରେ ଏବଂ ପରେ ଆସନ୍ତି କଟକ ଉଚ୍ଚ ଶିକ୍ଷା ପାଇଁ । ତାଙ୍କର ସହପାଠୀ ଓ ସମସାମୟିକ ମାନଙ୍କ ମଧରେ ଅନେକ ପ୍ରତିଷ୍ଠିତ ବ୍ୟକ୍ତି ଅଛନ୍ତି । ସାମାଜିକ ସଚେତନ ଲଳିତ ମୋହନ ଆପଣାର ଜୀବନ କାଳ ଭିତରେ ଆସିଛନ୍ତି ବହୁ ବ୍ୟକ୍ତିଙ୍କ ସଂପର୍କରେ ଯେଉଁ[illegible]

ଶାସନକଳରେ ଉଚ୍ଚ ପଦାଧିକାରୀ ଅଫିସର, ମନ୍ତ୍ରିମଣ୍ଡଳର ସଭ୍ୟ, ପ୍ରତିଷ୍ଠିତ ବ୍ୟବସାୟୀ ହୋଇଛନ୍ତି । କିନ୍ତୁ ବହୁ ଦୁଃଖକଷ୍ଟରେ ବର୍ଦ୍ଧିତ ଲଳିତ ମୋହନ କୌଣସି ସମୟରେ ସେମାନଙ୍କର ଦ୍ୱାରସ୍ଥ ହୋଇନାହାନ୍ତି ବା ସେମାନଙ୍କର ଅନୁକଂପା ଲୋଡ଼ିନାହାନ୍ତି । ଆର୍ଥିକ ଦୁସ୍ଥିତିରେ ଜର୍ଜରିତ ଲଳିତ ମୋହନ କୌଣସି ବନ୍ଧୁ ବାନ୍ଧବଙ୍କ ଠାରୁ ପଇସାଟିଏ ନେଇନାହାନ୍ତି ବା ଲୋଡ଼ି ନାହାନ୍ତି ବରଂ ବହୁ ଜଣା ଅଜଣା ବନ୍ଧୁଙ୍କୁ ସେ ଆପଣାର ଅର୍ଜିତ ଆୟରୁ ଦେଇଛନ୍ତି ସିନା, ନେଇ ନାହାନ୍ତି ।

ଜଣା ଅଜଣା ବନ୍ଧୁଙ୍କର ବିପଦ ସମୟରେ ଠିଆ ହେବା, ସେମାନଙ୍କର ସୁଶ୍ରୁଷା କରିବା ତାଙ୍କର ଧର୍ମ । ସେ ଦିନକୁ ଦିନ, ରାତିକୁ ରାତି ମଣି ନାହାନ୍ତି । କଟକ ବଡ଼ ଡାକ୍ତରଖାନାର ପୂତିଗନ୍ଧମୟ ପରିବେଶ ଭିତରେ ବହୁ ବ୍ୟକ୍ତିଙ୍କର ସେବା କରି ସେମାନଙ୍କୁ ମୃତ୍ୟୁ ମୁଖରୁ ଫେରାଇ ଆଣିଛନ୍ତି । କିନ୍ତୁ ଆପଣା ଦୁଃଖ ପାଇଁ, ରୋଗ ପାଇଁ କାହାରି ସାହାଯ୍ୟ ନେଇନାହାନ୍ତି କି ଖବର ବି ଦେଇନାହାନ୍ତି । ଯେଉଁ ମଣିଷ ଶହ ନୁହେଁ ହଜାର ହଜାର ରୋଗୀଙ୍କୁ ପଥି ଖୁଆଇଛି, ସେମାନଙ୍କ ପାଇଁ ଔଷଧ ବନ୍ଦୋବସ୍ତ କରିଛି, ସେ ନିଜେ ନିଜର ରୋଗ ପାଇଁ ଔଷଧ ଖାଇ ନାହିଁ କି ପଥି ଖାଇ ନାହିଁ । ଭାଗ୍ୟଚକ୍ରର ଏହା ହେଉଛି ସବୁଠାରୁ ବଡ଼ ବିଡ଼ମ୍ବନା । ଗଲା ବେଶ୍ କିଛି ବର୍ଷ ହେବ ସେ ମଧୁମେହ ରୋଗରେ ପୀଡ଼ିତ ଥିଲେ । କିଛି ମାସ ହେବ ତାଙ୍କର ବାମ ଅଂଗ ଅଚଳ ହୋଇ ଆସୁଥିଲା । ମୁହଁ ଓ ଆଖିରେ ଏହାର ପ୍ରଭାବ ପଡ଼ିଥିଲା । କିନ୍ତୁ ସେ ଏହାର ଚିକିତ୍ସା କରିବା ପାଇଁ ପ୍ରସ୍ତୁତ ନ ଥିଲେ, କାହାରି ସାହାଯ୍ୟ ଲୋଡ଼ିବା ପାଇଁ ପ୍ରସ୍ତୁତ ନ ଥିଲେ । ବନ୍ଧୁ ବାନ୍ଧବଙ୍କର ସାହାଯ୍ୟକୁ ମଧ୍ୟ ସେ ପ୍ରତ୍ୟାଖ୍ୟାନ କରିଥିଲେ । ଜୀବନ ପ୍ରତି ଯେପରି ଏକ ଦୁରନ୍ତ ବୀତସ୍ପୃହତା ତାଙ୍କୁ ଆକ୍ରାନ୍ତ କରିଥିଲା । ଯାହାର ପରିଣତି ହେଲା ଆଜି ତାଙ୍କର ପରଲୋକ ।

ମନେ ପଡୁଛି । କିଛି ବର୍ଷ ତଳେ ତାଙ୍କର ଆପେଣ୍ଡିସାଇଟିସକୁ ବାହାର କରିଦେବା ପାଇଁ ଅସ୍ତ୍ରୋପଚାର ଆବଶ୍ୟକ ହେଲା । ତାହା ଫାଟିଯିବା ଅବସ୍ଥାରେ ପହଞ୍ଚିଥିଲା । କିନ୍ତୁ ସେ କୌଣସି ପ୍ରକାର ଆନାସ୍ଥେସିଆ ବା ନିଶ୍ଚେତକ ଔଷଧ ନେବା ପାଇଁ ପ୍ରସ୍ତୁତ ନ ଥିଲେ । ଏପରିକି ଲୋକାଲ ଆନାସ୍ଥେସିଆ ମଧ୍ୟ ନେବା ପାଇଁ ସେ ରାଜି ନ ଥିଲେ । ଡାକ୍ତର ବିନା ନିଶ୍ଚେତକରେ ଅପରେଶନ କରିବା ପାଇଁ ପ୍ରସ୍ତୁତ ନ ଥିଲେ । ପରିଶେଷରେ ଜଣେ ବନ୍ଧୁ ସର୍ଜନ (ଯେ କି ତାଙ୍କୁ ଓ ତାଙ୍କର ପ୍ରକୃତିକୁ ଜାଣନ୍ତି) ଅପରେଶନ ପାଇଁ ରାଜି ହେଲେ । ସେ ତାଙ୍କୁ ପଚାରିଲେ ମହାତ୍ମା ଗାନ୍ଧିଙ୍କର ଏଇପରି ଏକ ଅସ୍ତ୍ରୋପଚାର ହୋଇଥିଲା । ସେ ଗୀତା ବହି ପଢ଼ିବାକୁ ଲାଗିଲେ ଏବଂ ସେଇ ଭିତରେ ତାଙ୍କର ଅସ୍ତ୍ରୋପଚାର ହେଲା । ତମେତ ଧର୍ମ ବା ଠାକୁର ବିଶ୍ୱାସ କର ନାହିଁ । ତମେ କଣ କରିବ ? ସେ ସର୍ଜନଙ୍କୁ ସେଇ ରୋଗର ଯନ୍ତ୍ରଣା ଭିତରେ ହସି କହିଲେ ! ଅପରେଶନ ଆରମ୍ଭ କର । ଅସ୍ତ୍ରୋପଚାର ହେଲା । ଲଳିତ ମୋହନ ଉଁ ଚୁ ଶବ୍ଦ କରି ନାହାନ୍ତି ଏବଂ ହଲଚଲ ବି ହୋଇନାହାନ୍ତି । ଅସ୍ତ୍ରୋପଚାର ସରିଲା ପରେ ସର୍ଜନ ତାଙ୍କୁ କହିଲେ , ଲଳିତ ବାବୁ, ତୁମକୁ ନମସ୍କାର । ମୁଁ ଜୀବନରେ ଶହ ଶହ ରୋଗୀଙ୍କର ଅସ୍ତ୍ରୋପଚାର କରିଛି । କିନ୍ତୁ ତମ ଭଳି ରୋଗୀ ଦେଖିନାହିଁ । ଭବିଷ୍ୟତରେ ଦେଖି ପାରିବି କି ନାହିଁ ସନ୍ଦେହ ।

ସେଇ ଲଳିତ ମୋହନ ଚାରିଦିନ ରହିଥିଲେ ଡାକ୍ତରଖାନାରେ । କଟକ ବଡ଼ ଡାକ୍ତରଖାନା ଅବସ୍ଥା ଶୋଚନୀୟ ପାଲଟିଛି । ଭୟାନକ ପରିବେଶ । ରୋଗୀ ସୁଶ୍ରୁଷାକାରୀ ମାନେ ରୁମାଲ ଦେଉଛନ୍ତି ନାକରେ । ଏକଦା ଏଇଭଳି ପରିସ୍ଥିତିରୁ କମ ଶୋଚନୀୟ ପରିସ୍ଥିତି ଦେଖି ବିଦ୍ରୋହ କରିଥିବା ଲଳିତ ମୋହନ କିନ୍ତୁ ଶୋଇ ରହିଛନ୍ତି ଖଟିଆ ଉପରେ, ନିର୍ଲିପ୍ତ ଭାବରେ ।

ଏକମାତ୍ର ସନ୍ତାନ, ଝିଅ ଲୁସିର ଅସ୍ତ୍ରୋପଚାର ହୋଇଥିଲା ନିକଟରେ । ତାର ଖଟିଆ ପାଖରେ ଲଳିତ ମୋହନ କହୁଥିଲେ ଯେ ମୋ ଝିଅ ବଞ୍ଚିଯିବ ନିଶ୍ଚୟ । କିନ୍ତୁ ମୋତେ ଯିବାକୁ ପଡ଼ିବ । ସମସ୍ତେ ହସିଥିଲେ । ମାତ୍ର ଏହା ତାଙ୍କର ଥିଲା ସତେ ଯେପରି ଏକ ପ୍ରିମୋନିସନ ।

ସରକାରୀ ପ୍ରେସ କର୍ମଚାରୀଙ୍କ ଦୁଇ ବଖୁରିଆ ଘର । ନିଜର ଘର ନାହିଁ, ସଂପତ୍ତି ନାହିଁ, ଅଛି ଖାଲି ଗଦାଗଦା ଖବର କାଗଜ, ମେଗାଜିନ୍ ମାନଙ୍କର କଟିଙ୍ଗ । ଚାରିପଟ ଦେଖିଲେ ମନେ ହେଉଛି ଯେପରି ଏକ ଭୂମିକଂପ ହେଇ ଯାଇଛି ଘରେ । ସବୁ ଆଡ଼ ଅସ୍ତବ୍ୟସ୍ତ, ବିଶୃଙ୍ଖଳ, ଭଂଗାରୁଜା ସଂସାର । ଠିକ୍ ଲଳିତ ମୋହନଙ୍କ ପରି । ବର୍ଷା ଝରୁଛି । ଝରୁଛି ବହୁ ନର ନାରୀଙ୍କର ଆଖିରୁ ଲୁହ । ଘରେ ଠିଆ ହେବା ପାଇଁ ସ୍ଥାନ ନାହିଁ । ସମସ୍ତେ ଠିଆ ହୋଇଛନ୍ତି ଛତା ଧରି ବାହାରେ ବା ଭିଜୁଛନ୍ତି ବର୍ଷାରେ । କେହି ଯାଉ ନାହାନ୍ତି ସ୍ଥାନ ଛାଡ଼ି । କିମିତି ଯିବେ ? ସମସ୍ତଙ୍କର ସ୍ମୃତିରେ ମନେ ପଡ଼ିଯାଉଛି ଏଇ ଲୋକର ସାହାଯ୍ୟ, ସେବା ଓ ମଣିଷପ୍ରୀତି ।

ଲଳିତ ମୋହନ ଛାଡ଼ି ଯାଇଛନ୍ତି ଆପଣାର ସ୍ତ୍ରୀ, ଏକମାତ୍ର କନ୍ୟାକୁ । କିନ୍ତୁ ଆଜି ସମସ୍ତଙ୍କର ମନେ ହେଉଛି ଯେ ସମସ୍ତଙ୍କର ଭାଇଟିଏ ଚାଲି ଯାଇଛି । ତାର ପରିବାର ବ୍ୟାପ୍ତ ହୋଇ ଯାଇଛି ଅସୁମାରି ନରନାରୀଙ୍କ ଭିତରକୁ । ସେଇତ ତାର ଜୀବନର ସାଫଲ୍ୟ, ତାର ଜୀବନର ଜୟଧ୍ୱନି ।

ତାର ଇଚ୍ଛା ଥିଲା ବୈଦ୍ୟୁତିକ ଚୁଲାରେ ଦାହ ହେବା ପାଇଁ । ସେ କୌଣସି ଧାର୍ମିକ ରୀତିନୀତି ପାଳନ କରୁ ନ ଥିଲା । କିନ୍ତୁ କିଛି ବ୍ୟକ୍ତି, କିଛି ଏକ ସୁଦୂରର ଧ୍ୱନି ତାକୁ ଅନୁପ୍ରାଣିତ କରିଥିଲା । କିଛି ତନ୍ତ୍ର ମନ୍ତ୍ରରେ ତାର ବିଶ୍ୱାସ ମଧ ଥିଲା । ତାହାହିଁ ଥିଲା ତାହାର ପାରାଡକ୍ସ । ପାରାଡକ୍ସର ଅନ୍ୟନାମ ଲଳିତ ମୋହନ ।

ମାଓ-ସେ-ତୁଂ, ଫରାସୀ ବିପ୍ଳବ ଗୋଟାଏ ପଟରେ ଆର ପଟରେ ତାନ୍ତ୍ରିକ ଶ୍ରୀ ପତି ଏବଂ ତନ୍ତ୍ର । ଲଳିତ ମୋହନଙ୍କ ଜୀବନ ଏକ ଅଶାନ୍ତ, ଝଟିକାମୟ ଜୀବନ । ସେଇ ଦୁରନ୍ତ ଝଡ଼ ହଠାତ୍ ଥମି ଯାଇଛି, ସେଇ ଆଗ୍ନେୟଗିରି ହଠାତ୍ ନିର୍ବାପିତ ହୋଇ ଯାଇଛି ।

ବୈଦ୍ୟୁତିକ ଚୁଲା ଆଠମାସ ହେଲା ଅଚଳ ହୋଇ ପଡ଼ିଛି । କଟକ ନଗରରେ ଅତ୍ୟାଧୁନିକ ପାର୍କ ତିଆରି ହେଉଛି, ମ୍ୟୁଜିକାଲ ଫାଉଣ୍ଟେନ ହେଉଛି । କିନ୍ତୁ ବୈଦ୍ୟୁତିକେ ଚୁଲାର ମରାମତି ହୋଇନାହିଁ । ବିଚିତ୍ର ଏଇ ସହର ।

ଖାନନଗରରେ ଚିତା ଜଳୁଛି । ଲୁସି (କନ୍ୟା) କାନ୍ଦୁଛି । ବହୁ ବନ୍ଧୁ, ବାନ୍ଧବଙ୍କ ଆଖିରୁ ଲୁହ ଝରୁଛି । ସେ କିନ୍ତୁ ଶୋଇ ରହିଛି ନିର୍ଲିପ୍ତ ଭାବରେ । ଜୀବନର କୌଣସି କଥାକୁ ସେ ଖିଆଲ କରି ନାହିଁ, ଆଜି ମୃତ୍ୟୁରେ ସେ କାହିଁକି ଅବା କରିବ ?



# ଅନ୍ଧାରି ମୁଲକର ବିସ୍ମୃତ ଦିହୁଡ଼ି

ହରମୋହନ ପଟ୍ଟନାୟକଙ୍କର ବାଂଗାଲୋର ସହରରେ ପରଲୋକ ହୋଇ ଯାଇଛି ଏବଂ ଅନ୍ତ୍ୟେଷ୍ଟିକ୍ରିୟା ସରିଯାଇଛି । ଠିକ୍ ଯେପରି ହେଲା ସ୍ୱାଧୀନତା ଆନ୍ଦୋଳନର ମହାରଥୀ ପ୍ରାଣନାଥ ପଟ୍ଟନାୟକ ବା ବିଶିଷ୍ଟ ଆଡ଼ଭୋକେଟ୍ ଓ ସ୍ୱାଧୀନତା ସଂଗ୍ରାମୀ ଦୀନବନ୍ଧୁ ସାହୁଙ୍କର । ପ୍ରବାସରେ ହିଁ ସେମାନଙ୍କର ଶେଷ ନିଃଶ୍ୱାସ ଏବଂ ଅନ୍ତ୍ୟେଷ୍ଟିକ୍ରିୟା ।

ହରମୋହନ ପଟ୍ଟନାୟକ ଆଜି ଏକ ବିସ୍ମୃତ ଚରିତ୍ର । ବହୁବର୍ଷ ଧରି ସେ ସକ୍ରିୟ ସାମାଜିକ କାର୍ଯ୍ୟରୁ ଅବସର ନେଇ ଯାଇଥିଲେ । ସାନ ଭାଇ ପ୍ରଥିତଯଶା ବୈଜ୍ଞାନିକ ଡକ୍ଟର ଦୟାନିଧି ପଟ୍ଟନାୟକଙ୍କର ପରଲୋକ ହୋଇ ଯାଇଛି ଆଗରୁ । ଦୟାନିଧି ଅବିବାହିତ ଥିଲେ । ହରମୋହନ ବାବୁ ମଧ୍ୟ ବହୁ ବର୍ଷ ଧରି ତାଙ୍କ ସ୍ତ୍ରୀଙ୍କ ସହିତ ରହୁ ନ ଥିଲେ ।

ହରମୋହନ ପଟ୍ଟନାୟକ ଢେଙ୍କାନାଳ ରାଜ ଅତ୍ୟାଚାର ବିରୁଦ୍ଧରେ ଅଗ୍ରଣୀ ଥିଲେ। ଢେଙ୍କାନାଳରେ ଏହା ସଂଗଠିତ ରୂପ ନେଇଥିଲା ଏବଂ ନାମକରଣ ହୋଇଥିଲା ପ୍ରଜାମଣ୍ଡଳ । କେତେକ କହନ୍ତି ଯେ ହରମୋହନ ବାବୁ ହିଁ ଏହି ନାମକରଣ କରିଥିଲେ । ଏହି ପ୍ରଜାମଣ୍ଡଳ ନାମ ପରିବ୍ୟାପ୍ତ ହୋଇଥିଲା ସର୍ବଭାରତୀୟ ସ୍ତରକୁ ଏବଂ ସାରା ଭାରତବର୍ଷରେ ପ୍ରଜାମଣ୍ଡଳର ପତାକା ତଳେ ଗଡ଼ଜାତ ରାଜାମାନଙ୍କ ବିରୁଦ୍ଧରେ ସଂଗ୍ରାମ ତେଜି ଉଠିଥିଲା । ଅଲ୍ ଇଣ୍ଡିଆ ଷ୍ଟେଟ୍ ପିପୁଲସ୍ କନ୍‌ଫରେନ୍ସର ସଭାପତି ହୋଇଥିଲେ ଜବାହାରଲାଲ ନେହେରୁ । ହରମୋହନ ପଟ୍ଟନାୟକ, ଲକ୍ଷ୍ମୀଧର ସାହୁ , ବୈଷ୍ଣବ ପଟ୍ଟନାୟକ, ବ୍ରଜକିଶୋର ଧଳ , ସାରଙ୍ଗଧର ଦାସ, ଶ୍ରୀକାନ୍ତ ରାଉତ ପ୍ରମୁଖ ଏହି ଆନ୍ଦୋଳନକୁ ଢେଙ୍କାନାଳରେ ଜନ ଆନ୍ଦୋଳନରେ ପରିଣତ କରିଥିଲେ । ଡକ୍ଟର ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଭଗବତୀ ଚରଣ ପାଣିଗ୍ରାହୀ, ଗୌରାଙ୍ଗ ଚରଣ ଦାସ, ଗରୁ ଚରଣ ପଟ୍ଟନାୟକ, ମାଳତୀ ଚୌଧୁରୀ ଅନନ୍ତ ପଟ୍ଟନାୟକ, ନୀଳମଣି ରାଉତରାୟ, ବୈଦ୍ୟନାଥ ରଥ, ରାଧାନାଥ ରଥ ପ୍ରଭୃତି ବହୁ ଜନନେତା ଢେଙ୍କାନାଳ ବାହାରୁ ଏହି ଆନ୍ଦୋଳନରେ ସାମିଲ ହୋଇଥିଲେ ଏବଂ ନେତୃତ୍ୱ ନେଇଥିଲେ ।

ହରମୋହନ ବାବୁ ଓକିଲ ଥିଲେ । ବିଚକ୍ଷଣ ବୁଦ୍ଧି ସମ୍ପନ୍ନ ହରମୋହନ ଆପଣାର ସ୍ମୃତିରୁ ପୁସ୍ତକର ବିନା ସାହାଯ୍ୟରେ କୋର୍ଟରେ ଜବାବ ସୁଆଲ କ[illegible] ପାରୁଥିଲେ । ଏକ ଲୋକପ୍ରିୟ ଓ ଜନତାର ଓକିଲ ଭାବରେ ତାଙ୍କର ଖ୍ୟାତି ଥିଲା । ପ୍ରଜାମ[illegible]ଳର ଆନ୍ଦୋଳନ

ପାଇଁ ତାଙ୍କୁ ବହୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିଚି । ବହୁ ନିର୍ଯ୍ୟାତନା ଭୋଗ କରିବାକୁ ପଡ଼ିଛି । ଏହି ଆନ୍ଦୋଳନରେ ନେତୃତ୍ୱ ଯୋଗୁଁ ଓଡ଼ିଶାର ବହୁ ଜନନାୟକଙ୍କ ସହିତ ତାଙ୍କର ଘନିଷ୍ଠତା ଥିଲା । ବିଶେଷତଃ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀଙ୍କ ସହିତ ତାଙ୍କର ଘନିଷ୍ଠତା ହରମୋହନ ପଟ୍ଟନାୟକ ଓ ତାଙ୍କର ଭାଇ ଦୟାନିଧି ପଟ୍ଟନାୟକଙ୍କୁ ସର୍ବୋଦୟ ଆନ୍ଦୋଳନ ଭିତରକୁ ଟାଣି ନେଇଥିଲା ଏବଂ ସେ ସର୍ବଭାରତୀୟ ଭୂଦାନ ସମିତି, ସର୍ବ ସେବାସଂଘ ପ୍ରଭୃତିର ନେତୃତ୍ୱକୁ ଯାଇଥିଲେ ।

ହରମୋହନ ବାବୁଙ୍କ ଜୀବନରେ ଅନେକ ବ୍ୟତିକ୍ରମ ଆସିଥିଲା । ତାଙ୍କ ବିରୁଦ୍ଧରେ ଢେଙ୍କାନାଳର ରାଜା ବହୁ ମୋକଦ୍ଦମା ଦାୟର କରିଥିଲେ । ଉକ୍ତ ମୋକଦ୍ଦମା ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ପ୍ରଥିତ ଯଶା ଆଇନଜୀବୀ ହରିହର ମହାପାତ୍ର ସେ ମୋକଦ୍ଦମାରେ ଜୟ ଲାଭ କରି ଫେରିଲା ବେଳକୁ କିନ୍ତୁ କୌଣସି କାରଣରୁ ହରମୋହନ ବାବୁ ଆନ୍ଦୋଳନରୁ ଓହରି ଯାଇଥିଲେ । ଜଷ୍ଟିସ୍ ହରିହର ମହାପାତ୍ର ଆପଣାର "ଆତ୍ମ ଜୀବନୀ" ରେ ଏଇ ବିଚକ୍ଷଣ ତରୁଣ ଯୋଦ୍ଧାଙ୍କର ଏଇ ସ୍ଖଳନରେ ମର୍ମାହତ କିପରି ହେଲେ ତାହା ଉଲ୍ଲେଖ କରିଛନ୍ତି ।

ହରମୋହନ ବାବୁ ପ୍ରଗତିଶୀଳ ଥିଲେ । ପ୍ରଗତିଶୀଳ ଆନ୍ଦୋଳନ ସହିତ ତାଙ୍କର ସଂପର୍କ ନିବିଡ଼ । ପ୍ରଚଣ୍ଡ ସାମ୍ରାଜ୍ୟବାଦ ବିରୋଧୀ ହରମୋହନ ଜୀବନର ସବୁ ବିଭାବରେ ସାମ୍ରାଜ୍ୟବାଦୀ ମାନଙ୍କର ଅନୁପ୍ରବେଶ ଉପଲବ୍ଧି କରୁଥିଲେ ଏବଂ ପ୍ରତ୍ୟେକ ପଦକ୍ଷେପରେ ସାମ୍ରାଜ୍ୟବାଦୀମାନଙ୍କର ଅନୁପ୍ରବେଶ ତାଙ୍କୁ ଘାରିଥିଲା । ବିଶ୍ୱଶାନ୍ତି ମୈତ୍ରୀ ଆନ୍ଦୋଳନ ସହିତ ସେ ଗଭୀର ଭାବରେ ସଂପୃକ୍ତ ଥିଲେ ଏବଂ ଓଡ଼ିଶାରେ ଏହାର ସଂଗଠନ ପାଇଁ ତାଙ୍କର ଅବଦାନ ଥିଲା ବିପୁଳ ।

ଏକ ସମ୍ଭ୍ରାନ୍ତ ପରିବାରରେ ତାଙ୍କର ଜନ୍ମ । କନ୍ତୁ ଖଦଡ଼ ପିନ୍ଧିବା, ସରଳ ନିରାଡ଼ମ୍ବର ଜୀବନ ଯାପନ କରିବା ତାଙ୍କ ଜୀବନର ବ୍ରତ ହୋଇଥିଲା । ତାଙ୍କ ଘର ଚାରିପଟରେ ମିଳୁଥିଲା ସାଗ ଜାତୀୟ ଫସଲର ଏକ ଫୁଟବଲ ଆକାରର ଖାଦ୍ୟ ଯେପରି ସୁସ୍ୱାଦୁ, ସେଇପରି ଭିଟାମିନ୍ ଯୁକ୍ତ । ବେଶ୍ ଉଣା ଥିଲେ ସେ ବ୍ୟବହାରରେ । ବନ୍ଧୁବତ୍ସଳ ବି ସିମିତି । ମାର୍କ୍ସବାଦ, ଗାନ୍ଧିବାଦ, ଭାରତୀୟ ଦର୍ଶନରେ ବିଭିନ୍ନ ଝଲକର ସେ ଏକ ସମନ୍ୱୟ ଥିଲେ । କେତେବେଳେ କେଉଁଟା ପ୍ରାଧାନ୍ୟ ବିସ୍ତାର କରୁଥିଲା ତାହା କହିହେବ ନାହିଁ । ସେଇଯୋଗୁଁ ତାଙ୍କର କ୍ରମାନ୍ୱୟତା ବା କନଷ୍ଟିସେନ୍‌ସି ଅନେକ ସମୟରେ ବ୍ୟାହତ ହେଉଥିବାର ଅଭିଯୋଗ ହୋଇଛି । କିନ୍ତୁ ଆପଣାର ହସରେ ସେ ଏ ସବୁ ଅଭିଯୋଗକୁ ହସି ଉଡ଼ାଇ ଦିଅନ୍ତି । ଏକ ନିର୍ଦ୍ଦୋଷ ହସ, କିନ୍ତୁ ସେ ହସରେ ଥିଲା ତୀକ୍ଷ୍ଣତା ।

ବୟସ ଅତିକ୍ରାନ୍ତ ହେବା ସହିତ ନିଃସଂଗ ହୋଇ ଯାଇଥିଲେ । ସମସାମୟିକ ମଣିଷ ହଜି ହଜି ଗଲେଣି । ସେ ଆଉ ଓକିଲ ନ ଥିଲେ, ଆଉ ବିପ୍ଳବୀ ନ ଥିଲେ, ଆଉ ଭୂଦାନ ନେତା ନ ଥିଲେ । ପରିବାରର ଦୁଇପୁଅ, ଜଣେ ଭୁବନେଶ୍ୱରରେ, ଜଣେ ବାଂଗାଲୋରରେ । ତେଣୁ ଖୁବ୍ ଏକାକୀ ହୋଇ ଯାଇଥିଲେ ସେ ।

କର୍କଟ ରୋଗ ଗ୍ରାସ କରିଛି ତାଙ୍କୁ । ମନେ ହେଉଛି ଯେପରି କର୍କଟ ରୋଗ ଏକ ସଂକ୍ରାମକ ବ୍ୟାଧି । କାହାକୁ ଛାଡୁନାହିଁ ଏଥର । ହରମୋହନବାବୁ ଚିକିତ୍ସା ପାଇଁ ବାଂଗାଲୋର ଗଲେ । ପୁଅ ସେଇଠି, ଏଠି ରହିବେ କେଉଁଠି, ଚିକିତ୍ସା କରିବ କିଏ ସୁଶ୍ରୁଷା କରିବ କିଏ ? ପ୍ରାକ୍ତନ ଯୋଦ୍ଧା ବା ସମାଜସେବୀ ମାନଙ୍କୁ ନା ପଚାରିବ ସରକାର, ନାଁ ପଚାରିବ ଜନତା । ମଲା ଘୋଡ଼ାର ଗୋଡ଼ ଗଣି ଲାଭ କଣ ?

ହରମୋହନ ବାବୁ ସେଇଠି ପୁଅ ପାଖରେ ଆଖି ବୁଜି ଦେଲେ । ଇତିହାସର ଏକ ଅଧ୍ୟାୟର ସମାପ୍ତି ହୋଇଗଲା । କିନ୍ତୁ ସେ ଅଂଧକାର, ତିକ୍ତ, ଆଇଁସିଆ ଅନ୍ଧକାର ଭିତରେ ସେମାନେ ଦିହୁଡି ଜାଳି ନ ଥିଲେ, ଜୀବନକୁ ବାଜି ଲଗାଇ ନ ଥିଲେ ବ୍ରାହ୍ମଣୀ ନଈ ପାଣିରେ ଶପଥ ନେଇ ନ ଥିଲେ, ଦେଶ କଣ ହୋଇଥାନ୍ତା ଆଜି ? କିଏ ମନେ ପକେଇବ ସେ କଥା ?

ହରମୋହନ ସେଇ ଅଂଧାରି ମୁଲକର ବିସ୍ମୃତ ଦିହୁଡ଼ି ।



# ଶେଷ ସନ୍ତକ

ଜୁଲାଇ ତିନି ତାରିଖ, ୧୯୯୬ ମସିହା । ହରେକୃଷ୍ଣ ପାଣିଗ୍ରାହୀ ବାଲେଶ୍ୱରରେ ସାନ ପୁଅ ପାଖରେ । ଅନେକ ଦିନ ହେଲା ଅସୁସ୍ଥତା ଲାଗି ରହିଥିଲା । କିନ୍ତୁ ଯିବାର ଡାକ ଯେ ଆସିଯାଇଛି ଏ କଥା କିଏ ଜାଣିଥିଲା ? ମହାକାଳ ତ ନୋଟିସ୍ ଦେଇ ଆସେ ନାହିଁ । ସେ ଆସେ ଅଚାନକ । ହରେକୃଷ୍ଣ ପାଣିଗ୍ରାହୀ ମଧ୍ୟାହ୍ନ ଭୋଜନ ପରେ ବିଶ୍ରାମ ନେଇଛନ୍ତି ହଠାତ୍ ଛାତିରେ ଯନ୍ତ୍ରଣା ଏବଂ ତାପରେ ସବୁ ଶେଷ । ୧୯୧୭ ମସିହା ଅକ୍ଟୋବର ୧୬ ତାରିଖ । ପ୍ରସିଦ୍ଧ ଅକ୍ଟୋବର ବିପ୍ଲବ ମାତ୍ର ଏକ ସପ୍ତାହ ଆଗରୁ । ସୁବୁଦ୍ଧି ପାଣିଗ୍ରାହୀଙ୍କର ପାତ୍ରପୁର ଗାଁରେ ଜନ୍ମ ହୋଇଥିଲା ଶିଶୁଟିଏ । ନାଁ ଦେଇଥିଲେ ହରେକୃଷ୍ଣ । କିନ୍ତୁ ଏଇ ଶିଶୁ କଣ ମାତୃଗର୍ଭରୁ ଅଭିମନ୍ୟୁଙ୍କ ପରି ସମାଜ ବିପ୍ଳବର ଦୁନ୍ଦୁଭି ଶୁଣି ପାରିଥିଲା । ଭାରତବର୍ଷର କେବଳ ମୁକ୍ତି ନୁହେଁ, ଏକ ସାମ୍ୟର ଭାରତର ବର୍ଷର ସ୍ୱପ୍ନ ତାକୁ ଯେ ଘାରିବ ଏ କଥା କିଏ ଜାଣିଥିଲା ? ଛଅ ମାସ ପରେ ମାତୃହରା ହୋଇଥିଲା ପିଲାଟି । ତେଣୁ ଅଜାଙ୍କ ଘରେ ହିଁ ବଢ଼ିଥିଲେ ହରେକୃଷ୍ଣ । ସେତେବେଳେ ପ୍ରଚଳିତ ଥିଲା ବାଲ୍ୟବିବାହ । ସେଇ ରୀତି ଅନୁଯାୟୀ ସେ ବାଲ୍ୟ ବିବାହ କରିଥିଲେ । ଘରକୁ ଆସିଥିଲେ ଚନ୍ଦ୍ରମା ପାଣିଗ୍ରାହୀ ବଧୂ ହୋଇ ଏବଂ ସହଯୋଦ୍ଧା ପାଲଟିଥିଲେ ସୁଖଦୁଃଖର । ମାତ୍ର ତିନିମାସ ତଳେ ତାଙ୍କର ପରଲୋକ ହୋଇଯାଏ ଏବଂ ସତେ ଯେମିତି ସେ ଡାକିନିଅନ୍ତି ହରେକୃଷ୍ଣଙ୍କୁ ।

ଏଇ ଶତାବ୍ଦୀର ତୃତୀୟ ଏବଂ ଚତୁର୍ଥ ଦଶକ । ଗଂଜାମ ଜିଲ୍ଲା ରାଜନୈତିକ ଉଦ୍‌ବେଳନର ପୀଠ । ଗୋଟାଏ ପଟରେ ବ୍ରିଟିଶ ସରକାର ବିରୁଦ୍ଧରେ ପରାଧୀନତାରୁ ମୁକ୍ତି ପାଇଁ ସଂଗ୍ରାମ ଅନ୍ୟ ପଟରେ ସ୍ୱତନ୍ତ୍ର ଓଡ଼ିଶା ପାଇଁ ସଂଗ୍ରାମ । ଗଂଜାମର ମାଟି ଦୁଲୁକିଲା । ଶହ ଶହ ସେନାନୀ ଆପଣାର ଜୀବନକୁ ବାଜି ରଖିଲେ । ଘରେ ଘରେ ସଂଗ୍ରାମ ପାଇଁ ଡାକରା ପ୍ରତିଧ୍ୱନିତ ହେବାକୁ ଲାଗିଲା । ଆସ ଯେ ଯେଉଁଠି ଅଛ ଯେତେ ସଂଗ୍ରାମୀ ସେନାନୀ..... । ଉମାଚରଣ ପଟ୍ଟନାୟକ, ନିରଞ୍ଜନ ପଟ୍ଟନାୟକ, ବିଶ୍ୱନାଥ ଦାସ, ସଂଗ୍ରାମର ବହୁ ସେନାପତି । ସେ ଉଦାତ୍ତ ଆହ୍ୱାନର ପ୍ରତ୍ୟୁତ୍ତରରେ ହରେକୃଷ୍ଣ ପାଲଟିଥିଲେ ସେନାନୀ । ସହିଥିଲେ ଅତ୍ୟାଚାରର କଷଣ । ଲୁହା ପାଲଟିଥିଲା ଇସ୍ପାତ ।

ହରେକୃଷ୍ଣ ଚମାଖଣ୍ଡି (ଛତ୍ରପୁର ପାଖ) ଗ୍ରାମରେ ବସବାସ କରନ୍ତି । ଚମାଖଣ୍ଡି ପାଲଟିଯାଏ ତାଙ୍କର କର୍ମସ୍ଥଳୀ ଓ ଶିବିର । କେବଳ ପୈତୃକ ସମ୍ପତ୍ତିର ଅଂଶ ନୁହେଁ, ଚମା[illegible]

ଗ୍ରାମ ପଞ୍ଚାୟତର ବହୁ ବର୍ଷ ଧରି ସରପଞ୍ଚ । କେହି ପ୍ରତିଦ୍ୱନ୍ଦ୍ୱିତା କରିନାହାନ୍ତି ତାଙ୍କୁ । ୧୯୫୬ ରୁ ୧୯୭୪ ପର୍ଯ୍ୟନ୍ତ । ତ୍ୟାଗ, ନିଷ୍ଠା ଆଗରେ ସମସ୍ତେ ମଥାବନତ । ୧୯୭୪ ରେ ସେ ଛତ୍ରପୁର ବ୍ଲକର ଚେୟାରମାନ୍ ହୁଅନ୍ତି ଆପଣାର ପ୍ରତିଦ୍ୱନ୍ଦ୍ୱୀ ପ୍ରବଳ ପ୍ରତାପୀ ଜମିଦାରକୁ ପରାସ୍ତ କରି । କୌପୀନର ପାଖରେ ମୁକୁଟର ପରାଜୟ ହୁଏ । ଆଜିକାଲି ତ୍ୟାଗ ନୁହେଁ ଭୋଗର ବିଜୟ ହେଉଛି । ମନବଳ ନୁହେଁ ବାହୁବଳର ବିଜୟର ଯୁଗ । ସେତେବେଳେ କିନ୍ତୁ ଇମିତି ନ ଥିଲା ।

ମୁକ୍ତି ପାଇଁ ସଂଗ୍ରାମ ଭିତରେ ମହାରଥୀ ବିଜୟଚନ୍ଦ୍ର ଦାସ ହରେକୃଷ୍ଣଙ୍କୁ ଶିକ୍ଷା ଦେଇଥିଲେ ସାମ୍ୟବାଦର ମହାମନ୍ତ୍ରରେ । ଏଇ ରାଜନୈତିକ ସ୍ୱାଧୀନତା ଯଥେଷ୍ଟ ନୁହେଁ, ଅର୍ଥନୈତିକ ସ୍ୱାଧୀନତା ପାଇଁ ସଂଗ୍ରାମ ଚାଲିବ ତା ପରେ। ହରେକୃଷ୍ଣ ସାମ୍ୟବାଦର ମହାମନ୍ତ୍ରରେ ଦୀକ୍ଷିତ ହେଲେ ଏବଂ ମୃତ୍ୟୁ ପର୍ଯ୍ୟନ୍ତ ଶାରୀରିକ ଅସୁସ୍ଥତା ସତ୍ତ୍ୱେ କମ୍ୟୁନିଷ୍ଟ ପାର୍ଟିର ସକ୍ରିୟ ସଭ୍ୟ ଭାବରେ କାର୍ଯ୍ୟ କରି ଯାଇଛନ୍ତି । କିଛି ଲୋଡ଼ି ନାହାନ୍ତି । ଯାହା ପାରିଛନ୍ତି ଦେଇ ଯାଇଚନ୍ତି । ତ୍ୟାଗର କୌଣସି ସୀମା ନାହିଁ , ଅନ୍ତ ନାହିଁ ।

ହରେକୃଷ୍ଣ ଆଉ ନାହାନ୍ତି । କିନ୍ତୁ ସମୟର ବାଲିରେ ଜଳିବେ ସେ ବହୁକାଳ ପର୍ଯ୍ୟନ୍ତ ।

